# ନଦୀର ନାମ ରୂପମତୀ



ବସନ୍ତକୁମାରୀ ଦେବୀ

# ନଦୀର ନାମ ରୂପମତୀ

( ଉପନ୍ୟାସ )

ଲେଖିକା

ବସନ୍ତକୁମାରୀ ଦେବୀ



ନଦୀର ନାମ ରୂପମତୀ – ଲେଖିକା : ବସନ୍ତକୁମାରୀ ଦେବୀ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩ ୦୦୨, ପ୍ରଚ୍ଛଦପଟ : ରଂଜିତ୍ ପରିଜା, ଡି.ଟି.ପି. : ୟୁନିଟେକ୍, କଟକ-୧, ମୁଦ୍ରଣ : ଗ୍ରାଫିକ୍ ଆର୍ଟ ଅଫ୍‌ସେଟ ପ୍ରେସ୍, କଟକ ।



**NADIRA NAMA RUPAMATI** – Author : Basantakumari Devi, Publisher : Sahadev Pradhan, Friends' Publishers, Binodbehari, Cuttack-753 002, Orissa (India), Cover Design by : Ranjit Parija, D.T.P. by : Unitech, Cuttack, Printer : Graphic Art Offset Press, Cuttack.

First Edition : 2001

Price : Rs.105

ISBN 81-7401-368-7

# ଉତ୍ସର୍ଗ

ଉପନ୍ୟାସର ନୀଳମଣି ଚ଼ରିତ୍ର ଜୀବନ୍ତ । ଏଇ ଅଳ୍ପଦିନ ତଳେ ମଧ୍ୟ ସେ ଏ ପୃଥିବୀ ଉପରେ ଚାଲି ବୁଲି ରହିଥିଲେ ।

ଉପନ୍ୟାସର ବିଷୟବସ୍ତୁ ଓ ଘଟଣା ସମୂହ କେବଳ ମୋ'ର କଳ୍ପନା ନୁହେଁ, ଅନେକ ସତ୍ୟ ମଧ୍ୟ ରହିଛି । ମୋ ମତରେ ଉପନ୍ୟାସରେ ଥିବା ସବୁତକ ଚରିତ୍ର ଏବେ ମଧ୍ୟ ପୃଥିବୀର ବିଭିନ୍ନ ଜାଗାରେ ଜୀବିତ । କାରଣ ସବୁଠାରେ ମଣିଷ ଏକ, ତା'ର ଭାବଧାରା ଏକ । ମୁଁ ଏହି ନୀଳମଣିଙ୍କୁ ମୋ ନିଜ ଆଖିରେ ଦେଖିଛି, ତାଙ୍କ ସହିତ କଥାବାର୍ତ୍ତା ହୋଇଛି ମଧ୍ୟ, ବ୍ୟଥା-ଜର୍ଜର ହୃଦୟର ପ୍ରତିଧ୍ୱନି ଶୁଣିଛି, ତାଙ୍କର ପତି-ପ୍ରେମ ଦେଖି ସ୍ତମ୍ଭିତ ହୋଇଛି, ଉଦ୍ଦୀପ୍ତ ହୋଇଛି ଉପନ୍ୟାସ ଭିତରେ ତାଙ୍କୁ ଶ୍ରେଷ୍ଠ ନାୟିକାର ରୂପ ଦେବାକୁ ।

ମୋର ପୂଜନୀୟା ଶାଶୂ ସ୍ୱର୍ଗୀୟା ଶ୍ରୀମତୀ ସୁଲକ୍ଷଣା ଦେବୀ ଯେ କି ପୁରାତନ ଯୁଗର ମଣିଷ ହୋଇ ମଧ୍ୟ ନୂଆ ଚିନ୍ତାଧାରାର ପ୍ରବର୍ତ୍ତିକା ଥିଲେ, ତାଙ୍କରିଠାରୁ ଶୁଣିଛି ପୁରୁଣା ଯୁଗର ଅନେକ ଛୋଟ ବଡ଼ ଘଟଣା, ସତ ଘଟଣା । ଅବସର ସମୟରେ ଏ କାହାଣୀଗୁଡ଼ିକ ମତେ କହୁଥା'ନ୍ତି ସେ । ଆଉ ଶୁଣୁଶୁଣୁ ଘଟଣାଗୁଡ଼ିକ ମୋ ଆଖି ଆଗରେ ଯେପରି ଜୀବନ୍ତ ହୋଇଯାଆନ୍ତି, ଚରିତ୍ରମାନେ ଧାରଣ କରନ୍ତି ଜୀବନ୍ତ ମୂର୍ତ୍ତି । ସେମାନଙ୍କର ହୃଦୟର ଯନ୍ତ୍ରଣା, ଦୁଃଖ, ଶୋକ ଯେପରି ମୁଁ ଉପଲବ୍ଧି କରେ ନିଜ ହୃଦୟରେ । ସେ ଯୁଗଟା ଗୋଟାଏ ଜୀବନ୍ତ ମଣିଷ ପରି ଆସି ଠିଆହୁଏ ଆଖି ଆଗରେ ।

ମୁଁ ଭାବୁଛି ନୀଳମଣିଙ୍କୁ ଆଖିରେ ନ ଦେଖିଥିଲେ କି ମୋ ଶାଶୂଙ୍କଠାରୁ ଓ ମୋ ବୁଢ଼ୀ ମା'ଙ୍କଠାରୁ ଏ ସବୁ ସତ୍ୟ କାହାଣୀ ଶୁଣି ନ'ଥିଲେ ମୋ ପକ୍ଷରେ 'ନଦୀର ନାମ ରୂପମତୀ' ଲେଖିବା ସମ୍ଭବ ହୋଇ ନ ଥା'ନ୍ତା ।

ତେଣୁ ଆଜି ମୁଁ ଗଭୀର ଶ୍ରଦ୍ଧା ଓ ଭକ୍ତିରେ ମୋର 'ନଦୀର ନାମ ରୂପମତୀ' ଉପନ୍ୟାସଟିକୁ ମୋର ଶାଶୂଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅର୍ପଣ କରୁଛି । ଶ୍ରଦ୍ଧାଞ୍ଜଳି ନିବେଦନ କରୁଛି ସେ ଯୁଗର ସେହି ନୀଳମଣି, ସୁନାମଣି, ତାରାମଣି, ସୁବର୍ଣ୍ଣଲତାମାନଙ୍କ ପାଖରେ ।

ଲେଖିକା

# ମୁଖବନ୍ଧ

'ନଦୀର ନାମ ରୂପମତୀ' ସ୍ୱର୍ଗୀୟା ବସନ୍ତକୁମାରୀ ଦେବୀଙ୍କର ସର୍ବବୃହତ୍ ଉପନ୍ୟାସ । ଏହି ଉପନ୍ୟାସଟି ୧୯୯୨ ଠାରୁ ୧୯୯୬ ମଧ୍ୟରେ ଧାରାବାହିକ ଭାବରେ 'ସହକାର' ପତ୍ରିକାରେ ପ୍ରକାଶ ପାଇଥିଲା । ପତ୍ରିକାରେ ପ୍ରକାଶିତ ଅଧ୍ୟାୟଗୁଡ଼ିକ ଏକତ୍ରିତ କରି ପୁସ୍ତକ ରୂପେ ପ୍ରକାଶ କରିବାକୁ ସେ ଚାହୁଁଥିଲେ ଓ ହୃଦ୍‌ରୋଗଜନିତ ଦୁର୍ବଳତା ଓ ଯନ୍ତ୍ରଣା ସତ୍ତ୍ୱେ ସେଥିପାଇଁ ପ୍ରାଥମିକ ଉଦ୍ୟମ କରିଥିଲେ । କିନ୍ତୁ ତାହା ତାଙ୍କ ଜୀବନକାଳରେ ସମ୍ଭବ ହେଲା ନାହିଁ ।

ପରେ ପୁସ୍ତକଟି ପ୍ରକାଶ ପାଇଁ ଦେବାକୁ ଯାଇ ମୁଁ ମୂଳ ପାଣ୍ଡୁଲିପିର ଶେଷରେ ଆବିଷ୍କାର କଲି ତାତ୍ପର୍ଯ୍ୟପୂର୍ଣ୍ଣ ଉତ୍ସର୍ଗ ପତ୍ରଟି । ମନେ ହେଲା ମୃତ୍ୟୁର ଅଳ୍ପ କେତେକାଳ ପୂର୍ବରୁ ସେ ସେହି ଉତ୍ସର୍ଗ ପତ୍ରଟି ଲେଖିଥିଲେ ।

ବସନ୍ତକୁମାରୀଙ୍କର ଗଳ୍ପ ଓ ଉପନ୍ୟାସଗୁଡ଼ିକ ମୁଖ୍ୟତଃ ନାରୀକୈନ୍ଦ୍ରିକ । ନାରୀ ଜୀବନର ସମସ୍ୟା, ଦୁଃଖ, ଯନ୍ତ୍ରଣା, ଦ୍ୱନ୍ଦ୍ୱ, ଜୟ-ପରାଜୟ—ଦ୍ରୁତ ପରିବର୍ତ୍ତନଶୀଳ ସମାଜରେ ରକ୍ଷଣଶୀଳତା ତଥା ଆଧୁନିକତାର ସଂଘର୍ଷ ମଧ୍ୟରେ ନାରୀର ବ୍ୟକ୍ତିତ୍ୱର, ସ୍ଥିତିର, ବିବର୍ତ୍ତନର ଚିତ୍ର ସେ ଆଙ୍କିଛନ୍ତି ।

ଏହି ଉପନ୍ୟାସରେ ପ୍ରକାଶ ପାଇଛି ବସନ୍ତକୁମାରୀଙ୍କର ଗଭୀର ସାମାଜିକ ଚେତନା, ଆଦର୍ଶବାଦ ଓ ଆଧ୍ୟାତ୍ମିକ ଅନୁସନ୍ଧିତ୍ସା ।

ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ୍‌ର ସ୍ୱତ୍ୱାଧିକାରୀ ଶ୍ରୀଯୁକ୍ତ ସହଦେବ ପ୍ରଧାନ ଅନୁଗ୍ରହ କରି ଏହି ଉପନ୍ୟାସଟି ପ୍ରକାଶ କରିଥିବାରୁ ମୁଁ ତାଙ୍କ ପ୍ରତି ଏକାନ୍ତ କୃତଜ୍ଞ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଭାବାନ୍ ଇଂରାଜୀ ଅଧ୍ୟାପକ ଶ୍ରୀଯୁକ୍ତ ଦୀପ୍ତିରଞ୍ଜନ ପଟ୍ଟନାୟକ ଏହାର ପ୍ରକାଶନରେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛି । ଏ ଅବସରରେ 'ସହକାର'ର ସୁଯୋଗ୍ୟା ସମ୍ପାଦିକା ଶ୍ରୀମତୀ ରମା କରଙ୍କୁ ମଧ୍ୟ କୃତଜ୍ଞତା ଜଣାଉଅଛି ।

ସର୍ବେଶ୍ୱର ଦାଶ

ଜୀବନକୁ କ୍ଷଣଭଙ୍ଗୁର ଜାଣି ସୁଦ୍ଧା ମନୁଷ୍ୟମାନେ ସୁଦୀର୍ଘ ଭବିଷ୍ୟତ୍‌ର ସ୍ୱପ୍ନ ଦେଖନ୍ତି । ଏ ତ ଜଣା କଥା; କିନ୍ତୁ ଏ ସଂସାରରେ ସୁଦୀର୍ଘ ଅତୀତର ସ୍ୱପ୍ନ ଦେଖିବା ବ୍ୟକ୍ତି ମଧ୍ୟ ଯେ କମ୍ ରହି ନାହାନ୍ତି, ସେକଥା କେହି କହନ୍ତି ନାହିଁ କି ଜାଣନ୍ତି ନାହିଁ । କାରଣ ଏପର୍ଯ୍ୟନ୍ତ ସେ ବିଷୟଟିକୁ ପରିସଂଖ୍ୟାନର ପରିସୀମା ଭିତରକୁ ଅଣାଯାଇ ନାହିଁ ।

ନୀଳମଣି ବିଛଣା ଉପରେ ଶୋଇରହି ଆଖି ବନ୍ଦକରି ସେହି ଦୀର୍ଘ ଅତୀତର ସ୍ୱପ୍ନ ଦେଖନ୍ତି; ଖାଲି ସେତିକି ନୁହେଁ, ଆଖି ଖୋଲା ରଖି ମଧ୍ୟ ଦେଖନ୍ତି ସେହି ଏକା ସ୍ୱପ୍ନ —ସେ ଏକ ସୁଦୀର୍ଘ ...ଅତି ସୁଦୀର୍ଘ ଅତୀତର ଛାଇଛାଇଆ ସ୍ୱପ୍ନ, ଆଖି ଦୁଇଟା ଖୋଲାଥିଲାବେଳେ ମଧ୍ୟ ତାହା ଆଖି ଆଗରେ ଭାସି ଉଠେ ।

ଏ ବିରାଟ ସଂସାରରେ ବର୍ତ୍ତମାନ ଏହି ସ୍ୱପ୍ନ ଛଡ଼ା ତାଙ୍କର ଆଉ କିଛି ସମ୍ବଳ ନାହିଁ— ନା, ଆଉ କିଛି ସମ୍ବଳ ନାହିଁ । ...ଓଃ କେତେ ଯେ ଦୀର୍ଘ ଏକ ଅତୀତ ସେ ! ତା'ର ଦୀର୍ଘତାକୁ ସହଜେ କଳନା କରିହୁଏ ନାହିଁ । ଦୀର୍ଘ ନବେଟା ଗ୍ରୀଷ୍ମ ଏ ଶରୀର ଉପର ଦେଇ ବହି ଯାଇଛି । ବସନ୍ତର ମନ୍ଦ ମଧୁର ଶୀତଳତା ନୁହେଁ, ଗ୍ରୀଷ୍ମର ପ୍ରଚଣ୍ଡ ଦହନଶୀଳତା ନିଜ ଅଙ୍ଗରେ ନିଭେଇଛନ୍ତି ନୀଳମଣି ।

ପ୍ରାସାଦୋପମ ବାସଗୃହର ଏକ ନିଭୃତ କନ୍ଦରରେ ଥିବା ବିରାଟ କକ୍ଷଟି ଭିତରେ ବିରାଟ ପଲଙ୍କଟି ଅବସ୍ଥିତ । ବିସ୍ତୃତ ଦୁଗ୍ଧଫେନନିଭ ଶଯ୍ୟା, ତାରି ଉପରେ ଶୋଇ, ଆଉଜି ବସି କେତେ ବର୍ଷ କଟିଗଲା ସତେ !

ଅତି ମୂଲ୍ୟବାନ ଶିଶୁକାଠରେ ତିଆରି ସୁନ୍ଦର ଯୋଡ଼ାପଲଙ୍କ । କାଠର ଫ୍ରେମ୍ ଭିତରେ ଚକ୍‌ଚକ୍ କରୁଥିବା ବିଭିନ୍ନ ରଙ୍ଗର କାଚରେ ତିଆରି ଫୁଲ, ପତ୍ର, ଡାଳ, ଲତା, ଶୁଆ, ସାରୀ ପ୍ରଭୃତି ଖଞ୍ଜାଯାଇଥିବା କାରୁକାର୍ଯ୍ୟମଣ୍ଡିତ ପଲଙ୍କଟି ସେକାଳର ଚାରୁକଳାର ନିଦର୍ଶନ ହୋଇ ରହିଛି । ଯୋଡ଼ା-ପଲଙ୍କ ସେହି ପ୍ରଥମ ଦିନରୁ ହିଁ ଯୋଡ଼ି ହୋଇ ରହିଛି । ପଲଙ୍କ ଦୁଇଟିକୁ ଅଲଗା କରାଯାଇ ନାହିଁ କେବେ, କିନ୍ତୁ ସେହି ଯୋଡ଼ା ପଲଙ୍କର ଅଧିକାରୀ ଜୀବନ ଦୁଇଟା ? ଓଃ, କାହିଁ କେତେ କାଳରୁ ପରସ୍ପରଠାରୁ ସମ୍ପୂର୍ଣ୍ଣ ଅଲଗା ହୋଇଯାଇଛନ୍ତି ।

ସୁଦୂର ଅତୀତର ସେ ଏକ ସୂର୍ଯ୍ୟସ୍ନାତ, ଚନ୍ଦ୍ରର ସ୍ନିଗ୍ଧତାରେ ସିକ୍ତ ଓ ମଳୟର ସୌରଭରେ ସୁରଭିତ ମଧୁର ସମୟ, ଜୀବନକାଳ ତା'ର ବହୁତ, ବହୁତ ସଂକ୍ଷିପ୍ତ । ହେଲେବି ତା'ରି ଭିତରେ ଯେଉଁ ଟିକକ ପରିପୂର୍ଣ୍ଣତା ସେ ପାଇଥିଲେ ତାହାର ସ୍ମୃତି ଆଜି ଏତେଦିନ ପରେ ମଧ ସେହିପରି ଅମଳିନ, ସେହିପରି ଭାସ୍ୱରିତ ହୋଇ ରହିଛି—ତାଙ୍କର ସ୍ୱାମୀ, ତାଙ୍କର ଦେବତା, ତାଙ୍କର ସ୍ୱପ୍ନର ରାଜପୁତ୍ର, ସତରେ ତ ! କାହାଣୀରେ ଶୁଣିଲା ଭଳି ରଜା ପୁଅର ଚେହେରା ଥିଲା ତାଙ୍କର କି ସୁନ୍ଦର, କି ସୌମ୍ୟଦର୍ଶନ, ରୂପବାନ୍ ଚେହେରା ସେ ! ସଦାପ୍ରସନ୍ନ ପ୍ରଶାନ୍ତ, ହସ ହସ ସେ ମୁହଁଟି !

ପୁଅର ସେ ଅତି ସୁନ୍ଦର ଢଳଢଳ ମୁହଁଟିକୁ ଦେଖିଲାକ୍ଷଣି ଶ୍ୱଶୁର କୁଆଡ଼େ କହିଥିଲେ— ନାଁ ଦିଅ ସ୍ୱର୍ଗଦୂତ, ନ ହେଲେ ଦେବଦୂତ । ସତରେ ସ୍ୱର୍ଗର ଦେବଦୂତଟିଏ ତମ କୋଳକୁ ଓହ୍ଲାଇ ଆସିଛି, ହେମ !

ଶାଶୂ ହେମଲତା କୁଆଡ଼େ ଟିକିଏ ହସି କହିଥିଲେ— ରୂପନାରାୟଣଙ୍କୁ ପ୍ରାର୍ଥନା କରି ଯାକୁ ମୁଁ କୋଳରେ ପାଇଛି । ମହାଦେବଙ୍କର ଯେ କୌଣସି ହେଲେ ନାଁଟିଏ ଦିଅ ।

ଦେବାଦିଦେବ ମହାଦେବଙ୍କ ନାମରେ ହିଁ ନାମିତ କରିବା କଥା, କାରଣ ବଡ଼ ପୁଅ ନାଁ ତ ଚନ୍ଦ୍ରଶେଖର । ଶିଶୁପୁତ୍ରର ଶୁଭ୍ର ରକ୍ତିମ ଗୋଲାପ ଫୁଲପରି ଗାଲଟିକୁ ଟିକିଏ ଚିପିଦେଇ ନାରାୟଣଚନ୍ଦ୍ର କହିଥିଲେ—ଆଚ୍ଛା, ତାହେଲେ ବିଶ୍ୱନାଥ ରଖ ! ହେଲେ ମୁଁ ଡାକିବି—ସ୍ୱର୍ଗଦୂତ !

ଜମିଦାର ଚୌଧୁରୀ ନାରାୟଣ ଚନ୍ଦ୍ର ଦାଶ । ଚୌଧୁରୀ ଉପାଧି ଗଜପତିଙ୍କ ଦ୍ୱାରା ପ୍ରଦତ୍ତ, ସଂଜ୍ଞା ହେଉଛି ଦାଶ । ସାମନ୍ତ ବଂଶୀୟ ଉଚ୍ଚ ସମ୍ଭ୍ରାନ୍ତ କୂଳର ବ୍ରାହ୍ମଣ ଜମିଦାର ।

ନଦୀର ନାମ ରୂପମତୀ—ତା'ରି କୂଳରେ ଏହି ସାମନ୍ତବଂଶର ପୂର୍ବପୁରୁଷ ତୋଳାଇ ଦେଇଛନ୍ତି ଦେବାଦିଦେବ ମହାଦେବଙ୍କର ଅତି ସୁନ୍ଦର ଏବଂ ବେଶ୍ ବଡ଼ ମନ୍ଦିରଟିଏ । ଗୋଟିଏ ପାଖରେ ଫୁଲ ବଗିଚା ଥାଇ, କୂଅ ଥାଇ ସୁପ୍ରଶସ୍ତ ମନ୍ଦିର ବେଢ଼ା, ପଥର ଓ ଚୂନରେ ବନ୍ଧାହୋଇ ଚକ୍ ଚକ୍ କରୁଥିଲା ତା' ଭିତରର ରାସ୍ତା, ଅଗଣା ଓ ପାହାଚ ଶ୍ରେଣୀ । ଅଭ୍ୟନ୍ତରରେ ପିତ୍ତଳନିର୍ମିତ ବୃହତ୍ ନାଗରାଜଙ୍କ ସହିତ ଶକ୍ତିବେଷ୍ଟିତ ପ୍ରସ୍ତର ଶିବଲିଙ୍ଗ ରୂପନାରାୟଣ ହରିହର । ଅନ୍ୟ ପାଖରେ ବିରାଟ ଚଉତରା, ଚଉତରାରୁ ପାହାଚଶ୍ରେଣୀ ଓହ୍ଲାଇ ଯାଇଛି ରୂପମତୀ ନଦୀର ଗର୍ଭକୁ । ବଢ଼ି ସମୟରେ ପାହାଚଶ୍ରେଣୀ ବୁଡ଼ି ଚଉତରାକୁ ପାଣି ଲାଗିଯାଏ । ନଦୀ ଶୁଖିଲା ଥିଲାବେଳେ କୂଅଟି ଉପରେ ନିର୍ଭର କରି ଦେବ-ସେବା ଓ ବଗିଚାକୁ ବଞ୍ଚାଇବା କାମ ଚଳେ ।

ଗାଁ'ର ନାମ ମଧ ରୂପଦେଈପୁର ।

ସେହି ଗାଁ'କୁ ବୋହୂ ହୋଇ ଆସିଥିଲେ ନୀଳମଣି ।

ଅତି ସ୍ପଷ୍ଟ ରୂପେ ବାହାଘର କଥା ମନେ ପଡ଼େ ନାହିଁ, କାରଣ ସେତେବେଳେ ସେ ସପ୍ତବର୍ଷୀୟା ବାଳିକା ମାତ୍ର ଏବଂ ପରେ ଶୁଣିଥିଲେ— ଗୌରୀଦାନ ଅର୍ଥାତ୍ କନ୍ୟାଦାନ ସମୟରେ

କୁଆଡ଼େ କେଜେ ବାପାଙ୍କ କୋଳରେ ସେ ଘୁମେଇ ପଡ଼ିଥିଲେ । ଶଙ୍ଖ, ହୁଳହୁଳି, ବାଦ୍ୟ-ମହୁରୀର ଶବ୍ଦ, ପୁରୋହିତଙ୍କ ମନ୍ତ୍ରୋଚ୍ଚାରଣ ଶବ୍ଦ ଓ ଆତ୍ମୀୟସ୍ୱଜନଙ୍କ କୋଳାହଳ ଭିତରେ ଅତି ସ୍ୱଚ୍ଛନ୍ଦରେ ଶୋଇ ପଡ଼ିଥିଲେ ସେ !! କେମିତି କେଜାଣି ! ପରବର୍ତ୍ତୀ କାଳରେ ଆଖି ଦୁଇଟାରେ ଟିକିଏ ନିଦ ଆସିବାକୁ କେତେ ସାଧନା ନ କରିଛନ୍ତି ସେ ।

ଟିକିଏ ନିଦ ! ଅନ୍ତତଃ ରାତିର ସେହି ଅସହ୍ୟ ନିର୍ଜ୍ଜନ ପ୍ରହର ଗୁଡ଼ିକର ଯନ୍ତ୍ରଣା ଭୁଲିବା ପାଇଁ ନିଦ ଟିକିଏ, କେତେ ବିକଳ ହୋଇ ସେ ପ୍ରାର୍ଥନା କରି ନାହାନ୍ତି ଅନ୍ତର୍ଯ୍ୟାମୀଙ୍କ ନିକଟରେ ?

ଧଳା ହଂସର ପରଭଳି ସଫେଦ କୋମଳ, ନିର୍ମଳ ବିସ୍ତୃତ ଶଯ୍ୟା ସବୁବେଳେ ମନେ ହୋଇଛି ଭୀଷ୍ମଙ୍କ ଶରଶଯ୍ୟା ଭଳି ! ସତେ କି ସହସ୍ର ଧନୁଶରର ତୀକ୍ଷ୍ଣ ମୁନଗୁଡ଼ିକ ଶରୀରର ପ୍ରତ୍ୟେକ ଅଣୁରେ ବିନ୍ଧି ହୋଇଯାଇ ଖାଲି ରକ୍ତପାତ ଘଟାଇଛି ସାରା ରାତି, ନିବିଡ଼ ଯନ୍ତ୍ରଣା ଦେବା ସହିତ ରକ୍ତକ୍ଷରଣ କରାଇଛି ହୃତ୍‌ପିଣ୍ଡର । ଦୁଇଟି ଅସହାୟ ବିନିଦ୍ର ଆଖିରୁ ଅବିରାମ ଭାବରେ ଝରିଛି ଖାଲି ଅଶ୍ରୁଧାରା–ସାରା ରାତି ଝରି ଝରି କୋମଳ ସଫେଦ ଉପାଧାନଗୁଡ଼ିକକୁ ସିକ୍ତ କରି ଦେଇଛି । ବିରହର ଉତ୍ତପ୍ତ ଦୀର୍ଘ ନିଃଶ୍ୱାସରେ ଖାଲି ନୀଳମଣିଙ୍କୁ ଜଳାଇ ଜଳାଇ ପ୍ରହରଗୁଡ଼ିକ ଜଳିଛନ୍ତି ।

''– ନୀଳମଣି ! ଆଃ ! ତମ ନାଁ ନୀଳମଣି କିଏ ଦେଲା ଯେ ? ଧଳା ପଦ୍ମ ଭଳି ଏ ଝିଅଟିକୁ ଶୁଭ୍ରମଣି ବୋଲି ନାଁ ଦେବା ଉଚିତ ଥିଲା । ସେକଥା ନ କରି ପୂରା ଓଲଟା କରିଦେଇଛନ୍ତି, ଧଳାକୁ କରିଛନ୍ତି ନୀଳ । ମୁଁ ତମ ନାଁ କ'ଣ ଦେବି କହିଲ...? ତମ ନାଁ...ତମ ନାଁ...'' ।

କଥାଗୁଡ଼ାକ ବର୍ତ୍ତମାନର ଏହି ମୁହୂର୍ତ୍ତରେ ଶୁଣିଲାପରି ଚମକି ପଡ଼ନ୍ତି ନୀଳମଣି । ନା, କଥାଗୁଡ଼ିକ ବର୍ତ୍ତମାନର ନୁହେଁ, କେଉଁ ସୁଦୀର୍ଘ ଅତୀତର ପ୍ରତିଧ୍ୱନି ମାତ୍ର ।

ନିଭୃତ କକ୍ଷରେ ନବ ପରିଣୀତ ଦୁଇଟି ପ୍ରାଣର ମଧୁର ଗୁଞ୍ଜନର ଧ୍ୱନି ଯେପରି ଗୁଞ୍ଜରିତ ହୋଇ ଉଠେ କାନ ପାଖରେ, ଐଶ୍ୱର୍ଯ୍ୟରେ ପ୍ରାଚୁର୍ଯ୍ୟରେ ସୁସଜ୍ଜିତ, ସୁଶୋଭିତ, ସୁଗନ୍ଧିତ ସ୍ୱପ୍ନପୁରୀ ଭଳି ସେ କକ୍ଷଟି ଥିଲା । ରୂପକଥାର ରଜାପୁଅ ଓ ରଜାଝିଅ ପରି ଦୁଇଟି ପ୍ରତିମା ମନର ଭାବକୁ ଆଦାନ ପ୍ରଦାନ କରୁଥିଲେ ସାରା ଦିବସର ଆକୁଳ ପ୍ରତୀକ୍ଷା ପରେ ରାତିର ସେହି ସ୍ୱପ୍ନ ମଧୁର ମୁହୂର୍ତ୍ତ ଗୁଡ଼ିକରେ । ସେହି ଅସ୍ପଷ୍ଟ କଥାବାର୍ତ୍ତା କି ମଧୁର, ଆଉ କି ଜୀବନ୍ତ ହୋଇ ଉଠୁନଥିଲା ! କିଶୋରୀ ନବବଧୂର ପଦ୍ମକୋରକ ତୁଲ୍ୟ ମୁଖଟିକୁ ଆବୃତ କରି ରଖିଥିବା ଓଢ଼ଣାଟିକୁ ଅପସାରିତ କରିବାର ସେହି ପ୍ରବଳ ଚେଷ୍ଟା କିଶୋର ସ୍ୱାମୀଙ୍କର...ସେ ସବୁ ପିଲାଦିନେ ଶୁଣିବା ଗପର କଥାପରି ମନେହୁଏ ।

କିନ୍ତୁ...ସେହି ସ୍ମୃତିଗୁଡ଼ିକ ଭିତରେ ଗୋଟିଏ ଦୀପାଲୋକିତ କକ୍ଷର ମନୋରମ ଦୃଶ୍ୟ ହଠାତ୍ ପରିବର୍ତ୍ତିତ ହୋଇଯାଏ ଆଉ ଏକ ନିଷ୍ଠୁରତମ ଦୃଶ୍ୟରେ–ସେ ଦୃଶ୍ୟ ହେଉଛି ପ୍ରାସାଦ ପରି ବିରାଟ ଘରଟିରେ ଆତଙ୍କ ଯେପରି ନିଜେ ମୂର୍ତ୍ତିମନ୍ତ ହୋଇ ଉପସ୍ଥିତ ହୋଇଯାଇଛି !

ଆତ୍ମୀୟସ୍ୱଜନ, ପରିଚାରକ, କର୍ମଚାରୀ ସମସ୍ତଙ୍କ ମୁହଁରେ ଆତଙ୍କ ଫୁଟି ଉଠିଛି, ସମସ୍ତେ ବ୍ୟାକୁଳ ହୋଇ ପଡ଼ିଛନ୍ତି ।

ପରିଚାରିକାଟି ନୀଳମଣିଙ୍କୁ ନେଇ ବସାଇ ଦେଇଥିଲା ତାଙ୍କ ସ୍ୱାମୀଙ୍କର ପଦପ୍ରାନ୍ତରେ । ନୀଳମଣିଙ୍କ ମୁହଁ ଉପରେ ଘୋଡ଼ାଇ ହୋଇ ରହିଥିଲା ହାତେ ଲମ୍ବର ଓଢ଼ଣା, ଫଳରେ ଦେଖି ହେଉନଥାଏ କିଛି । ସ୍ୱାମୀଙ୍କ ପାଦ ଦୁଇଟି ଉପରେ ହାତ ରଖି ମୂର୍ଚ୍ଛାହତ ପରି ସେ ଆଉଜି ପଡ଼ିଥାନ୍ତି ପରିଚାରିକାଟି ଉପରେ ।

କକ୍ଷଟା ଭିତରେ କେତେ ଲୋକ–ବୈଦ୍ୟ କେତେ ଜଣ, ତାନ୍ତ୍ରିକ, ଗୁଣିଆ, ଆତ୍ମୀୟମାନେ, ନାଏବ, ଗୁମାସ୍ତା, ତା'ରି ଭିତରେ ନବାଗତା କିଶୋରୀ କୁଳବଧୂ ସେ, ତେଣୁ ଓଢ଼ଣାକୁ ଅପସାରିତ କରିବାର ଉପାୟ ନାହିଁ । ସ୍ୱାମୀଙ୍କୁ ଟିକିଏ ଦେଖିବାର ବ୍ୟାକୁଳତା ଛାତି ଭିତରେ ସୃଷ୍ଟି କରିଥିଲା ଏକ ଅସହ୍ୟ ଯନ୍ତ୍ରଣା, ଏକ ବିଭୀଷିକାମୟ ଶ୍ୱାସରୋଧକାରୀ ନିଷ୍କ୍ରିୟତା...ଓଃ, କି ଭୟଙ୍କର ଥିଲା ସେ ମୁହୂର୍ତ୍ତ ଗୁଡ଼ାକ !

ଆଉ ସେହି ଦାରୁଣ ମୁହୂର୍ତ୍ତରେ ମଧ ବିଶ୍ୱନାଥଙ୍କ ସାବତ ଭାଇ ଚନ୍ଦ୍ରଶେଖର ଭୁଲିଯାଇ ନ ଥିଲେ ନିଜର କୂଟନୀତିରେ ଅଭିଜ୍ଞ ପ୍ରକୃତିକୁ । ଚିକିତ୍ସକମାନେ ଯେତେବେଳେ ନିରାଶାର ବାଣୀ ଶୁଣାଇଲେ, ମୃତ୍ୟୁ-ପଥ-ଯାତ୍ରୀ କିଶୋର ବିଶ୍ୱନାଥଙ୍କ ଚକ୍ଷୁ ଦୁଇଟିରୁ ଝରି ଆସିଥିଲା ଦୁଇଧାର ଲୁହ, ସେହି ଲୁହ ଧାରକୁ ଦେଖି ବ୍ୟତିବ୍ୟସ୍ତ ହୋଇଯାଇ ଚନ୍ଦ୍ରଶେଖର ନିଜର ଶୋଇଥିବା ଶିଶୁପୁତ୍ରଟିକୁ ଆଣି ଶୁଆଇ ଦେଇଥିଲେ ସାନ ଭାଇର ଛାତି ଉପରେ, କହିଥିଲେ–ବିଶୁ, ତୁ ଦୁଃଖ କରନା, ଆଜିଠାରୁ ଏ ତୋର ପୁଅ, ବୋହୂଙ୍କ ସବୁ ଭାର ବିଜୟ ନେବ !

ସମଗ୍ର ବିଷୟ-ସମ୍ପତ୍ତିକୁ ଏକାଠି କରି ରଖିବାର ଏହି ଏକ ଅଦ୍ଭୁତ କୌଶଳ ପ୍ରୟୋଗ କରିଥିଲେ ବଡ଼ଭାଇ ଚନ୍ଦ୍ରଶେଖର ବିଶ୍ୱନାଥଙ୍କ ଅନ୍ତିମ ମୁହୂର୍ତ୍ତରେ ! ସେ ଦୃଶ୍ୟର ସାକ୍ଷୀ ହୋଇ ରହିଲେ ସମସ୍ତେ । ବିଶ୍ୱନାଥଙ୍କ ଆଖିରୁ ପୁଣି ଦୁଇଧାର ଲୁହ ଝରି ଆସିଲା ତାଙ୍କର ମୃତ୍ୟୁ-ବିବର୍ଣ୍ଣ ଗାଲ ଉପର ଦେଇ, ବଡ଼ ଭାଇ ଚନ୍ଦ୍ରଶେଖରଙ୍କ କଥାଗୁଡ଼ିକ ତାଙ୍କ କାନ ଭିତରେ ପଶିଥିଲା କି ନାହିଁ କେଜାଣି, ସୁପ୍ତ ଶିଶୁଟି ଆଡ଼କୁ ଚାହିଁ ନଥିଲେ ସେ । ଶେଷପର୍ଯ୍ୟନ୍ତ ତାଙ୍କର ପ୍ରାଣହୀନ ଚକ୍ଷୁ ଦୁଇଟିର ଦୃଷ୍ଟି ନିବଦ୍ଧ ହୋଇ ରହିଯାଇଥିଲା ପରିଚାରିକାର ଦେହକୁ ଭରାଦେଇ ସଂଜ୍ଞାହୀନା ହୋଇ ଯାଇଥିବା ଅବଗୁଣ୍ଠିତା ପ୍ରିୟତମାର ବସ୍ତ୍ରାବୃତ ମୁହଁଟି ଉପରେ !

ଆହା ! ଶେଷ ସମୟରେ ବିଶ୍ୱନାଥଙ୍କ ତୃଷିତ ଚକ୍ଷୁ ଦୁଇଟି ଖୋଜିଥିଲା କିଶୋରୀ ପତ୍ନୀ ନୀଳମଣିଙ୍କ ଚକ୍ଷୁ ଦୁଇଟିକୁ । ଯେତେବେଳେ ମୁହଁ ଖୋଲି କଥା କହିବାର ଶକ୍ତି ତାଙ୍କର ଲୁପ୍ତ ହୋଇଯାଇଥିଲା, ସେ ହୁଏତ ବିକଳଭାବରେ ଚାହିଁଥିଲେ ପ୍ରିୟତମାର ଆଖିରେ ଆଖି ରଖି ଚାହାଁଣିର ସେହି ଭାଷାରେ ଚିରଦିନ ପାଇଁ ବିଦାୟ ମାଗି ନେବାକୁ । ହୁଏତ ଏତେ ଅଳ୍ପ ବୟସରେ ଏହିପରି ଏକାକୀ ନିଃସଙ୍ଗ କରି ଛାଡ଼ି ଚାଲିଯାଉଥିବା ପାଇଁ ଆର୍ତ୍ତ ଭାବରେ କ୍ଷମା ଭିକ୍ଷା କରିବାକୁ

ଚାହିଁଥିଲେ ସେ । ନଚେତ୍ ଏକ ଅଜଣା ଜଗତ ଉଦ୍ଦେଶ୍ୟରେ ଯାଉଥିବା ଅପରିଚିତ ଦୀର୍ଘ ପଥଯାତ୍ରା ପାଇଁ ଶେଷ ପାଥେୟ କରି ପ୍ରାଣାଧିକା ପତ୍ନୀର ସୁନ୍ଦର ମୁହଁଟିର ଛବିକୁ ଜନ୍ମଜନ୍ମାନ୍ତରର ସ୍ମୃତି ଟିକକ ପରି ସାଙ୍ଗରେ ନେଇଯିବାକୁ ଚାହିଁଥିଲେ ।

ଠିକ୍ କ'ଣ ଚାହିଁଥିଲେ କିଏ କହିପାରିବ ? କିନ୍ତୁ ଏକ ଅଧୀର ବ୍ୟଥାକୁଳ ଆତୁରତା ରହି ଯାଇଥିଲା ସେହି ଶେଷ ଚାହାଁଣିରେ । ଅଭିଜ୍ଞ ବୃଦ୍ଧ ଗୁମାସ୍ତା ଜଣକ ସେହି ନିର୍ଜୀବ ଖୋଲା ଆଖିପତା ଦୁଇଟିକୁ ମୁଦି ଦେଇଥିଲେ ପରମୁହୂର୍ତ୍ତରେ !

ମୂର୍ଚ୍ଛିତ ନୀଳମଣି ଏସବୁ ଦେଖି ନଥିଲେ କିଛି—ଏସବୁ ତାଙ୍କର ଶୁଣିବା କଥା ।

ମହାସମାରୋହରେ ବିଶ୍ୱନାଥଙ୍କ ଶୁଦ୍ଧିକ୍ରିୟା ସମ୍ପନ୍ନ କରାଯାଇଥିଲା । ସୁନ୍ଦର ସ୍ୱାସ୍ଥ୍ୟ ଓ ଶରୀର ଗଠନର ସୌନ୍ଦର୍ଯ୍ୟରେ ଢଳଢଳ କରୁଥିବା ବଳିଷ୍ଠ ରୂପବାନ, ପ୍ରକୃତରେ ସ୍ୱର୍ଗଦୂତପ୍ରତିମ ଯୁବକ ବିଶ୍ୱନାଥଙ୍କର ଜୀବନର ପ୍ରାରମ୍ଭରେ ମୃତ୍ୟୁ ଘଟିଗଲା କିପରି ?

ଘଟଣାଟି ଏହିପରି ।

କଚେରି କାମ ତଦାରଖ କରିବାପାଇଁ ସେଦିନ ସଦରକୁ ଯାଇଥିଲେ ବିଶ୍ୱନାଥ । ସେଠାରେ ତାଙ୍କର ରାତିରେ ରହିବା କଥା ଥିଲା କାରଣ ସେତେବେଳକୁ ଆହୁରି ରେଳଗାଡ଼ିର ପ୍ରଚଳନ ହୋଇ ନଥାଏ । ଘୋଡ଼ା ପିଠିରେ କିମ୍ବା ଶିବିକାରେ କିମ୍ବା ନୌକା ବା ପାଦରେ ଚାଲିକରି ଯିବା ଆସିବା କରୁଥାନ୍ତି ଲୋକମାନେ । ପଥର ବ୍ୟବଧାନ ଅତିବେଶୀ ଦୂର ନହେଲେ ମଧ ନଦୀଟିକୁ ଅତିକ୍ରମ କରି ଜନାକୀର୍ଣ୍ଣ ପଥ ମଧ ଦେଇ ଯିବା ଆସିବା କରିବାକୁ ପଡ଼େ । ସେହି ପଥ ଧାରରେ ଠିକ୍ ନଦୀର କୂଳକୁ ଲାଗି ରହିଛି ଶ୍ମଶାନ ଭୂମି । ଖରାଦିନେ ଅଶ୍ୱ ହିଁ ବାହକ ହୁଏ; କିନ୍ତୁ ନଦୀରେ ପାଣି ରହିଥିଲାବେଳେ ଡଙ୍ଗା ଦରକାର ପଡ଼େ ।

ଯଦି ନିୟତିର ନିର୍ଦ୍ଦେଶନାମାକୁ ଅପରିହାର୍ଯ୍ୟ ବୋଲି ଧରାଯାଏ, ତେବେ ସେହି ଅନୁସାରେ ଯୁବକ ବିଶ୍ୱନାଥ ହଠାତ୍ ଘରକୁ ଫେରିଯିବାକୁ ଠିକ୍ କରିଥିଲେ । ହୁଏତ ଚଞ୍ଚଳ କାମ ସରିଯିବାରୁ ଅଧୀର ଆଗ୍ରହରେ ପ୍ରତୀକ୍ଷା କରି ରହିଥିବା ନବ ବଧୂଟିର ସୁନ୍ଦର ମୁହଁ ମନେ ପଡ଼ିଥିବାରୁ ସେହିଦିନ ହିଁ ସେ ଫେରିଥିଲେ । ନଦୀର ଏପାରିକୁ ଚାଲିଆସିଲା ପରେ ମନେ ପଡ଼ିଲା—ପ୍ରୟୋଜନୀୟ କାଗଜପତ୍ରର ବସ୍ତାନିଟିକୁ ଛାଡ଼ି ଆସିଛନ୍ତି କଟକର ବସା ଘରେ । ସାଙ୍ଗରେ ଆସିଥିବା ବିଶ୍ୱସ୍ତ ଲୋକଟିକୁ ପୁଣି ଡଙ୍ଗାରେ ଫେରି ଜିନିଷ ଆଣିବାର ଆଦେଶ ଦେଇ ଏକାକୀ ନିଜେ ସେହି ନଦୀ କୂଳବର୍ତ୍ତୀ ବନ ପଥରେ ପାଦ ରଖିଲେ ।

ସେତେବେଳେ ସନ୍ଧ୍ୟା ସମାଗତ ହୋଇଥିଲେ ମଧ ବେଶ୍ ଆଲୋକ ରହିଥାଏ । ବିଶ୍ୱନାଥ ମୂଳରୁ କବି ପ୍ରକୃତିର ମଣିଷ । ବନଭୂମିର ସନ୍ଧ୍ୟାକାଳୀନ ଅପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇଯାଇ ହୁଏତ ଆତ୍ମବିସ୍ମୃତ ହୋଇ ଯାଇଥିଲେ, ନଚେତ୍ ପ୍ରିୟତମା ପତ୍ନୀ ନୀଳମଣିର କଥା

ଭାବି ଅନ୍ୟମନସ୍କ ହୋଇ ଯାଇଥିଲେ, ତେଣୁ ନିଜର ଅଜ୍ଞାତରେ ପ୍ରକୃତ ପଥକୁ ଛାଡ଼ି ଦେଇ ଅପଥରେ ଚାଲି ଯାଇଥିଲେ । ସ୍ୱଭାବତଃ ଯୁବକ ବିଶ୍ୱନାଥ ନିର୍ଭୀକ ଓ ବେପରୁଆ । ତେଣୁ ପ୍ରଥମେ କଥାଟା ଏତେ ବିପଦଜନକ ବୋଲି ମନେ ହୋଇ ନ ଥିଲା ତାଙ୍କର—କ୍ରମଶଃ ପାଦଚଲା ବନ ପଥ ଜଟିଳରୁ ଜଟିଳତର ହେବାକୁ ଲାଗିଲା, ଜଙ୍ଗଲ ଯେପରି ଘନୀଭୂତ ହୋଇ ଆସିଲା । ବିଶ୍ୱନାଥ ଅବାକ୍ ହୋଇଗଲେ, ହଠାତ୍ ଏକ ସମୟରେ ସେ ଯାଇ ଉପସ୍ଥିତ ହୋଇଗଲେ ଶ୍ମଶାନ ଭୂମିର ମଧ୍ୟ ଭାଗରେ ! ସେତେବେଳକୁ ଅନ୍ଧାର ବେଶ୍ ଘନ ହୋଇ ଆସିଲାଣି ।

ଶ୍ମଶାନ ଭୂମି—ଯେଉଁଠାର ନିର୍ଜୀବ ପଦାର୍ଥଗୁଡ଼ିକ ମଧ୍ୟ ସବୁବେଳେ କଥାବାର୍ତ୍ତା କରିଲା ପରି ଜଣାଯାଉଥାନ୍ତି ! ମନୁଷ୍ୟ ଶରୀରର ଅବଶିଷ୍ଟାଂଶ ଅସ୍ଥିଗୁଡ଼ିକ, ମୁଣ୍ଡର ଖପୁରୀଗୁଡ଼ିକ ଏଣେ ତେଣେ ପଡ଼ିଥାଏ । ସେଗୁଡ଼ିକର ରନ୍ଧ୍ର ମଧ୍ୟଦେଇ ଗତି କରୁ କରୁ ପବନ ସୁଷୁରି ବଜାଏ, ଦୀର୍ଘ ନିଶ୍ୱାସ ପକାଏ, ଫିସ୍ ଫିସ୍ କରି କଥା ମଧ୍ୟ କହେ—ଅନ୍ତତଃ କଥା କହିଲା ପରି ଜଣାଯାଏ !

ଶାଗୁଣା ଛୁଆଗୁଡ଼ିକ କୁଆଡ଼େ ଶିଶୁ ପରି କୁଛାନ୍ତି, କାନ୍ଦନ୍ତି ! ଯେ ଏ ସବୁ କଥା ନ ଜାଣିଛି ସେ ଯେତେ ବଡ଼ ନିର୍ଭୀକ ବ୍ୟକ୍ତି ହେଲେ ମଧ୍ୟ ସେଭଳି ପରିସ୍ଥିତିରେ ବିଭ୍ରାନ୍ତ ହୋଇଯିବା କଥା । ବିଶ୍ୱନାଥ ସେହିକ୍ଷଣି ମାତ୍ର କୈଶୋରରୁ ତାରୁଣ୍ୟରେ ପାଦ ଦେଇଥାନ୍ତି ।

ଯଦି କୁସଂସ୍କାରକୁ ବିଶ୍ୱାସ କରାଯାଏ ତେବେ କହିବାକୁ ପଡ଼ିବ ପ୍ରେତାତ୍ମାମାନଙ୍କ ଦ୍ୱାରା ବିରଚିତ ପଥର ସେହି ଗୋଲକଧନ୍ଦାକୁ ଅତିକ୍ରମ କରି ଆସିବାକୁ ଏ ସଂସାରରେ କାହାର ହେଲେ ସାଧ୍ୟ ନାହିଁ । ବିଶ୍ୱନାଥ ଦେଖିଲେ—ବାଟ ବଦଳାଇ ଯେତେ ଥର ସେ ଯେଉଁ ଆଡ଼କୁ ଯାଉଛନ୍ତି, ପୁଣି ବୁଲି ବୁଲି ଫେରି ଆସୁଛନ୍ତି ସେହି ଏକା ଶିମିଳି ଗଛର ମୂଳକୁ । ନିଜକୁ ବିଶ୍ୱନାଥ ଦମ୍ଭ ଦେବାକୁ ଚେଷ୍ଟା କରୁଥାନ୍ତି; କିନ୍ତୁ କ୍ରମଶଃ ବାଧ୍ୟ ହୋଇ ବିଭ୍ରାନ୍ତ ଓ ଭୟାକୁଳ ହେବାକୁ ପଡ଼ିଲା ତାଙ୍କୁ, ହୃଦ୍‌ଯନ୍ତ୍ରର ସ୍ପନ୍ଦନ କ୍ରମଶଃ ବଢ଼ି ଯିବାକୁ ଲାଗିଲା, ଠିଆହୋଇ ରହିବା ପାଇଁ ସୁଦ୍ଧା ଆଣ୍ଠୁ ଦୁଇଟାରେ ଶକ୍ତି ରହିଲା ନାହିଁ, ପାଦରେ ଚାଲି ଚାଲି ଯିବା ତ ଦୂରର କଥା । ତାଙ୍କର ନିସ୍ତେଜ ହୋଇ ଆସୁଥିବା ମସ୍ତକ ଭିତରେ ପ୍ରତିଧ୍ୱନିତ ହେଉଥିଲା ଅଜସ୍ର ପ୍ରେତାତ୍ମାଙ୍କ ଅସୁମାରୀ ଆଳାପ—ପ୍ରଳାପ !!

X X X କାଗଜପତ୍ର ନେଇ ସାଙ୍ଗର ଲୋକଟି ସଦରରୁ ଫେରି ଆସିଲା ଆର ଦିନ ସକାଳେ । ହଠାତ୍ ସାନ ସାଆନ୍ତ ବିଶ୍ୱନାଥଙ୍କ ଅନୁପସ୍ଥିତି କଥା ଜଣା ପଡ଼ିବାରୁ ନାଏବ, ଗୁମାସ୍ତା, ଲୋକବାକ ଖୋଜି ଖୋଜି ଅବଶେଷରେ ସେହି ଶ୍ମଶାନ ଭୂମିରେ ବିଶ୍ୱନାଥଙ୍କ ସଂଜ୍ଞାହୀନ ଦେହଟିକୁ ପାଇଥିଲେ । ଭୟଙ୍କର ଉତ୍ତାପରେ ସର୍ବାଙ୍ଗ ଉତ୍ତପ୍ତ । ମୂର୍ଚ୍ଛିତ ଜ୍ୱର-ଅଚେତନ ଦେହଟିକୁ ଯତ୍ନ ସହକାରେ ଘରକୁ ଅଣାଗଲା ଏବଂ ବୈଦ୍ୟମାନଙ୍କୁ ଖବର ଦିଆଗଲା । ଚିକିତ୍ସା ଫଳରେ ବିଶ୍ୱନାଥଙ୍କ ଚେତନା ଫେରି ଆସିଥିଲା, ସେ ଆଖି ଖୋଲି ଚାହିଁଥିଲେ; କିନ୍ତୁ ବାକ୍ୟ ଫେରି ଆସିଲା ନାହିଁ । ଜ୍ୱର ମସ୍ତିଷ୍କକୁ ଆକ୍ରାନ୍ତ କରି ଦେଇଥିବାରୁ ସେ ମୃତ୍ୟୁ ବରଣ କଲେ ।

ନୀଳମଣିଙ୍କ ଜୀବନର ସୂର୍ଯ୍ୟୋଦୟ ହେଉ ନ ହେଉଣୁ କାଳ ରାତ୍ରିର ତମସା ଘନାଇ ଆସିଥିଲା ଏହିପରି । ତାଙ୍କର ଆଉଟା ସୁନାର ରଙ୍ଗ ପରି ଗୋରା ସୁନ୍ଦର କପାଳ ମଝିର ସିନ୍ଦୂର ଟୋପାଟା—ହଁ, ଠିକ୍ ସକାଳେ ସେହିକ୍ଷଣି ଉଦୟ ହୋଇଥିବା ଲାଲ୍ ରଙ୍ଗର ସୂର୍ଯ୍ୟପରି ଉଜ୍ଜ୍ୱଳ ରକ୍ତ ବର୍ଣ୍ଣର ସିନ୍ଦୂର ଟୋପାଟା ପୋଛି ହୋଇଗଲା ସବୁଦିନ ପାଇଁ । ନୀଳମଣିଙ୍କ ଭାଗ୍ୟସୂର୍ଯ୍ୟ ଅସ୍ତ ହେଲାବେଳକୁ ତାଙ୍କର ବୟସ ମାତ୍ର ଷୋହଳ ବର୍ଷ ।

ଷୋହଳ ବର୍ଷ ! ଷୋହଳ ବର୍ଷରେ କେତେ ବର୍ଷ ମିଶାଇଲେ ନବେ ବର୍ଷ ହେବ ? ତିନି କୋଡ଼ି ଚଉଦ ବର୍ଷ ! ହା ଭଗବାନ ! ଏତେ ବର୍ଷ ସେ ବଞ୍ଚିଲେ କେମିତି ? ସ୍ୱାମୀଙ୍କ ମୃତ୍ୟୁପରେ ସେ ଭାବିଥିଲେ ଆଉ ଦିନଟିଏ ସୁଦ୍ଧା ସେ ବଞ୍ଚି ରହି ପାରିବେ ନାହିଁ । ଯେ କୌଣସି ପ୍ରକାରେ ମରିବେ । ଶରୀରର ବିନାଶ ସହିତ ଛାୟାର ମଧ ବିନାଶ ହୁଏ । ନୀଳମଣି ଯେ ତାଙ୍କ ସ୍ୱାମୀଙ୍କର ଛାୟା, ତାଙ୍କୁ ଛାଡ଼ି ସେ ଆଉ ମୁହୂର୍ତ୍ତେ ବଞ୍ଚି ପାରିବେନି; କିନ୍ତୁ ଅଚେତନ ଥାଇ ମଧ ଦୁଇଦିନ ବେଶ୍ ବଞ୍ଚି ରହି ପାରିଲେ । ଜ୍ଞାନ ସିନା ହଜିଗଲା, ହେଲେ ପ୍ରାଣଟା ଏତେ ସହଜରେ ଯାଇ ପାରିଲା ନାହିଁ । ସଚେତ ହେଲା ପରେ ବିଛଣାରୁ ଉଠିବାର ସାଧ ନଥିଲା । ଆଶ୍ଚର୍ଯ୍ୟ ! ଆଖିରେ ଟୋପାଏ ଲୁହ ମଧ ନଥିଲା । ଖାଲି ନିସ୍ତବ୍ଧ ଭାବରେ ଚାହିଁ ରହିବା ଛଡ଼ା ଆଉ ଯେପରି କୌଣସି ଲକ୍ଷଣ ନ ଥିଲା ଜୀବନର ।

ବୋହୂ ପାଗଳ ହୋଇଯିବ...ପକ୍ଷାଘାତ ରୋଗୀ ହୋଇଯିବ...ତାଙ୍କୁ ଭୂତ ଭର କରିଛି, ଯେଉଁ ଭୂତ ବିଶ୍ୱନାଥଙ୍କ ସଙ୍ଗେ ଶ୍ମଶାନରୁ ଆସିଥିଲା, ସେହି ଭୂତ ଭର କରିଛି...ପ୍ରଭୃତି ଅନେକ କଥା ସମସ୍ତେ କହିବାକୁ ଲାଗିଲେ ।

ନୀଳମଣିଙ୍କ ପିତାମାତା ଆସିଲେ, ସହରରୁ ଗୋରା ଡାକ୍ତରଙ୍କୁ ଆଣିଥିଲେ ସାଙ୍ଗରେ, ଅବଶ୍ୟ ନୀଳମଣିଙ୍କ ପାଇଁ ନୁହେଁ, ବିଶ୍ୱନାଥଙ୍କ ଅସୁସ୍ଥତାର ଖବର ପାଇ ଅସ୍ଥିର ଓ ବ୍ୟାକୁଳ ହୋଇ ସହରର ସାହେବ ବିଶେଷଜ୍ଞଙ୍କୁ ନେଇ ଆସିଥିଲେ ସେମାନେ । ବିଶ୍ୱନାଥ ତ ନଥିଲେ—ଚିକିତ୍ସିତ ହେଲେ ନୀଳମଣି !

ନିଜର ଦେହ କଥା ଭାବିଲେ ସବୁବେଳେ ହସ ଲାଗେ ନୀଳମଣିଙ୍କୁ । ହୃଦ୍‌ଯନ୍ତଟା ତାଙ୍କର କୁଆଡ଼େ ଅତି ବଳିଷ୍ଠ ଆଉ ଅସରନ୍ତି ତାଙ୍କର ପ୍ରାଣ ଶକ୍ତି ! କୌଣସି ପ୍ରକାର ରୋଗରେ ପଡ଼ି ମରିବାର ଉପାୟ ନାହିଁ । ସେ କଥା ଦେଖି ଗୋରା ଡାକ୍ତର ଖୁସି ହୋଇ ଯାଇଥିଲେ ସେଦିନ । ଆଗ୍ରହରେ ଲାଗି ପଡ଼ିଥିଲେ ତାଙ୍କୁ ଚିକିତ୍ସା କରି ସୁସ୍ଥ କରିବାକୁ ।

ନୀଳମଣି ଆରୋଗ୍ୟ ହୋଇ ଉଠି ବସିଲେ—ଅବଶ୍ୟ କେତେ ମାସ ସମୟ ଲାଗିଥିଲା । ତାପରେ ପିତାମାତା ଚାହିଁଲେ—ସଦ୍ୟ ବିଧବା ଅଭାଗିନୀ ଝିଅକୁ ନିଜର ସାଙ୍ଗରେ ନେଇ ଫେରିଯିବାକୁ । କିନ୍ତୁ ଚନ୍ଦ୍ରଶେଖର ରାଜି ହେଲେ ନାହିଁ । —ସେ କହିଲେ, ଶିଶୁ ପୋଷ୍ୟପୁତ୍ରଟିକୁ ମଣିଷ କରିବ କିଏ ? ପୋଷ୍ୟପୁତ୍ର !!

ବିଶ୍ୱନାଥଙ୍କ ମୃତ୍ୟୁପରେ ଏ ସଂସାରରେ କ'ଣ ଆଉ କିଛି ଥିଲା ଯାହା ତାଙ୍କୁ ମୂଲ୍ୟବାନ ମନେ ହୋଇଥିଲା ? କିଛି ନ ଥିଲା । ସ୍ନେହ, ମାୟା, ମମତା, ଲୋଭ ପ୍ରଭୃତି ସମସ୍ତପ୍ରକାର ପାର୍ଥିବ ଅନୁଭୂତି ଆଉ ରହି ନଥିଲା ତ, ବରଂ ନିଜକୁ ମନେ ହୋଇଥିଲା ଗୋଟାଏ କିମ୍ଭୂତକିମାକାର ଜଡ଼ ପଦାର୍ଥ ବୋଲି ।

ଲୁଗାକାନିରେ ଲୁହ ପୋଛିଲେ ବୋଉ ତାଙ୍କର—ଦେହର ଶୁଭ୍ରତା ସହିତ ପରିଚ୍ଛଦର ଶୁଭ୍ରତା ମିଶି ଶବଟିଏ ଭଳି ମନେ ହେଉଥାନ୍ତି ନୀଳମଣି, କନ୍ୟାର ସେ ଅସହ୍ୟ ଶୁଭ୍ରତାକୁ ଦେଖି ନ ପାରି ପିତାମାତା ମୁହଁ ଫେରାଇ ନେଉଥିଲେ ଯନ୍ତ୍ରଣାରେ ।

ବିଦାୟ ହୋଇଗଲେ ସେମାନେ ।

ହୁଏତ ନୀଳମଣିଙ୍କୁ ତାଙ୍କର ପିତୃଗୃହକୁ ନ ଛାଡ଼ିବାର ମୂଳରେ ଥିଲା କାଳେ କାହାର କୁଶିକ୍ଷାରେ ପଡ଼ି ଅନ୍ୟ କାହାକୁ ନୀଳମଣି ପୋଷ୍ୟପୁତ୍ର କରିନେବେ ବୋଲି ଚନ୍ଦ୍ରଶେଖରଙ୍କର ସନ୍ଦେହ ।

ତାହେଲେ ସମ୍ପତ୍ତିର ଅର୍ଦ୍ଧାଂଶ ଚାଲିଯିବ ଅନ୍ୟର ହାତକୁ !

ତା'ପରେ—ଷୋହଳ ବର୍ଷ ବୟସ୍କା ନୀଳମଣି ରହିଲେ ଠିକ୍ ଜଣେ ନଜରବନ୍ଦୀ ପରି । ସବୁବେଳେ କେହି ନା କେହି ପରିଚାରିକା ରହିଥାନ୍ତି ପାଖରେ । ରାତିରେ ଶୋଇଲାବେଳେ ମଧ ଜଗି ଶୁଅନ୍ତି । ଆଉ ସେଇଥିପାଇଁ ଆତ୍ମହତ୍ୟା କରିବାକୁ ଇଚ୍ଛା କରିଥିଲେ ମଧ ସୁଯୋଗ ପାଇନଥିଲେ ନୀଳମଣି ।

ତେଣୁ ନୀଳମଣି ବଞ୍ଚି ରହିଗଲେ ଠିକ୍ ଗୋଟାଏ ଖରାବର୍ଷାଖିଆ ପୋଖତ ମଞ୍ଜି କାଠର ଗଣ୍ଡିଟିଏ ପରି । ନୀରୋଗ ହୋଇ ବଞ୍ଚିଲେ ବହୁତ ବର୍ଷ ।

ତାପରେ—'ଓଃ, ଓଃ, ଓଃ' ଅସ୍ଫୁଟ ଭାବରେ ଆର୍ତ୍ତନାଦ କରି ନବେ ବର୍ଷର ବୁଢ଼ୀ ନୀଳମଣି କଡ଼ ଲେଉଟାଇଲେ, ଓଃ କି କଷ୍ଟ ! ଗୋଟା ଦେହଟା ଦରଜ, ନିଜେ ନିଜେ ଆଉ କଡ଼ ଲେଉଟାଇବାଟା ସହଜ ହେଉ ନାହିଁ, ସାହାଯ୍ୟ ଦରକାର ପଡୁଛି ।

ସ୍ମିତା ଯାଇଛି କଲେଜକୁ । ସୁଜାତା ଯାଇଛି ଡାକ୍ତରଖାନାକୁ !

ପାଖରେ ବସି ଯଦି କିଏ ଆଉଁସି ଦିଅନ୍ତା ପରମ ସ୍ନେହରେ ତେବେ ନିଦ ଲାଗି ଯାଆନ୍ତା ।

ନିଦ ! ସେ କଥାଟା ତାଙ୍କ ସାରା ଜୀବନର ଶତ୍ରୁ ହୋଇ ରହିଗଲା । ଏତେ ସହଜରେ ମନକୁ ମନ ସେ କେବେ ଆସିବନି । ଅଥଚ ସେହି ପ୍ରଥମ ଜୀବନରେ ଯେତେବେଳେ ତା'ର ଆସିବାର କୌଣସି ଆବଶ୍ୟକତା ନଥିଲା, ସେତେବେଳେ ସେ ଆସି ବ୍ୟସ୍ତ କରି ପକାଉଥିଲା ତାଙ୍କୁ ।

ଆଉ ଥରେ ସ୍ମୃତିଗୁଡ଼ିକ ଆନନ୍ଦ-ଉଦ୍‌ବେଳିତ ଶିଶୁଦଳଟିଏ ପରି କଳରବ କରି ଯେମିତି ଏକା ସଙ୍ଗେ ପଶି ଆସିବାକୁ ଚାହିଁଲେ ମନର ନିଭୃତ କୋଠରିଟିରେ । ସ୍ୱାମୀଙ୍କର କଥାଗୁଡ଼ିକ ମନେ ପଡ଼ିଲା—ମଣି ! ଯାରି ଭିତରେ ତମେ ଶୋଇଗଲଣି ନା ? ସତରେ ତମେ...

କଥାଗୁଡ଼ିକର ଧ୍ୱନିରେ ସତେ ଯେମିତି ନୀଳମଣି ନିଜର ଆଖି ଦୁଇଟିକୁ ଖୋଲି ପକାଇଲେ, ଦେଖିଲେ ବିରାଟ ଶୂନ୍ୟ କକ୍ଷଟିକୁ । ତା'ର ପରିସର ଯେପରି କ୍ରମଶଃ ବୃଦ୍ଧି ପାଇଗଲାଭଳି ମନେ ହେଉଛି, ଚାରିଆଡ଼େ ଆଖି ବୁଲାଇ ଆଣିଲେ । ହଁ, ହେଇଟି ସାମନାର କାନ୍ଥରେ ବିଶ୍ୱନାଥଙ୍କର ସେହି ବଡ଼ ତୈଳ ଚିତ୍ରଟା । ତାରି ପାଖରେ ଛୋଟ ଫଟୋଟା, ଯାହାକୁ ଦେଖି ଶିଳ୍ପୀ ତୈଳଚିତ୍ରଟିକୁ ଆଙ୍କିଥିଲେ । ସତେ କି ଜୀବନ୍ତ ମଣିଷଟିର ଅବିକଳ ନକଲଟିଏ । ନୀଳମଣି ଅସ୍ପଷ୍ଟ ଭାବରେ କହିଲେ—କେଡ଼େ ସୁନ୍ଦର ଥିଲ ତମେ, ଠିକ୍ ରାଜପୁତ୍ର ଭଳି ଚେହେରା !

ଆଉ ଟିକିଏ ଦୂରକୁ ରହିଛି ବିଜୟର ଛବି !

ବିଜୟ ତାଙ୍କର ପୋଷ୍ୟପୁତ୍ର । ଚନ୍ଦ୍ରଶେଖର ଓ ମାହେଶ୍ୱରୀଙ୍କ ନିଜର ସନ୍ତାନ ଥିଲା ସେ । ଏହାକୁ କହନ୍ତି ଭାଗ୍ୟର ଉପହାସ ! ସମସ୍ତ ସମ୍ପତ୍ତିର ଅଧିକାରୀ ହୋଇ ରହିବାକୁ ନିଜର ଶିଶୁ ସନ୍ତାନକୁ ବିଶ୍ୱନାଥଙ୍କୁ ଦେଇଥିଲେ ଚନ୍ଦ୍ରଶେଖର; କିନ୍ତୁ ନିଜେ ନିଃସନ୍ତାନ ଭାବରେ ହିଁ ମୃତ୍ୟୁବରଣ କଲେ । ସ୍ୱର୍ଗରେ ତାଙ୍କର କି ଗତି ହୋଇଥିବ, କିଏ କହି ପାରିବ ?

ସତରେ କ'ଣ ସ୍ୱର୍ଗ ବୋଲି କିଛି ଅଛି, ନା ଏ ପୃଥିବୀଟା ହିଁ ସ୍ୱର୍ଗ ଆଉ ନରକ ଉଭୟ ? ଏହାରି ସୁଖଦୁଃଖ ହିଁ ସ୍ୱର୍ଗ ସୁଖ ଓ ନରକ ଯନ୍ତ୍ରଣା ? ମୃତ୍ୟୁପରେ ଅଛି କ'ଣ ? ଅଶରୀରୀ ପ୍ରେତାତ୍ମା କାହିଁ ? ସେହି ପ୍ରଥମ କେତେ ବର୍ଷ ...ବିଶ୍ୱନାଥ ଚାଲିଯିବାପରେ କି ବିକଳ ହୋଇ ନୀଳମଣି ବିଶ୍ୱାସ ନ କରିଛନ୍ତି ସେ କୁସଂସ୍କାରଗୁଡ଼ାକୁ ? ସାରା ରାତିର ବିନିଦ୍ରତା ଭିତରେ ଉଦ୍‌ଗ୍ରୀବ ହୋଇ କାନ ପାତିଛନ୍ତି ଅଶରୀରୀ ସ୍ୱାମୀଙ୍କର ପଦଧ୍ୱନି ଶୁଣିବାକୁ ! ବିଶ୍ୱନାଥ ନିଶ୍ଚୟ ଆସିବେ, ସାକ୍ଷାତ ନ ପାଇଲେ ମଧ୍ୟ ନୀଳମଣି କଣ୍ଠସ୍ୱର ଶୁଣିବେ । ବିଶ୍ୱନାଥ କହିବେ, ମଣି, ମୁଁ ତମକୁ ଛାଡ଼ି କୁଆଡ଼େ ଯାଇନି, ହେଇଟି ଦେଖ ମୁଁ ତମ ପାଖେ ପାଖେ ରହିଛି, ହେଇଟି ମୁଁ ତମ କପାଳରେ ହାତ ବୁଲାଇ ଦେଉଛି, ଶୋଇଲ ତମେ, ଟିକିଏ ଶୋଇପଡ଼, ନ ହେଲେ ଯେ ତମ ଦେହ ଖରାପ ହୋଇଯିବ !

ନିଜର ଅଜ୍ଞାତରେ ହସି କହି ଉଠିଛନ୍ତି ନୀଳମଣି—ମୋର ପୁଣି ଦେହ ଖରାପ ହେବ ? ତମେ ଜାଣି ନାହଁ ? ଡାକ୍ତର ପରା କହିଛନ୍ତି ମୋ ହୃଦ୍‌ଯନ୍ତ୍ରଟା କୁଆଡ଼େ ଭାରି ଟାଣ, ମୁଁ ବହୁତ, ଆହୁରି ବହୁତ ଦିନ ବଞ୍ଚିବି, କେବେ ଆଉ ମରିବିନି ।

ରୋଷେଇ ଦାୟିତ୍ୱରେ ଥିବା ବ୍ରାହ୍ମଣୀ ନାନୀ ଓ ଚାକରାଣୀ ଦୁହେଁଯାକ ଉଠି ବସନ୍ତି, ପଚାରନ୍ତି—ବୋହୂ ମା, ସାନ ସାଆନ୍ତାଣୀ, କ'ଣ କହିଲ କି ? ନିଆଁଲଗା ଆଖିକି ମୋର ନିଦ ହେଇ ଯାଇଥିଲା... ।

ନୀଳମଣି ଚମକି ପଡ଼ନ୍ତି । ନା, ଅଶରୀରୀ ସ୍ୱାମୀ ନାହାନ୍ତି । ତାଙ୍କର କଥା ନାହିଁ କି ସ୍ପର୍ଶ ନାହିଁ, ଟିକିଏ ଛାଇ ବୋଲି ମଧ ନାହିଁ । କିଛି ନାହିଁ ।

—ସାଆନ୍ତାଣୀ, କ'ଣ କହୁଥିଲ ଯେ ? ପାଣି ଆଣିଦେବି ?

'ବିଷ ! ଟିକିଏ ବିଷ ଯଦି ଆଣି ପାରନ୍ତ ।' ନୀଳମଣିଙ୍କର ଇଚ୍ଛା ହେଉଥାଏ କହିବେ—ଦୟାକରି ମତେ ଟିକିଏ ବିଷ ଆଣିଦିଅ; ମୁଁ ରକ୍ଷା ପାଇଯିବି । ମୁଁ ଆଉ ଏକା ରହିପାରୁନି, ମୁଁ ଏକା ହୋଇ ବଞ୍ଚି ପାରିବିନି । ଓଃ ।

ମୁଣ୍ଡକୁ ହଲାଇ ତକିଆରେ ମୁହଁକୁ ଚିପି ଧରନ୍ତି ନୀଳମଣି ଶୋକର ଗତିକୁ ରୁଦ୍ଧ କରିବାକୁ ।

ବୁଢ଼ୀ ନୀଳମଣି ଆଖି ଦୁଇଟାକୁ ବନ୍ଦ କରି ଶୋଇବାକୁ ଚେଷ୍ଟା କଲେ । ହଠାତ୍ ବାଦ୍ୟଯନ୍ତ୍ରର ଧ୍ୱନି ଦ୍ୱିଗୁଣିତ ହୋଇଗଲା । ଭାରି ଜୋର୍‌ରେ ଶୁଭିଲା ସଙ୍ଗୀତର ସେ ମୂର୍ଚ୍ଛନା, ବିରାଟ ପ୍ରାସାଦର କୋଣରେ କୋଣରେ ପ୍ରବେଶ କରି ଯେପରି ତରଙ୍ଗ ତୋଳିଲା । ମଧୁଛନ୍ଦା ବୋଧହୁଏ ନାଚ ଅଭ୍ୟାସ କରୁଛି, ତେଣୁ ଟି.ଭି.ଟାର ଶବ୍ଦଟାକୁ ହଠାତ୍ ବଢ଼ାଇ ଦେଇଛି । କ'ଣ ସେ କହୁଥିଲା ସେଦିନ ? ପପ୍ ମ୍ୟୁଜିକ୍ । ସେ କଣ ? କି ଧରଣର ନାଚ ସେ ?

ଓଃ, ଏ ଶବ୍ଦ ତରଙ୍ଗ ଅସହ୍ୟ ଲାଗୁଛି ନୀଳମଣିଙ୍କୁ । ନୀରବତା ଯେପରି ଅସହ୍ୟ ମନେ ହେଉଛି, ଏ ଶବ୍ଦ ମଧ ସେହିପରି ଅସହ୍ୟ ମନେ ହେଉଛି । ସେ ସହି ପାରନ୍ତି ନାହିଁ, ତା' ବୋଲି ପ୍ରତିବାଦ ମଧ କରନ୍ତି ନାହିଁ । ଯେପରି ଜନ୍ମରୁ ପ୍ରତିବାଦ ବସ୍ତୁଟି କ'ଣ ସେ କଥା ଶିଖି ନାହାନ୍ତି ସେ ।

ଡେଇଁଲା ପରି ଘର ଭିତରକୁ ପଶି ଆସିଲା ସୁପ୍ରକାଶ, କହିଲା—My Great Grandma, How are you ?

ନୀଳମଣି ଆଖି ଖୋଲିଲେ ଏବଂ ଟିକିଏ ହସିଲେ । କହିଲେ—ଭଲ । ସେହି ହସ ଭଳି ସଂକ୍ଷିପ୍ତ ଉତ୍ତର ନୀଳମଣିଙ୍କର ।

—Nice ? Very good ! ସତରେ ଭଲ ଲାଗୁଛି ତ ? ନା, ଅଙ୍କଲ୍‌ଙ୍କୁ କହି ଦେଇଯିବି କଲେଜକୁ ଯିବା ବାଟରେ ?

—ଚଗଲାଟା, ଯା ତୁ ତୋର କଲେଜକୁ ଗଲୁ, ବେଳ ହୋଇଯିବ ।

ସୁପ୍ରକାଶ କିନ୍ତୁ ଚାଲିଗଲା ନାହିଁ, ପାଖକୁ ଆସି ନଇଁପଡ଼ି ବଡ଼ ମା'ଙ୍କର ବେଦନାଜୀର୍ଣ୍ଣ ଗୋରା ତକ ତକ ହାତଟାକୁ ମୁଠାଇ ଧରିଲା ଆଦରରେ । ତା'ପରେ ଆଉଥରେ ଦଉଡ଼ି ଚାଲିଗଲା ।

ନୀଳମଣି ଆଖି ଦୁଇଟାକୁ ବନ୍ଦ କଲେ । ଆଖି ଖୋଲା ରଖିଲେ ବି ସ୍ୱପ୍ନ, ଆଖି ବନ୍ଦ କଲେ ବି ସ୍ୱପ୍ନ !

ବାଦ୍ୟଯନ୍ତ୍ରର ସ୍ୱରଟାକୁ ଟିକିଏ କମାଇ ଦେଇଛି ମଧୁଛନ୍ଦା ।

''—ବଡ଼ ମା !'' ଅତି ମଧୁର କଣ୍ଠ ସ୍ୱରଟିଏ, କଥାଗୁଡ଼ିକ ଗୀତ ଗାଇଲା ପରି ମନେହୁଏ । ବନ୍ଦ କରୁଥିବା ଆଖିପତା ଦୁଇଟିକୁ ଖୋଲି ପକାଇ ଚାହିଁଲେ ନୀଳମଣି—ଦ୍ୱାର ପାଖରେ ମୁହଁ ଗଳାଇ ଲୀନା ଚାହିଁଛି ।

—ବଡ଼ ମା, ମୁଁ ଜୋତା ପିନ୍ଧିଛି, ସେହେତୁ ତମ ପାଖକୁ ଯାଇ ପାରୁନି, Excuse me ବଡ଼ ମା, ଟାଇମ୍ ହୋଇଗଲାଣି । I want your blessings ବଡ଼ମା । ଗତଥର ତମେ blessings ଦେଇଥିଲ, ମୁଁ ଏକାବେଳେ first position ପ୍ରଥମ ସ୍ଥାନ ରଖିଥିଲି ପରୀକ୍ଷାରେ । ଏଥର ବି ସେମିତି nice blessings ଦରକାର ମୋର । My dearest darling ବଡ଼ମା, won't you give me your blessings ?

କଥାଟିକୁ ବୁଝିପାରି ହସି ଦେଇ ନିଜ କପାଳରେ ବେଦନାଜଡ଼ିତ ହାତ ଦୁଇଟିକୁ ଲଗାଇ ପ୍ରାର୍ଥନା କଲେ ନୀଳମଣି । ତା'ପରେ କହିଲେ—ପରୀକ୍ଷାରେ ଏଥର ବି ତୁ ଭଲ କରିବୁ ମା !

ଝରଣାଟିଏ ଭଳି ଆନନ୍ଦରେ ନାଚି ନାଚି ଚାଲିଗଲା ଲୀନା ।

ନୀଳମଣି ଇଂରାଜୀ ପଢ଼ି ନଥିଲେ, ତଥାପି ବିଶ୍ୱନାଥ ଯେତେବେଳେ ଇଂରାଜୀ କବିତାଗୁଡ଼ିକ ଆବୃତ୍ତି କରୁଥିଲେ, ତାଙ୍କୁ ବହୁତ ଭଲ ଲାଗୁଥିଲା ଶୁଣିବାକୁ ।

ଆଉ ଥରେ ସମୟର ଶାମୁକାଟି ଉନ୍ମୁକ୍ତ ହୋଇଗଲା ଆଖି ସାମନାରେ, ଆଉ ତାରି ଭିତରେ ଶତ ଚନ୍ଦ୍ରମାର କିରଣର ତେଜ ବିକିରଣ କରି ଭାସ୍ୱରିତ ହୋଇ ଉଠିଲା ସ୍ମୃତିର ମୁକ୍ତାଟି ! କି ଉଜ୍ଜ୍ୱଳ, କି ଶୀତଳ, କି ମନୋରମ !

—ଚାଲ, ଚାଲ ମଣି, ଛାତ ଉପରକୁ ଯିବା । ଆଜି ପୂର୍ଣ୍ଣମୀ ତିଥି । ଚନ୍ଦ୍ର କିରଣ ବିଛୁହୋଇ ପଡ଼ିଛି, ବାହାରଟା କି ସୁନ୍ଦର ଦିଶୁଛି ଦେଖିଲ...

ଅତି ମୃଦୁ କଣ୍ଠରେ ନବବଧୂ କହିଲା—କିଏ ଜାଣିବେ ଯଦି ?

—କେହି ଜାଣିବେନି, ସମସ୍ତେ ଶୋଇଲେଣି । ତାପରେ ଉପରକୁ ଉଠିବା ପାହାଚ୍ ତ ଆମର ଏପଟେ, ଚାଲ । ପୃଥିବୀର କେଡ଼େ ସୁନ୍ଦର ରୂପ ମୁଁ ଆଜି ତମକୁ ଦେଖାଇବି ।

—ଜହ୍ନ ଆଲୁଅ କ'ଣ ମୁଁ କେବେ ଦେଖିନି ?

—ସେ ଦେଖିବା, ଆଉ ଆଜି ଦେଖିବା ଭିତରେ ବହୁତ ଫରକ, ଚାଲିଲ ।

ନୀଳମଣିଙ୍କୁ ଭୀଷଣ ଡର ଲାଗୁଥାଏ । ପାଦରେ ପାହୁଡ଼, ବଳାଗଣ୍ଠି, ମଲ, ପାହୁଜୀ, ଖଡୁ, ବାଙ୍କି ଗଦାଏ ହେବ ଅଳଙ୍କାର ପୁଣି ନୂପୁର ଲଗା ପାହୁଜୀ ହଳକ, ପାଦ ପକାଇଲା ମାତ୍ରେ ଶବ୍ଦ କରି ଉଠୁଥିଲେ ସମସ୍ତେ ।

କିଶୋରୀ ପତ୍ନୀର ଭୟଶୀତଳ ସ୍ୱେଦସିକ୍ତ ହାତଟିକୁ ନିଜର ହାତମୁଠାରେ ଧରି ନିର୍ଭୟରେ ଯାଇ ଛାତ ଉପରେ ପହଞ୍ଚିଲେ ବିଶ୍ୱନାଥ । ଜ୍ୟୋତ୍ସ୍ନାବିଧୌତ ପୃଥିବୀ ଦିଶୁଥିଲା ନୟନାଭିରାମ । ତା'ର ସେ ଅପରୂପ ରୂପକୁ ଦର୍ଶନ କରି ବିଶ୍ୱନାଥ ହଠାତ୍ ଆନନ୍ଦବିହ୍ୱଳ ଭାବପ୍ଲାବିତ କଣ୍ଠରେ ଆବୃତ୍ତି କରିଥିଲେ ଇଂରାଜୀ କବି ସେକ୍ସପିଅରଙ୍କ ଏକ ନାଟକରୁ—

The moon shines bright;
in such a night as this,
When the sweet wind did
gently kiss the trees.
And they did make no noise-in such a
night as this.
Troilus methinks mounted the Troyan walls,
And sigh'd his soul toward the Grecian tents,
Where Cressid lay that night.

ନବବଧୂ କହିଲା—ଆଃ, କେଡ଼େ ସୁନ୍ଦର କବିତା ବୋଲି ପାରୁଛ ତମେ ! ଅର୍ଥ ବୁଝିନପାରିଲେ ବି ଧ୍ୱନିଟି ଭାରି ଭଲ ଲାଗୁଛି ।

—ଭଲ ଲାଗୁଛି ତମକୁ ? ଆଚ୍ଛା, ତମେ ଇଂରାଜୀ ପଢ଼ିବା ଶିଖିବ ?

—ଭାରି କଷ୍ଟ ସେ ଭାଷା ।

ମୁଁ ତମକୁ ପଢ଼େଇଦେବି ।

—ଘରେ ଯଦି ଜାଣିବେ ?

ହସି ଦେଇ କହିଲେ ବିଶ୍ୱନାଥ—ପ୍ରଳୟ ହୋଇଯିବ ନି, ମୁଁ ଇଂରାଜୀ ଶିଖିଲି ବୋଲି ମତେ ଟିକିଏ ଗୋବର ଚାଖି ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଥିଲା । ତୁମେ ସେଇୟା କରିବ ।

ସଙ୍ଗେ ସଙ୍ଗେ ପାଠ ପଢ଼ା । ଆରମ୍ଭ ହେଲା—ଇଂରାଜୀରେ ଚନ୍ଦ୍ରକୁ କ'ଣ କହନ୍ତି ଜାଣିଛ, କହନ୍ତି, 'ମୁନ୍', 'ଦି ମୁନ୍' ।

ଆଉଥରେ ବେଶୀ ଜୋରରେ ବାଜାଟା ବାଜିବାକୁ ଲାଗିଲା । ଶବ୍ଦର ସେ ପ୍ରଚଣ୍ଡ ତାଡ଼ନାରେ ଯେପରି ନୀଳମଣି ଶୋଇଥିବା କାଠ ପଲଙ୍କଟା ମଧ୍ୟ ଶିହରିତ ହେବାକୁ ଲାଗିଲା, ତା ସହିତ କବାଟ ଗୁଡ଼ିକ ଓ ଝରକାର ଦୁଆର ଗୁଡ଼ିକ ମଧ୍ୟ ଠିକ୍ ଭୂମିକମ୍ପରେ ଥରିଲା ପରି ।

ନୀଳମଣିଙ୍କ ମୁଣ୍ଡ ଭିତରେ ଯେପରି ଯନ୍ତ୍ରଣାର ତରଙ୍ଗଟିଏ ଖେଳିଗଲା । ଓଃ ! ଅସ୍ପଷ୍ଟଭାବରେ ମନକୁ ମନ କହି ଉଠିଲେ ସେ—ଏତେ ଜୋରରେ ସେଇଟାକୁ କାହିଁକି ବଜାଉଛି

ମଧୁଛନ୍ଦା ଯେ, ସୁଜାତାର ପିଲା ଦୁଇଟି ଶୋଇଥିଲେ ଉଠି ପଡ଼ିବେ । ପ୍ରଭାକୁ ମଧ୍ୟ କଷ୍ଟ ହେବ । ମଧୁଛନ୍ଦା ବୁଝିବା ଦରକାର ଯେ ରେଡ଼ିଓଟାକୁ –

'—ଆରେ ରେଡ଼ିଓ ନୁହେଁ ମ ।' ସେଦିନ ମଧୁଛନ୍ଦା ଥଟ୍ଟା କରି କହିଥିଲା, ବଡ଼ମା, ରେଡ଼ିଓ ନୁହେଁ, ଟି.ଭି. ଟି.ଭି.—ଟେଲିଭିଜନ୍—ଦୂରଦର୍ଶନ । ସେଥିରେ ଯେ କଥା କହେ ତାକୁ ଦେଖିହୁଏ ମଧ୍ୟ ସିନେମାରେ ଦେଖିଲା ପରି । ଟେଷ୍ଟମ୍ୟାଚ୍ ଗୁଡ଼ାକ ଦେଖିଲାବେଳେ କି ମଜା ଯେ ଲାଗୁଛି ! ବଡ଼ ମା ମ୍ୟାଚ୍, ଅର୍ଥାତ୍ ଖେଳ–

ହସି ହସି କଥା ଛଡ଼ାଇ ନେଇ କହିଥିଲା ସୁପ୍ରକାଶ—ଛନ୍ଦା ନାନୀ, ଖେଳ କହିଲେ ବଡ଼ ମା ବୁଝିବେ—ପୁଚି ଖେଳ, କଉଡ଼ି ଖେଳ, ତାସ୍ ଖେଳ, ନହେଲେ ପାଇକପୁଅ ମାନଙ୍କର ଖଣ୍ଡାଖେଳ ।

ଭାଇଭଉଣୀ ଦିହେଁ ଯାକ ଆନନ୍ଦରେ ହସିଥିଲେ ।

—ବଲ୍ ଖେଳ ବଡ଼ ମା, କ୍ରିକେଟ ବଲ୍, ଫୁଟ୍‌ବଲ୍, ବାସ୍କେଟ ବଲ୍, ଭଲିବଲ୍, ହକି, ବେଡ଼ମିଣ୍ଟନ୍– ଓଃ, କେତେପ୍ରକାର ଯେ ଖେଳ, ବରଫ ଉପରେ ସ୍କେଟିଂ, ପୋଲୋ, ଘୋଡ଼ାଦଉଡ଼ – ସବୁ ଦେଖି ହେବ । ରେଡ଼ିଓ ଭଳି ବାକ୍‌ସଟା ଦିଶୁଛି ସିନା ବଡ଼ ମା, ରେଡ଼ିଓ ନୁହେଁ ।

ରେଡ଼ିଓ ନୁହେଁ, ଟି.ଭି. ।

ତେଲଶିଶି, ପାଉଡ଼ର, ପାନିଆ ପ୍ରଭୃତି ଧରି ରାମବୋଉ ଆସିଲା, ତାରି ପଛେ ପଛେ ନିଧିଆ । ପାଣି ତଉଲିଆ, ସଫା ଲୁଗାପଟା ଆଣିଛି ସେ ।

ପିଲାଏ ସ୍କୁଲ କଲେଜକୁ ଚାଲିଗଲେଣି । ସାନପିଲାଙ୍କ କାମ ସରିଛି । ଏତିକିବେଳକୁ ଯାଇ ରାମବୋଉକୁ ବେଳ ମିଳିଲା । ସକାଳୁ ଦାନ୍ତଘଷା, ଲୁଗା ବଦଳା, ବିଛଣାଚାଦର ପ୍ରଭୃତି ବଦଳା, ମୁହଁ ହାତ ଧୁଆଧୋଇ ଇତ୍ୟାଦି ନିତ୍ୟକର୍ମରେ ନୀଳମଣିଙ୍କୁ ସାହାଯ୍ୟ କରି ଲକ୍ଷ୍ମୀ ବିଦାୟ ନେଇଥିଲା ।

ବର୍ତ୍ତମାନ ରାମବୋଉର ପାଳି । ତେଲ ଲଗାଇ ପୋଛାପୋଛି କରିବ ନୀଳମଣିଙ୍କୁ, ପିଠିରେ ଦେହରେ ପାଉଡ଼ର ଲଗାଇବ, ମୁଣ୍ଡବାଳ କୁଣ୍ଡାଇ ଠିକ୍ କରିବ, ଏଥିପାଇଁ ଆଢୁଆଳରେ ତା'ର ବିଶ୍ୱସ୍ତମହଲରେ ମୁହଁ ମୋଡ଼ି କେତେଥର ରାମବୋଉ କହିଛି—ଗଛା ଟୋକାଟୋକୀ ଝଡ଼ି ପଡୁଛନ୍ତି, ହେଲେ ଏ ପାଚିଲାଫଳମାନେ ଯିମିତି ସିମିତି ଲାଗି ରହିଛନ୍ତି ଗଛ ଡାଳରେ ! ସେ ମୁଣ୍ଡର ବାଳ କ'ଣ ଟିକେ ହେଲେ କମୁଛି ନା ପାଚି ଝୋଟ ହେଉଛି ! ମୁଣ୍ଡ କୁଣ୍ଡାଇବାରେ ତ ଆଗ ମୋର ଓଳିଟାଯାକ ଚାଲି ଯାଉଛି ।

କିନ୍ତୁ ଡରିମରି ନୀଳମଣିଙ୍କ ଆଗରେ ଟିକିଏ ହସି କହେ—ସତ ମ, ବଡ଼ମା ! ତମ ମୁଣ୍ଡରେ ଏତେ ବାଳ ! ଏ ଦିନେ ତ ଏମିତି, ଆଉ ବଅସ ଦିନେ କ'ଣ ନଥିବ ଯେ !

ବୟସ ଦିନେ ? ତାହା କ'ଣ ଏ ଜନ୍ମର କଥା ?

ଭ୍ରମରକୃଷ୍ଣ କୁଞ୍ଚିତ କେଶର ସମ୍ଭାର ଦେଖି ନୀଳମଣିଙ୍କ ବୋଉ କି ଆନନ୍ଦିତ ନ ହେଉଥିଲେ ? ସେ ଯୁଗରେ ଝିଅମାନଙ୍କର ମସ୍ତକର କେଶ ଏକ ଅପୂର୍ବ ସମ୍ପଦ ରୂପେ ଗଣାଯାଉଥିଲା । ନାରୀର ସୌନ୍ଦର୍ଯ୍ୟର ଏକ ପ୍ରଧାନ ବିଷୟ ଥିଲା ତାହା । ନୀଳମଣିଙ୍କ ମୁଣ୍ଡର ସେହି ବାଳଗୁଡ଼ିକ ଥିଲା ତାଙ୍କ ବୋଉଙ୍କର ଅତି ଆଦରର ଧନ । କି ଯତ୍ନ ଯେ ସେ ନେଉଥିଲେ, ମନେ ପଡ଼ିଲେ ହସ ମାଡ଼େ ।

କାଠର ଆସନଗୁଡ଼ିକୁ ଯଥା ସ୍ଥାନକୁ ଟାଣି ଜିନିଷତକ ତା ଉପରେ ସଜାଡ଼ି ଦେଇ ନିଧିଆ ଚାଲିଗଲାଣି । ଅପ୍ରସନ୍ନ ମୁହଁରେ ରାମବୋଉ ସେବାକାର୍ଯ୍ୟରେ ଲାଗିଛି । ତରବର ହେଉଛି କିପରି ଶୀଘ୍ର କାମ ସାରିଦେଇ ଚାଲିଯିବ । ସବୁକଥା ବୁଝିପାରୁଥିଲେ ନୀଳମଣି କିନ୍ତୁ ପରିଚାରିକା ହାତରେ ନିଜକୁ ସମର୍ପଣ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

କହିବାକୁ ନ ଚାହିଁଲେ ମଧ୍ୟ ଶାରୀରିକ ଯନ୍ତ୍ରଣା ଅନୁଭବ କରି ନୀଳମଣି କହନ୍ତି—ଆସ୍ତେ ରାମବୋଉ, ବୁଢ଼ା ଶରୀର ପରା, ଆଉ କ'ଣ ଦେହରେ ରସ ଅଛି ଯେ ଜୋରରେ ଘଷିଲେ ମାଜିଲେ ସହି ହେବ ? ବାତ ଧରିଲା ଦିନୁ ସବୁ ଦରଜ ।

ଉତ୍ତରରେ ରାମବୋଉ ତା କାର୍ଯ୍ୟର ତାଲିକା ଦେଇ ବସିଲା— ବଡ଼ ମା, ତମକୁ ପୋଛିଲେ ସେ' ସାଆନ୍ତାଣୀଙ୍କ କାମ କରିବି, ଫେରେ ଘର ଓଳିଆ ଅଛି, ବଡ଼ନାନୀଙ୍କ ବରାଦ, ତାଙ୍କ ଜାମାଗୁଡ଼ାକ ନେବି ଧୋବା ପାଖକୁ, ଇସ୍ତ୍ରୀ ହେବ । ନିଃଶ୍ୱାସ ମାରିବାକୁ କ'ଣ ବେଳ ମିଳୁଛି ? ପୁଣି ସାନବୋହୂମାଙ୍କ ହୁକୁମ—କାଇଁ ମୁଣ୍ଡଟାକୁ ଟିକେ ଟେକିଲ ସାଆନ୍ତାଣୀ । ଏଇଲେ ଏ ବାଳ ତକ କୁଣ୍ଡାଇବାକୁ ତ ଘଣ୍ଟାଏ ଲାଗିଯିବ—

ରାମବୋଉର କଣ୍ଠସ୍ୱରରୁ ତା'ର ବିତୃଷ୍ଣାକୁ ଅନୁଭବ କରୁଥିଲେ ନୀଳମଣି । ବର୍ତ୍ତମାନଠାରୁ ରକ୍ଷା ପାଇବାପାଇଁ ଅତୀତକୁ ଯିବାକୁ ଚାହିଁଲେ ସେ—ହେଇଟି ବିଜୟର ଫଟୋ ।

ବଡ଼ ଯାଆ ମାହେଶ୍ୱରୀ ନିଜର ଶିଶୁ ସନ୍ତାନଟିକୁ ଆଣି ଅନେକ ସମୟରେ ତାଙ୍କ କୋଳରେ ଧରାଇ ଦେଉଥିଲେ—ସାନବୋହୂ, ଦିନରାତି ବସି ଏମିତି ଭାବିଲେ କ'ଣ ହେବ ଯେ ! ଗଲା ମଣିଷ ଆଉ ବାହୁଡ଼ି ଆସିବ ? ତୋ ପୁଅକୁ ନେ; ତାକୁ ମଣିଷ କର; ତାରି ମୁହଁକୁ ଦେଖି ସବୁ ଭୁଲିବୁ ।

ହୃଷ୍ଟପୁଷ୍ଟ ସୁନ୍ଦର ଶିଶୁ ବିଜୟ ଗୋଡ଼ହାତ ହଲାଇ ଖେଳୁ ଖେଳୁ ହଠାତ୍ ଯେମିତି ଅନୁଭବ କରେ—ଏ କୋଳଟି ମରୁଭୂମି ପରି ଶୁଖିଲା, ସ୍ନେହମମତାର ଛାଇ ଟିକିଏ ସୁଦ୍ଧା ନାହିଁ ! ସାଙ୍ଗେ ସାଙ୍ଗେ ଶିଶୁ ତା'ର ହସିଲା ମୁହଁଟିକୁ ବିକୃତ କରି କ୍ରନ୍ଦନରେ ପ୍ରତିବାଦ ଜଣାଏ ।

ସ୍ପର୍ଶବୋଧର ଅପୂର୍ବ ଜ୍ଞାନ, ଉପଲବ୍ଧିର ଅପୂର୍ବ ଜ୍ଞାନ ମଣିଷର ତୃତୀୟ ନୟନ । ଯୋଗୀମାନେ କହନ୍ତି, ଯୁଗ ଯୁଗ ସାଧନା କଲେ ଯାଇ ମଣିଷର ଏହି ଜ୍ଞାନ ଉନ୍ମୀଳିତ

ହୋଇପାରିବ, ଅନ୍ୟର ଅନ୍ତରର ଭାବନାକୁ ସେ ଜାଣିପାରିବ; କିନ୍ତୁ ଜନନୀର ଜଠରରୁ ଜନ୍ମ ହେଲାକ୍ଷଣି ଅବୋଧ ଶିଶୁଟି କିପରି ଅନୁଭବ କରିପାରେ ପ୍ରକୃତ ସ୍ନେହ ମମତାର ସ୍ପର୍ଶ ! ଜାଣିପାରେ କେଉଁ କୋଳଟି ଆଦର ଶୂନ୍ୟ, କେଉଁ କୋଳଟି ଅଶେଷ ସ୍ନେହର ଆଧାର ! ସାଙ୍ଗେ ସାଙ୍ଗେ ଜାଣିପାରେ ସେ ! ତେଣୁ ସ୍ନେହଶୂନ୍ୟ କୋଳକୁ ଗଲାକ୍ଷଣି କ୍ରନ୍ଦନ ଦ୍ୱାରା ପ୍ରତିବାଦ ଜଣାଏ । ଚାଲି ଯାଉ ଯାଉ ଫେରିଆସନ୍ତି ମାହେଶ୍ୱରୀ, କହନ୍ତି—ତାକୁ ଟିକିଏ ଆଦର କର, ଖଟରୁ ଓହ୍ଲାଇ ବୁଝାଇ ଦେ ।

ଅପ୍ରସ୍ତୁତ ହୋଇ ନିଜ ଛାତିରେ ଶିଶୁଟିକୁ ଚିପିଧରନ୍ତି ନୀଳମଣି—କିନ୍ତୁ ବୃଥା । ନୀଳମଣିଙ୍କ ଛାତି ଭିତରେ ଖାଲି ମରୁବାଲିର ତାତିଲା ଶୂନ୍ୟତା, ଖାଲି ହାହାକାର, ଏକ ନିଃଶବ୍ଦ ଅସହାୟ କ୍ରନ୍ଦନ ଛଡ଼ା ଶିଶୁଟି ଆଉ କିଛି ଶୁଣିପାରେ ନାହିଁ କି ଅନୁଭବ କରି ପାରେନାହିଁ । ତେଣୁ ତା'ର କାନ୍ଦିବାଟା ବନ୍ଦ ହୁଏ ନାହିଁ । ବିରକ୍ତ ହୋଇ ମାହେଶ୍ୱରୀ ଫେରାଇ ନିଅନ୍ତି ନିଜର ପୁଅକୁ ।

ବିଜୟ ତାଙ୍କର ପୋଷ୍ୟପୁତ୍ର !

ଚନ୍ଦ୍ରଶେଖର କ'ଣ ପୋଷ୍ୟପୁତ୍ରର ମଞ୍ଜି ପୋତି ଦେଇଗଲେ ଏ ବଂଶରେ ? କି ଅଶୁଭ ମୁହୂର୍ତ୍ତରେ ଯେ ସେ ମୃତ୍ୟୁପଥଯାତ୍ରୀ ବିଶ୍ୱନାଥଙ୍କ ଛାତି ଉପରେ ରଖି ଦାନ କରି ଦେଇଥିଲେ ନିଜର ଏକମାତ୍ର ପୁଅ ବିଜୟକୁ, ତା'ପରେ ପରବର୍ତ୍ତୀ ଦଶବର୍ଷ ଭିତରେ ପୁତ୍ର କନ୍ୟା ହୋଇ ତାଙ୍କର ତିନୋଟି ଶିଶୁ ଭୂମିଷ୍ଠ ହୋଇଥିଲେ ବି କେହି ବଞ୍ଚିଲେ ନାହିଁ ।

ଓଃ ! ଅସ୍ପଷ୍ଟ କାତରୋକ୍ତି କରି ବୁଢ଼ୀ ନୀଳମଣି ବାସ୍ତବ ଜଗତକୁ ଫେରି ଆସିଲେ— ମୁଣ୍ଡର ବାଳଗୁଡ଼ାକ ଭିଡ଼ି ହୋଇଯାଉଛି ରାମବୋଉର ରୁକ୍ଷ ହାତର ସ୍ପର୍ଶରେ । ଟି.ଭି.ଟା କେତେବେଳେ ବନ୍ଦ ହୋଇଯାଇଛି, ସେ ଜାଣି ପାରି ନାହାନ୍ତି । ବର୍ତ୍ତମାନ ନିସ୍ତବ୍ଧତାଟା ମନେ ହେଉଛି ବଡ଼ ଅସ୍ୱାଭାବିକ ।

ମଧୁଛନ୍ଦା ବାହାରେ ଜୋତା ଖୋଲି ରଖିଦେଇ ଘର ଭିତରକୁ ଆସିଲା । ଗୋରା ତକ ତକ ସୁନ୍ଦର କମନୀୟ ରୂପ, ବଡ଼ ବଡ଼ ଆଖି, ଅତି ସୁନ୍ଦର ଉଚ୍ଚ ନାକ—ଦେଖିବାକୁ ଠିକ୍ ଗ୍ରୀକ୍ ଭାସ୍କର୍ଯ୍ୟର ପ୍ରତିମୂର୍ତ୍ତିଟିଏ ପରି । ଆଜିକାଲିର ଗୋଟାଏ ଅଦ୍ଭୁତ ଧରଣର ଢିଲା ପୋଷାକ ପିନ୍ଧିଛି ସେ, କାନ୍ଧରେ ବେଗ୍‌ଟିଏ ଝୁଲୁଛି ।

—ବଡ଼ ମା !

ନୀଳମଣି ଫେରି ଚାହିଁଲେ, ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ମଧୁଛନ୍ଦାର ମୁଣ୍ଡବାଳ ଉପରେ, ବିସ୍ମୟରେ କହି ପକାଇଲେ—ତୋ ବାଳଗୁଡ଼ାକ କାଟିଦେଲୁ ମଧୁ ? ଇସ୍, ଏମିତି ଛୋଟ ଛୋଟ କରି କାଟିଦେଲୁ ? କି ସୁନ୍ଦର ଦିଶୁଥିଲା !

କାଲି ସହରର ବ୍ୟୁଟି ପାରଲର୍ (Beauty Parlour)କୁ ଯାଇ ମୁଣ୍ଡରେ ଥିବା ଗୋଛାଏ ଅତି ସୁନ୍ଦର ଲମ୍ବା କଳାବାଳକୁ ନୂତନ ଭଙ୍ଗୀରେ କାଟି ଦେଇଆସିଛି ମଧୁଛନ୍ଦା । ବାଳ କାଟିଦେବାର

ଗୋଟାଏ ପ୍ରବଳ ତରଙ୍ଗ ମାଡ଼ିଆସିଛି ଏ ଦେଶରେ । ଦେଶ ବିଦେଶୀ ଶାସନରୁ ମୁକ୍ତ ହୋଇଛି ସତ, କିନ୍ତୁ ତା'ର ସଭ୍ୟତା ଚନ୍ଦ୍ରକୁ ରାହୁ ଗ୍ରାସ କଲାପରି ଲୋକମାନଙ୍କୁ ଗ୍ରାସିଛି । ତା କବଳରୁ ସେମାନେ ମୁକ୍ତ ହୋଇପାରି ନାହାନ୍ତି । ସଂସ୍କୃତିର ବିନିମୟ ନାମରେ ଅନ୍ଧ ଅନୁକରଣର ସୁଅ ମାଡ଼ି ଆସିଛି ଦେଶ ଭିତରକୁ ।

ସିନ୍ଥା ଦୁଇପାଖରେ ଥିବା ଦୁଇଟି ଅର୍ଦ୍ଧକର୍ତ୍ତିତ କେଶଗୁଚ୍ଛକୁ ଉପରକୁ ଟେକୁ ଟେକୁ (ଏହା ମଧ୍ୟ ଆଜିକାଲିର ଏକ ଅଭୁଲା ଅଭ୍ୟାସ) ମଧୁଛନ୍ଦା ହସି ଉଠିଲା ନୀଳମଣିଙ୍କ ବିସ୍ମୟଭରା ଚାହାଁଣିକୁ ଦେଖି, କହିଲା—ବଡ଼ ମା, ତମେ ଦେଖିନଥିଲ ପରା ? ଓଃ, କି ହାଲୁକା ଲାଗୁଛି ସତରେ ! ତମେ ମଧ୍ୟ ମୋ ଭଳି ତମର ବାଳତକ କାଟିଦିଅ ବଡ଼ ମା; horrible, ଗୋଛାଏ ବାଳ ମୁଣ୍ଡରେ ଧରି ତମେ ଚଲୁଛ କେମିତି !

କଥା ମଝିରେ ହାତଘଣ୍ଟାଟି ଦେଖି ନେଇ ବ୍ୟସ୍ତ ହୋଇ କହି ଉଠିଲା ସେ—ଆରେ ! ଟାଇମ୍ ହୋଇଗଲାଣି, ମମି ଏପର୍ଯ୍ୟନ୍ତ ମିଟିଂରୁ ଫେରି ନାହାନ୍ତି । ତାଙ୍କୁ କହି ଦେବ ବଡ଼ମା, ମୁଁ ପିକ୍‌ନିକ୍‌ରେ ଯାଉଛି, ଆଜି ଫେରିବାକୁ ଅସୁବିଧା ହୋଇପାରେ, କାଲି ଫେରିବି ।

ନୀଳମଣି କହିଲେ—କୁଆଡ଼େ ତୁ ଯାଉଛୁ ମଧୁ ?

ଆଉଥରେ ଘଣ୍ଟା ଦେଖି ଅସହିଷ୍ଣୁ କଣ୍ଠରେ ମଧୁଛନ୍ଦା କହିଲା—କୋଣାର୍କକୁ । ଆମ କ୍ଲାସ୍‌ର ସମସ୍ତେ ଯାଉଛନ୍ତି । ମମିଙ୍କୁ କହିବ, ସେ ଆଉ ଡରରେ ଛାନିଆ ହୋଇଯିବେ ନି, ମୁଁ ବଡ଼ ହେଲିଣି, ହଜିଯିବିନି । କଥା ଶେଷକରି ହସିଲା ସେ ।

ନୀଳମଣି ଧୀର କଣ୍ଠରେ କହିଲେ—ସାବଧାନରେ ଯିବୁ ମା !

ଚାଲିଗଲା ମଧୁଛନ୍ଦା ।

ନୀଳମଣି ସେ ଯୁଗର । ମଧୁଛନ୍ଦା ଏ ଯୁଗର ।

ହେଲେ ଫେସନ୍ କ'ଣ ସେ କାଳରେ ନଥିଲା ? ଜିଦ୍ କରି ଅତିରିକ୍ତ ଅଳଙ୍କାର ଗୁଡ଼ିକ ତାଙ୍କ ଦେହରୁ କଢ଼ାଇ ଦେଇ ନଥିଲେ ବିଶ୍ୱନାଥ ! ବିଶ୍ୱନାଥ କଲିକତାରେ ଇଂରାଜୀ ଏମ୍.ଏ. ପଢ଼ି ପାସ୍ କରି ଆସିଥିଲେ । ତାଙ୍କର ମନରେ ଲାଗିଥିଲା ଆଧୁନିକତାର ସ୍ପର୍ଶ । ତେଣୁ ଖଡୁ, ମଲ, ବାଙ୍କୀ, ନାକର ନୋଥ, ବେସର, ନାକଦଣ୍ଡି, କାନର ମଲକଡ଼ି, ନୋଳି, ଫାସିଆ, ଗୁଣା ସବୁ କାଢ଼ି ଦେଇଥିଲେ ନୀଳମଣି ! ନୀଳମଣି କାଢ଼ି ଦେଇଥିଲେ କହିଲେ ଠିକ୍ ହେବନାହିଁ, ମାଉସୀମା ହିଁ ଆସ୍ତେ ଆସ୍ତେ କଢ଼ାଇ ଦେଇଥିଲେ ସବୁ ।

ବିଶ୍ୱନାଥଙ୍କର ପିଲାଟି ଦିନରୁ ମା ମରିଯାଇଥିଲେ ବୋଲି ବହୁତ ଗେହ୍ଲାରେ ବଢ଼ିଥିଲେ ସେ । ପୁଣି ସେତେବେଳେ ମାଉସୀମାଙ୍କର ରାଜତ୍ୱ ଚାଲିଥିଲା ଏ ଘରେ । ବିଶ୍ୱନାଥ ତାଙ୍କର ନୟନର ମଣି ଥିଲେ । ବିଶ୍ୱନାଥଙ୍କ କଥାକୁ ମାନି ନେଉଥିଲେ ସେ ।

ବଡ଼ ଭାଇ ଚନ୍ଦ୍ରଶେଖର ଓ ବଡ଼ ଭାଉଜ ମାହେଶ୍ୱରୀ ଏ ସବୁ ପସନ୍ଦ କରୁ ନଥିଲେ ମଧ୍ୟ ମାଉସୀମା ସ୍ୱର୍ଣ୍ଣଲତା ବଞ୍ଚିଥିଲା ପର୍ଯ୍ୟନ୍ତ ଆପତ୍ତି କରିବାର କୌଣସି ଉପାୟ ନଥିଲା ।

ପିଲାଟିବେଳୁ ବିଶ୍ୱନାଥ ବଡ଼ ଜିଦ୍‌ଖୋର । ଗାଁ ସ୍କୁଲର ପାଠ ସାରିବା ପରେ ବଡ଼ ଭାଇ ଯେତେବେଳେ ସଂସ୍କୃତ ଟୋଲରେ ନାଁ ଲେଖାଇ ଦେବାକୁ ନିଷ୍ପତ୍ତି ନେଇଥିଲେ, କାହାକୁ କିଛି ନ କହି ଚୁପ୍‌ଚାପ ଘର ଛାଡ଼ି କଟକ ଉଦ୍ଦେଶ୍ୟରେ ଦିନେ ଚାଲିଯାଇଥିଲେ ବିଶ୍ୱନାଥ । ପିତା ନାରାୟଣ ଚୌଧୁରୀ ସେତେବେଳେ ଜୀବିତ । ବିଶ୍ୱନାଥଙ୍କୁ ନ ପାଇବାରୁ ଘରେ ଆତଙ୍କ ଖେଳିଗଲା ।

ରାସ୍ତାରେ ଚାଲିଥାନ୍ତି ବିଶ୍ୱନାଥ—କଟକକୁ ଯାଇ ଯେମିତି ହେଲେ ସେ ଇଂରେଜୀ ସ୍କୁଲରେ ପାଠ ପଢ଼ିବେ । ସମ୍ଭ୍ରାନ୍ତବଂଶୀୟ ସୁଦୃଶ୍ୟ ପିଲାଟିକୁ ଏକାକୀ ଦେଖି ବାଟରେ ଲୋକମାନେ ଅଟକାଇ ପଚରାଉଚରା କରୁଥାନ୍ତି । ସେହି ଲୋକଙ୍କ ଦ୍ୱାରା ଖବର ପାଇ ବଡ଼ ଭାଇ ଦଉଡ଼ି ଗଲେ ଆଣିବାକୁ । ବହୁତ କଷ୍ଟରେ ବୁଝାଇ ସୁଝାଇ ଇଂରାଜୀ ସ୍କୁଲରେ ନାମ ଲେଖାଇବାର ପ୍ରତିଶ୍ରୁତି ଦେଇ ଫେରାଇ ଆଣିଥିଲେ ସାନଭାଇଟିକୁ ।

ଚନ୍ଦ୍ରଶେଖର ନାରାୟଣ ଦାଶଙ୍କର ପ୍ରଥମ ପକ୍ଷ ସ୍ତ୍ରୀଙ୍କର ପୁଅ, ତେଣୁ ଦୁଇଭାଇଙ୍କ ଭିତରେ ବୟସର ତଫାତ୍ ଅନେକ ଥିଲା ।

ଦ୍ୱିତୀୟ ସ୍ତ୍ରୀ ହେମଲତାଙ୍କ ମୃତ୍ୟୁ ପରଠାରୁ ଜମିଦାର ନାରାୟଣ ଦାଶ ସମ୍ପତ୍ତି ଦେଖାଶୁଣାର ଭାର ଅନେକାଂଶରେ ଚନ୍ଦ୍ରଶେଖରଙ୍କ ଉପରେ ଦେଇ ନିଜେ ଯାଇ ରହୁଥିଲେ ରାଧାଗୋବିନ୍ଦଙ୍କ ଦେବାଳୟର ପରିସୀମା ଭିତରେ ରହିଥିବା ମଠରେ । ଦରକାର ପଡ଼ିଲେ ଚନ୍ଦ୍ରଶେଖର ଯାଇ ତାଙ୍କର ପରାମର୍ଶ ଶୁଣି ଆସୁଥାନ୍ତି ।

ବାପା ତାଙ୍କର ସବୁ କଥା ଶୁଣିଲେ । କିଛି କହି ନଥିଲେ ।

କଟକରେ ବସା ଘର ଠିକ୍ ହେଲା । ଜଣେ ଗୁମାସ୍ତା ରହିଲେ; ପୂଝାରୀ ଓ ଚାକରର ଦାୟିତ୍ୱ ତୁଲାଇବାକୁ ଅତି ବିଶ୍ୱସ୍ତ ପରିଚାଳକ ରାମଚନ୍ଦ୍ର ପଣ୍ଡା ଗଲା ସାଙ୍ଗରେ । ଇଂରାଜୀ ପାଠ ପଢ଼ିଥିଲେ ବିଶ୍ୱନାଥ । ଭାରି ଭଲ ପଢ଼ିଲେ ମଧ୍ୟ । ସ୍କଲର୍‌ସିପ ମିଳିଥିଲା । କଟକର ପାଠ ସରିଲା ପରେ ସିଧା କଲିକତାକୁ ଯାଇ ସେଠାରେ ପଢ଼ିଲେ ଇଂରାଜୀ ସାହିତ୍ୟରେ ଏମ୍.ଏ. ।

ବି.ଏ. ପାସ୍ କଲାପରେ ଡେପୁଟୀ ଚାକିରି ତାଙ୍କୁ ଯଚା ଯାଇଥିଲା ସରକାରଙ୍କ ତରଫରୁ । ଚାକିରି କରିବାକୁ ରାଜି ହୋଇ ନଥିଲେ ବିଶ୍ୱନାଥ ।

( ୨ )

ସେହି ରାଜପଦବୀକୁ ଅସ୍ୱୀକାର କରି ବିଶ୍ୱନାଥ ଏମ.ଏ. ପଢ଼ିଥିଲେ, ପୁଣି ଇଂରାଜୀ ସାହିତ୍ୟରେ ।

ମନେ ପଡ଼ିଲେ ଏବେ ମଧ ହସଲାଗେ ନୀଳମଣିଙ୍କୁ । ତାଙ୍କ ନନା ଥିଲେ ସଂସ୍କୃତ ପଣ୍ଡିତ । ନନାଙ୍କ ପାଣ୍ଡିତ୍ୟରେ ମୁଗ୍‌ଧ ହୋଇ ସେକାଳର ସାହେବ ମାଜିଷ୍ଟ୍ରେଟ ତାଙ୍କୁ ନିଜର ଗୃହଶିକ୍ଷକ ରୂପେ ନିଯୁକ୍ତ କରିଥିଲେ । ନନା ପ୍ରତିଦିନ ଯାଇ ସାହେବଙ୍କୁ ସଂସ୍କୃତ ପଢ଼ାଇ ଦେଇ ଆସୁଥିଲେ । ଆଉ ନିଜେ ଶିଖି ଆସୁଥିଲେ ଇଂରାଜୀ । ଇଂରାଜୀ ଭାଷା ପ୍ରତି ତାଙ୍କର ମଧ ଭାରି ଆଗ୍ରହ ଥିଲା । ଆଦରର କନ୍ୟା ନୀଳମଣିକୁ ନିଜେ ଓଡ଼ିଆ, ସଂସ୍କୃତ; ଅଙ୍କ ପଢ଼ାଉଥିଲେ ସେ । ତା ସହିତ ନୂଆକରି ଶିଖି ଆସିଥିବା ଇଂରାଜୀ ଶବ୍ଦଗୁଡ଼ିକ ମଧ ଶିଖାଇ ଦେଉଥିଲେ ।

ଖାଇ ବସିବା ବେଳେ ଗୁଡ଼ିଏ ପ୍ରଶ୍ନ ବୋଉଙ୍କୁ ପଚାରିବାକୁ ନନା ଶିଖାଇ ଦିଅନ୍ତି ନୀଳମଣିକୁ ।

ନୀଳମଣି କହନ୍ତି, ଆଉ ଟିକିଏ ରାଇସ୍ ଦିଅ ବୋଉ । ଜନନୀଙ୍କ ଅପ୍ରସ୍ତୁତ ଭାବ ଦେଖି ଖିଲି ଖିଲି ହୋଇ ହସି ଉଠୁଥାନ୍ତି ନୀଳମଣି । ବୋଉ ବିରକ୍ତ ହୋଇ କହନ୍ତି, ଝିଅକୁ ଇଂରେଜୀ ପଢ଼ାଅ, ବୁଝିଲ ? ଗାଁ'ରେ ଶୁଣିଲେ ନିଆଁ ପାଣି ବାସନ୍ଦ କରିଦେବେ ଲୋକମାନେ ।

'ଗାଁ ସାଙ୍ଗରେ ଆମର ସମ୍ପର୍କ କ'ଣ ଯେ ?' ହସି ହସି କହନ୍ତି ନନା ।

ମା ଲୋ ! ସମ୍ପର୍କ ନାହିଁ ? ଘର ଦୁଆର ଜମିବାଡ଼ି ସବୁ ତ ରହିଛି ସେଠି । ଚାକିରି ସରିଲେ ତ ସେଇ ଗାଁ'କୁ ହିଁ ଯିବା ?

ଖାଇ ବସିଲାବେଳେ ପ୍ରତିଦିନ ସାହେବଙ୍କର ଉଚ୍ଛ୍ୱସିତ ପ୍ରଶଂସା କରୁଥାନ୍ତି ନନା । ସେକାଳର ଆଚାରନିଷ୍ଠ ସଂସ୍କୃତ ପଣ୍ଡିତ ହୋଇ ସାହେବଙ୍କ କଥାବାର୍ତ୍ତା, ଆଚାର ବ୍ୟବହାରକୁ ନନା ବହୁତ ପସନ୍ଦ କରୁଥିଲେ—ଏକ ଆଶ୍ଚର୍ଯ୍ୟ ସଂଯୋଗ ।

ଇଂରାଜୀ ଭାଷାଟି ନୀଳମଣିଙ୍କର ମଧ ଅତି ପ୍ରିୟ ହୋଇ ଯାଇଥିଲା । ସଂସ୍କୃତ ଶ୍ଳୋକଗୁଡ଼ିକ ପରି ଭଲ ଲାଗୁଥିଲା ବିଶ୍ୱନାଥଙ୍କ ଇଂରାଜୀ କବିତା ଆବୃତ୍ତି । ତାଙ୍କର ଆଗ୍ରହ ଦେଖି ବିଶ୍ୱନାଥ କହୁଥିଲେ, ଏ ପାଠ ଶିଖିବାକୁ ତମକୁ ବର୍ଷେ ମଧ ସମୟ ଲାଗିବନି—ତମେ ଶିଖିବ ?

ଲାଜରେ ନିରୁତ୍ତର ରହିଥିଲେ ନୀଳମଣି, ଜଣାଇ ନ ଥିଲେ ସେ ସଂସ୍କୃତ ହେଉ ବା ଓଡ଼ିଆ ହେଉ ଗୀତି କବିତାକୁ ଆବୃତ୍ତି କରିବାକୁ କେତେ ଭଲ ପାଆନ୍ତି ।

ଭଗବଦ୍‌ଗୀତାର ସବୁ ଅଧ୍ୟାୟ ତ ନୀଳମଣିଙ୍କର ଜିଭ ଅଗରେ ! ନନାଙ୍କର ଲମ୍ବା ଖରାଛୁଟି ହେଉଥିଲା । ସେତିକିବେଳେ ସେମାନେ ଗାଁ'କୁ ଯାଇ ରହୁଥିଲେ । ଛକ କାଟିଲା

ପରି ପ୍ରଶସ୍ତ ସୁନ୍ଦର ଗାଁ ଘର । ଦାଣ୍ଡ ପଟେ ଅଗଣା, ବାଡ଼ିପଟେ ଅଗଣା । ଅଗଣାକୁ ଲାଗି ଆରମ୍ଭ ହୋଇଯାଇଥିଲା ପତ୍ର ଆଉ ଫଳର ସୁମଧୁର ବାସ୍ନାରେ ମହକି ଉଠୁଥିବା ବିରାଟ ଆମ୍ବ ବଗିଚାଟି । ସ୍ନିଗ୍ଧ ଛାୟା ସୁଶୀତଳ ବଗିଚାଟା ଜ୍ୟେଷ୍ଠର ନିଦାଘ ଖରାକୁ ଉପହାସ କରୁଥିଲା ଯେପରି । ସେତେବେଳେ ସେଇଟା ହିଁ ସ୍ୱର୍ଗ ବୋଲି ମନେ ହେଉଥିଲା । ନୀଳମଣି ଗାଁ କୁ ଗଲାକ୍ଷଣି ଗାଁ'ଟା ଯାକର ତାଙ୍କରି ବୟସର ଝିଅ ଚାଲି ଆସୁଥିଲେ ତାଙ୍କରି ଘରକୁ । ମମତାମୟୀ ବୋଉଙ୍କର ସ୍ନେହ ଆଦର କରିବାରେ ପର ଆପଣା ଜ୍ଞାନ ନ ଥିଲା । ତେଣୁ ଖରାବେଳଟାଯାକ ଦଳଦଳ ଝିଅ ବସି ଆଠ ପଇଞ୍ଚ ବା ଦଶ ପଚିଶ କଉଡ଼ିଖେଳ; ସାନ ଆଠ, ବଡ଼ ଆଠ, କାଞ୍ଚିଗାତ ଏହିପରି କେତେ ଖେଳ ଯେ ଖେଳୁଥିଲେ ତା'ର ସୀମା ନଥିଲା । କଉଡ଼ିର ରୁଣୁଝୁଣୁ ଶବ୍ଦ ସହିତ ପିଲାଙ୍କ ହସ ଶୁଭୁଥିଲା ଡାକେ ବାଟରୁ । ଘନ ଆମ୍ବ ବଗିଚାର ଡାଳରେ ଖେଳୁଥିବା କୁମ୍ଭାଟୁଆର ଡାକ; କୋଇଲିର କୁହୁ କୁହୁ ଗୀତ, ନାନାପ୍ରକାର ଚଢ଼େଇମାନଙ୍କର କିଚିରି ମିଚିରି ଶବ୍ଦ ମନକୁ ମୋହିତ କରିଦେଉଥିଲା । ପୁଣି ଆହୁରି ମଜାର କଥା ହେଉଛି ଝିଅମାନେ ଦୋଳି ଖେଳିବେ ବୋଲି କେତୋଟି ଦୋଳି ବନ୍ଧା ହୋଇଯାଇଥିଲା ଗଛମାନଙ୍କର ତଳୁଆ ଡାଳ ଗୁଡ଼ିକରେ ।

ଛାଇ ଲେଉଟିବା କ୍ଷଣି ଦୋଳି ଖେଳ ଆରମ୍ଭ ହୋଇଯାଏ । କୋଇଲିର କୁହୁତାନ ଭିତରେ ଗୀତର ପ୍ରତିଯୋଗିତା ଚାଲେ ଝିଅ ମାନଙ୍କ ଭିତରେ । ଅଧିକାଂଶ ସମୟରେ କୋଇଲି ଗୀତ — କେଶବ-କୋଇଲି—

କୋଇଲି, କେଶବ ତ ମଥୁରାକୁ ଗଲା
କାହା ବୋଲେ ଗଲା ପୁତ୍ର ବାହୁଡ଼ି ନ ଅଇଲା
କୋଇଲି ଲୋ,
ଖଣ୍ଡକ୍ଷୀର ଦେବି ମୁଁ କାହାକୁ
ଖାଇବାର ପୁତ୍ର ଗଲା ମଥୁରାପୁରକୁ
କୋଇଲି ଲୋ ।।

ନହେଲେ—କାନ୍ତ କୋଇଲିର ଗୀତ—
କୋଇଲି, କାନ୍ତ ମୋର ଗଲେ ମୃଗ ମାରି
କପଟେ ରାବଣ ମତେ ନେଉଅଛି ଧରି
କୋଇଲି ଲୋ,
ଖଳ ବୋଲି ଜାଣି ନପାରିଲି
ଖଳ ଯେ କନକମୃଗ ଦେଖି ଶ୍ରଦ୍ଧା କଲି,
କୋଇଲି ଲୋ...

ସେ ଗୀତଗୁଡ଼ିକ କି ସୁନ୍ଦର ଥିଲା ସତେ !

ଜଣକେ ଗୋଟିଏ ଗୋଟିଏ ଧାଡ଼ି ଗୀତ ଗାଇବେ କେତେବେଳେ ତ, ସମସ୍ତେ ମିଶି ଏକାସଙ୍ଗେ ଗାଇବେ କେତେବେଳେ । ସମସ୍ତଙ୍କର ପ୍ରାୟ ମୁଖସ୍ଥ !

ଆଜି ମଧ୍ୟ ଯେମିତି ସେ ଗୀତ ଶୁଭି ଯାଉଛି ନୀଳମଣିଙ୍କର କାନକୁ ! ସତକୁ ସତ ନିଜର ଅଜ୍ଞାତରେ ଗୀତ ଗାଇ ଉଠିଲେ ନୀଳମଣି—

କୋଇଲି ଲୋ;<br>
ଗୁରୁ ଶ୍ରଦ୍ଧା ବଳିଲା ମୋହର<br>
ଗେଲେ ମୁଁ ବୋଇଲି ରାମ ଏ କୁରଙ୍ଗ ମାର,<br>
କୋଇଲି ଲୋ,<br>
ଘଟଣ ଯା କରିଛି ବିଧାତା<br>
ଘୋର ବନେ ମୃଗମାରି ଗଲେ ମୋ କରତା,<br>
କୋଇଲି ଲୋ—

ବଡ଼ ମା ! ଗୀତ ବୋଲୁଛ ନା କ'ଣ ମ ?

ଆଶ୍ଚର୍ଯ୍ୟ ହୋଇ ପଚାରିଲା ରାମବୋଉ ।

ନୀଳମଣି ସଜାଗ ହେଲେ । ଗୀତ ! ଟିକିଏ ଅପ୍ରସ୍ତୁତ ହୋଇ କହିଲେ, ଦିଅଁଙ୍କ ନାଁ ଟିକେ ନଉଥିଲି ।

—ହଁ, ହଁ, ସେଇ ଠାକୁରଙ୍କୁ ଡାକ, କେମିତି ଚଞ୍ଚଳ ତମକୁ ଏଇ ସଂସାର କଷ୍ଟରୁ ଉଦ୍ଧାର କରି ଦିଅନ୍ତୁ ସେ ।

ସଂସାର-କଷ୍ଟ ! ରାମବୋଉର କଷ୍ଟକୁ ବୁଝିପାରୁଛନ୍ତି ନୀଳମଣି । ତା'ର ବା ଦୋଷ କଣ ? ଥୁଣ୍ଟା ଗଛଟିର ଅଗଡାଳରେ ଯଦି ଶୁଖିଲା ପତ୍ରଟିଏ ଜିଦ୍ କରି ଲାଗି ରହିବ, ସମସ୍ତଙ୍କ ଦୃଷ୍ଟି ତ ନିଶ୍ଚେ ସେହି ଆଡ଼କୁ ଟାଣି ହୋଇଯିବ । ସମସ୍ତେ ଭାବିବେ—ଏ ପତ୍ରଟା ନଝଡ଼ି ଲାଗି ରହିଛି କେମିତି ? ରହୁଛି କାହିଁକି ? କେବେ ଝଡ଼ିବ ? ଝଡ଼ିବାକୁ ଡେରି କରିବା ତ ଯାର ଉଚିତ ହେଉନାହିଁ ! ଗଛଟାର ଗଣ୍ଠିରେ ଗଣ୍ଠିରେ ଯେ ସବୁଜିମା ଫୁଟି ଉଠିଲାଣି ଆଗାମୀ ନବକିଶଳୟର ସଙ୍କେତ ନେଇ; ସେମାନେ ପରିସ୍ଫୁଟ ହେଲାକ୍ଷଣି ଏ ଶୁଖିଲା ପତ୍ରଟିର ଉପସ୍ଥିତି ବଡ଼ ଅଶୋଭନୀୟ ହେବ ।

ଶୁଖିଲାପତ୍ର ପରି ଜୀର୍ଣ୍ଣଦେହ ତାଙ୍କର । ମନେ ପଡ଼ିଲା ଭଗବଦ୍ ଗୀତାର ଶ୍ଳୋକଟି—

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ<br>
ନବାନି ଗୃହ୍ଣାତି ନରୋପରାଣି

ତଥା ଶରୀରାଣି ବିହାୟ ଜୀର୍ଣ୍ଣା —

ନ୍ୟନ୍ୟାନି ସଂଯାତି ନବାନି ଦେହୀ ।।

ନବାନି ଦେହୀ ? ଏକ ନୂଆ ଦେହ ?

ନା, ନା, ନା ।

ଆଉ ନବାନି ଦେହୀ ନୁହେଁ । ନୁହେଁ । ନା ।

ସକାଳେ ଫୁଲଟି ଫୁଟେ, ସନ୍ଧ୍ୟାହେଲେ ଝରିପଡ଼େ । ଝରିଯାଇ କ୍ରମଶଃ ମିଶିଯାଏ ଧୂଳିରେ । ଆଉ ସେହି ନିର୍ଦ୍ଦିଷ୍ଟ ଫୁଲଟି ପୁଣି କଢ଼ିଟିଏ ହୋଇ ଫୁଟି ଉଠେ ନାହିଁ ସେହି ଗଛଟିର ଡାଳରେ । ତା'ପରଦିନ ଯେଉଁ ଫୁଲଟି ଫୁଟେ ସେ ହେଉଛି—ଗୋଟିଏ ସମ୍ପୂର୍ଣ୍ଣ ନୂଆ ଫୁଲ । ଏ ଫୁଲ ସହିତ ସେ ଫୁଲର କିଛି ମାତ୍ର ସମ୍ପର୍କ ନାହିଁ ।

ମୃତ୍ୟୁ ଶୋକରେ ବିହ୍ୱଳ ଅସହାୟ ମଣିଷକୁ ଆପାତତଃ ସାନ୍ତ୍ୱନା ଦେବା ପାଇଁ କୌଣସି ମହାନ୍ ଚିନ୍ତାଶୀଳ ବ୍ୟକ୍ତିଙ୍କର ଏହା ଏକ ଉପଦେଶ ମାତ୍ର ।

ସାନ୍ତ୍ୱନା, ସାନ୍ତ୍ୱନା ! ଭଗବଦ୍‌ଗୀତାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କେବଳ ସାନ୍ତ୍ୱନାର ବାଣୀହିଁ ଭରି ରହିଛି । ସେହି ସର୍ବଜ୍ଞାନୀ, ସର୍ବଦର୍ଶୀ, ସହାନୁଭୂତିଶୀଳ, ଦୟାର୍ଦ୍ର, କୋମଳ ହୃଦୟ ବ୍ୟକ୍ତିଙ୍କର ଏ ଅସହାୟ ମନୁଷ୍ୟ ଜାତିକୁ ଆପାତତଃ ଶୋକରୁ ରକ୍ଷା କରିବା ପାଇଁ ଏହା ଏକ ମହତ୍ କୌଶଳ ମାତ୍ର ।

ଭଗବାନ ଜଣେ ମହାନ୍ କୌଶଳୀ । ସେ ବ୍ୟକ୍ତି ହୁଅନ୍ତୁ ବା ଶକ୍ତି ହୁଅନ୍ତୁ ନୀଳମଣି ତାଙ୍କୁ ଗୋଟିଏ ଚପଳମତି ଅଜ୍ଞାନ ବାଳକ ସହିତ ହିଁ ତୁଳନା କରିବେ । ଅଜ୍ଞାନ ଶିଶୁ ଯେପରି ନିଜ ମନର କୌତୁକ ମେଣ୍ଟାଇବା ପାଇଁ ଖେଳ ଭାବି ତୀକ୍ଷ୍ଣ ଅସ୍ତ୍ରଟିଏ ଧରି କୀଟପତଙ୍ଗଙ୍କୁ ହତ୍ୟା କରେ, ଜୀବଟିର ମର୍ମାନ୍ତିକ ଯନ୍ତ୍ରଣାକୁ ଜାଣିପାରେ ନାହିଁ, ଠିକ ସେହିପରି ନିର୍ବିକାର ସେ ପରମ ଶକ୍ତି, ସତ୍ତା, ପରମାତ୍ମା ।

ପରମାତ୍ମା—ଆତ୍ମା ।

ଆତ୍ମା ଜାତ ହୁଅନ୍ତି ନାହିଁ କି ମରନ୍ତି ନାହିଁ । ଶସ୍ତ୍ର ସବୁ ଏହାଙ୍କୁ ଛେଦନ କରି ପାରେ ନାହିଁ । ଅଗ୍ନି ଏହାଙ୍କୁ ଦଗ୍ଧ କରିପାରେ ନାହିଁ ! ଜଳ ଏହାଙ୍କୁ ଆର୍ଦ୍ର କରିପାରେ ନାହିଁ ଓ ପବନ ମଧ୍ୟ ଶୁଖାଇ ପାରେ ନାହିଁ ।

ଆତ୍ମା ଅମର, ଅଜେୟ । କେବଳ ଶରୀର ଜୀର୍ଣ୍ଣ ହେଲେ ତାକୁ ଆତ୍ମା ପରିତ୍ୟାଗ କରନ୍ତି । ପୁରୁଣା ବସ୍ତ୍ର ପରି ।

କିନ୍ତୁ—ବସ୍ତ୍ରଟି ଯେଉଁଠି ଜୀର୍ଣ୍ଣ ହୋଇ ନଥାଏ ?

ସେଇଠି ଗୀତା ନିରୁତ୍ତର ।

ନୀଳମଣି ଦୀର୍ଘ ନିଃଶ୍ୱାସଟିଏ ପକାଇଲେ । ବସ୍ତ୍ରଟି ମୋଟେ ଜୀର୍ଣ୍ଣ ହୋଇ ନଥିଲା । ବରଂ ଏକାବେଳେ ନୂଆ ଥିଲା–ବିଶ୍ୱନାଥଙ୍କ ଜୀବନ ଆରମ୍ଭ ହେଉଥିଲା ।

ସୁଦାମ ଆସି ଜୁହାରଟିଏ ପକାଇ କହିଲା–ବଡ଼ ମା, ବଡ଼ ବୋହୂମା ଫୋନ୍ କରିଛନ୍ତି । ତାଙ୍କ ମିଟିଂ ଆହୁରି ସରିନି । ସେ ଆଉ ଘରକୁ ଖାଇବାକୁ ଆସି ପାରିବେନି, ଆଜି ସେଠି ତାଙ୍କର ଖାଇବାର ବନ୍ଦୋବସ୍ତ ହୋଇଛି, ଆସୁ ଆସୁ ରାତି ହେବ । ତାଙ୍କୁ କ'ଣ କହିବାକୁ ଯଦି ଚାହୁଁଛନ୍ତି ତାହେଲେ କୁହନ୍ତୁ–ଫୋନ୍ ପାଖରେ ସେ ଜଗିଛନ୍ତି ।

ସ୍ମୃତିଶକ୍ତି ନୀଳମଣିଙ୍କର ଅପୂର୍ବ । ସେ ଶାନ୍ତ କଣ୍ଠରେ କହିଲେ, ଖାଲି କହି ଦିଅ, ମଧୁଛନ୍ଦା ପିକ୍‌ନିକ୍‌ରେ ଯାଇଛି, ଫେରିବାକୁ ତା'ର ଡେରି ହୋଇପାରେ, ଡେରି ହେଲେ ସେ ସେଠି ରହିବ । କଥାଟା ସୁନନ୍ଦା ଜାଣିବା ଦରକାର ।

ସମ୍ବାଦ ଦେବାପାଇଁ ଚାଲିଗଲା ସୁଦାମ । କିଛି ସମୟ ପରେ ଫେରି ଆସିଲା ଘରର ହାଲଚାଲ୍ ଜଣାଇବାକୁ । ରାମ ବୋଉ ଯାହା ନେବା କଥା ନେଇ ବିଦାୟ ନେଲା !

ନୀଳମଣି ତାଙ୍କର ଦୈନନ୍ଦିନ କର୍ତ୍ତବ୍ୟ ସମ୍ପାଦନ କଲେ, ପଚାରିଲେ–ସୁଭୁ, ସାନୁ ଶୋଇଛନ୍ତି ?

ସୁଦାମ କହିଲା, ସେମାନଙ୍କ କାମ ସବୁ ସରିଛି ବଡ଼ ମା, ଖାଲି ମଣ୍ଟୁ ବାବୁ ଆଉ ମିତା ନାନୀ ଫେରିଲେ ଖାଇବେ, ସେତେବେଳକୁ ସାନ ବାବୁ ଆଉ ସାନ ବୋହୂମା ତ ଫେରି ଆସିଥିବେ ।

ଛନ୍ଦା, ପ୍ରକାଶ, ଲୀନା ଖାଇପିଇ ଯାଇଛନ୍ତି ତ ?

ଆଜ୍ଞା ହଁ ।

ତମେମାନେ ସବୁ ପଖାଳ କି ଜଳଖିଆ ଯିଏ ଯାହା ଖାଇବା କଥା ଖାଇ ସାରିଛ ତ ସୁଦାମ ? ସାଆନ୍ତାଣୀଙ୍କୁ ଔଷଧ ଦିଆ ହୋଇଛି ? ଗାଈଙ୍କୁ ବେହେରା ନେଲାଣି ? ତମେ ନିଜେ ଟିକିଏ ପାଖରେ ରହି ଅଲଗା ଅଲଗା କରି କ୍ଷୀରତକ ସିଝାଇବା ଦେଖିବ । ଆଲମାରିରେ ନେଇ ରଖିବ । ରାଧାଗୋବିନ୍ଦଙ୍କଠି କେତେ ଜଣ ଅଭ୍ୟାଗତ ଆଜି ଖାଇବେ ? ମାଧବ ଜିନିଷପତ୍ର ଧରି ସେଠାକୁ ଚାଲିଗଲାଣି ତ ?

ପ୍ରତ୍ୟେକ ପ୍ରଶ୍ନର ଉତ୍ତର ପାଇବା ପରେ ସୁଦାମକୁ ସେ କହିଲେ, ଆଚ୍ଛା, ଯାଅ, ଏଥର ନାନୀଙ୍କୁ କହିଦିଅ ମୋ ପାଇଁ ଖାଇବାକୁ ଆଣିବେ ।

ନିୟମାନୁବର୍ତ୍ତିତାକୁ ଭଲ ପାଆନ୍ତି ନୀଳମଣି । ତେଣୁ ଠିକ୍ ସମୟରେ ଖାଆନ୍ତି । ଶରୀରକୁ ସୁସ୍ଥ ସବଳ ରଖିବାକୁ ନୁହେଁ ।

ଏ ସଂସାର ସହିତ ଆଉ ଜଡ଼ିତ ହୋଇ ରହିବାକୁ ସେ ଜମା ଚାହିଁ ନଥିଲେ । କିନ୍ତୁ ମାଛିଟିକୁ ତା ଅକ୍ତିଆରରେ ପାଇ ବୁଢ଼ିଆଣୀ ନିଜର ସହସ୍ର ସୂତାର ଜାଲରେ ଗୁଡ଼ାଇ ଦେଲା ପରି ଭାଗ୍ୟ ନୀଳମଣିଙ୍କୁ ଗୁଡ଼ାଇ ଦେଲା ସଂସାର ଜାଲର ସହସ୍ର ବନ୍ଧନରେ ବାନ୍ଧିଦେଇ ।

ଯେଉଁ ସାନ ଯାଆ ନୀଳମଣିଙ୍କ ପାଖରେ ଅଧ ଘଣ୍ଟାଏ ସୁଦ୍ଧା ପୁଅକୁ ଛାଡ଼ିବାକୁ ମାହେଶ୍ୱରୀ କୁଣ୍ଠିତ ହେଉଥିଲେ, ତାରି ପାଖରେ ସବୁଦିନ ପାଇଁ ବିଜୟକୁ ଛାଡ଼ିଦେଇ ଆଖି ବୁଜିଲେ ସେ । ସାଙ୍ଗରେ ସ୍ୱାମୀଙ୍କୁ ମଧ୍ୟ ନେଇଗଲେ ।

ଘଟଣାଟା ମର୍ମନ୍ତୁଦ, ଦୁଃଖାବହ ।

ପିତୃ ଗୃହରେ କୌଣସି ଏକ ବିବାହ ଉତ୍ସବରେ ଯୋଗ ଦେବାକୁ ସ୍ୱାମୀ ଓ ପୁତ୍ର ସହିତ ମାହେଶ୍ୱରୀ ଯାଇଥିଲେ ଦୁର୍ଗମ ମଫସଲ ଅଞ୍ଚଳକୁ । ସ୍ୱାମୀ, ପୁତ୍ର, ନାଏବ, ଗୁମାସ୍ତା, ପରିଚାରକ, ପରିଚାରିକାଙ୍କ ଗହଣରେ ବେଶ୍ ରାଜଥାଟରେ ହିଁ ଯାଇଥିଲେ ମାହେଶ୍ୱରୀ । କିନ୍ତୁ କେତେ ଜଣ ପରିଚାରକ ଓ ଗୁମାସ୍ତାଙ୍କ ସହିତ ଫେରି ଆସିଲା କେବଳ ଦଶବର୍ଷୀୟ ବାଳକ ବିଜୟ ଶେଖର ଧୂଳିବୋଳା ଖାଲି ପାଦରେ, ଖାଲି ଦେହରେ !

ଖବର ପୂର୍ବରୁ ମିଳିଥିଲା । ଚନ୍ଦ୍ରଶେଖର, ମାହେଶ୍ୱରୀ, ନାଏବ, କେତେ ଜଣ ପରିଚାରକ, ଦୁଇ ଜଣ ପରିଚାରିକା, ସମସ୍ତେ ହଇଜାରେ ମରିଥିଲେ । ହଇଜା ତ ନୁହେଁ, ମହାମାରୀ ରାକ୍ଷସୀ, ଥରେ ଆବିର୍ଭାବ ହେଲେ ଗାଁ ଗାଁ ପଦା କରିଦେଇ ଯାଏ । ନିଜର ଶିକାର କରେ ଅସଂଖ୍ୟ ଲୋକଙ୍କୁ । ବିଜୟ ଆଶ୍ଚର୍ଯ୍ୟ ଭାବରେ ରକ୍ଷା ପାଇ ଯାଇଥିଲା ।

ସେଦିନ ଶୋଇବା ଘରର ପଲଙ୍କ ଛାଡ଼ି ନୀଳମଣି ଓହ୍ଲାଇଲେ । ବାରଣ୍ଡା ଅତିକ୍ରମ କରି ତଳ ମହଲାକୁ ମଧ୍ୟ ଓହ୍ଲାଇ ଆସିଲେ । ସ୍ୱାମୀଙ୍କର ଶୁଦ୍ଧିକ୍ରିୟା ବେଳକୁ ତାଙ୍କର ଦରମଲା ଦେହଟାକୁ ଧରାଧରି କରି ଅଣା ଯାଇଥିଲା ତଳକୁ, ପୋଖରୀ ତୁଠକୁ ଶାସ୍ତ୍ରାନୁମୋଦିତ କର୍ମସବୁ କରିବାପାଇଁ । ସାଙ୍ଗରେ ପଞ୍ଚାଏ ଆତ୍ମୀୟା ସ୍ତ୍ରୀଲୋକ ଥିଲେ, ଆଉ ଥିଲେ ବଡ଼ ଯାଆ ମାହେଶ୍ୱରୀ । ନିଷ୍ଠୁରତାର ସେ ଏକ ଚରମ ପର୍ଯ୍ୟାୟ । ସଧବାଙ୍କ ଭୂଷଣରେ ବିଭୂଷିତା ହୋଇ ଫେରିଲେ ଅନ୍ୟମାନେ । ସ୍ନାନ କରି ଧଳା ଥାନ ଲୁଗାରେ ଆବୃତ ନିରାଭରଣା ନିଃସ୍ୱତାର ମୂର୍ତ୍ତିମନ୍ତ ରୂପ ନୀଳମଣିଙ୍କୁ ଘରକୁ ନିଆଗଲା । ତାପରେ ଆଉ ଏତେ ଦିନ ଭିତରେ ସେ କେବେ ପାହାଚ୍‌ରେ ଓହ୍ଲାଇ ନଥିଲେ ।

ସେଦିନ ପଥର ପ୍ରତିମା ପାଲଟି ଥିବା ନୀଳମଣି ହଠାତ୍ ଜୀବନ୍ୟାସ ପାଇଲେ ଯେମିତି । ପାହାଚ୍ ମଝିରେ ଦେଖା ହୋଇଗଲା ବିଜୟ ସହିତ, ଶୋକ ବିହ୍ୱଳ, ଭୟାତୁର ଅସହାୟ ଅନାଥ ବିଜୟ ଯେ କି ଆଜିପର୍ଯ୍ୟନ୍ତ ଅସରନ୍ତି ଶୋଭାର ପ୍ରତିମା ଏହି ଦେବୀତୁଲ୍ୟ ନାରୀଟିକୁ ଦୂରରୁ ଦେଖି ଦେଖି ହିଁ ବଡ଼ ହୋଇଥିଲା । ଖୁଡ଼ୀଙ୍କ ପାଖକୁ ଯିବାର ଅନୁମତି ନଥିଲା । କିନ୍ତୁ ଶିଶୁର ସ୍ୱାଭାବିକ ପ୍ରବୃତ୍ତି ହେଲା ନିଷିଦ୍ଧ ଥିବା ବ୍ୟକ୍ତି ବା ବସ୍ତୁ ପ୍ରତି ଅଶେଷ

ଆଗ୍ରହାନ୍ୱିତ ହେବା । ଦୂରରୁ ଦେଖି ଦୂରରେ ରହି ରହି ଖୁଡ଼ୀମାଙ୍କ ପ୍ରତି କିପରି ଏକ ଭୟମିଶ୍ରିତ ଶ୍ରଦ୍ଧା ଅନୁଭବ କରୁଥିଲା ସେ ।

ଗୋଟିଏ ଛାତ ତଳେ ରହି ମଧ୍ୟ ପରସ୍ପର ସହିତ ଅପରିଚିତ ଥିଲେ ସେମାନେ । କିନ୍ତୁ ସେ ମୁହୂର୍ତ୍ତରେ ଦୁହେଁଯାକ ଏକା ସଙ୍ଗେ ଅନୁଭବ କଲେ ଏକ ଅକଥନୀୟ ବେଦନା; ସେ ବେଦନା-ବୋଧରେ ଥିଲା ଏକ ଆଶ୍ଚର୍ଯ୍ୟ ପ୍ରକାର ଐକ୍ୟ । ଶୋକର ଉଚ୍ଛ୍ୱସିତ ଆବେଗ ମଧ୍ୟ ଥିଲା ଏକା ପ୍ରକାରର । ନୀଳମଣି ଅନାଥ ହୋଇଥିଲେ ଷୋହଳ ବର୍ଷ ବୟସରେ, ବିଜୟ ଅନାଥ ହୋଇଗଲା ମାତ୍ର ଦଶବର୍ଷ ବୟସରେ ।

ପୂର୍ବର ସେ ଶୋକ ଯେପରି ଆଉ ଥରେ ନୂଆକରି ଉଦ୍‌ବେଳିତ କରି ପକାଇଲା ନୀଳମଣିଙ୍କୁ । ଅସହାୟ ବାଳକଟିକୁ କୁଣ୍ଢାଇ ପକାଇ ପାଟିକରି କାନ୍ଦି ଉଠିଲେ ସେ । ନିଜ ସ୍ୱାମୀଙ୍କ ମୃତ୍ୟୁ ସମୟରେ ନୀଳମଣି ଏହିପରି କାନ୍ଦି ନଥିଲେ । ବିଜୟ ମଧ୍ୟ କାନ୍ଦୁଥିଲା ।

ଏକାପ୍ରକାର ଅସହାୟତା, ନିଃସଙ୍ଗତା, ବ୍ୟଥା ଓ ବେଦନା ସୃଷ୍ଟି ହୋଇ ଦୁଇଟି ପ୍ରାଣକୁ ଯେପରି ଏକ ତନ୍ତ୍ରୀରେ ବାନ୍ଧି ଦେଲା । ପାଷାଣୀ ଅହଲ୍ୟା ପାଷାଣତ୍ୱରୁ ମୁକ୍ତି ପାଇ ପ୍ରଭୁ ଶ୍ରୀରାମଙ୍କର ଚରଣ ଯୁଗଳକୁ ନିଜର ଲୁହ ଧାରରେ ଧୋଇ ଦେଲା ଭଳି ବାଳକ ବିଜୟର ମଥାକୁ ନିଜ ଲୁହ ଧାରରେ ଧୋଇ ଦେଲେ ନୀଳମଣି !

ସେ ଦୃଶ୍ୟ ଉପସ୍ଥିତ ଥିବା ସମସ୍ତଙ୍କ ଆଖିରୁ ସେଦିନ ଲୁହ ଝରାଇ ଥିଲା ।

ନୀଳମଣି ଏଥର ସଜାଗ ହେଲେ । ଜଣେ ଦକ୍ଷ ନାବିକ ପରି ସମ୍ପତ୍ତିର ବିରାଟ ଦାୟିତ୍ୱ ନେଲେ ନିଜ ହାତକୁ, ବିଜୟକୁ ମଣିଷ କରିବାକୁ ପଡ଼ିବ । କର୍ମଚାରୀମାନେ ବିସ୍ମିତ ହୋଇ ଗଲେ । ନିହାତି ସରଳ, ନିହାତି ନିର୍ବୋଧ ପରି ଦିଶୁଥିବା ନୀଳମଣିଙ୍କ ଭିତରେ ଲୁଚି ରହିଥିଲା ଅପୂର୍ବ ବିଚକ୍ଷଣତା, ଅନମନୀୟତା, ତୀକ୍ଷ୍ଣ ବୁଦ୍ଧି ଓ ଆଶ୍ଚର୍ଯ୍ୟ ପ୍ରକାରର କାର୍ଯ୍ୟଦକ୍ଷତା । ପରିସ୍ଥିତିର ସୁଯୋଗ ନେଇ ଯେଉଁମାନେ ପ୍ରତାରଣା କରିବାକୁ ଆଗେଇ ଆସିଥିଲେ, ସ୍ତମ୍ଭିତ ହୋଇ ଫେରିଲେ । ଖାଲି ସେତିକି ନୁହେଁ, ଅଳ୍ପ ବୟସୀ ତରୁଣୀ ବିଧବା ସ୍ତ୍ରୀ ଲୋକଟିକୁ ଭୟ କରି ଚଳିଲେ ସେହି ଦିନଠାରୁ !

ବିଶ୍ୱସ୍ତ, ଅନୁଗତ କେତେ ଜଣ ଅଭିଜ୍ଞ କର୍ମଚାରୀଙ୍କ ସାହାଯ୍ୟ ନେଇ ନୀଳମଣି ହିଁ ହେଲେ ଏ ଘରର ଏକଛତ୍ର ଅଧିକାରିଣୀ, ସର୍ବମୟୀ କର୍ତ୍ତ୍ରୀ ।

ସେତେବେଳେ ପୂର୍ଣ୍ଣ-ଯୌବନ ଦେହରେ ତରଙ୍ଗ ତୋଳୁଥିଲା । ବୈଧବ୍ୟର କଠୋର ସଂଯମ ଭିତରେ, ନାନାପ୍ରକାର ନିର୍ଜଳ-ଉପବାସ ବ୍ରତର ନିୟମ ନିଷ୍ଠା ଭିତରେ ରହି ମଧ୍ୟ ପ୍ରଜ୍ୱଳିତ ଅଗ୍ନିଶିଖା ପରି ରୂପର ନିଆଁରେ ଯେମିତି ଜଳୁ ଥିଲେ ନୀଳମଣି ! ତାଙ୍କର ସେହି ଅସାଧାରଣ ରୂପରାଶିକୁ ଯେ ଦେଖୁଥିଲା ସେ ମୁହୂର୍ତ୍ତକ ପାଇଁ ସ୍ତବ୍ଧ ହୋଇ ଯାଉଥିଲା, ନିଜକୁ ଭୁଲି ଯାଉଥିଲା,

ପର ମୁହୂର୍ତ୍ତରେ ଦୁଃଖରେ ଅଭିଭୂତ ହୋଇ ପଡୁଥିଲା ମଧ୍ୟ । ନୀଳମଣିଙ୍କ ନିରାଭରଣ ଶୁଭ୍ର ବୈଧବ୍ୟ ବେଶ ଆଖିରେ ବିନ୍ଧି ହୋଇ ଯାଉଥିଲା ଛୁଞ୍ଚିମୁନ ପରି ଏକ ଅସହ୍ୟ ଜ୍ୱାଳା ସୃଷ୍ଟି କରି । ରୂପଶିଖାର ସେହି ଦେଦୀପ୍ୟମାନ ଜ୍ୟୋତି ସ୍ନିଗ୍‌ଧ ସୁଶୀତଳ ନୁହେଁ, ଜ୍ୱାଳାମୟୀ । ସେ ଶିଖାକୁ ଦେଖି କେହି ଆକୃଷ୍ଟ ହୋଇ ପାରିବ ନାହିଁ, ବରଂ ଭୟରେ ପଛଘୁଞ୍ଚା ଦେବ ।

ବିଶ୍ୱନାଥଙ୍କ ମତରେ ସେ ଅଗ୍ନି ହେଉଛି କେବଳ ଆତ୍ମସଂଯମର ରୂପ ! କଲିକତାରେ ପଢୁଥିବାବେଳେ ବିଦ୍ୟାସାଗର ପ୍ରଭୃତି ଅତି ମହତ୍ ଲୋକଙ୍କ ସଂସ୍ପର୍ଶରେ ସେ ଆସିଥିଲେ । ବାଲ୍ୟବିଧବାମାନଙ୍କ ଦୁର୍ଦ୍ଦଶା କଥା ଭାବି ସହାନୁଭୂତିଶୀଳ ହୋଇଥିଲେ । ନୂଆକରି ମଥା ଟେକୁଥିବା ବ୍ରାହ୍ମଧର୍ମ ପ୍ରତି ମଧ୍ୟ ଅନୁରକ୍ତ ହୋଇ ପଡ଼ିଥିଲେ । ଖାଲି ସେତିକି ନୁହେଁ, ଆରମ୍ଭ ହୋଇ ଆସୁଥିବା ସ୍ୱଦେଶୀ ଆନ୍ଦୋଳନ ମଧ୍ୟ ତାଙ୍କ ଉପରେ ପ୍ରଭାବ ପକାଇ ଥିଲା । ବିଶ୍ୱନାଥ କହୁଥିଲେ,—ଏକ ସୁନାର ଯୁଗ ଆସିବ, ମଣି, ଦେଖିବ ତମ ଆଖି ଆଗରେ ଏ ଦେଶର କେତେ ପରିବର୍ତ୍ତନ ହୋଇଯିବ ।

x x x

ଦ୍ୱାର ମୁହଁରେ ପାଦ ଶବ୍ଦ ହେଲା । ସୁଦାମ ଫେରି ଆସିଛି । ତକିଆଗୁଡ଼ିକୁ ଠିକଣା ଭାବରେ ସଜାଡ଼ି ଦେଇ ପଲଙ୍କ ବାଡ଼କୁ ଆଉଜି ବସିବାକୁ ସେ ସାହାଯ୍ୟ କଲା ନୀଳମଣିଙ୍କୁ । ପାଖରେ ରଖାଯାଇଥିବା ଛୋଟିଆ ଟେବୁଲଟିକୁ ପାଣି ଛିଞ୍ଚି ପରିଷ୍କାର କରି ଦେଲା ।

ସମୟ ବଦଳିଲା । ଆଚାର ନିଷ୍ଠା ବଦଳିଲା । ବୟସ ବି କେତେକ କଥାକୁ ବାଧକରି ବଦଳାଇ ଦିଏ । ଦେହଟା ଯେତେବେଳେ ଜୀର୍ଣ୍ଣ ହୋଇଯାଏ, ରୋଗର ଜୀବାଣୁମାନେ ଭିତରେ ଭିତରେ କ୍ଷୟ କରିବା ଆରମ୍ଭ କରିଦିଅନ୍ତି, ସେତେବେଳେ ବାଧ ହୋଇ ମଣିଷକୁ ବଦଳିବାକୁ ପଡ଼େ ।

ନୀଳମଣି ମନେ ପକାଇଲେ—ସେତେବେଳେ ଏ ଘରଟା ଏକାବେଳକେ ନିୟମ ନିଷ୍ଠାର ଗୋଟାଏ ଦୁର୍ଗ ଥିଲା । ମାଉସୀ ମା ସ୍ୱର୍ଣ୍ଣଲତା ଅତି ନିଷ୍ଠାପରାୟଣା ଥିଲେ । ବିଶ୍ୱନାଥଙ୍କ ନିଜର ମାଉସୀ ସେ, ପୁଣି ଦେଖିବାକୁ ଗଲେ ମା ମଧ୍ୟ । ବିଶ୍ୱନାଥଙ୍କ ମାତୃବିୟୋଗ ପରେ ମଣିଷ କରିଥିଲେ ତାଙ୍କୁ ।

ସ୍ୱର୍ଣ୍ଣଲତା ମାତ୍ର ନଅ ବର୍ଷ ବୟସରେ ବିଧବା ହୋଇ ଯାଇଥିଲେ । ସେ ଏ ଘରେ ଆଶ୍ରିତା ରୂପେ ରହୁ ରହୁ ପରବର୍ତ୍ତୀ କାଳରେ ଘରର ମୁରବୀ ହୋଇ ଯାଇଥିଲେ । କିନ୍ତୁ ଆଚରଣ ତାଙ୍କର ଥିଲା ଅତି ସରଳ । ରାନ୍ଧିବା ପାଇଁ ସ୍ୱଗୋତ୍ରର କେତେ ଜଣ ବ୍ରାହ୍ମଣୀ ରହିଥିଲେ ମଧ୍ୟ ନିଜ ହାତରେ ରନ୍ଧାବଢ଼ା କରିବା ସ୍ୱର୍ଣ୍ଣଲତାଙ୍କର ଏକ ଅଭ୍ୟାସ ଥିଲା । ଆବାଲ୍ୟରୁ ସମସ୍ତ ସୁଖସମ୍ଭୋଗରୁ ବଞ୍ଚିତା ମାଉସୀ ମା'ଙ୍କୁ କୌଣସି ଦିନ କେହି ମୁହଁ ଶୁଖାଇ ରହିବା ଦେଖି ନାହାନ୍ତି । ସବୁବେଳେ ମୁହଁରେ ତାଙ୍କର ହସ । କଥା କଥାକେ ଢଗ ମେଲି ସମସ୍ତଙ୍କୁ ହସାଉ ଥାଆନ୍ତି, ନିଜେ

ହସୁ ଥାଆନ୍ତି । ସମସ୍ତେ ହସିଲେ ତାଙ୍କ ସଂସାର ହସେ । ପର ଆପଣା ବୋଲି ଜ୍ଞାନ ନଥାଏ । କେହି କେହି ଅବଶ୍ୟ ତାଙ୍କୁ ଅର୍ଦ୍ଧ ପାଗଳୀ ବୋଲି ମଧ୍ୟ କହୁଥିଲେ ।

ବିଦ୍ୟାସାଗର, ରାମମୋହନ ରାୟଙ୍କ କଥା କହିଲାବେଳେ ନିଜ ମାଉସୀଙ୍କ କାହାଣୀ ଶୁଣାଉଥାନ୍ତି ବିଶ୍ୱନାଥ । ନିଜ ପରିବାରର କାହାଣୀ ଶୁଣାଉଥାନ୍ତି ନୀଳମଣିଙ୍କୁ ।

ରୂପଦେଈପୁର ଜମିଦାର ଚୌଧୁରୀ ନାରାୟଣ ଚନ୍ଦ୍ର ଦାଶଙ୍କ ଦ୍ୱିତୀୟା ପତ୍ନୀ ରୂପେ ହେମଲତା ଏ ପରିବାରକୁ ଆସିଥିଲେ । ଆସିଥିଲେ ଏକ ଅତି ସାଧାରଣ ନିଷ୍ଠାପର କୁଳୀନ ବ୍ରାହ୍ମଣ ପରିବାରରୁ । ବାପଘରେ ଆର୍ଥିକ ସ୍ୱଚ୍ଛଳତା ନ ଥିଲା ।

କହିବାକୁ ଗଲେ ବିଶ୍ୱନାଥଙ୍କ ମା ହେମଲତା କୁଟୀରରୁ ଆସି ପ୍ରାସାଦର ଅଧିଷ୍ଠାତ୍ରୀ ହୋଇଥିଲେ । ଦରିଦ୍ର ପରିବାରରୁ ଆସିଥିଲେ ମଧ୍ୟ ମନ ତାଙ୍କର ବହୁତ ଉଚ୍ଚ ଥିଲା, ତେଣୁ ସପତ୍ନୀପୁତ୍ର ଚନ୍ଦ୍ରଶେଖରଙ୍କୁ ସେ ଅନାଦର କରି ନଥିଲେ, ଆଉ ବୟସ ଅତି କମ ହୋଇଥିଲେ ମଧ୍ୟ ଅତି ବିଚକ୍ଷଣା ବର୍ଷୀୟସୀ ସୁଗୃହିଣୀ ପରି ନିଜର ଘର ସଂସାରକୁ ପରିଚାଳିତ କରିଥିଲେ । ଯେତେଦିନ ବଞ୍ଚି ଥିଲେ ଅତି ଆନନ୍ଦରେ ହିଁ ଜୀବନ କଟାଇଥିଲେ ।

କିନ୍ତୁ ଅଭାଗିନୀ ସ୍ୱର୍ଣ୍ଣଲତା ? ସେ ଅତି ଦୁଃଖିନୀ ।

ସ୍ୱର୍ଣ୍ଣଲତା ହେମଲତାଙ୍କ ବଡ଼ ଭଉଣୀ । ଦୁଇ ଜଣଯାକ ଉଦାରମନା, ସ୍ନେହପରାୟଣା; କିନ୍ତୁ ଦୁଃସାହସିନୀ । ଗତାନୁଗତିକ ରାସ୍ତାରେ ପାଦ ପକାଇ ଚାଲିବା ବଦଳରେ ସେମାନେ ରାସ୍ତାକୁ ବଦଳାଇଲେ । ଏମିତି ସାହସ କଲେ କିପରି ?

ଥରେ ଥରେ ଏମିତି ହୁଏ । କାଳର ଧର୍ମ ହିଁ ହେଉଛି ଏଇୟା, ଜୀବନର ଧର୍ମ ହିଁ ଏଇୟା । ପାରିପାର୍ଶ୍ୱିକ ଅବସ୍ଥାକୁ ଦେଖି ଆପେ ଆପେ ବିବର୍ତ୍ତନ ଆସେ ସବୁଥିରେ । ନିଜର ଗତି ପଥରେ ବହୁତ କାଳରୁ ବହି ଚାଲିଥିଲେ ମଧ୍ୟ ନଦୀ ହଠାତ୍ ଦିନେ ଗତିପଥ ବଦଳାଇ ଦେଇପାରେ । ବିପ୍ଳବ ମଧ୍ୟରୁ ହିଁ ଜୀବନ ସୃଷ୍ଟି ହୋଇଛି, ତେଣୁ ତା'ର ମୌଳିକ ସତ୍ତାରେ ନିହିତ ରହିଛି ବିପ୍ଳବର ବୀଜ । ସେହି ବିପ୍ଳବ ଦେଖାଦିଏ ମନୁଷ୍ୟର ଚିନ୍ତାରେ, ଆଉ ଚିନ୍ତା ହିଁ ନୂତନ ଧାରାର ଜନ୍ମଦାତ୍ରୀ । ଘଟଣା ସହିତ ଘଟଣାର ସଂଯୋଗରେ ଲେଖା ମଣିଷ ଜୀବନର କାହାଣୀ—ତାର ଇତିହାସ । କାହାଣୀଗୁଡ଼ିକ ବୁଢ଼ୀମାଠାରୁ ଶୁଣିଥିବା ରୂପ କଥା ପରି ମନେହେଲେ ମଧ୍ୟ ବାସ୍ତବ ଘଟଣା ଉପରେ ହିଁ ପ୍ରତିଷ୍ଠିତ ।

ସଂସାରରେ ସମସ୍ତ ପ୍ରକାର କର୍ମ ସୁଚାରୁରୂପେ ଅନୁଷ୍ଠିତ ହେବାପାଇଁ କେଜାଣି କେବେ ସମାଜରେ ଶ୍ରେଣୀ ବିଭାଗ ହୋଇଥିଲା । ସେ କାଳରେ ପ୍ରଜାବତ୍ସଳ ରାଜାମାନେ ଗ୍ରାମ ବା ଶାସନ ସବୁ ବସାଉ ଥିଲେ । ଭୂମିଦାନ କରି ଏହି ଚାରି ବର୍ଣ୍ଣର ଲୋକଙ୍କୁ ଆଣି ଗ୍ରାମମାନ ସ୍ଥାପନ କରୁଥିଲେ । ଗଜପତି ମହାରାଜା ବ୍ରାହ୍ମଣମାନଙ୍କୁ ଭୂମିଦାନ କରି ସମ୍ମାନ ସୂଚକ ଶିରପା ବା

ପାଟଶାଢ଼ି ସେମାନଙ୍କ ମୁଣ୍ଡରେ ବାନ୍ଧି ସମ୍ମାନିତ କରୁଥିଲେ, ସନନ୍ଦ ଦେଉଥିଲେ । ଏହି ଭୂମିଦାନ ଅନୁଷ୍ଠାନ ଅନୁଷ୍ଠିତ ହେବା ପୂର୍ବରୁ ଡେଙ୍ଗୁରା ବଜାଇ ଘୋଷଣା କରି ଦିଆଯାଉଥିଲା ସମ୍ମାନିତ ବ୍ୟକ୍ତିମାନଙ୍କ ନାମ ।

ହେମଲତା ଓ ସ୍ୱର୍ଣ୍ଣଲତାଙ୍କ ପ୍ରପିତାମହଙ୍କୁ ଜମିଦାନ ଦେବା ପାଇଁ ନାମ ଘୋଷଣା କରାଯାଇଥିଲା ରାଜାଙ୍କ ପକ୍ଷରୁ । ବେଦ, ପୁରାଣ, ଧର୍ମ ଶାସ୍ତ୍ରରେ ନିପୁଣ ମା ସରସ୍ୱତୀଙ୍କ ଭଣ୍ଡାର ରକ୍ଷକ ଜ୍ଞାନୀ, ଦାନୀ ବ୍ରାହ୍ମଣମାନେ ସାଧାରଣତଃ ଧନହୀନ, ଦରିଦ୍ର ଥିଲେ ।

ସେମାନଙ୍କୁ ସବୁବେଳେ ରାଜା କିମ୍ବା ଧନୀ ଯଜମାନଙ୍କ ଅନୁଗ୍ରହକୁ ଅପେକ୍ଷା କରିବାକୁ ହେଉଥିଲା । ଗଜପତି ରାଜାଙ୍କ ଘୋଷଣା ହେମଲତାଙ୍କ ଘରେ ଆନନ୍ଦର ଲହରୀ ତୋଳିଥାଏ । ହଠାତ୍ ଆକସ୍ମିକ ଭାବରେ ବିପଦ ଦେଖାଦେଲା । ହେମଲତାଙ୍କ ପ୍ରପିତାମହୀ ସେତେବେଳକୁ ଆସନ୍ନ-ପ୍ରସବା, ଠିକ୍ ସମ୍ମାନ ମିଳିବାର ପୂର୍ବଦିନ ସନ୍ଧ୍ୟାରେ ତାଙ୍କର ପ୍ରସବବେଦନା ଆରମ୍ଭ ହେଲା । ଶିଶୁ ଭୂମିଷ୍ଠ ହେଲେ ପରିବାରଟି ଅଶୌଚ ହେବେ ଓ ଅଶୌଚ ଅବସ୍ଥାରେ ଗୃହକର୍ତ୍ତା ରାଜାଙ୍କଠାରୁ ସମ୍ମାନସୂଚକ ଶିରଭୂଷଣ ତଥା ଜମିଦାନ ଗ୍ରହଣ କରିପାରିବେ ନାହିଁ । ସମ୍ମୁଖରେ ଯେପରି ବଜ୍ରପାତ ହେଲା, ସମସ୍ତଙ୍କର ବୁଦ୍ଧି ହଜିଗଲା, ବାଟିଏ ଜମି ମିଳିବାର ସମ୍ଭାବନା ଉଭେଇଗଲା । ଚିରକାଳ ଦରିଦ୍ରତାର ସେହି ଅନ୍ଧକାର ଘନାଇ ଆସିଲା ଆଖି ଆଗରେ ।

ଏହି ଉପସ୍ଥିତ ମହାବିପତ୍ତିରୁ ଉଦ୍ଧାର ପାଇବାପାଇଁ ପ୍ରପିତାମହଙ୍କ ପ୍ରତ୍ୟୁତ୍ପନ୍ନମତି ବିଧବା ଜନନୀ ପୁତ୍ରକୁ ପରାମର୍ଶ ଦେଲେ ସବାରୀ ଓ ଗଉଡ଼ ଯୋଗାଡ଼ କରି ବୋହୂକୁ ସଙ୍ଗେ ସଙ୍ଗେ ପିତୃଗୃହକୁ ପଠାଇ ଦେବାକୁ ! ଦୂରକୁ ଚାଲିଗଲେ ସନ୍ତାନ-ଜନ୍ମର ସମ୍ବାଦ ସଙ୍ଗେ ସଙ୍ଗେ ମିଳିବାର ସମ୍ଭାବନା ନାହିଁ । ଯେତେବେଳେ ମିଳିବ ସେତେବେଳକୁ ରାଜା ସମ୍ମାନ ସହିତ ଜମିଦାନ କରି ସାରିଥିବେ ।

ମାତା ପୁତ୍ର ଦୁହେଁ ମିଶି ସେହି ବିପଜ୍ଜନକ ସିଦ୍ଧାନ୍ତ ଗ୍ରହଣ କଲେ । ସ୍ୱାମୀଙ୍କ ବିପତ୍ତି ଓ ପରିବାରର ବିପତ୍ତି ଦେଖି ହତଭାଗ୍ୟ ବଧୂଟିର ଆଉ ଆପତ୍ତି ଜଣାଇବାର ଉପାୟ ନ ଥିଲା । ସ୍ୱାମୀ ଓ ଶାଶୂ ମିଶି ଶିବିକା ଓ ବିଶ୍ୱସ୍ତ ବାହକମାନଙ୍କୁ ଯୋଗାଡ଼ କରି ସଙ୍ଗରେ ଅତି ବିଶ୍ୱସ୍ତ ଜଣେ ଧାଈକୁ ଦେଇ ସେହି ରାତିରେ ସାହି ପଡ଼ିଶା କେହି କିଛି ଜାଣିବା ପୂର୍ବରୁ ପିତୃ ଗୃହକୁ ସେ ଅବସ୍ଥାରେ ପଠାଇ ଦେଲେ ବୋହୂ ବିମଳାକୁ !

ଶ୍ରାବଣ ମାସ । ନିବିଡ଼ ଅନ୍ଧକାରାଚ୍ଛନ୍ନ ବର୍ଷଣ-ଉନ୍ମୁଖ ରାତ୍ରି । ବନ୍ଦ ଶିବିକା ଭିତରେ ଗର୍ଭବେଦନାରେ ଅସ୍ଥିର ବିମଳା । ଯନ୍ତ୍ରଣାକୁ ସହ୍ୟ କରି ସମସ୍ତ ଚିତ୍କାରର କଣ୍ଠରୁଦ୍ଧ କରି ବସି ରହିଥିଲେ ସେ । ବାହକମାନେ ଦ୍ରୁତ ଗତିରେ ଚାଲିଥାନ୍ତି, ମଶାଲଧାରୀ ଚାଲିଥାନ୍ତି, ପରିଚାରିକା ମଧ୍ୟ ଚାଲିଥାଏ । ଏକ ଗ୍ରାମ ପାରିହୋଇ ଅନ୍ୟ ଏକ ଗ୍ରାମର ସୀମାନ୍ତରେ

ସବାରୀ ପହଞ୍ଚିଗଲା । ତେବେକେ ସେ କାଳର ଗ୍ରାମ୍ୟ ବଧୂ ବିମଳା ନୀରବ ଓ ନିସ୍ତବ୍ଧ ହୋଇ ରହିଥିଲେ । କିନ୍ତୁ କୌଣସି ବାଧା ନ ମାନି ଅସହାୟା ନାରୀର ଆଖିରୁ ଅବାରିତ ଭାବରେ ଝରି ଯାଉଥିଲା ଅଶ୍ରୁର ଧାରା । ସ୍ୱାମୀ ଓ ଶାଶୂଙ୍କ ପ୍ରତି ଉଚ୍ଛ୍ୱସିତ ହୋଇ ଉଠୁଥିଲା ରୁଦ୍ଧ ଅଭିମାନ । କାହିଁ କେତେ ଦୂରରେ ଯାଇ ବାପଘର । ଯଦି କିଛି ଅସୁବିଧା ହୋଇଯାଏ, ଯଦି ଚୋର ତସ୍କର ହାବୁଡ଼ନ୍ତି, ଯଦି ବର୍ଷା, ବଜ୍ର ପଡ଼େ, ଯଦି ଏହିପରି ଯାଉ ଯାଉ ଗର୍ଭସ୍ଥ ଶିଶୁ ସହିତ ତାଙ୍କର ପ୍ରାଣହାନି ଘଟେ ?

ଆତଙ୍କରେ କଣ୍ଟକିତ ହୋଇଯାଇ ଘରର ଇଷ୍ଟଦେବୀ ଦୁର୍ଗା ଠାକୁରାଣୀଙ୍କୁ ମନେ ମନେ ଡାକୁଥିଲେ ବିମଳା–ଦୁର୍ଗେ ଦୁର୍ଗତିନାଶିନୀ ମା, ହେ ମା, ତୁ ହିଁ ମୋର ଭରସା, ମୋର ସହାୟ, ମୋର ଏକମାତ୍ର ଆଶ୍ରୟ । ଦୁର୍ଗା, ଦୁର୍ଗା, ମା ଗୋ–

ଆକାଶରେ ଘନ ଘନ ଭାବରେ ବିଦ୍ୟୁତ୍ ସ୍ଫୁରିତ ହେଉଥିଲା । ବଜ୍ର ପଡୁଥିଲା । ବର୍ଷା ହୋଇ ନଥିଲା । ଅସହ୍ୟ ଯନ୍ତ୍ରଣା, ତେବେକେ ସେ କାଳର ଶିକ୍ଷା ଅନୁସାରେ କଣ୍ଠସ୍ୱରକୁ ରୁଦ୍ଧ କରି ରଖିଥିଲେ ସେ । ଦାନ୍ତର ଚାପରେ ଓଠ କଟିଯାଇ ଝରି ଆସିଥିଲା ରକ୍ତ । ହାତକୁ ମୁଠା କରି ପଥର ପ୍ରତିମା ପରି ବସି ରହିଥିଲେ ବିମଳା ।

ଆଉ ଗୋଟିଏ ଗାଁ ପାର ହୋଇଗଲେ ସେମାନେ । ଗାଁ ଶେଷର ନିଘଞ୍ଚ ଆମ୍ବ ବଗିଚା ଭିତର ଦେଇ ଚାଲିଥାନ୍ତି । ହଠାତ୍ ସବାରୀ ଭିତରୁ ଏକ ହୃଦୟବିଦାରୀର୍ଣ୍ଣକାରୀ ଚିତ୍କାର ଶୁଣାଗଲା ବିମଳାଙ୍କର । ଗୋଟାଏ ବଡ଼ ଆମ୍ବ ଗଛ ମୂଳରେ ଶବାରିଟିକୁ ରଖି ଦେଇ ବାହକମାନେ ଦୂରକୁ ଚାଲିଗଲେ । ସାଙ୍ଗରେ ଯାଇଥିବା ଧାଈଟି ସବାରୀର ଦ୍ୱାର ଖୋଲି ମଶାଲ ଆଲୁଅରେ ଦେଖିଲା– ବିମଳା ମୂର୍ଚ୍ଛା ହୋଇ ପଡ଼ିଛନ୍ତି, ଶିଶୁପୁତ୍ର ଜନ୍ମ ହୋଇଛି !

ସମସ୍ତ ପରିସ୍ଥିତିକି ଉପହାସ କରି ନବଜାତକ କାନ୍ଦି ଉଠିଲା ତାର ସ୍ୱରରେ !

ସ୍ଥାନଟି ବିପଦପୂର୍ଣ୍ଣ । ହିଂସ୍ର ଜନ୍ତୁଙ୍କ ଆକ୍ରମଣର ଆଶଙ୍କା ଥିଲା । ତେବେକେ ନିଆଁ ଜଳାଇ ସମସ୍ତେ ଅଟକି ରହିଲେ । କୌଣସି ପ୍ରକାର ବିପଦ ଘଟି ନଥିଲା ।

ମଣିଷର ଜୀବନରେ ମଝିରେ ମଝିରେ ଏହିପରି ସବୁ ଆଶ୍ଚର୍ଯ୍ୟ ପ୍ରକାର ଘଟଣାମାନ ଘଟି ତାକୁ ସତେ ଯେପରି ସଚେତନ କରାଇ ଦିଏ ଭଗବତ୍ ମହାଶକ୍ତିର ଉପସ୍ଥିତି ବିଷୟରେ ।

ବର୍ଷା ଦିନର ଦାରୁଣ ଦୁର୍ଯୋଗଭରା ଅନ୍ଧାର ରାତିରେ, ଜଙ୍ଗଲ ମଝିରେ, ସେହି ପରିସ୍ଥିତିରେ ସବାରୀ ଭିତରେ ଜନ୍ମ ହୋଇ ମଧ୍ୟ ସେ ଶିଶୁଟି ଅତି ସ୍ୱାସ୍ଥ୍ୟବାନ ହୋଇ ବଞ୍ଚି ରହିଲା ଅତି ଦୀର୍ଘକାଳ, ପ୍ରାୟ ଶତାୟୁ ହେଲା ପର୍ଯ୍ୟନ୍ତ । ପରିଚାରିକାର ସେବା ଯତ୍ନ ଫଳରେ ବିମଳା ମଧ୍ୟ ସାକ୍ଷମ ହୋଇଥିଲେ । ଭୋର୍ ହେବାପରେ ଶିବିକା ବାହକମାନେ ପୁଣି ଶିବିକାକୁ ଉଠାଇ ନେଇଥିଲେ କାନ୍ଧ ଉପରକୁ ।

ଏ କାହାଣୀ ମନଗଢ଼ା ନୁହେଁ । ସୂର୍ଯ୍ୟ, ଚନ୍ଦ୍ର, ତାରାପରି ଏହା ସତ୍ୟ, ହେଲେ ସେ କାଳର କାହାଣୀଟିଏ ।

ପିଲାଟି ଦିନରୁ ବିମଳା କବି-ପ୍ରତିଭାର ଅଧିକାରିଣୀ ଥିଲେ । ମୁହେଁ ମୁହେଁ ଗୀତ ତଥା କବିତା ରଚନା କରିବା ତାଙ୍କର ଏକ ଅଭ୍ୟାସ ଥିଲା । ଖାଲି ରଚନା ଶକ୍ତି ନୁହେଁ; ତାଙ୍କର ସ୍ମୃତିଶକ୍ତି ମଧ୍ୟ ଥିଲା ଅତି ପ୍ରଖର । ଏକ ଅଲୌକିକ ପ୍ରତିଭାମୟୀ ନାରୀ ଥିଲେ ସେ । ସେ କାଳର ନିୟମ ଅନୁସାରେ ଅକ୍ଷର ଶିକ୍ଷାର ସୁଯୋଗ ପାଇ ନଥିଲେ, କିନ୍ତୁ କିପରି କେଜାଣି ବୋଧହୁଏ କୌଣସି ସାକ୍ଷର ବାଳକ ହାତରେ ସ୍ୱରଚିତ ସମସ୍ତ ଗୀତି-କବିତା ଖାତାମାନଙ୍କରେ ଲେଖାଇ ରଖିଥିଲେ । ନିଜର ପୁତ୍ର ପାଇଁ ତାଙ୍କ ଜୀବନର ସେଦିନର ଏ ଘଟଣାଟିକୁ ବର୍ଣ୍ଣନା କରି ଏକ ଅତି ସୁନ୍ଦର କବିତା ରଚନା କରିଥିଲେ ସେ । ପୂରା ଘଟଣାଟିକୁ ଗୀତ ଆକାରରେ ଲେଖାଇ ଥିଲେ ।

ସେ ଗୀତ ଖାତାଟି କାଳକ୍ରମେ ଚୌଧୁରୀ ପରିବାରକୁ ଆସିଥିଲା ସ୍ୱର୍ଣ୍ଣଲତାଙ୍କର ସେ କାଳର ବିଶେଷତ୍ୱ ମଣ୍ଡିତ ଅତି ଛୋଟ ଗୋଟାଏ ଟିଣ ବାକ୍ସରେ ।

ବାଳିକାବଧୂ ନୀଳମଣି କୌତୂହଳରେ ସ୍ୱର୍ଣ୍ଣଲତାଙ୍କ ସେଇ ବାକ୍ସଟିକୁ ଦେଖୁ ଦେଖୁ ଖାତାଟିକୁ ପାଇଥିଲେ । ଆଜିଯାଏ ମଧ୍ୟ କେତେ ପଦ ମନେ ଅଛି ତାଙ୍କର ।

ଭୂମି ଦାନ ଦେବେ ରାଜା
ଶାଢ଼ି ବାନ୍ଧିବେ ଶିରେ
ବିପଦ ଉପସ୍ଥିତ ହେଲା ଆସି ଏ କାଳେ ।
ଅଣଉଚକୁ ଡରି ସଜ କଲେ ସବାରୀ
ଗଉଡ଼ଙ୍କୁ ଡାକିଲେ ସେ
ଦୁଃଖେ ମନକୁ ଭରି ।।
ନିଶା ଗର୍ଜେ ସାଇଁ ସାଇଁ
ଏକାକୀ ବସିଲି ତହିଁ
ବଜ୍ର ପଡ଼େ ରହି ରହି; ଦାରୁଣ ବିହି ଯେ ।।
ଗର୍ଭରେ ଦଶମାସ ନିଶତକାଳ
ସେହିଦିନ, ବାବୁରେ ଘରୁ ହେଲି ବାହାର,
ଘରର ଦୁର୍ଗା ମୋର ସଙ୍ଗତେ ଥିଲେ
ସେତେବେଳର କଷ୍ଟ ହରଣ କଲେ
ଏକାକୀ ନାରୀ, ବନସ୍ତକୁ ହେଲି ପାରି ଯେ ।

ସକଳ କଷ୍ଟରୁ ବଳି ଗରଭ କଷ୍ଟ

ମତେ ପଡ଼ିଲା ଆସି ଘୋର ସଙ୍କଟ

ଆଖିରୁ ଝରଇ ଶ୍ରାବଣ ଧାରା

ଅନ୍ଧାର ଦିଶଇ ଜଗତ ସାରା

ଅବଳା ନାରୀ, ଦୁର୍ଗା ହେ, ରଖ କହିଲି ଯେ ।

ମଧୁବନ ବୋଲି ଆମ୍ଭ କାନନ

ହୋଇଲୁ ସେଠି ବାବୁ ତୁହି ଜନମ

ମଧୁବନେ କୃଷ୍ଣ ଲୀଳା ସୁମରି

ବ୍ରଜବନ୍ଧୁ ନାମ ଦେଲେ ତୋହରି ।

ନିରେଖି ମୁଖ, ପାଶୋରିଲି ମୁହିଁ ସକଳ ଦୁଃଖ ଯେ ।।

x x x

ଭାତ ତିଅଣ ଆଣି ସଜାଡ଼ି ଦେଲେଣି ପଦବୋଉ । ଶେଯ ଉପରେ ବସି ବସି ନୀଳମଣି ଭାତ ଖାଇବେ ! ସବୁକାଳେ ମଠା ଲୁଗା ପାଲଟି ଶୁଦ୍ଧପୂତ ବାତାବରଣ ଭିତରେ ନିଜର ସ୍ୱତନ୍ତ୍ର ପୂଜା କକ୍ଷରେ ବସି ଭାତ ଖାଉଥିଲେ ସେ । ଘରର ପରିଷ୍କାର ଚଟାଣ ଉପରେ ପାଣି ଛିଞ୍ଚି ପିଢ଼ା ପାଣି ରଖି ଠାଆ କରା ହେଉଥିଲା । ଶୂଦ୍ରମାନଙ୍କ ଛାଇ ପଡ଼ିବ ନାଇଁ, ଛାଇ ପଡ଼ିବା ତ ଦୂରର କଥା, ସ୍ୱର ମଧ ଶୁଭିବ ନାହିଁ ଯେପରି, ସେହି ବନ୍ଦୋବସ୍ତ ହୋଇଥାଏ ।

ହୁଏତ ସ୍ୱାସ୍ଥ୍ୟରକ୍ଷାକୁ ମୂଳ ଆଧାର କରି ଗୋଟିଏ ଦେବ ମନ୍ଦିର ପରି ରନ୍ଧନଶାଳାକୁ ଶୁଚିମନ୍ତ କରି ରଖା ଯାଉଥିଲା । ଖାଇବାର ବ୍ୟବସ୍ଥା ମଧ ଥିଲା ସେହିପରି । ନିରାମିଷ ରନ୍ଧାର ବ୍ୟବସ୍ଥା ପାଇଁ ଏକ ସମ୍ପୂର୍ଣ୍ଣ ଅଲଗା ରନ୍ଧାଘର । ଆଉ ଭଣ୍ଡାର ଘର ? ବାସିଲୁଗା ପିନ୍ଧି ତା ଭିତରକୁ ଯିବାର ନିୟମ ନାହିଁ । ଆମ୍ବୁଲ, ଆଚାର, ଆମ୍ବସଢ଼ା, ବିଭିନ୍ନ ପ୍ରକାର ବଡ଼ି ସବୁକୁ ମଧ ଅତି ଶୁଦ୍ଧପୂତ ଭାବରେ ମଠା ପିନ୍ଧି ତିଆରି କରୁଥିଲେ ସେ କାଳରେ ।

ପଦବୋଉ କହିଲା—ବଡ଼ ମା, ଖାଅ ।

ହାତ ଧୋଇ ଖାଇବାରେ ମନ ଦେଲେ ନୀଳମଣି । ସବୁ ଦିନର ସେହି ଏକା ପ୍ରକାରର ଖାଦ୍ୟ । ସରୁ ଅରୁଆ ଚାଉଳର ଭାତ ଗଣ୍ଡାଏ, ସନ୍ତୁଳା ଟିକିଏ, ସିଝାହୋଇ ଭଜା ଯାଇଥିବା ପରିବା ଦି'ଖଣ୍ଡ, ଅଳ୍ପ ମୁଗ ଡାଲି, ମଞ୍ଜାରାଇ, ଶାଗ ଟିପାଏ । ଭାତରେ, ଡାଲିରେ ଗୁଆଘିଅ ଟିକିଏ ପଡ଼ିଛି, ଘରମରା ଘିଅ ବୋଲି ମହକୁଛି । ନା, ଆଜି ଟିକିଏ ବିଶେଷ ଜିନିଷ ଆସିଛି । — ଆଚାର ଟିକିଏ—ଲେମ୍ବୁ ଆଚାର ।

ପଥୁରି ଗିନାଟାକୁ ଏପଟକୁ ରଖି ଦେଉ ଦେଉ ଶଙ୍କିତ କଣ୍ଠରେ ପଦବୋଉ କହିଲା, ମା' ମଁ, ଆଜି ଟିକିଏ ଆଚାର ଆଣି ଦେଇଛି । ହେଲେ ସାନ ବୋହୂ ମା ଜାଣିଲେ ନାଁ ମୁଁ ଆଉ ରକ୍ଷା ପାଇବିନି ।

ସାନ ବୋହୂ ମା—ଅର୍ଥାତ୍ ସୁଜାତା । ସୁଜାତା ଡାକ୍ତରାଣୀ, ତେଣୁ ବାତରୋଗୀ ପକ୍ଷରେ କି କି ଜିନିଷ କ୍ଷତିକାରକ ସେ କଥା ଭଲ ରୂପେ ସେ ଜାଣିଛି; ସେଥିପାଇଁ ଏ ନିଷେଧାଜ୍ଞା ଜାରୀ କରିଛି ସେ ।

ନୀଳମଣିଙ୍କଠାରୁ କିଛି ଉତ୍ତର ନ ପାଇ ପଦବୋଉ ସନ୍ତୁଷ୍ଟ ହେଲା ନାହିଁ । ପୁଣି କହି ବସିଲା, ସନ୍ତୁଳାରେ ଗୋଟାଏ ଶୁଖିଲା ଲଙ୍କା ଫୁଟାଇ ଦେଇଛି ମା, ପାଟିଟାତ ତମର ସିଝିଗଲା ପରି ଲାଗୁଥିବ ସବୁଦିନ ସେଇୟା ଖାଇ ଖାଇ ।

ପଦବୋଉ ଭାବିଥିଲା—ସୁଜାତା ଉପରେ ନୀଳମଣି ରାଗିବେ, ପଦ ବୋଉ ଉପରେ ଖୁସି ହେବେ । ଦୁଇଟା ଯାକରୁ କୌଣସିଟା ହେଲା ନାହିଁ ।

ହସିଦେଇ ନୀଳମଣି କହିଲେ, ଜୀବନ ଥିବାଯାଏ ତ ଖାଇବାକୁ ପଡ଼ିବ ପଦବୋଉ ! ମୋ ଦେହ ପାଇଁ ସୁଜାତା ସବୁବେଳେ ବ୍ୟସ୍ତ, ହେଲେ ଏତେ ଶୀଘ୍ର ମୋର କିଛି ହେବନି ।

ଏଥର ନୀରବରେ ଅପେକ୍ଷା କଲା ପଦବୋଉ । ଖିଆ ସରିବା ପରେ ହାତକୁ ପାଣି ଦେଇ ବାସନତକ ନେଇ ଘର ଭିତରୁ ବାହାରି ଗଲା । ତା'ର ହତାଶିଆ ମୁହଁଟାକୁ ଦେଖି ମନେ ମନେ ଆଉ ଥରେ ଟିକିଏ ହସିଲେ ନୀଳମଣି । ତକିଆ ଉପରେ ମୁଣ୍ଡ ରଖି ଭାବିଲେ—ସୁଜାତା ଜାଣେନି, ପଦବୋଉ ଜାଣେନି—ସାହେବ ଡାକ୍ତର ସେଦିନ କହିଥିଲେ ନୀଳମଣିଙ୍କ ହୃଦ୍‌ଯନ୍ତ୍ରଟା ଅତି ମାତ୍ରାରେ ଶକ୍ତିଶାଳୀ ! ସେ ଯେପରି ମୃତ୍ୟୁଞ୍ଜୟ ମନ୍ତ୍ର ଧରି ଏ ପୃଥିବୀରେ ଜନ୍ମ ହୋଇଛନ୍ତି !

## (୩)

ବଙ୍ଗୋପସାଗର ତଟବର୍ତ୍ତୀ ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତରରେ ନୂଆକରି ବୃକ୍ଷ ରୋପଣ କରାଯାଇ ଅତି ସୁନ୍ଦର ସୁପରିକଳ୍ପିତ ଭାବରେ ଠିକ୍ ଛକ କାଟିଲାପରି କାଜୁ ବାଦାମ, ୟୁକାଲିପଟାସ୍, ଝାଉଁ ପ୍ରଭୃତି ଗଛର ବିରାଟ ବନ ତିଆରି କରାଯାଇଛି । ଆଧୁନିକ ମଣିଷର ନୂତନ ଚିନ୍ତାଧାରାକୁ ରୂପ ଦେଇଥିବା ବଗିଚା ଦିଶୁଛି ଆଙ୍କି ଦେଲା ଛବିଟିଏ ପରି ।

ଜଳଦ୍‌ଗମ୍ଭୀର ତାନ ଓ ଲୟ ସୃଷ୍ଟି କରି ସମୁଦ୍ର ଗର୍ଜନ କରୁଛି, ଶୁଭୁଛି କାଳର ମହାସଙ୍ଗୀତ ପରି ।

ଲହରୀଗୁଡ଼ିକ ପ୍ରେୟସୀର ପାଦତଳେ ପ୍ରେମିକର ନବଯୌବନର ଉଚ୍ଛ୍ୱସିତ ଆତ୍ମନିବେଦନ ପରି ମଥା ପିଟୁଥିଲେ ବେଳାଭୂମିର ପାଦ ତଳେ । ପୁଣି ବାରମ୍ବାର ପ୍ରତ୍ୟାଖ୍ୟାତ ହୋଇ, ଅପମାନିତ ହୋଇ, ବ୍ୟାକୁଳ ହୋଇ, ଆହତ ଅଭିମାନ ଧରି ଫେରି ଯାଉଥିଲେ । ଆଉ ଥରେ ନ ଆସିବାର ପ୍ରତିଜ୍ଞା ନେଇ, ପୌରୁଷର ଅଭିମାନରେ ଫେରୁଥିଲେ ସେମାନେ; କିନ୍ତୁ ହତଭାଗ୍ୟମାନଙ୍କୁ ପୁଣି ଫେରି ଯିବାକୁ ପଡୁଥିଲା ସେହି ନିଷ୍ଠୁରା ପ୍ରିୟତମା ବେଳାଭୂମିର ପାଦ ତଳକୁ ।

ଆବେଗଭରା କଣ୍ଠରେ ନିଜ କାହାଣୀର ଆରମ୍ଭ ଅଂଶଟିକୁ ମନୋଜ ପଢ଼ି ଶୁଣାଉଥିଲା । ବାଧାଦେଇ ହସି ହସି କହିଲା ମଧୁଛନ୍ଦା, ଏ ତ ଏକାବେଳେ ତମ ନିଜ କଥା ହୋଇଗଲା ମନୋଜ ।

କଦାପି ନୁହେଁ, ମୋ ପ୍ରେମିକା ନିଷ୍ଠୁରା ନୁହେଁ ଛନ୍ଦା ।

କେମିତି ଜାଣିଲ ?

ଦୁଇ ହାତରେ ତା ମୁହଁଟିକୁ ଧରି ହଠାତ୍ ଚୁମ୍ବନଟିଏ ଆଙ୍କି ଦେଲା ମନୋଜ ଏବଂ କହିଲା ସେ ନିଷ୍ଠୁରା ହୋଇପାରେନା ।

କୃତ୍ରିମ କ୍ରୋଧ ସହିତ ମଧୁଛନ୍ଦା କହିଲା, ଇସ୍ ! କି daring, କି ଦୁଃସାହସ !

ଦୁଃସାହସୀ ହେବାକୁ ତୁମେ ହିଁ ତ ଶିଖେଇଛ ଛନ୍ଦା ! ତୁମ ପ୍ରେମ ମତେ ବହୁତ ସାହସୀ କରାଇ ଦେଇଛି ।

ସେ ଆବୃତ୍ତି କଲା–

How do I love thee !
Let me count the ways,
I love thee to the depth
and breadth and height
My soul can reach,
when feeling out of sight,
My heart–

ହଉ, ହଉ, କବିତା ଆବୃତ୍ତି ସେତିକି ଥାଉ, ହିରୋ, Annual Drama Festival ବେଳେ ଷ୍ଟେଜ୍‌ରେ ଠିଆହୋଇ–

ଏଥର ବି ତମେ ହିରୋଇନ୍ ହେଉଛ ତ ମଧୁଛନ୍ଦା ?

ନହେଲେ କ'ଣ ଚାରା ଅଛି ?

You are the beauty queen of our college. ଖାଲି ତ ସୌନ୍ଦର୍ଯ୍ୟରେ ନୁହେଁ, ନାଚରେ, ଗୀତରେ–

ପ୍ରେମ କରିବାରେ ବି !

ବାଧାଦେଇ ନିର୍ଲଜ୍ଜ ଭାବରେ ମଧୁଛନ୍ଦା ହସି ହସି ଲୋଟି ପଡ଼ିଲା ଏକାବେଳେ ମନୋଜର କୋଳରେ ।

କାଳ ପୁରୁଷର ସତର୍କବାଣୀକୁ ଯୁଗ ଭୂକ୍ଷେପ କଲା ନାହିଁ; ବରଂ ହସି ଉଠିଲା, ଯେପରି ବ୍ୟଙ୍ଗ କଲା ! କହିଲା–ବର୍ତ୍ତମାନ ଏସବୁ ଆଉ ଅପରାଧ ନୁହେଁ, ଏହା ଆଇନାନୁମୋଦିତ । ଆଇନର ଖଣ୍ଡାଧାର ଉପରେ ଚାଲିବାର କୌଶଳ ଯୁଗ ପୂରା ଦମ୍‌ରେ ଶିଖି ନେଇଛି । ପାଦ ରକ୍ତାକ୍ତ ହେବ ନାହିଁ, କ୍ଷତର ସାମାନ୍ୟ ଦାଗଟିଏ ସୁଦ୍ଧା ରହିବ ନାହିଁ । ବର୍ତ୍ତମାନ ଧର୍ମ ପରାଜୟ ସ୍ୱୀକାର କରିଛି, ତାକୁ ପଛକୁ ପକାଇ ଦେଇ ଦୌଡ଼ ପ୍ରତିଯୋଗିତାରେ ପ୍ରଥମ ହୋଇଛି ବିଜ୍ଞାନ ।

ଏ ଦେଶରେ ସହଶିକ୍ଷା ଆରମ୍ଭ ହୋଇଥିଲା ଏକ ସୁମହତ୍ ଉଦ୍ଦେଶ୍ୟ ନେଇ । ନାରୀକୁ ନିର୍ଭୀକା, ଆତ୍ମନିର୍ଭରଶୀଳା କରି ସ୍ୱାଧୀନ ଦେଶର ଏକ ସୁଯୋଗ୍ୟା ସୈନିକା କରିବାପାଇଁ ଦେଶ ଚାହିଁଥିଲା । ଆଉ ଥରେ ଅତୀତର ରାଣୀ ଦୁର୍ଗାବତୀ, ଅହଲ୍ୟାବାଈ, ଲକ୍ଷ୍ମୀବାଈ, ସୁଲତାନା ରେଜିୟା, ଚାନ୍ଦବିବି, ଶୁକଦେଇଙ୍କ ପରି ଅସୀମ ସାହସିନୀ ନାରୀମାନେ ଗଢ଼ି ଉଠନ୍ତୁ, ସହ ଶିକ୍ଷାର ଲକ୍ଷ୍ୟ ଥିଲା ସେଇୟା । କିନ୍ତୁ ଗଢ଼ିବାର କୁମ୍ଭାର ଚକଟା ଯେପରି ନିୟମିତ ଗତିକୁ ଅତିକ୍ରମ କରି ଘୂରିଗଲା ବହୁତ ଅତୀତର ଚିତ୍ରକଳ୍ପକୁ । ଅଧିକାଂଶ ହେଲେ ରମ୍ଭା, ମେନକା, ଉର୍ବଶୀ !

ଯେଉଁମାନେ ପ୍ରାଣପାତ କରି ଦେଶର ସ୍ୱାଧୀନତାକୁ ଫେରାଇ ଆଣିଲେ ସେମାନେ ପୁଣି ହିସାବ କଲାବେଳକୁ ଏହିପରି ଚରମ ଭୁଲ୍ ଗୁଡ଼ିଏ କଲେ କିପରି ! ବିଦେଶୀ ବର୍ଜନର ମହାଯଜ୍ଞରେ ସମସ୍ତ ବୈଦେଶିକ ଜିନିଷକୁ ସେ ଦିନ ତ ଅମ୍ଳାନ ବଦନରେ ଆହୁତି ଦେଇଥିଲା ଏ ଦେଶ । ଏ ଦେଶର ଲୋକମାନେ ହାତକଟା, ହାତବୁଣା, ହାତ ତିଆରି ଜିନିଷ ବ୍ୟବହାର କରି ଦେଶର ସମ୍ମାନକୁ ଫେରାଇ ଆଣିବାର ଶପଥ ନେଇଥିଲେ, ଆରାମକୁ ହାରାମ ବୋଲି କହିଥିଲେ । କିନ୍ତୁ ସ୍ୱାଧୀନତା ପ୍ରାପ୍ତି ପରେ ଏ କି ଅଦ୍ଭୁତ ପରିବର୍ତ୍ତନ ଘଟିଲା ! ସ୍ୱଦେଶୀର ମୋହର ତଳେ ରହି ବିଦେଶୀ ବ୍ୟାପିଗଲା ଦେଶଟାରେ । ଏଥର ଦେଶର ସଂସ୍କୃତି ସୁଦ୍ଧା ଯେପରି ବିକ୍ରି ହୋଇଗଲା ବିଦେଶୀ ମହାଜନଙ୍କ ପାଖରେ ।

ଏହାକୁ ଦେଶର ଦୁର୍ଭାଗ୍ୟ ବୋଲି ମାନିନେବା ଛଡ଼ା ଉପାୟ ନାହିଁ ।

କିନ୍ତୁ ଦେଶର ଭାଗ୍ୟ ଯାହାହେଲେ ବି ନୀଳମଣିମାନଙ୍କ ଭାଗ୍ୟ ଭଲ ବୋଲି ହିଁ ସ୍ୱୀକାର କରିବାକୁ ପଡ଼ିବ, କାରଣ ଏ ଜାତୀୟ କ୍ଷୟିଷ୍ଣୁ ଦୃଶ୍ୟସବୁ ନିଜ ଆଖିରେ ଦେଖିବାକୁ ସୁଯୋଗ

ପାଇନାହାନ୍ତି ସେମାନେ । ଘରର ଚାରିକାନ୍ଥ ଭିତରେ ଆବଦ୍ଧ ରହି ନଚେତ୍ ଶଯ୍ୟାଶାୟୀ ଅବସ୍ଥାରେ ରହି ସେମାନଙ୍କର ଦିନଗୁଡ଼ିକ କଟିଯାଉଛି ।

ପ୍ରେମ କରିବାପାଇଁ ଅତି ଉପଯୁକ୍ତ ପରିବେଶରେ, ନିଭୃତ ନିର୍ଜନତା ଭିତରେ ନୀଳମଣି ଯଦି ଆଜି ମଧୁଛନ୍ଦାକୁ ମନୋଜର କୋଳରେ ମଥା ରଖି ଶୋଇବାର ଦେଖିଥାନ୍ତେ ତେବେ ଅବାକ୍ ହୋଇ ଭାବିଥାନ୍ତେ, ଯା କିପରି ତାଙ୍କ ଜୀବନକାଳ ଭିତରେ ସମ୍ଭବ ହେଲା ? ସମୟଟା ଏକା ବେଳକେ ଲମ୍ଫ ପ୍ରଦାନ କରି ଯୁଗ ଯୁଗର କୁସଂସ୍କାର ଓ କୁପ୍ରଥାର ପାହାଡ଼ଟାକୁ ଡେଇଁ ପଡ଼ିଲା !

ସେ ଦୀର୍ଘନିଃଶ୍ୱାସ ତ୍ୟାଗ କରି ମନେ ପକାଇଥାନ୍ତେ ସେ ଦିନର ସେ କରୁଣ ଦୃଶ୍ୟକୁ ଯେଉଁଦିନ ମୃତ୍ୟୁ ପଥଯାତ୍ରୀ ଅସହାୟ ସ୍ୱାମୀଙ୍କର ଆକୁଳ ଆଖି ଦୁଇଟି ଅବଗୁଣ୍ଠନରେ ପୂର୍ଣ୍ଣରୂପେ ଆବୃତା ନିଜର ବିବାହିତା ପତ୍ନୀ ନୀଳମଣିର ମୁହଁଟିକୁ ଟିକିଏ ଶେଷଥର ପାଇଁ ଦେଖିବାକୁ ଚାହିଁ ନିରାଶ ହୋଇ ଯାଇଥିଲେ, ଦେଖିପାରି ନ ଥିଲେ । ଶେଷ ନିଃଶ୍ୱାସ ଟିକକ ପିଣ୍ଡଟା ଦେହରୁ ଚାଲିଯିବା ଆଗରୁ ଝରିପଡ଼ିଥିଲା ଦୁଇଧାର ଲୁହ ।

କି ବ୍ୟାକୁଳତା ଭରା ଅଶ୍ରୁଧାର ସେ !

ହୁଏତ ନୀଳମଣି ଭାବିଥାନ୍ତେ—ସେହି ଉତପ୍ତ ଅଶ୍ରୁ ହିଁ ପବିତ୍ର ପ୍ରେମକୁ ଏହିପରି ଅଭିଶପ୍ତ କରିଦେଇ କୁତ୍ସିତ କରିଦେଲା । ନହେଲେ ଭାବିଥାନ୍ତେ ଅତ୍ୟାଚାରିତା ସ୍ୱର୍ଣ୍ଣଲତାମାନଙ୍କର ଦୀର୍ଘନିଃଶ୍ୱାସ ଗୁଡ଼ିକ ମନୁଷ୍ୟକୁ ଦେବତ୍ୱ ଲାଭ କରିବାର ରାସ୍ତାରେ ଆଗେଇ ନ ନେଇ ଛଳନା କରି ଦାନବତ୍ୱ ଆଡ଼କୁ ନେଇଗଲା ।

ବନ୍ଧ ବନ୍ଧା ଯାଇ ଥିବା କ୍ରୁଦ୍ଧା ନଦୀର ଜଳରାଶି ଯେପରି ତା'ର କ୍ରୋଧକୁ ଭୁଲି ପାରେ ନାହିଁ, ବନ୍ଧ ଦେହରେ ନିୟମିତ ଆଘାତ କରି କରି ପ୍ରଥମେ ଫାଟ ସୃଷ୍ଟି କରେ, ତା ପରେ ସୁଯୋଗ ପାଇଲେ ସୁଦୃଢ଼ ସେହି ନଦୀବନ୍ଧକୁ ଭାଙ୍ଗି ପରିବେଶକୁ ଛାରଖାର କରି ଦିଏ, ସର୍ବଗ୍ରାସୀ ଭୟଙ୍କରୀ ରୂପ ଧାରଣ କରେ, ସେହିପରି ହୁଏତ କେବଳ ପ୍ରତିଶୋଧ ନେବାହିଁ ଏ ଯୁଗରେ ନାରୀମାନଙ୍କର କାର୍ଯ୍ୟ ହେବ ।

ଏ ସ୍ୱାଧୀନତା ଲାଭର ଗତି କେଉଁ ଦିଗକୁ ?

ସ୍ୱର୍ଣ୍ଣଲତାଙ୍କ ଜୀବନ କାହାଣୀ ବଡ଼ କରୁଣ । ସେ କାହାଣୀ ଯଦି ଆଜିକାଲିର ମଧୁଛନ୍ଦାମାନେ ଜାଣିଥାନ୍ତେ ତେବେ ଆହୁରି ଅଧିକ ଉନ୍ମତ୍ତା ହୋଇ ଯାଇଥାନ୍ତେ ନିଶ୍ଚୟ ।

ସ୍ୱର୍ଣ୍ଣଲତାଙ୍କ ଜୀବନର ଇତିହାସ ଆଶ୍ଚର୍ଯ୍ୟଜନକ ମଧ — କପୋଳ-କଳ୍ପିତ କାହାଣୀଠାରୁ ବି ଆହୁରି ଅଧିକ ଆଶ୍ଚର୍ଯ୍ୟଜନକ । ସେ କାଳରେ ରେଳଗାଡ଼ି ନଥିଲା, ବସ୍ କି ମଟର ନଥିଲା ।

ଶଗଡ଼ ବଳଦ, ସବାରୀ, ଘୋଡ଼ା ଥିଲେ ସେକାଳ ମଣିଷଙ୍କ ଯାନବାହନ । ଲୋକେ ତୀର୍ଥ ପର୍ଯ୍ୟଟନ ପାଇଁ ପାଦରେ ଚାଲି ଚାଲି ଯାଉଥିଲେ । ମଝି ମଝିରେ ପୋଖରୀକୂଳର ବରଗଛ ମୂଳେ କିମ୍ବା କୌଣସି ଅଚିହ୍ନା ଗାଁ'ରେ, ସହରର ଆଖପାଖ ହେଲେ ଚଟିଘରମାନଙ୍କରେ, ନ ହେଲେ ଅବା କେଉଁ ଦେବାଳୟର ପ୍ରାଙ୍ଗଣରେ ବା ମଠରେ ଆଶ୍ରୟ ନେଇ ବିଶ୍ରାମ କରି ପୁଣି ଆରମ୍ଭ କରୁଥିଲେ ସେମାନଙ୍କର ପଦଯାତ୍ରା । ତୀର୍ଥ ଭ୍ରମଣରେ ନ ଗଲେ ଯେ ପାପ କୌଣସିମତେ କ୍ଷାଳନ ହେବନାହିଁ, ପରଲୋକ ପାଇଁ ତୀର୍ଥଯାତ୍ରାର ପୁଣ୍ୟ ଟିକିକ ସାଙ୍ଗରେ ରହିବା ଦରକାର ଏହି ଦୃଢ଼ବିଶ୍ୱାସ ଥିଲା ସେକାଳ ଲୋକଙ୍କର । ଆଉ ମଧ୍ୟ ଥରେ ତୀର୍ଥ ଭ୍ରମଣରେ ଗଲେ ସ୍ୱଦେହରେ ନିଜ ଘରକୁ ଫେରି ଆସିବା ଆଶା ସେମାନେ ରଖୁ ନଥିଲେ । ତେଣୁ ବୟସ୍କମାନେ ନିଜ ନିଜର ଘରଦ୍ୱାର ଜମିବାଡ଼ିର ଗୋଟାଏ ସ୍ଥାୟୀ ସୁବନ୍ଦୋବସ୍ତ କରିଦେଇ, ସମସ୍ତଙ୍କଠାରୁ ମାୟାମମତା ତୁଟାଇ, ପଞ୍ଚପାଣ୍ଡବ ସ୍ୱର୍ଗ ଦେଖିବା ପାଇଁ ବାହାରି ଗଲାପରି ତୀର୍ଥ ଦର୍ଶନ ପାଇଁ ବାହାରି ପଡୁଥିଲେ ।

ଅଜ୍ଞାତ ସୁଦୀର୍ଘ ପଥ, ଚୋର ଡକାୟତ, ହିଂସ୍ରଜନ୍ତୁ, ରୋଗବ୍ୟାଧି, ଦୁର୍ଘଟଣା ଆଦି ସହସ୍ର ପ୍ରକାର ଆଶଙ୍କା, ଅସଂଖ୍ୟ ବାଧାବିପଦ ଭିତର ଦେଇ ଗତି କଲାବେଳେ ନିଜ ନିଜର ପୁଣ୍ୟବଳରେ ଗାଁ'କୁ ଆଉଥରେ ବାହୁଡ଼ି ଆସିବାର ଆଶା ନ ରଖିବା ହିଁ ଭଲ । କିନ୍ତୁ ଖାଲି ବୁଢ଼ା ବୁଢ଼ୀମାନେ ତ ଏକାକୀ ଯାଇ ପାରିବେ ନାହିଁ ! ସାଙ୍ଗରେ କେତେ ଜଣ ଯୁବକ ନ ଗଲେ ବାଟରେ ସେମାନଙ୍କୁ ସାହାଯ୍ୟ କରିବ କିଏ ? ତେଣୁ ଗାଁ'ର କେତେଜଣ ସଂସାରୀ ଯୁବକଙ୍କୁ ମଧ୍ୟ ସେମାନଙ୍କ ସହିତ ଯିବାକୁ ପଡୁଥିଲା ।

ସ୍ୱର୍ଣ୍ଣଲତାର ଶାଶୂଘର ଗାଁ'ରୁ ଦଳେ ପୁଣ୍ୟାର୍ଥୀ ସଜବାଜ ହୋଇ ଯେତେବେଳେ ତୀର୍ଥଯାତ୍ରାରେ ବାହାରିଲେ, ସ୍ୱର୍ଣ୍ଣଲତାର ଯୁବକ ସ୍ୱାମୀ ମଧ୍ୟ ଯାଇଥିଲେ ସେମାନଙ୍କ ସହିତ । ବାଳିକା ସ୍ୱର୍ଣ୍ଣର ବୟସ ସେତେବେଳକୁ ନଅ ବର୍ଷ । ବିଭାହୋଇ ଶାଶୂଘରକୁ ଆସିବାର ଦୁଇବର୍ଷ ପୂରିବାକୁ ଅଳ୍ପ ଦିନ ବାକି ଥିଲା !

ଦୀର୍ଘ କେତେମାସ ପରେ ଯେତେବେଳେ ତୀର୍ଥଯାତ୍ରୀ ଦଳ ଫେରି ଆସିଲେ, ଜଣାପଡ଼ିଲା ସ୍ୱର୍ଣ୍ଣର ଯୁବକ ସ୍ୱାମୀ ତ୍ରୈଲୋକ୍ୟ ମୃତ । ସେ ମୃତ୍ୟୁର କାହାଣୀ ଅତି କରୁଣ ଓ ମର୍ମାନ୍ତିକ । ହୃଷୀକେଶରୁ ଫେରି ଆସିବା ରାସ୍ତାରେ, ଏକ ଦୁର୍ଗମ ନିର୍ଜ୍ଜନ ସ୍ଥାନରେ ସ୍ୱର୍ଣ୍ଣର ସ୍ୱାମୀ ହଠାତ୍ ବିସୂଚିକା ରୋଗର ଆକ୍ରମଣରେ ଆକ୍ରାନ୍ତ ହୋଇଥିଲେ । ସ୍ଥାନଟି ଲୋକାଳୟଠାରୁ ବହୁତ ଦୂରରେ, ତେଣୁ ସହଯାତ୍ରୀମାନେ ଭୟଭୀତ ହୋଇ ରୋଗୀକୁ ସେହି ଗଛ ମୂଳର ଆଶ୍ରୟରେ ହିଁ ପକାଇ ଦେଇ ନିଜ ନିଜର ଜୀବନ ରକ୍ଷା କରିବା ପାଇଁ ଚାଲି ଆସିଥିଲେ । ସେତେବେଳେ ଲୋକେ କଲେରା ବା ବିସୂଚିକାକୁ ମହାଭୟଙ୍କରୀ ପ୍ରଳୟଙ୍କରୀ ମହାମାରୀ ଦେବୀ ରୂପେ ହିଁ କଳ୍ପନା କରୁଥିଲେ ଏବଂ ଏହି ଦେବୀଙ୍କ ଗ୍ରାସରେ ପଡ଼ିଲେ ମୃତ୍ୟୁ ଯେ ସୁନିଶ୍ଚିତ ସେ ବିଷୟରେ କେହି ଦ୍ୱିମତ ନଥିଲେ । ଅତଏବ ଅସହାୟ ଅବସ୍ଥାରେ ତ୍ରୈଲୋକ୍ୟ

ଯେ ନିଶ୍ଚେ ମରିଥିବ ସେଥିରେ ସନ୍ଦେହ ନ ଥିଲା । ନିଜ ନିଜର ଭୀରୁତା ଓ ଅମନୁଷ୍ୟତାକୁ ଗୋପନ ରଖିବାକୁ ସହଯାତ୍ରୀମାନେ ମୃତ ତ୍ରୈଲୋକ୍ୟକୁ ଗଛମୂଳେ ଛାଡ଼ି ଆସିଥିବା କଥା ପ୍ରକାଶ କରିଥିଲେ ଗାଁ ରେ ।

କିନ୍ତୁ ଏହିପରି ବୈଧବ୍ୟ ଲାଭ ଘଟନା ଯେତେ ମର୍ମାନ୍ତିକ ହେଲେ ମଧ ନଅବର୍ଷର ବାଳିକା ସ୍ୱର୍ଣ୍ଣର ମନରେ ବିଶେଷ କିଛି ପ୍ରଭାବ ପକାଇ ନଥିଲା । କାରଣ ଜୀବନର ମାତ୍ର ସାତ ବର୍ଷ ବୟସରେ ଏ ଘରେ ପାଦ ଦେଲାଦିନୁ ସେ ଏ ଘରଟାକୁ ଏକ ଯମପୁରୀ ବୋଲି ଭାବି ସାରିଥିଲା । ତା ଶାଶୂ ଥିଲେ ତା ନିକଟରେ ସାକ୍ଷାତ ଯମ । ସେହି ନାରୀ-ରୂପିଣୀ ଯମଦେବତାଙ୍କ ନିଷ୍ଠୁର ଅତ୍ୟାଚାରର ଅଜସ୍ର ନିଦର୍ଶନ ତା ପିଠିରେ, ତା ବାହୁରେ ବହନ କରି ବୁଲୁଥିଲା ବାଳିକା ସ୍ୱର୍ଣ୍ଣ !

ଜନନୀ ଅନ୍ନପୂର୍ଣ୍ଣାଙ୍କ ଉଦାର ସ୍ନେହପ୍ରବଣ ଛାୟାତଳେ ପିଲାଟି ଦିନରୁ ବଢ଼ି ପ୍ରାଣପ୍ରାଚୁର୍ଯ୍ୟରେ ଭରା କଳହାସ୍ୟମୟୀ ଝରଣାଟିଏ ପରି ହୋଇଥିଲା ସ୍ୱର୍ଣ୍ଣ । ବୟସରେ ଦୁଇବର୍ଷ ସାନ ହେମଲତା ବରଂ ଗମ୍ଭୀର ଜଣାପଡୁଥିଲା । କଥାବାର୍ତ୍ତାରେ, ଚାଲିଚଳଣରେ ସେ ଥିଲା ଅପେକ୍ଷାକୃତ ବୟସ୍କ । ଲୋକେ କହୁଥିଲେ—ହେମ ବଡ଼ ଭଉଣୀ ହେବା ଉଚିତ ହୋଇଥାନ୍ତା ।

ଆଉଟା ସୁନା ପରି ଦେହର ବର୍ଣ୍ଣ ଦେଖି ନାଁ ଦିଆ ଯାଇଥିଲା ସ୍ୱର୍ଣ୍ଣଲତା । ପରେ ବଡ଼ ହେବାରୁ ସଦାହାସ୍ୟମୟୀ ଝିଅଟିକୁ ଅନ୍ନପୂର୍ଣ୍ଣା ଆଦରରେ ଡାକୁଥିଲେ ହସକୁଳୀ ଲତା । ଛୋଟିଆ ଶାଢ଼ି ବା ଗାମୁଛାର କାନିଟିକୁ ମୁହଁରେ ଟିକିଏ ଘୋଡ଼ାଇ ଦେଇ ହସି ହସି ବିହ୍ୱଳ ହୋଇଯିବାର ଗୋଟାଏ ଅଦ୍ଭୁତ ଅଭ୍ୟାସ ଥିଲା ସ୍ୱର୍ଣ୍ଣର । ଆଦର କଲେ ବି ହସୁଥିଲା, ଗାଳିଦେଲେ ବି ହସୁଥିଲା ।

ଜୀବନର ମୋଟେ ସାତଟା ବର୍ଷ—ହୁଏତ ଜୀବନରେ ଆଉ କେବେ ଏହିପରି ପ୍ରାଣଖୋଲା ହସ ହସି ପାରିବ ନାହିଁ ବୋଲି ବିଧାତା ସେହି ସାତବର୍ଷ ଭିତରେ ସବୁତକ ହସ ହସାଇଥିଲେ ତାକୁ ।

ତାପରେ ସ୍ୱର୍ଣ୍ଣ ବିଭା ହେଲା ।

ଇତିହାସର ପୃଷ୍ଠା ଓଲଟାଇଲେ ଜାଣିହେବ ସେତେବେଳେ କେତେକ ଶାସନ ବା ପ୍ରତିଷ୍ଠିତ ଗ୍ରାମମାନଙ୍କରେ ବାଳିକା-ବଧୂ ପ୍ରତି ଅତ୍ୟାଚାରର ସୀମା ରହୁ ନଥିଲା; କିନ୍ତୁ ତାହା ଅଳ୍ପ କେତେକ ସ୍ଥାନରେ ମାତ୍ର । ନଚେତ୍ ସାଧାରଣ କ୍ଷେତ୍ରରେ କୁନି କୁନି କଣ୍ଢେଇଟିମାନଙ୍କ ପରି ବୋହୂଗୁଡ଼ିକ ଅତି ଆଦର ଭିତରେ ହିଁ ପ୍ରତିପାଳିତ ହେଉଥିଲେ । ଘରର ଝିଅମାନଙ୍କ ସହିତ ମିଶି ବେଶ୍ ସ୍ୱାଧୀନ ଭାବରେ ଖେଳାଖେଳି କରୁଥିଲେ ।

ସେ କାଳରେ ହେଉ ବା ଏକାଳରେ ହେଉ ମଣିଷମାନଙ୍କ ହୃଦୟରେ ରହିଥିବା ନିଷ୍ଠୁରତା ହିଁ ଯାବତୀୟ ଅତ୍ୟାଚାର ଓ ଯନ୍ତ୍ରଣାର ସୃଷ୍ଟିକାରୀ । ସେହି ପ୍ରକାର ମଣିଷମାନେ ଦୁର୍ବଳ ଅସହାୟ ଶୀକାର ପାଇଗଲାକ୍ଷଣି ସତେ ଯେପରି ହିଂସ୍ରଜନ୍ତୁ ପାଲଟି ଯାଆନ୍ତି, ସେମାନଙ୍କର ଆଦିମ ହିଂସ୍ରତା ଜାଗ୍ରତ ହୋଇଯାଏ, ନିଷ୍ଠୁରତା ରୂପକ ରାକ୍ଷସ ଶତଜିହ୍ୱ ହୋଇ ଉଠେ ସେମାନଙ୍କ ହୃଦୟ ଭିତରେ ।

ଅଧିକ ନିର୍ମମ ହେବାର ନିଶା ଗ୍ରାସ କରିଦିଏ । ସେ ଅବସ୍ଥାରେ ସେମାନଙ୍କୁ ଆଉ ମଣିଷ ବୋଲି କୁହାଯାଇ ପାରିବ ନାହିଁ ।

ସେଥିପାଇଁ ଆଜିସୁଦ୍ଧା ପ୍ରକାଶ୍ୟ ଦିବାଲୋକରେ ଅତି ଅକ୍ଳେଶରେ ମଣିଷ ମଣିଷକୁ ହତ୍ୟା କରିପାରୁଛି, ଖାଲି ତ ହତ୍ୟା ନୁହେଁ, ସେ ହତ୍ୟାରେ ମଧ୍ୟ ନିହିତ ଅଛି ପ୍ରକାର ପ୍ରକାରର ନିର୍ମମତାର ବିଭୀଷିକା । ଖାଲି ସେତିକି ନୁହେଁ, ହତ୍ୟା କରିବାର ପର ମୁହୂର୍ତ୍ତରେ ନିଜର ରକ୍ତବୋଳା ହାତକୁ ଧୋଇ ସେ ବେଶ୍ ନିଶ୍ଚିନ୍ତରେ, ନିର୍ଲିପ୍ତ ଭାବରେ ତା'ର ଦୈନନ୍ଦିନ କର୍ମ ମଧ୍ୟ କରି ପାରୁଛି ।

ସେଇ ମଣିଷମାନେ ଭଗବାନଙ୍କୁ ଡରୁ ନାହାନ୍ତି, ଧର୍ମକୁ ଡରୁ ନାହାନ୍ତି । ସତେକି ସେମାନେ ବାହୁଡ଼ି ଯାଉଛନ୍ତି ସେମାନଙ୍କର ସେହି ଛାଡ଼ି ଆସିଥିବା ପ୍ରସ୍ତର ଯୁଗକୁ, ଯେଉଁ ଯୁଗରେ ମନୁଷ୍ୟ ଓ ପଶୁ ଭିତରେ କିଛି ପାର୍ଥକ୍ୟ ନଥିଲା ।

ସ୍ୱର୍ଣ୍ଣଲତା ବୋହୂ ହେବା ଯୁଗରେ ଯୌତୁକପ୍ରଥା ବାଧତାମୂଳକ ନଥିଲା, ପଣ ଦାବୀ ପ୍ରଥା ନ ଥିଲା । କିନ୍ତୁ ଅତି ତୁଚ୍ଛ କେତେକ ଦ୍ରବ୍ୟ ସମ୍ଭାର ପଠାଇବା କୁଆଡ଼େ ନିୟମର ଅନ୍ତର୍ଭୁକ୍ତ ଥିଲା । ସେଗୁଡ଼ିକ ହେଲା—ନୂଆ ଟାଟମାନଙ୍କରେ ମାଟି ପକାଇ ଶାଗମଞ୍ଜି ବୁଣି, ପାଣି ଛିଞ୍ଚି ବଢ଼ାଇ ଚଳନ୍ତା ଛୋଟ ଛୋଟ ଶାଗ କିଆରୀମାନ ପଠାଇବା, ଅତି ସୁନ୍ଦର ଭାବରେ କାଟିକୁଟି ପରିଷ୍କାର ପରିଚ୍ଛନ୍ନ ଦାନ୍ତଖୁଣ୍ଟା ନଡ଼ିଆ ଖଡ଼ିକା, ଦାନ୍ତ ଘଷା ଦାନ୍ତକାଠି, ସୁନ୍ଦର ସୁନ୍ଦର ଚିତ୍ର ଅଙ୍କା ଯାଇଥିବା ହାଣ୍ଡି ମାନଙ୍କରେ ବଡ଼ି, ମୁଗକାଇ, ଫେଣି ଶାକର ଓ ଅନ୍ୟାନ୍ୟ ଦରକାରୀ ଜିନିଷ ପଠାଇବା । ତାଉଆ ବା କରେଇରେ ଚକୁଳି ପିଠା କଲାବେଳେ କିମ୍ବା ଆଟିକାରେ ଏଣ୍ଡୁରି ପିଠା କଲାବେଳେ ଦରକାର ହେଉଥିବା ଛିଣ୍ଡା ସଫା ସରୁକନା ମଧ୍ୟ ସେଥିରେ ଅନ୍ତର୍ଭୁକ୍ତ । ଅତି ତୁଚ୍ଛ କେତେଟା ଜିନିଷ । ଏହି ତୁଚ୍ଛତମ ଜିନିଷଗୁଡ଼ିକ କୁଆଡ଼େ ପ୍ରମାଣିତ କରୁଥିଲେ ବାପଘରର ସଣ୍ଟଣାପଣକୁ ଏବଂ ଏହାରି ଅଭାବରେ କେଉଁଠି କେଉଁଠି ଶାଶୂମାନେ ଧରୁଥିଲେ ସଂହାରମୂର୍ତ୍ତି ।

ସ୍ୱର୍ଣ୍ଣର ବାପଘର ଅପେକ୍ଷାକୃତ ଗରିବ ସତ କିନ୍ତୁ ଟିକିଏ ଅଧିକ ପରିମାଣରେ ସ୍ୱାଭିମାନୀ ଥିଲେ । ସ୍ୱର୍ଣ୍ଣକୁ ଶାଶୂ ଘରକୁ ପଠାଇଲା ବେଳକୁ ଅନ୍ନପୂର୍ଣ୍ଣା ଜାଣି ଜାଣି ଏହି ତୁଚ୍ଛତମ ଦ୍ରବ୍ୟ ଗୁଡ଼ିକରୁ କିଛି ଦ୍ରବ୍ୟ ଦେଇ ନ ଥିଲେ । ସେ ନିଜେ ମଧ୍ୟ ତାଙ୍କ ବାପଘରୁ ଆଣି ନ ଥିଲେ । ସେଥିପାଇଁ କେବେ କିଛି ଅସୁବିଧାରେ ପଡ଼ି ନ ଥିଲେ । ପରମ ସ୍ନେହମୟୀ ଶାଶୂଙ୍କ ଆଦର ଯତ୍ନରେ ଲାଳିତା ଅନ୍ନପୂର୍ଣ୍ଣା ଶାଶୂଘରର ଅତ୍ୟାଚାର କିପରି ବା ଜାଣିଥାନ୍ତେ ? ତେଣୁ ତାଙ୍କର ଶକ୍ତିଠାରୁ ଅଧିକ ଶକ୍ତି ବିନିଯୋଗ କରି ଯଥାବିଧି ଅଳଙ୍କାରପତ୍ର, ବାସନକୁସନ, ଜାଇ, ବଡ଼ି, ଫେଣି, ଶାକର, ମିଠେଇ ହାଣ୍ଡି ଓ ଶାଢ଼ି ଲୁଗା ଦେଇ ଅତି ନିଃଶଙ୍କ ଚିତ୍ତରେ ସ୍ୱର୍ଣ୍ଣକୁ ପଠାଇଲେ ଶାଶୂ ଘରକୁ ।

କିନ୍ତୁ ସାତ ବର୍ଷର ବାଳିକା ବଧୂ ଯେତେବେଳେ ବାଧ ହୋଇ ସରୁ ଚକୁଳି କରିବା ପାଇଁ ଚୁଲି ମୁଣ୍ଡରେ ବସିଲା, ତାଉଆଟି ତାତିଗଲା ପରେ ତା ଶାଶୂ କୁଆଡ଼େ ତା'ର କଅଁଳ ହାତଟିକୁ ଜବରଦସ୍ତି ଧରି ଘିଅରେ ବୁଡ଼ାଇ ତାତିଲା ତାଉଆ ଦେହରେ ପାପୁଲିଟିକୁ ଘଷି ଦେଇଥିଲେ,

ଛିଣ୍ଡା ସରୁକନାର ଅଭାବ ଯୋଗୁଁ, ଅର୍ଥାତ୍ ଏ ପଦାର୍ଥଟି ସାଙ୍ଗରେ ବାପଘରୁ ନ ଆଣିଥିବା ଯୋଗୁଁ ! ବାପଘରର ତଥା ଝିଅ-ମା'ର ସଣ୍ଢଣାପଣର ଅଭାବ ପାଇଁ ସେ ଦଣ୍ଡ ଦିଆ ଯାଇଥିଲା ସାତ ବର୍ଷର ଝିଅ ସ୍ୱର୍ଣ୍ଣକୁ !!

ଯନ୍ତ୍ରଣାରେ ଚିତ୍କାର କରି କାନ୍ଦି ଉଠିଥିଲା ସ୍ୱର୍ଣ୍ଣଲତା ଏବଂ ସେଥିପାଇଁ ଅଧିକ ଚାପୁଡ଼ା ଖାଇଥିଲା, ଆଉ ହାତ ପାପୁଲିରେ ବଡ଼ ବଡ଼ ଫୋଟକାମାନ ହୋଇ ଯିବାରୁ ଅତି କଷ୍ଟରେ ଦୁଇ ମାସ ପର୍ଯ୍ୟନ୍ତ ଦୁଃଖଭୋଗ କରିଥିଲା ।

ସେ ଖବର ପାଇ ନିଜେ ଧାଇଁ ଯାଇଥିଲେ ଅନ୍ନପୂର୍ଣ୍ଣା । ଅନ୍ୟାନ୍ୟ ଜିନିଷର ଭାର ସହିତ ନେଇଥିଲେ ହଳେ ନୂଆ ଲୁଗା, ସ୍ୱର୍ଣ୍ଣକୁ ସାଙ୍ଗରେ ନେଇଯିବା ପାଇଁ ମିନତି କରିଥିଲେ, କିନ୍ତୁ ତାଙ୍କର ପ୍ରାର୍ଥନା ବିଫଳ ହୋଇଥିଲା । ଫେରିଲା ବେଳକୁ ମନର କ୍ଷୋଭ ସମ୍ଭାଳି ନ ପାରି କହି ଆସିଥିଲେ—ଏଥରଠୁ ପିଠା କଲାବେଳେ ଏ ସବୁ ଲୁଗାକୁ ଚିରି କନା କରିଦେବ ସମନ୍ଧୁଣୀ, ତମ ଗୋଡ଼ ତଳେ ପଡୁଛି, ମୋ ବାଳୁତ ପିଲାଟାକୁ ଆଉ ମାରି ଦବନି ।

ଟିକିଏ ଦୂରରେ କବାଟ କଣରେ (ସେ ଯୁଗରେ ଏହିପରି ଘରମାନଙ୍କରେ ବୋହୂର ବାହାରେ ଠିଆ ହେବାର ଅଧିକାର ନଥିଲା) ଠିଆହୋଇ ନାକ ତଳ ପର୍ଯ୍ୟନ୍ତ ଟଣା ଯାଇଥିବା ତନ୍ତ ଶାଢ଼ିର ଓଢ଼ଣା ତଳେ ସ୍ୱର୍ଣ୍ଣର ଦୁଇ ଆଖିରୁ ଧାରା ଶ୍ରାବଣ ଝରୁ ଥିଲା, ଝରି ଝରି ପଡୁଥିଲା ପାଦତଳେ ଥିବା ମାଟି ଘରର ଚଟାଣ ଉପରେ, ଆଉ ସେ ଲୁହ ତଳେ ପଡ଼ିବା ସଙ୍ଗେ ସଙ୍ଗେ ମାଟି ଚଟାଣରେ ଶୋଷି ହୋଇ ଯାଉଥିଲା । କି ଗୋଟାଏ ଔଷଧ ଗଛର ପତ୍ର ଛେଚା ଦିଆଯାଇ ମଇଳା ଛିଣ୍ଡା କନାର ପଟିବନ୍ଧା ହୋଇଥିଲା ଡାହାଣ ହାତଟିରେ ।

ଝିଅର ଅସହାୟ ସ୍ତବ୍ଧ ଛବିଟିକୁ ଦେଖି ଅନ୍ନପୂର୍ଣ୍ଣାଙ୍କର ଛାତି ଫାଟି ଯାଉଥିଲା ଯେପରି । ଏ କେତେଦିନ ଭିତରେ ସ୍ୱର୍ଣ୍ଣ ବହୁତ ବଦଳି ଯାଇଛି, ଅଭାବନୀୟ ଭାବରେ ବଦଳି ଯାଇଛି । କଳହାସ୍ୟମୟୀ ଝରଣାଟିକୁ କିଏ ଯେପରି ଆବଦ୍ଧ କୂପରେ ବନ୍ଦୀ କରି ଦେଇଛି । ସଦା ଶଙ୍କିତ, ସଦା ଭୀତତ୍ରସ୍ତ ବନ୍ଦୀ, ଛେଳି ଛୁଆଟିଏ ପରି ମନେ ହେଉଛି, ସେ ଯେପରି ଯଜ୍ଞର ବଳି ପାଇଁ ବନ୍ଧା ହୋଇଛି !

ଅନ୍ନପୂର୍ଣ୍ଣାଙ୍କର ଭାରି ଇଚ୍ଛା ହେଲା ଜୋର୍ କରି ସେ ଏହି ଅସହାୟ ଶିଶୁଟିକୁ ନେଇଯିବେ । ସ୍ୱଭାବତଃ କବି ପ୍ରକୃତିର ମଣିଷ ଥିଲେ ଅନ୍ନପୂର୍ଣ୍ଣା, ତେଣୁ କିଛି ସମୟ ପାଇଁ ଭାବବିହ୍ୱଳ ହୋଇ ଠିଆ ହେଲେ ପଥର ପ୍ରତିମାଟିଏ ପରି । ଭାବିଲେ—ପ୍ରଚଳିତ ନିୟମ ଧାରାରେ ପଦାଘାତ କରିବେ, ଗୋଟାଏ ବିପ୍ଳବ ସୃଷ୍ଟି କରିବେ ଅନ୍ୟାୟ ବିରୁଦ୍ଧରେ ।

କିନ୍ତୁ ବିପ୍ଳବ ସେ ସୃଷ୍ଟି କରି ପାରିଲେ ନାହିଁ କି ନିୟମ ଧାରାରେ ପଦାଘାତ କରିପାରିଲେ ନାହିଁ । ଓଲଟି ଅସହାୟ ଭାବରେ ଉଚ୍ଛ୍ୱସିତ କ୍ରନ୍ଦନରେ ଭାଙ୍ଗିପଡ଼ି ପୁଣି ସେ ସେହି ସମନ୍ଧୁଣୀଙ୍କ ଦୁଇ ପାଦକୁ ହିଁ ନିଜ ହାତରେ ଜାବୁଡ଼ି ଧରି ତାଙ୍କ ଗୋଡ଼ ତଳେ ପଡ଼ିଗଲେ । କାନ୍ଦି କାନ୍ଦି କହିଲେ—

ସମନ୍ଧୁଣୀ ମଁ, ହେଇଟି ତମ ପାଦ ଧରୁଛି, ପିଲାଟା ଦୋଷ କଲେ ତାକୁ କ୍ଷମା କରିବ । ଯାହା ଅଭାବ ହବ ମୋ ପାଖକୁ ଖବର ଦବ । ସେ ଯାହା ଦୋଷ କରିବ, ସବୁତକ ଦୋଷ ମୋର ବୋଲି ବିଚାରିବ । ମତେ ଦଣ୍ଡ ଦବ ସମନ୍ଧୁଣୀ, ପିଲାକୁ ମୋର ମାରିବନି, ତମକୁ ମୋର ରାଣ ରହିଲା ।

ଏହି ଛିଣ୍ଡା କନା ସମ୍ବନ୍ଧରେ ଆଉ ଗୋଟିଏ ଅତି କରୁଣ କାହାଣୀ ବି ଲେଖା ହୋଇ ରହିଛି ସ୍ୱର୍ଣ୍ଣଲତାଙ୍କ ଖାତାରେ, ଗୀତ ଆକାରରେ ।

ସ୍ୱର୍ଣ୍ଣର ପଡ଼ିଶା ଘରର ବୋହୂ ସାବିତ୍ରୀ, ବୟସରେ ସ୍ୱର୍ଣ୍ଣଠାରୁ ଦି' ତିନି ବର୍ଷ ବଡ଼ । ବିଭିନ୍ନ କାରଣ ପାଇଁ ଶାଶୂଘରେ ମାଡ଼ ଖାଇ ଖାଇ, କଟୁ କଥା ଶୁଣି ଶୁଣି ଶେଷକୁ ଯେଉଁଦିନ ଏହି ଚିରାକନା ପାଇଁ ଶାଶୂଙ୍କଠାରୁ ଗାଳି ଓ ମାଡ଼ ଖାଇଲା, ତାପରେ ପୁଣି ସାହିର ଆଉ ଦଶ ଜଣ ସ୍ତ୍ରୀ ଲୋକଙ୍କ ସାମନାରେ ତା ଦେହରୁ ଗାମୁଛା ଖଣ୍ଡକ ଟାଣି ନେଇ ଶାଶୂ ଅପମାନିତା କଲେ, ସେ ଅପମାନ ସେ ସହିପାରିଲା ନାହିଁ । କ୍ରୋଧୀ ଅଭିମାନିନୀ ଝିଅଟା ସନ୍ଧ୍ୟାବେଳେ ଚୁପ୍‌ଚାପ୍ ଢିଙ୍କିଶାଳ ଭିତରକୁ ଯାଇ, ନିଜର ପିନ୍ଧା ସେଇ ଗାମୁଛାର କାନିକୁ ବେକରେ ବାନ୍ଧି ଦେଇ ଝୁଲି ପଡ଼ିଥିଲା ଚାଳିଆର ଶେଣୀରୁ ।

ଦୁଇ ଘର ଲଗାଲଗି । ଏ ଘରର ହାଣ୍ଡିଶାଳକୁ ସେ ଘରର ହାଣ୍ଡିଶାଳ ଲାଗିଥାଏ । ମଝିରେ କେବଳ ରହିଥାଏ ଝାଟିମାଟି ଉପରେ ଗୋବର ଲିପା କାନ୍ଥଟିଏ । ସେ କାନ୍ଥଟିର ଗୋଟାଏ କଣକୁ ଖଣ୍ଡେ ମାଟି ଖଣ୍ଡ ଝଡ଼ି ପଡ଼ିଥିବା ହେତୁ ଛୋଟ କଣାଟିଏ ସୃଷ୍ଟି ହୋଇଥାଏ ମନକୁ ମନ । ସେହି ରନ୍ଧ୍ରବାଟେ ସମଦୁଃଖିନୀ, ଅଭାଗିନୀ ବାଳିକା ବଧୂ ଦୁଇଜଣ ଘରର ସମସ୍ତଙ୍କ ଅଲକ୍ଷ୍ୟରେ ନିଜ ନିଜ ମନର ଏକାନ୍ତ ବେଦନାକୁ ଆଦାନ ପ୍ରଦାନ କରୁଥାନ୍ତି । ହାତ ବଢ଼ାଇ ପରସ୍ପରର ଆଖି ଲୁହକୁ ପୋଛି ଦେଉଥାନ୍ତି, ନହେଲେ ପିଠାଖଡ଼ିକା କିମ୍ବା ପୋଡ଼ଖୁଣ୍ଟାରେ ସୃଷ୍ଟି ହୋଇଥିବା ନିଜ ନିଜ ଦେହର କ୍ଷତଗୁଡ଼ିକୁ ପରସ୍ପରକୁ ଦେଖାଇ ଅଶେଷ ସାନ୍ତ୍ୱନା ଲାଭ କରୁଥାନ୍ତି । ହଁ, ଆଉ ଗୋଟିଏ କଥା ବି ଚାଲିଥାଏ । ଯଦି ତାଙ୍କ ଭିତରୁ କେହି ଜଣେ ଭଲ ମନ୍ଦ ଜିନିଷ ଟିକିଏ ପାଇଥାଏ, ଆଦର କରି ଅନ୍ୟ ଜଣଙ୍କର ମୁହଁରେ ଦେଇ ଖୁଆଇ ନ ଦେଲା ପର୍ଯ୍ୟନ୍ତ ଶାନ୍ତି ପାଏ ନାହିଁ ।

ସେହି ବିଶେଷ ମାଡ଼ଖିଆ ଦିନଟିର ରାତିରେ ନିର୍ଦ୍ଦିଷ୍ଟ ସମୟରେ ଆଗ୍ରହରେ ଯାଇ ସ୍ୱର୍ଣ୍ଣଲତା ଠିଆ ହୋଇଥାଏ ଝାଟିମାଟି କାନ୍ଥରେ ଥିବା କଣାଟି ପାଖରେ । ତା'ର ଇଚ୍ଛା ସାବିତ୍ରୀର ପ୍ରହାର ଜର୍ଜରିତ ସ୍ଥାନକୁ ଟିକିଏ ଆଉଁସି ଦେବ, ଆଖିର ଲୁହକୁ ପୋଛି ଦେବ, ଦି'ପଦ ସାନ୍ତ୍ୱନାରେ କଥା କହିବ ।

ସମୟ ବହିଗଲା, ସାବିତ୍ରୀ ଆସିଲା ନାହିଁ । ବଡ଼ ଦୁଃଖିତ ମନରେ ଚୁପ୍ ଚାପ୍ ବସି ରହିଲା ସ୍ୱର୍ଣ୍ଣ ।

କିଛି ସମୟପରେ ଜଣାଗଲା ସାବିତ୍ରୀକୁ ସେମାନେ ଅର୍ଥାତ୍ ତା' ଘରଲୋକେ ଖୋଜୁଛନ୍ତି । ସାବିତ୍ରୀ ଘରେ ନାହିଁ, ଗଲା କୁଆଡ଼େ ଏତେ ରାତିରେ ? ଗଡ଼ିଆ ତୁଠ, ବାଡ଼ି ଆଡ଼, ପଡ଼ିଶା ଅଡ଼ିଶା ଘର ସବୁ ଖୋଜି ଖୋଜି ଶେଷରେ ଶାଶୂ ଡିବି ଧରି ଯାଇ ଢିଙ୍କିଶାଳରେ ପଶିଲାକ୍ଷଣି ତାଙ୍କର ଆଖିରେ ପଡ଼ିଲା—ସାବିତ୍ରୀର ଝୁଲୁଥିବା ଦେହଟା ଉପରେ ! ଗୋରା ତକ ତକ ରଙ୍ଗ ସହିତ ବଟା ହଳଦୀର ରଙ୍ଗ ମିଶି ସେ ଡିବି ଆଲୁଅରେ ମଧ ଝକ୍‌ମକ୍ କରୁଥିଲା ସୁନାର ପ୍ରତିମାଟିଏ ପରି । କଳାଭଅଁର ଭଳି ଗୋଛାଏ ବାଳ ଗଣ୍ଠି ଭିତରେ ଆବଦ୍ଧ ହୋଇ ରହି ନପାରି ବିଞ୍ଛିହୋଇ ପଡ଼ିଥିଲା ତା'ର ଅନାବୃତ ପିଠିଟାରେ, କାନ୍ଧ ଉପରେ । ମୁହଁରେ ଫୁଟି ଉଠିଥିଲା ଅସୀମ ଯନ୍ତ୍ରଣାର ଚିହ୍ନ, ଓଠ କଟିଯାଇ ଧାରେ ରକ୍ତ ବହିଆସିଛି । କଅଁଳ ହାତ ଦୁଇଟାକୁ ପ୍ରାଣପଣ ଶକ୍ତିରେ ମୁଠା କରିଦେଇ ବୋଧହୁଏ ଶ୍ୱାସରୋଧର ତୀବ୍ର ମର୍ମାନ୍ତିକ ଯନ୍ତ୍ରଣାକୁ ନୀରବରେ ସହିବାକୁ ଚେଷ୍ଟା କରିଛି ସାବିତ୍ରୀ !

ନିଜ ଘରର କବାଟକୋଣ ଛାଡ଼ି ସ୍ୱର୍ଣ୍ଣ ଯେ କେତେବେଳେ ଚାଲି ଆସିଛି ଏପଟକୁ କେହି ଜାଣି ନାହାନ୍ତି । ଦୁଇ ଘର ମଝିରେ ଥିବା କାନ୍ଥର ଚୋରି କବାଟ ବାଟେ ଚାଲି ଆସିଥିଲା ସେ । ହଠାତ୍ ତା'ର ଆର୍ତ୍ତ ଚିତ୍କାରରେ ସମସ୍ତେ ଫେରି ଚାହିଁଲା ବେଳକୁ ସ୍ୱର୍ଣ୍ଣ ଅଚେତ ହୋଇ ତଳେ ପଡ଼ି ଯାଇଥିଲା ।

ସ୍ୱର୍ଣ୍ଣ ମୂର୍ଚ୍ଛା ହୋଇ ରହିଲା ଅନେକ ଦିନ ପର୍ଯ୍ୟନ୍ତ । ଗାଁ'ରେ ସମସ୍ତେ କୁହାକୁହି ହେଲେ ଠାକୁରାଣୀଙ୍କର କିମ୍ବା ଡାଆଣୀ ପିତାଶୁଣୀଙ୍କର ଭେଟଣା ହୋଇଗଲା । ସାବିତ୍ରୀର ଝୁଲୁଥିବା ମଲା ଦେହଟା ତ ସାକ୍ଷାତ ଛୋଟିଆ ଠାକୁରାଣୀ ପ୍ରତିମାଟିଏ ପରି ଦିଶୁଥିଲା । ଆଉଟା ସୁନା ଭଳି ରୂପକ କଜଳ-କଳା ରଙ୍ଗର ମୁକୁଳା ବାଳ ଗୋଛାକ, ଆଉ ପଦାକୁ ଠେଲି ହୋଇ ବାହାରି ଆସିଥିବା ଡବ ଡବ ଆଖି ଡ଼ୋଳା ଦିଇଟା, ସାକ୍ଷାତ କାଳୀଠାକୁରାଣୀଙ୍କ ପରି ତ !

ତେଣୁ ଗୁଣିଆ ଡକରା ହୋଇ ଆସିଲେ । ଅନେକ ପ୍ରକାର ଚେଷ୍ଟା ଚରିତ୍ର ଚାଲିଲା । ଶେଷକୁ ସାହିପଡ଼ିଶାଙ୍କ ପରାମର୍ଶକ୍ରମେ ସ୍ୱର୍ଣ୍ଣର ବାପଘରକୁ ଖବର ଦିଆଗଲା ।

ସ୍ୱର୍ଣ୍ଣର ନନା ଆସି ଶଗଡ଼ରେ ମୂର୍ଚ୍ଛିତା ଝିଅକୁ ପକାଇ ନେଇ ଗଲେ ନିଜ ଗାଁ'କୁ । ବୋଉଙ୍କ କୋଳରେ ଯେତେବେଳେ ମୂର୍ଚ୍ଛା ଭାଙ୍ଗିଲା ସ୍ୱର୍ଣ୍ଣର, ସେ ଭାବିଲା ସେ ନିଜେ ମରି ଯାଇଛି । ଏ ଜୀବନରେ ବାପଘରକୁ ଫେରି ଆସିବା କଥା ତ ତା'ର ବିଶ୍ୱାସର ଅତୀତ ଥିଲା । ସେ କିପରି ବା ବିଶ୍ୱାସ କରିବ ? ଭୟରେ ଥରି ଥରି ବୋଉଙ୍କ କୋଳରେ ମୁହଁ, ଲୁଚାଇ ଦେଇଥିଲା ସେ ।

ତା'ପରେ ସୁଚିକିତ୍ସା, ଆଦରଯତ୍ନ, ବାପମାଆଙ୍କ ସ୍ନେହଭରା ସଂସ୍ପର୍ଶ ଧୀରେ ଧୀରେ ତାକୁ ଆରୋଗ୍ୟ କରିଥିଲା ।

ନିଜେ ମରିଯାଇ ଖାଲି ଯେ ସ୍ୱର୍ଣ୍ଣର ଉପକାର ସାବିତ୍ରୀ କରି ଥିଲା ତା ନୁହେଁ; ତାରି ଭଳିଆ ଅନେକ ଝିଅଙ୍କର ଉପକାର କରିଥିଲା ସେ । ସେ ଗାଁ'ରେ ବୋହୂମାନଙ୍କ ଉପରେ ହେଉଥିବା ଅତ୍ୟାଚାରର ମାତ୍ରା କମି ଯାଇଥିଲା କିଛି ପରିମାଣରେ । ତେଣୁ ଯେତେବେଳେ ଅନେକ ଦିନ ପରେ ସ୍ୱର୍ଣ୍ଣ ସୁସ୍ଥ ସବଳ ହୋଇ ପୁଣି ଫେରିଗଲା ତା'ର ସେହି କାରାଗାରକୁ, ମନେ ମନେ ଅଶେଷ କୃତଜ୍ଞତା ଜଣାଇଥିଲା ତା ସାଙ୍ଗ ସାବିତ୍ରୀକୁ ।

ହେଲେ ସେହି ଆଶ୍ୱସ୍ତିପୂର୍ଣ୍ଣ ଦିବସଗୁଡ଼ିକର ଆୟୁଷ ଥିଲା ବହୁତ କମ୍ । ସ୍ୱର୍ଣ୍ଣର ଯୁବକ ସ୍ୱାମୀ ହଠାତ୍ ସ୍ୱର୍ଗଗାମୀ ହେବାପରେ ସ୍ୱର୍ଣ୍ଣର ସେହି ହୁଗୁଳା ହୋଇ ଆସୁଥିବା ଶୃଙ୍ଖଳକୁ ଆଉ ଥରେ ଅଧିକ ଦୃଢ଼ କରି ଦିଆଗଲା । ସାତ ବର୍ଷ ବୟସରେ ଯାହା ସହିତ ଗଇଣ୍ଠାଳ ବନ୍ଧାହୋଇ, ଦୋଳମୁକୁଟ ପିନ୍ଧି ଏ ଘରେ ସେ ପାଦ ଦେଇଥିଲା, ସେହି ଦିନଟି ଛଡ଼ା ସ୍ୱାମୀ ସହିତ ଆଉ କେବେ ଦେଖା ହୋଇ ନଥିଲା ସ୍ୱର୍ଣ୍ଣର, କିନ୍ତୁ ବିଧବା ହେବା କଥାଟାକୁ ଟିକିଏ ଟିକିଏ ବୁଝି ପାରିଥିଲା ସେ । ନୀରବରେ ନିରାଭରଣା ହୋଇଥିଲା । ରଙ୍ଗୀନ୍ ତନ୍ତ ଗାମୁଛା ଛାଡ଼ି ଧଳା ଗାମୁଛା ପିନ୍ଧିଥିଲା । ମଥାରେ ଆଉ ସିନ୍ଦୂର ଟୋପା ଲଗାଇ ନଥିଲା ।

ଏ ଦୁଃସମ୍ବାଦ ଶୁଣି ନନା ଗାଁ ଲେଖାରେ କକେଇଙ୍କ ସଙ୍ଗରେ ସବାରୀ-ଗଉଡ଼ ପଠାଇ ଥିଲେ କିଛି ଦିନ ପାଇଁ  ନିଜ ପାଖକୁ ଝିଅକୁ ନେଇ ଯିବାକୁ କିନ୍ତୁ ଶାଶୂଘର ଛାଡ଼ି ନଥିଲେ, କହିଥିଲେ ବାପ ଘରକୁ ଗଲେ କୋଉ ଝିଅ କ'ଣ ନିୟମନିଷ୍ଠା ପାଳିବ ? ସାତ ପୁରୁଷ ନରକରେ ପଡ଼ିବେ । ସଦ୍ୟ ବିଧବା ସ୍ୱର୍ଣ୍ଣ ଏଇଠି ରହିବ ।

ସ୍ୱର୍ଣ୍ଣ ରହିଲା । କିନ୍ତୁ ସ୍ୱାମୀଙ୍କର ଅକାଳମୃତ୍ୟୁ ପାଇଁ ସେ ହିଁ ହେଲା ଦାୟୀ । ଶାଶୂ ନୂଆ ନାଁ ଦେଲେ ଅଲକ୍ଷଣୀ । ଶ୍ୱଶୁରେ ସଂସ୍କୃତ ପଣ୍ଡିତ ହୋଇଥିବାରୁ କହିଲେ—ଅଭିଶପ୍ତା ସତ୍ୟାନାଶୀ । ମୁଖ-ଦର୍ଶନ ପାପ ।

ଆଉଥରେ ଖାଲି ଏକ ଅସରନ୍ତି ଭୟ ଭିତରେ ଅଭାଗିନୀ ସ୍ୱର୍ଣ୍ଣର ଦିନ ଗୁଡ଼ିକ କଟିବାକୁ ଲାଗିଲା । ତା'ପରେ ଆଠଟା ମାସ ନ ଯାଉଣୁ ଯେପରି ସ୍ୱର୍ଣ୍ଣଲତାର ମଣିଷଖିଆ ପ୍ରକୃତିକୁ ପ୍ରମାଣ କରିଦେବା ପାଇଁ ତା'ର ସ୍ୱାସ୍ଥ୍ୟବାନ ଶ୍ୱଶୁର ଗାଧେଇବାକୁ ଯିବା ବାଟରେ ପ୍ରାଣ ତ୍ୟାଗ କଲେ । ତୁଚ୍ଛା ଗଛପରି ଜୀଅନ୍ତା ମଣିଷଟି ଟଳି ପଡ଼ିଲେ ବାଟଟା ଉପରେ !!

ପୁଣି ଆଉଦିନେ ଆହୁରି ଅଧିକ ବିସ୍ମୟକର ଘଟଣାଟିଏ ଘଟିଲା । ଦିନେ ହଠାତ୍ ସ୍ୱର୍ଣ୍ଣର ସ୍ୱାମୀ ତ୍ରୈଲୋକ୍ୟ ବୋଲି ପରିଚୟ ଦେଇ ଦରପାଗଲା ଲୋକଟିଏ ଆସି ଉପସ୍ଥିତ ହେଲା ସେ ଗାଁ'ରେ !

ସୂର୍ଯ୍ୟ ବୁଡ଼ି ଯାଇଥାନ୍ତି, ସମ୍ପୂର୍ଣ୍ଣ ଅନ୍ଧାର ହୋଇ ନଥାଏ, ସେହି ମୁହଁ ସଞ୍ଜବେଳେ ଛିଣ୍ଡା ମଇଲା ଲୁଗାପଟା ପିନ୍ଧା ସେହି ଲୋକଟାକୁ ଦେଖି କ'ଣ ସତରେ ଗାଁ ଲୋକେ ଚିହ୍ନିପାରିଲେ ନାହିଁ ?

ସେହି ଏକା ଗାଁ'ରେ ଜନ୍ମ ହୋଇ ତା'ରି କୋଳରେ, ତା'ରି ପାଣି ପବନ ଖାଇ ବଢ଼ିଥିବା ମଣିଷଟାକୁ ସେମାନେ ଚିହ୍ନି ପାରିଲେ ନାହିଁ କିପରି ? ଆଶ୍ଚର୍ଯ୍ୟ !!

କ'ଣ ସତରେ ଚିହ୍ନିପାରି ନଥିଲେ ସେମାନେ ?

ନିଶ୍ଚୟ ଚିହ୍ନିଥିବେ । କିନ୍ତୁ ମାନିଲେ ନାହିଁ କାରଣ ଚିହ୍ନିଥିଲେ ବା ସ୍ୱୀକାର କରିଥିଲେ ସେହି ଗାଁ'ର କେତେ କ'ଣ ଲୋକ ଯେ ନିହାତି ମିଥ୍ୟାବାଦୀ ବୋଲି ଜଣାପଡ଼ି ଯାଇଥାନ୍ତେ ! ଯେଉଁ ତୀର୍ଥଯାତ୍ରୀମାନେ ନିଜ ନିଜର ପ୍ରାଣ ଭୟରେ ଘୋର ବିପଦ ମଝିରେ ମରଣାପନ୍ନ ସହଯାତ୍ରୀଟିକୁ ଏକାକୀ ଏକ ଗଛ ମୂଳରେ ପକାଇ ଦେଇ ଚାଲି ଆସି ନିଜର ଅମନୁଷ୍ୟତା ତଥା ଭୀରୁତା କଥା ପ୍ରକାଶ ନକରି ମୃତ ବୋଲି ପ୍ରଚାର କରି ଦେଇଥିଲେ, ସେମାନଙ୍କର ହୃଦୟହୀନତା କଥା ପ୍ରମାଣିତ ହୋଇ ଯାଇଥାନ୍ତା । ତେଣୁ ସତ୍ୟକୁ ସେମାନେ ସ୍ୱୀକାର କଲେ ନାହିଁ । ବରଂ ସମ ସ୍ୱରରେ ପ୍ରତିବାଦ ଜଣାଇଲେ ।

ସେ ହେଉଛି—ସେ ଯୁଗର କଥା । ସେତେବେଳେ ଏସବୁ ବିଷୟରେ କୋର୍ଟ କଚେରିକୁ ଯିବା କଥା ଲୋକଙ୍କୁ ଜଣା ନ ଥିଲା । ଜଣା ନଥିଲା ରକ୍ତ ପରୀକ୍ଷା କରି ବଂଶ ପରମ୍ପରାକୁ ଚିହ୍ନିତ କରିବା । ସେ ଯୁଗରେ ସମାଜପତିମାନେ ହିଁ ଥିଲେ ଭାଗ୍ୟନିୟନ୍ତା । ସେମାନେ ଯାହା ବିଧାନ ଦେଉଥିଲେ ତାହା ପ୍ରତିପାଳିତ ହେଉଥିଲା । ସେମାନଙ୍କ ବିଚାର ହିଁ ଥିଲା ଅକାଟ୍ୟ । ତେଣୁ ନିଜେ ପୁତ୍ରର ଗର୍ଭଧାରିଣୀ ଜନନୀ ଅର୍ଥାତ୍ ସ୍ୱର୍ଣ୍ଣର ବିଧବା ଶାଶୂ ନିଜ ପୁଅକୁ ଚିହ୍ନି ପାରି ପ୍ରତିବାଦ ଜଣାଇଲେ ବି ଗାଁ ଲୋକଙ୍କ ବିଚାରଧାରାର ଉତ୍ତାଳ ତରଙ୍ଗରେ ତାଙ୍କ ସ୍ୱର କୁଆଡ଼େ ହଜି ଯାଇ ଲୁପ୍ତ ହୋଇଗଲା ।

ତ୍ରୈଲୋକ୍ୟ ନିଜ ଘରେ ଥିବା ପ୍ରତ୍ୟେକ ଜିନିଷର ନାମ କହିଥିଲେ । ବାପ, ଭାଇ, ଆତ୍ମୀୟସ୍ୱଜନଙ୍କ ନାମ କହିଥିଲେ, ଘରର ଗାଈବାଛୁରୀଙ୍କ ନାମ ସୁଦ୍ଧା କହିଥିଲେ । କେଉଁ ଜିନିଷ କେଉଁଠି ରହିଛି ସେ କଥା ମଧ୍ୟ କହିଥିଲେ । ତା ସହିତ କହିଥିଲେ ସେହି ଭୀଷଣ ଅବସ୍ଥାରୁ ବଞ୍ଚି ଉଠିବାର କାହାଣୀଟି ଏହିପରି—

କଲେରାରେ ଆକ୍ରାନ୍ତ ତ୍ରୈଲୋକ୍ୟଙ୍କୁ, ଯାହାକୁ କି ତା'ର ଗ୍ରାମବାସୀମାନେ ଫିଙ୍ଗିଦେଇ ଚାଲି ଆସିଥିଲେ ଭୟରେ, ସେହି ମୃତପ୍ରାୟ ତ୍ରୈଲୋକ୍ୟଙ୍କୁ ଶୁଶ୍ରୂଷା କରି, ଚେରମୂଳି ଔଷଧ ଦେଇ ସୁସ୍ଥ କରିଥିଲେ ସେହି ବାଟେ ଯାଉଥିବା ଦଳେ ତୀର୍ଥଯାତ୍ରୀ ନାଗା ସନ୍ୟାସୀ । ତା'ପରେ ନିଜର ଜୀବନଦାତା ସେହି ସନ୍ୟାସୀମାନଙ୍କ ଗହଣରେ ଅନେକ ତୀର୍ଥ ପର୍ଯ୍ୟଟନ କଲାପରେ ଯେତେବେଳେ ସେମାନେ ସମସ୍ତେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ, ସେତେବେଳେ ସେମାନଙ୍କଠାରୁ ବିଦାୟ ନେଇ ନିଜ ଗାଁ'କୁ ଫେରି ଆସିଛନ୍ତି ତ୍ରୈଲୋକ୍ୟ ।

ତ୍ରୈଲୋକ୍ୟ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ଯେ ତାଙ୍କୁ ମୃତ ବ୍ୟକ୍ତିର ତାଲିକା ଭୁକ୍ତ କରି ଦିଆଯାଇ ତାଙ୍କର ଶ୍ରାଦ୍ଧ, ଶାନ୍ତି ସବୁ ସାରି ଦିଆ ଗଲାଣି, ତାଙ୍କର ବାଳିକା-ପତ୍ନୀ ସ୍ୱର୍ଣ୍ଣଲତାର ହାତର କାଚ ଭାଙ୍ଗି ମୁଣ୍ଡର ସିନ୍ଦୂର ପୋଛି ତାକୁ ବିଧବା କରା ହୋଇ ସାରିଲାଣି !

ନିଜର ମୃତ୍ୟୁ ସମ୍ବାଦ, ପିତାଙ୍କ ମୃତ୍ୟୁ ସମ୍ବାଦ, ସ୍ତ୍ରୀ ଓ ଜନନୀଙ୍କ ନିରାଭରଣ ବିଧବା ବେଶ ସାଙ୍ଗକୁ ଗ୍ରାମବାସୀଙ୍କ ପ୍ରବଞ୍ଚନାପୂର୍ଣ୍ଣ ବ୍ୟବହାର ତ୍ରୈଲୋକ୍ୟଙ୍କୁ ଏଥର ସତକୁ ସତ ଉଦ୍‌ଭ୍ରାନ୍ତ ତଥା ଉନ୍ମାଦଗ୍ରସ୍ତ କରି ପକାଇଲା ଯେପରି । ପୁଣି ଗାଁ ଛାଡ଼ି ଚାଲିଗଲେ ସେ । ହୁଏତ ସେହି ନାଗାସନ୍ୟାସୀମାନଙ୍କ ପାଖକୁ ହିଁ ଫେରିଗଲେ କିମ୍ବା ଦୁଃଖରେ ଆତ୍ମହତ୍ୟା କଲେ ସେ କଥା କିଏ କହି ପାରିବ ?

ଖବର ପାଇ ସ୍ୱର୍ଣ୍ଣର ନନା ବ୍ୟସ୍ତ ହୋଇ ଧାଇଁ ଆସିଥିଲେ କିନ୍ତୁ ମଣିଷଟା ସେତେବେଳକୁ ହଜି ଗଲାଣି, ପୃଥିବୀଟା ଯେ ବହୁତ ବଡ଼ !

ହତଭାଗିନୀ ସ୍ୱର୍ଣ୍ଣଲତା ସଧବା ହୋଇ ମଧ୍ୟ ଆଜୀବନ ଏକ ବାଲ୍ୟ ବିଧବାର ପରିଚୟ ନେଇ ତାଙ୍କ ଦିନ କଟାଇଥିଲେ । ନିଜର ଚିରଦୁଃଖିନୀ ଭଉଣୀଟି ପାଇଁ ହେମଲତାର ଭାଗ୍ୟଧାରା ବଦଳି ଥିଲା । ଗାଁ'ର ସମାଜପତି, ଆତ୍ମୀୟସ୍ୱଜନ ଓ ସାହି ପଡ଼ିଶାଙ୍କ ଭ୍ରୂକୁଟୀକୁ ଉପେକ୍ଷା କରିଥିଲେ ତାଙ୍କ ବାପ ମା । ହେମକୁ ଆଉ ସାତ ବର୍ଷ ବୟସରେ ବାହା କରାଇ ନଥିଲେ ସେମାନେ । ଗାଁ'ରେ ନିଆଁପାଣି ବାସନ୍ଦ ହେବାର ଭୟ ନଥିଲେ ସେମାନେ ହୁଏତ ଝିଅ ହେମକୁ ଜମା ବାହା କରାଇ ନ ଥାନ୍ତେ ।

କପାଳଗୁଣରୁ ହେଉ ବା ଅନ୍ୟ ଯେଉଥିପାଇଁ ହେଉ ନିକଟସ୍ଥ କୋଡ଼ିଏଟି ଗ୍ରାମର ଲୋକେ ଯାହାଙ୍କୁ ରାଜାଙ୍କ ସମ୍ମାନ ଦେଉଥିଲେ ସେହି ପ୍ରବଳ ପ୍ରତାପୀ ଜମିଦାର ଚୌଧୁରୀ ନାରାୟଣ ପ୍ରସାଦ ଦାଶଙ୍କଠାରୁ ବିବାହ ପ୍ରସ୍ତାବ ଆସି ପହଞ୍ଚିଲା ହେମ ପାଇଁ !! ପାତ୍ର ହେଉଛନ୍ତି ସ୍ୱୟଂ ଜମିଦାର । ବିପତ୍ନୀକ, ସେ ପକ୍ଷର ପୁଅଟି ଜମା ବର୍ଷଟିଏ ସାନ ହେବ ହେମଠାରୁ ।

ଗୃହସ୍ଥଙ୍କର ପାଣ୍ଡିତ୍ୟ ଓ କୌଳୀନ୍ୟ ଦେଖି ଓ ହେମଲତାର ରୂପଗୁଣର ପ୍ରଶଂସା ଶୁଣି ନିଜେ ପ୍ରସ୍ତାବ ପଠାଇଥିଲେ ନାରାୟଣ ଦାଶ ।

ସ୍ୱର୍ଣ୍ଣର ବୈଧବ୍ୟ, ତା'ର ଦୁର୍ଦ୍ଦଶା, ଦୁର୍ଗତି ସବୁ କଥା ମିଶି ତା'ର ପିତାମାତାଙ୍କ ମନଟାକୁ ଏଭଳି ନିଷ୍କେଷିତ କରି ଦେଇଥିଲା ଯେ, ପିତା-ମାତା ଆଉ ବୟସର ପାର୍ଥକ୍ୟ, ଦ୍ୱିତୀୟ ପକ୍ଷ କଥା ବିଚାରକୁ ନେଇ ନଥିଲେ । ତା'ଛଡ଼ା ଜମିଦାର ଶ୍ରୀ ଶ୍ରୀ ନାରାୟଣ ଦାଶଙ୍କ ଶ୍ୱଶୁର ଓ ଶାଶୂ ହେବା ତ ରୂପ କଥାର କାହାଣୀ ପରି ଅବିଶ୍ୱାସ୍ୟ ଥିଲା ।

ଅତି ଆଗ୍ରହରେ ନନା ସମ୍ମତି ପ୍ରଦାନ କରିଥିଲେ । ଏଗାର ବର୍ଷ ବୟସରେ ତୋଳା-କନ୍ୟା ରୂପେ ହେମଲତା ଆସିଥିଲେ ଚୌଧୁରୀଙ୍କ ପ୍ରାସାଦକୁ । ମହା ଆଡ଼ମ୍ବରରେ ହେମଲତାର ବାହାଘର ଏହି ରୂପଦେଇପୁରରେ ହିଁ ସମ୍ପନ୍ନ ହୋଇଥିଲା ।

ଉଦାରମନା ନାରାୟଣ ଦାଶ ନିଜର ଶ୍ୱଶୁରଙ୍କୁ ଅନୁରୋଧ କରିଥିଲେ ସପରିବାରେ ଆସି ପ୍ରାସାଦ ଭିତରେ ରହିବାକୁ; କିନ୍ତୁ ହେମଲତାଙ୍କ ନନା ନୀଳକଣ୍ଠ ମିଶ୍ରେ ରାଜି ହୋଇ ନଥିଲେ

ସେ ପ୍ରସ୍ତାବରେ । ତାଙ୍କର ଅର୍ଥ ଓ ସମ୍ପତ୍ତି ନ ଥିଲା ସତ, ହେଲେ ସ୍ୱାଭିମାନର ପ୍ରାଚୁର୍ଯ୍ୟ ଅପ୍ରତିହତ ହୋଇ ରହିଥିଲା । ଆତ୍ମସମ୍ମାନବୋଧ ଏପରି ପ୍ରବଳ ଥିଲା ଯେ କ୍ୱାଇଁଙ୍କଠାରୁ କୌଣସି ପ୍ରକାର ଆର୍ଥିକ ସାହାଯ୍ୟ ନେବାକୁ ସୁଦ୍ଧା ସେ ଅସ୍ୱୀକାର କରିଥିଲେ ।

ସ୍ୱର୍ଣ୍ଣଲତା ଯେତେବେଳେ ଦୁର୍ବିସହ ଦୁଃଖ ଓ ଅତ୍ୟାଚାରରେ ଅତିଷ୍ଠ ହୋଇ ଜୀବନ କଟାଉ ଥିଲା, ହେମଲତା ସେତେବେଳେ ଏ ବିରାଟ ପ୍ରାସାଦର ରାଣୀରୂପେ ଅତି ସୁଖରେ ଦିନ କଟାଇବାକୁ ଲାଗିଲା ।

x x x

ସାତ ବର୍ଷରୁ ବାଇଶି ବର୍ଷ ! ଓଃ ! ସ୍ୱର୍ଣ୍ଣ ଭାବି ପାରୁ ନାହିଁ ପନ୍ଦର ବର୍ଷ କାଳ ସେ ଏଭଳି ଅତ୍ୟାଚାର କିପରି ସହିଲା ? ସ୍ୱର୍ଣ୍ଣର ବୟସ ବଢ଼ିବା ସଙ୍ଗେ ସଙ୍ଗେ ଯାତନା ଓ ଅପମାନକୁ କ୍ରମଶଃ ଅଧିକ ଉପଲବ୍ଧି କଲା । କେତେଥର ସେ ଭାବି ନାହିଁ ଆତ୍ମହତ୍ୟା କରି ଦେବାକୁ ! କନିଅର ମଞ୍ଜି ବାଟି ପିଇବ କି ପୋଖରୀକୁ ଡେଇଁ ବୁଡ଼ି ମରିବ; ନଚେତ୍ ବେକରେ ଦଉଡ଼ି ଦେବ—ସାବିତ୍ରୀ ପରି ।

ଓଃ ! ସାବିତ୍ରୀ !! ସାବିତ୍ରୀର ସେହି ମୃତ୍ୟୁକାଳୀନ ଯନ୍ତ୍ରଣା-ବିକୃତ ମୁହଁଟା ମନେ ପଡ଼ି ଯାଉଥିଲା । ଆଖି ଆଗରେ ଯେପରି ସାଙ୍ଗେ ସାଙ୍ଗେ ଭାସି ଉଠୁଥିଲା ମଲା ଦେହର ଛବି, ଗୋଟାଏ ବିଭୀଷିକା ପୂର୍ଣ୍ଣ ଛବି— ଠେଲି ହୋଇ ଆଖି ଡୋଳା ଦିଇଟା ବାହାରକୁ ବାହାରି ଆସିଛି, ଓଠ କୋଣରୁ ବୋହି ଆସିଛି ଧାରଟିଏ ରକ୍ତ ।

ସେ ଛବି ଦେଖିଲାକ୍ଷଣି ସ୍ୱର୍ଣ୍ଣର ଦେହଟା ଥରି ଯାଉଥିଲା ଆତଙ୍କରେ, ପିଲାଟି ଦିନରୁ ମନରେ ବସା ବାନ୍ଧି ରହି ଯାଇଥିବା ସେହି ମୃତ୍ୟୁଭୟ ତାକୁ ଆତ୍ମହତ୍ୟାର ସାହସ ଯୋଗାଇ ପାରି ନ ଥିଲା । ତେଣୁ ଅଶେଷ ଦୁଃଖ ଓ ଯନ୍ତ୍ରଣା ପାଇ ମଧ୍ୟ ସେହି ଡର ଯୋଗୁଁ ସେ ମରିପାରି ନଥିଲା ।

ସ୍ୱର୍ଣ୍ଣର କାଶୀ-ନିବାସୀ ଦେଢ଼ଶୁର ମଝିରେ ମଝିରେ ସକୁଟୁମ୍ବ ଗାଁ'କୁ ଆସୁଥିଲେ । କାଶୀରେ ବିଶ୍ୱନାଥଙ୍କ ମନ୍ଦିରରେ ପୂଜକ ଥିଲେ ସେ । ବେଶ୍ ସ୍ୱଚ୍ଛଳ ଅବସ୍ଥା । ନିଜର ଝିଅର ବିବାହଯୋଗ୍ୟ ବୟସ ହେବାରୁ ପାତ୍ର ଖୋଜି ବିବାହ ଦେବା ପାଇଁ ପିଲାଙ୍କୁ ଆଣି ଛାଡ଼ି ଦେଇଗଲେ ଗାଁ'ରେ, ତାଙ୍କ ମାଆଙ୍କ ପାଖରେ ।

ନଣନ୍ଦ ଦି'ଜଣ ବାହା ହୋଇ ଶାଶୂ ଘରକୁ ଗଲା ପରଠାରୁ, ବିଶେଷରେ ତ୍ରୈଲୋକ୍ୟ ଆସି ଏହିପରି ବିତାଡ଼ିତ ହୋଇ ଫେରିଯିବା ପରଠାରୁ ଶାଶୂଙ୍କର ପ୍ରତାପ ଯେପରି କିଛି ମାତ୍ରାରେ ଊଣା ହୋଇ ଆସୁଥିଲା । କିନ୍ତୁ ବଡ଼ବୋହୂ ଓ ନାତିନାତୁଣୀଙ୍କ ଉପସ୍ଥିତି ଯେପରି ଲିଭି ଆସୁଥିବା ନିଆଁକୁ ଆଉ ଥରେ ଜାଳିଦେଲା ।

ସଂସାରର ଯାବତୀୟ କାମରେ ତ୍ରୁଟି ବାହାର କରିବା ଯେପରି ଗୋଟାଏ ଅଭ୍ୟାସରେ ପରିଣତ ହେଲା ତାଙ୍କର । ଶାଶୂଙ୍କର ବ୍ୟବହାର ଦେଖି ସ୍ୱର୍ଣ୍ଣଠାରୁ ବୟସରେ ସାତ ସାନ ପୁତୁରା ଝିଆରୀ ମଧ୍ୟ ସୁବିଧା ଦେଖି ଭର୍ତ୍ସନା କରିବାକୁ ଲାଗିଲେ ତାକୁ । ସାନବୋହୂର ଜଳନ୍ତା ନିଆଁ ପରି ଅପରୂପ ସୌନ୍ଦର୍ଯ୍ୟ ବଡ଼ବୋହୂକୁ ବହୁତ ଈର୍ଷାପରାୟଣା କରି ଦେଇଥିଲା । ସେ ମଧ୍ୟ ଭାଗ ନେଲା ଶାସନ କରିବାରେ ।

ବିଧବା ସ୍ୱର୍ଣ୍ଣର ମୁଣ୍ଡରେ ତେଲ ଲାଗେନାହିଁ, ବାଳରେ ପାନିଆ ବାଜେନି,ଦେହ ନିରାଭରଣ, ମଇଳା କନ୍ତା ଖଣ୍ଡେ କି ମଠା ଖଣ୍ଡେ ସେ ପିନ୍ଧେ; ସେତିକିରେ ବି ଅଲକ୍ଷଣୀ ସାନ ଯାଆ ଦିଶେ ଦେବୀ ପୂଜା ବେଳର ଦୁର୍ଗା ପ୍ରତିମା ପରି !

ଆଉ ସବୁପ୍ରକାର ଆଭରଣ ଓ ପ୍ରସାଧନ ସତ୍ତ୍ୱେ ବଡ଼ ଯାଆ ଦିଶେ ଯେପରି ରାଣୀ ଆଗରେ ଚନ୍ଦ୍ରକାଣୀ ପରି । ଯାହାକୁ ହେଲେ ରାଗ ଲାଗିବ ।

ଯୁବତୀ ସ୍ୱର୍ଣ୍ଣଲତାର ଲୁଗାକାନି ଓ ଛିଣ୍ଡା ତକିଆ ଲୁହରେ ଭିଜି ଓଦାହୁଏ ରାତି ସାରା । ଦିନଯାକ ସବୁରି ଆଦେଶ ମାନି ଘୋରଣା ଚକି ପରି ସେ ଖଟେ, ସମସ୍ତଙ୍କ ସେବାଯତ୍ନ କରି କରି ପ୍ରାଣାନ୍ତ ହୁଏ, ତେବେକେ କାହା ମନରେ ଶାନ୍ତି ନାହିଁ ।

ଲୁହାକୁ ତତେଇ ଦେହରେ କେଞ୍ଚି ଦେଲାପରି ମୁନିଆ କଥାଗୁଡ଼ାକ ଶୁଣି ଶୁଣି ସ୍ୱର୍ଣ୍ଣର ତଣ୍ଟିରେ ପଖାଳଭାତ ଗୁଣ୍ଡାକ ସୁଦ୍ଧା ସହଜରେ ଖସେନି । ଭାତକଂସା ପାଖରେ ଲୁହର ଧାର ଝରି ପଡ଼େ ଅଜସ୍ର ଧାରାରେ, ରନ୍ଧାଘରର ଅନ୍ଧାରିଆ କୋଣଟିରେ ବସି ଏହି ଅଣନିଃଶ୍ୱାସୀ ଜୀବନରୁ ମୁକ୍ତି ଖୋଜେ ସେ, ଅଣ୍ଡାଳି ହୁଏ ବାଟଟିଏ ପାଇବା ପାଇଁ ।

ସେ ବର୍ତ୍ତମାନ ଆଉ ସାତ କି ନଅବର୍ଷର ସ୍ୱର୍ଣ୍ଣ ନୁହେଁ, ସମସ୍ତ ପ୍ରକାର ବୋଧଶକ୍ତି ପରିପୂର୍ଣ୍ଣ ରୂପେ ରହିଥିବା ବାଇଶିବର୍ଷ ବୟସର ତରୁଣୀ । କେତେଦିନ ଆଉ ଏହିପରି ଏ ଅବରୁଦ୍ଧ କାରାଗାରର ନିର୍ଯ୍ୟାତନା ସହିବ ?

କେତେଦିନ ଆଉ ସେ ସହିଥାନ୍ତା ?

ସେ ସହିଲା ନାହିଁ । ନ ସହି ଯାହା କଲା—ସେ କାଳର ଲୋକେ ତା'ର ସେ ସାହସ ଦେଖି ସ୍ତମ୍ଭିତ ହୋଇଗଲେ । କୁହାକୁହି ହେଲେ—ବୁଡ଼ି ମରିବାକୁ କ'ଣ ତାକୁ କଳସଟିଏ ଜୁଟିଲାନି ? ବାଡ଼ିରେ କନିଅର ମଞ୍ଜି ନଥିଲା ? କିଛି ନଥିଲେ ବେକକୁ ଖଣ୍ଡେ ଦଉଡ଼ି ?

ନା, ସେସବୁ କିଛି ସେ କଲାନାହିଁ ।

ତେବେ ?

ସମସ୍ତଙ୍କ ମୁହଁରେ କାଳି ବୋଳିଦେଇ ସେ କ'ଣ କେଉଁ ଲୋକ ସଙ୍ଗେ ଗୃହତ୍ୟାଗ କଲା ? ଜାତି ଛାଡ଼ିଲା, ଖାନ୍ଦାନୀ ଛାଡ଼ିଲା ? କୁଳ ତ୍ୟାଗ କଲା ?

ନା, ତା ବି ନୁହେଁ ।

ଅବଶ୍ୟ ସେକାଳକୁ ଚାହିଁ ସେ ଗୋଟାଏ ଅତି ସାହସିକ ପଦକ୍ଷେପ ନେଲା ।

ଯୁଗେ ଯୁଗେ କିଏ ନା କିଏ ଏହିପରି ଦୁଃସାହସିକ ପଦକ୍ଷେପ ନେବାକୁ ବାଧ ହୋଇଛନ୍ତି ଅନ୍ୟାୟର ଶୃଙ୍ଖଳ ଭାଙ୍ଗିବାକୁ, ସମାଜକୁ ନୂଆ ଦିଗ ଦେଖାଇବାକୁ । ଆଜି ଆମେ ଯେଉଁ ସମାଜ ଦେଖୁଛେ ତା ପଛରେ ଅନେକ ପୁରୁଷ ଓ ଅନେକ ନାରୀଙ୍କର ସଂଗ୍ରାମର ସ୍ୱାକ୍ଷର ରହିଛି । ରହିଛି ଅସଂଖ୍ୟ ବିଦ୍ରୋହ ତଥା ବିପ୍ଳବର ପ୍ରଜ୍ୱଳିତ ଆଲୋକ ଆଉ ରହିଛି ଅଜସ୍ର ଅସହାୟ ଆତ୍ମୋତ୍ସର୍ଗର ମର୍ମାନ୍ତିକ ଅଲିଖିତ କାହାଣୀ ସବୁ ।

ଏହି କାଳରଥର ଚକକୁ କାଦୁଅରୁ ଉଦ୍ଧାର କରି ଆଉଥରେ ରାଜପଥରେ ଚାଳିତ କରିବାକୁ ତାରି ତଳେ ଅନେକ ଅନେକ ହତଭାଗିନୀ ନିଜ ନିଜର ବୁକୁର ପଞ୍ଜରାକୁ ପାତି ଦେଇଛନ୍ତି । ନିଜକୁ କ୍ଷତବିକ୍ଷତ କରି, ନିଃଶେଷ କରି ଆଗାମୀ ଯୁଗର ଯାତ୍ରୀମାନଙ୍କ ପାଇଁ ରାସ୍ତା ତିଆରି କରିଛନ୍ତି । କଳଙ୍କର ଟୀକାକୁ ତିଳକ କରି ଖୋଲିଛନ୍ତି ଅବରୁଦ୍ଧ ପଥକୁ, ଅନ୍ଧକାରର ଆବରଣକୁ ଚିରି ଏହିମାନେ ହିଁ ଦେଖାଇ ଦେଇଛନ୍ତି ଆଗାମୀ ଯୁଗ ପାଇଁ ଆଲୋକ ଶିଖାକୁ । ଏହି ହତଭାଗିନୀ ସ୍ୱର୍ଣ୍ଣଲତାମାନେ ସାଜିଛନ୍ତି ଲକ୍ଷ ଲକ୍ଷ ଦଧୀଚି ।

ସେକାଳର ସେ ସୁଦୃଢ଼ ସଂସ୍କାର ଉପରେ ଯେପରି ପଦାଘାତ କରିଥିଲା ସମସ୍ତଙ୍କର ଦୟାର ପାତ୍ରୀ ଅତି ସାଧାରଣ ସ୍ୱର୍ଣ୍ଣ ବୋଲି ସେହି ସ୍ୱାମୀ ଥାଇ ମଧ୍ୟ ବିଧବା ସାଜିଥିବା ଗାଉଁଲି ଝିଅଟି ।

କନିଅର ମଞ୍ଜି ଆଉ ଦଉଡ଼ି କଳସୀ ହିଁ ଯେତେବେଳେ ଏକମାତ୍ର ମୁକ୍ତିର ବାଟ ଥିଲା, ସ୍ୱର୍ଣ୍ଣର ମୁଣ୍ଡରେ ଏ ନୂଆ ଚିନ୍ତା ଦେଖାଦେଲା କିପରି ?

ତାକୁ ବିଦ୍ରୋହିଣୀ କରାଇଲା କିଏ ? କିଏ ତା ହୃଦୟ ଭିତରେ ଭରିଦେଲା ନୂଆ ସାହସ ?

ସେକଥା କେହି କହି ପାରିବେ ନାହିଁ । ହୁଏତ ପରିସ୍ଥିତି, ପରିବେଶ ତାକୁ ସେ ସାହସ ଯୋଗାଇଥିଲା ।

ଦିନେ ଖୁବ୍ ଭୋର୍‌ରୁ ଅର୍ଥାତ୍ ଯଥେଷ୍ଟ ଅନ୍ଧାର ଥିଲା, ଗାଁ'ର ସମସ୍ତେ ଶୋଇଛନ୍ତି, ସ୍ୱର୍ଣ୍ଣ ନିଜର ଛୋଟ ଟିଣବାକ୍‌ସଟାକୁ ମୁଣ୍ଡରେ ଧରି, ପାଦ ଚିପି ଚିପି, ବାଡ଼ି ଦୁଆର ଖୋଲି ପୋଖରୀ ତୁଠ ପାଖର ରାସ୍ତାରେ ଯାଇ ପହଞ୍ଚିଲା !

ଛାତି ଭିତରଟା କ'ଣ ଭୟରେ ଥରୁ ନଥିଲା ତା'ର ? ଭୂତ, ପ୍ରେତ, ହିଂସ୍ରଜନ୍ତୁ ପୁଣି ମଣିଷ, ସବୁ ଡରଗୁଡ଼ିକ ମିଶି କ'ଣ କେତେ ସମୟ ପାଇଁ ତା ପାଦ ଦୁଇଟାକୁ ପଥର କରି ଦେଇ ନଥିଲେ ?

ତେବେକେ କି ଏକ ମହାସାହସରେ ଉଦ୍‌ବୁଦ୍ଧ ହୋଇ ତା'ର ସମସ୍ତ ଭୟକୁ ସେ ଜୟ କଲା ।

## (୪)

ହୁଏତ ତା'ର ଧମନୀରେ ବହୁଥିବା କେଉଁ ଦୁଃସାହସୀ ପୂର୍ବପୁରୁଷଙ୍କ ରକ୍ତଧାରା ହିଁ କାଳ ବିରୁଦ୍ଧରେ ବିଦ୍ରୋହ କରିବାର ସାହସ ଦେଇଥିଲା ତାକୁ ।

ଭଲରୂପେ ଲୁଗାଟାକୁ ସଜାଡ଼ି, ଓଢ଼ଣା ଟାଣି, ଉଦ୍‌ଭ୍ରାନ୍ତ ପରି ପୋଖରୀ ତୁଠ ପାଖର ପାଦଚଲା ରାସ୍ତାକୁ ଅତିକ୍ରମକରି ସେ ଆସି ଠିଆ ହେଲା ବିଲ ମଝି ରାସ୍ତାରେ ଏବଂ ତା'ପରେ ଚାଲି ଚାଲି ଯାଇ ବଡ଼ ରାସ୍ତାରେ ପହଞ୍ଚିଲା । ଥରେ ଦି'ଥର ବାପ ଘରକୁ ଯିବା ଆସିବା କରିବା ଭିତରେ ବାଟ ଚିହ୍ନିଥିଲା ସ୍ୱର୍ଣ୍ଣ । ବେଶ୍ ଜୋର୍‌ରେ ଦଉଡ଼ିଲା ପରି ପାଦ ପକାଇ ଚାଲୁଥିଲା ସେ । ସୂର୍ଯ୍ୟୋଦୟ ହେବା ପୂର୍ବରୁ ତାକୁ ଯେ ବହୁତ ଦୂରକୁ ଚାଲିଯିବାକୁ ପଡ଼ିବ, ବହୁତ ଦୂରକୁ ।

ଅନେକ ସମୟ ପରେ—କେତେ ସମୟ କହି ହେବନି, ନିଃଶ୍ୱାସ ପ୍ରଶ୍ୱାସର ଅତି ଦ୍ରୁତ ଗତି ହେତୁ ବାଧ ହୋଇ ଠିଆ ହୋଇ ପଡ଼ିଲା ସ୍ୱର୍ଣ୍ଣ । ସୂର୍ଯ୍ୟ ସେତେବେଳକୁ ବହୁତ ଉପରକୁ ଉଠି ଗଲେଣି । ରାସ୍ତା, ପ୍ରାନ୍ତର, ବନଭୂମି, କୃଷିକ୍ଷେତ୍ର ସବୁ ଆଲୋକିତ ହୋଇଗଲାଣି ।

ରାସ୍ତା କଡ଼ରେ ଥିଲା ଅତି ନିର୍ମଳ ପାଣି ରହିଥିବା ପୋଖରୀଟିଏ, ଅତି ସୁଦୃଶ୍ୟ ଭାବରେ ନିର୍ମିତ । ପଥରରେ ବନ୍ଧା କାନ୍ଥ, ଘାଟ, ପାହାଚ୍‌ଶ୍ରେଣୀ, ସୁନ୍ଦର ତୁଳସୀ—ଚଉରାଟିଏ ରହିଛି । ଘନପତ୍ରରେ ଆଚ୍ଛାଦିତ କେତେଗୋଟି ଆମ୍ବଗଛ ସୁଶୀତଳ ଛାୟା ପ୍ରଦାନ କରୁଛି । ସେହି ଶୀତଳ ଛାୟା ତଳେ ଏଣେତେଣେ ହୋଇ ପଥର ବନ୍ଧେଇ ବେଞ୍ଚଗୁଡ଼ିଏ ତିଆରି କରାଯାଇଛି ଯେପରି ଚାଲି ଚାଲି କ୍ଳାନ୍ତ ଶ୍ରାନ୍ତ ହୋଇ ଯାଇଥିବା ପଥିକମାନେ କିଛି ସମୟ ବିଶ୍ରାମ ନେଇପାରିବେ । ସବୁ ସୁପରିକଳ୍ପିତ । କେଉଁ ମହାତ୍ମା ରାଜପୁରୁଷ କିମ୍ବା ସାମନ୍ତ ଜମିଦାର ପୁଣ୍ୟ ଅର୍ଜନ କରିବାପାଇଁ ଏସବୁ ତିଆରି କରାଇଛନ୍ତି । ସେ କାଳରେ ପୁଣ୍ୟ ଲାଭର ପ୍ରକୃଷ୍ଟ ଉପାୟ ଥିଲା ଏହିଭଳି ମାନବ ସେବା କରିବା ।

ନିଜର ମୁହଁ ହାତ ଧୋଇ ସତେ ଯେପରି ଜୀବନ ଫେରି ପାଇଲା ସ୍ୱର୍ଣ୍ଣ । ଟିକିଏ ବିଶ୍ରାମ ନେଇ ସୁସ୍ଥ ହେଲା ପରେ ହଠାତ୍ ତା'ର ଦୃଷ୍ଟି ପଡ଼ିଲା—ରାସ୍ତା କଡ଼ରେ କାଠ ଖମ୍ବ ପୋତା ଯାଇ, କାଠ ପଟା ଲଗାଇ ତା ଉପରେ ବଡ଼ ବଡ଼ ଓଡ଼ିଆ ଅକ୍ଷରରେ ଲେଖା ହୋଇଛି 'ରୂପଦେଈପୁର' ।

ଟୀର ଚିହ୍ନ ଅଙ୍କା ଯାଇ ନିର୍ଦ୍ଦେଶ କରାଯାଇଛି ରୂପଦେଇପୁର ଗାଁ ଭିତରକୁ ଯାଇଥିବା ଗୋଡ଼ି ପଥରରେ ତିଆରି ବେଶ୍ ପ୍ରଶସ୍ତ ରାସ୍ତାଟାକୁ ।

ସେ ସମୟରେ ଗ୍ରାମ ନିର୍ଦ୍ଦେଶ କରିବା ପାଇଁ ପ୍ରତ୍ୟେକ ଜାଗାରେ ବୋର୍ଡ଼ ନଥିଲା, ତେବେ ନାରାୟଣ ଦାଶଙ୍କ ଜମିଦାରୀରେ ବହୁତ କିଛି ଉନ୍ନତି ହୋଇ ସାରିଥିଲା । କାରଣ କଚେରି କାମରେ ଜମିଦାର କଟକ, କଲିକତା ଯାଉଥିଲେ ଏବଂ ଆଧୁନିକ ବ୍ୟବସ୍ଥା ସବୁ ଦେଖି ଆସୁଥିଲେ ।

ସ୍ୱର୍ଣ୍ଣଲତା ଚମକି ପଡ଼ିଲା—ଆରେ ! ରୂପଦେଇପୁର । ହେମର ଶାଶୂଘର ଗାଁ ତ ! ହେମ ଅଛି ସେଠି । ତାକୁ ଟିକିଏ ଦେଖି ଦେଇ ଗଲେ ହୁଅନ୍ତା ! ହେମକୁ ନ ଦେଖିବା କେତେ ବର୍ଷ ହୋଇଗଲାଣି ।

ସ୍ୱର୍ଣ୍ଣ ଥରଟିଏ ଭାବିଲା ନାହିଁ—ବନ୍ଧୁ କୁଟୁମ୍ବଙ୍କ ଘରେ ଏହିପରି ଏକୁଟିଆ ଯାଇ ପହଞ୍ଚିବାଟା କେଡ଼େ ଅଶୋଭନୀୟ ହେବ । ତା'ର ମନ ନିଷ୍ପାପ, ସେ ଅତି ସରଳ, ତେଣୁ ସେସବୁ ଖିଆଲ ହେଲା ନାହିଁ ତାର । ଆନନ୍ଦରେ ଉତ୍‌ଫୁଲ୍ଲ ହୋଇଗଲା ସ୍ୱର୍ଣ୍ଣ । ବଡ଼ରାସ୍ତା ଛାଡ଼ି ସେ ପାଦ ଦେଲା ରୂପଦେଇପୁରର ରାସ୍ତା ଉପରେ ।

ଏଥର ପ୍ରକାଶ୍ୟ ଦିବାଲୋକରେ ସେ ବେଶ୍ ନିର୍ଭୟ ହୋଇ ଚାଲୁଥିଲା । ଅବଶ୍ୟ ନାକତଳଯାଏ ଟଣା ଯାଇଥିବା ଓଢ଼ଣାଟା ଯଥେଷ୍ଟ ସୁରକ୍ଷା କରିଥିଲା ତାକୁ । କ୍ଷେତକୁ ହଳବଳଦ ଧରି ଚାଲିଥିବା ଚାଷୀମାନେ, ଶଗଡ଼ିଆ, ପନିପରିବା ବିକାଳୀ ଓ ନାନାପ୍ରକାର ବ୍ୟବସାୟୀଙ୍କ ଯିବାଆସିବା ଚାଲିଥାଏ । ଅନେକ ବାଟ ଖରାରେ ଚାଲି ଚାଲି ଯାଇ ଅବଶେଷରେ ପହଞ୍ଚିଲା ସାନ ଭଉଣୀ ହେମର ଘର ଆଗରେ । ରାଜ ନଅର ପରି ବିରାଟ କୋଠାଘର । ଦି'ଜଣ ସ୍ତ୍ରୀଲୋକ ତାକୁ ବାଟ ଚିହ୍ନାଇ ସାଙ୍ଗରେ ସାଙ୍ଗରେ ଆସିଥିଲେ କୌତୂହଳୀ ହୋଇ ।

ଆଖି ସାମନାର ସିଂହଦ୍ୱାର ବା ମୁଖଶାଳାକୁ ଚାହିଁଲାକ୍ଷଣି ସ୍ୱର୍ଣ୍ଣ ଯେପରି ପଥରର ମୂର୍ତ୍ତିଟିଏ ପାଲଟିଗଲା । କୋଉ ରଜାଘର ଇଏ !! ଏଠି ତା'ର ହେମ ରହୁଥିବ ? ହୁଏତ ଖୁବ ବଡ଼ ଗୋଟାଏ ଭୁଲ୍ କରିପକାଇ କେଉଁଠି ନା କେଉଁଠି ଆସି ସେ ପହଞ୍ଚିଯାଇଛି !

ପଥରରେ ଗଢ଼ା ମୂର୍ତ୍ତିଟିଏ ପରି ଭୂଇଁକୁ ଚାହିଁ ଠିଆ ହୋଇ ରହିଲା ସ୍ୱର୍ଣ୍ଣ । ତା'ର ଖାଲି ପାଦ ଦି'ଟା ଧୂଳିଧୂସରିତ, କ୍ଷତବିକ୍ଷତ ହୋଇ ରକ୍ତ ଓ ଧୂଳିରେ ବିଚିତ୍ର ଦିଶୁଛି । ଭୋକ ଶୋଷରେ ଜିଭ ଯେପରି କାଠ ପାଲଟିଛି । ବେଳ ଗଡ଼ିଗଲାଣି, ଫେରିବାକୁ ଆଉ ଉପାୟ ନାହିଁ କି ଦେହରେ ଶକ୍ତି ନାହିଁ । ବର୍ତ୍ତମାନ ସେ କ'ଣ କରିବ ?

ତାର ଅବସ୍ଥା ଦେଖି ଦୟାପରବଶ ହୋଇ ଜଣେ ଜଗୁଆଳୀ କହିଲା, ମା, ଆମ ରାଜାବାବୁ ଚୌଧୁରୀ ନାରାୟଣ ଦାଶଙ୍କ ଘର ଏଇଟା । ଏଠାରୁ କିଏ ଖାଲି ହାତରେ ଫେରନ୍ତି ନାହିଁ (ସେ ଭାବିଲା ସ୍ୱର୍ଣ୍ଣ ସାହାଯ୍ୟ ମାଗିବାକୁ ଆସିଛି) । ତମେ ଭିତରକୁ ଯାଅ ।

ଲୋପ ପାଇଥିବା ବୁଦ୍ଧିବୃତ୍ତି ଯେପରି ଫେରି ଆସିଲା ସ୍ୱର୍ଣ୍ଣର । ସେ ଜଣାଇଲା ରାଣୀମା'ଙ୍କ ବାପଘର ଗାଁରୁ ଆସିଛି ସେ ।

ତା'ପରେ ପରିଚାରିକା ଗହଣରେ ଭିତର ମହଲ ଅଗଣାରେ ଯାଇ ଠିଆ ହୋଇ ସ୍ତବ୍ଧ ଭାବରେ ଚାରିଆଡ଼ର ବିଶାଳତାକୁ ଦେଖିବାକୁ ଲାଗିଲା । ତା'ର ବାକ୍ସଟିକୁ ପ୍ରଥମରୁ ଜଣେ ଦାସୀ ଧରି ନେଇଥିଲା । ଏଥର ଆଉ ଜଣେ ପାଣିଢାଳ ଓ ଗାମୁଛା ଧରି ଆସି ଅତିଯତ୍ନରେ ତା'ର କ୍ଷତବିକ୍ଷତ ଧୂଳିବୋଳା ପାଦ ଦୁଇଟାକୁ ଧୋଇ ଦେବାକୁ ଲାଗିଲା ।

ଗାଁ'ରୁ କିଏ ଆସିଛି ଶୁଣି ବଡ଼ ଆଗ୍ରହରେ ହେମ ଆସି ଠିଆ ହେଲା ଉପର ଘର ବାରଣ୍ଡାର କାରୁକାର୍ଯ୍ୟମଣ୍ଡିତ ଲୁହାର ବାଡ଼ ନିକଟରେ ।

'—କିଏ ସେ ?' ପଚାରି ଦେଇ ବିସ୍ମୟରେ ହତବାକ୍ ହୋଇଗଲା ସେ । ସ୍ୱର୍ଣ୍ଣ ଉପରକୁ ମୁହଁଟେକି ଚାହିଁଲା—ଆଉଟା ସୁନା ଭଳି ଦେହର ରଙ୍ଗ ପ୍ରାଚୁର୍ଯ୍ୟ ଓ ଶାନ୍ତି ଭିତରେ ବର୍ଦ୍ଧିତ ହୋଇ ସତେକି ଝଲସି ଉଠୁଥିଲା ହେମର । ତା ସହିତ ତା'ର ସର୍ବାଙ୍ଗରେ ମଣ୍ଡିତ ସୁନା, ହୀରା, ନୀଳା ଓ ମୁକ୍ତାର ଅଳଙ୍କାରଗୁଡ଼ିକ ଝଲମଲ କରୁଥିଲେ । ପାଟଶାଢ଼ିଟିଏ ପିନ୍ଧି ହେମ ଦିଶୁଥିଲା ଏକ ଜ୍ୟୋତିର୍ମୟୀ ଦେବୀପ୍ରତିମା ପରି ।

ସ୍ୱର୍ଣ୍ଣ ହଠାତ୍ ଚିହ୍ନି ପାରିଲା ନାହିଁ ହେମକୁ, ସେହି ବାହାଘର ବେଳେ ଯାହା ସେ ସାନ ଭଉଣୀକୁ ଦେଖିଥିଲା, ଏଥି ଭିତରେ କେତେବର୍ଷ ଚାଲିଗଲାଣି । ଏଗାର ବର୍ଷର ହେମ ବର୍ତ୍ତମାନ ଏକୋଇଶି ବର୍ଷର ପରିପୂର୍ଣ୍ଣଯୌବନା ଦେବୀମୂର୍ତ୍ତି ପାଲଟିଛି ।

ହେମ ମଧ୍ୟ ସହଜରେ ଚିହ୍ନି ପାରୁନାହିଁ ବଡ଼ ଭଉଣୀକୁ । ଦୀର୍ଘ ପଥଚଲାରେ କ୍ଳାନ୍ତ, ଶ୍ରାନ୍ତ, ଧୂଳିଧୂସରିତ ରୂକ୍ଷ କେଶ, ମଳିନ ବସ୍ତ୍ର ପରିହିତ । ମୂର୍ତ୍ତିଟି କ'ଣ ସତେ ତା ନାନୀ ସ୍ୱର୍ଣ୍ଣ ହୋଇପାରେ ? କିନ୍ତୁ ତା' ନାନୀ ଛଡ଼ା ଆଉ କିଏ ହୋଇଥାଇ ପାରେ ଏ ?

ଆଶ୍ଚର୍ଯ୍ୟ ହୋଇ ଜଣେ ପରିଚାରିକା କହିଲା—ରାଣୀ ମା, ଯେ ଆପଣଙ୍କ ଗାଁରୁ ଆସିଛନ୍ତି ପରା ? ଚିହ୍ନିପାରୁ ନାହାନ୍ତି ?

ସ୍ୱର୍ଣ୍ଣର ଦୁଇ ଆଖିରେ ଲୁହ ଢଳ ଢଳ ହେଉଥିଲା । ଢୋକ ଗିଳି ସେ ଅତିକଷ୍ଟରେ କହିଲା—ହେମ, ମୁଁ ମଧ୍ୟ ତତେ ଚିହ୍ନିପାରୁନି । ଏଗାର ବର୍ଷର ପିଲାଟିଏ ହୋଇଥିଲୁ ବାହାଘର ବେଳକୁ, ସେତିକି ଯାହା ତତେ ଦେଖିଛି, ୟା ଭିତରେ ଏତେ ବର୍ଷ ଚାଲିଗଲାଣି । ମୁଁ ସ୍ୱର୍ଣ୍ଣ — ମତେ ଚିହ୍ନିପାରୁନୁ ?

ହେମ ଆଉ କିଛି ଉତ୍ତର ଦେଇନଥିଲା । ପାଗଳ ପରି ଦଉଡ଼ି ଓହ୍ଲାଇ ଆସିଥିଲା ତଳକୁ । ଓହ୍ଲାଇ ଆସି ସେଇ ଧୂଳିଧୂସରିତ, ବେଦନାରେ କରୁଣ ମୂର୍ତ୍ତିଟିକୁ କୁଣ୍ଢାଇ ଧରିଥିଲା ପ୍ରବଳ ଆବେଗରେ । ରୁଦ୍ଧକଣ୍ଠରୁ ତା'ର ଏତକି କେବଳ ବାହାରିଥିଲା—ନାନୀ ତୁ ?

ଦୁଇ ଭଉଣୀଙ୍କ ଆଖିରୁ ଧାରାଶ୍ରାବଣ ଝରିଗଲା କିଛି ସମୟ ପାଇଁ । ଦେଖଣାହାରୀମାନେ ସ୍ତମ୍ଭିତ ହୋଇ ଏ ନାଟକ ଦେଖୁଥିଲେ । ରାଣୀମା'ଙ୍କ ବଡ଼ ଭଉଣୀ ଏ ଭଳି ଦୀନଦରିଦ୍ର ଭିଖାରୁଣୀ ବେଶରେ ଟିଣ ବାକ୍ସଟିଏ ମୁଣ୍ଡାଇ ଏକୁଟିଆ ଚାଲି ଚାଲି ଆସିବାଟା ଏକ ନାଟକ ନୁହେଁ ତ କଣ ?

ସ୍ୱର୍ଣ୍ଣ ଯେପରି ସଙ୍କୋଚରେ ମରି ଯାଉଛି । ଏତେବେଳକୁ ଯାଇ ତା'ର ଖିଆଲ ହେଉଛି– ରୂପଦେଈପୁରକୁ ଆସି ଏଭଳି ପହଞ୍ଚିବାଟା ତା'ର ବିବେକବୁଦ୍ଧିଶୂନ୍ୟ କାର୍ଯ୍ୟ ହୋଇଛି । ହେମର ଆକାଶଚୁମ୍ବୀ ପଦମର୍ଯ୍ୟାଦାକୁ ଯେପରି ସମସ୍ତଙ୍କ ଆଗରେ ଧୂଳିରେ ପକାଇ ଦେଇଛି ସ୍ୱର୍ଣ୍ଣ !

କିନ୍ତୁ ହେମର ଦୃଷ୍ଟିକୋଣ ଥିଲା ଭିନ୍ନ । ଆନନ୍ଦରେ ବିହ୍ୱଳ ହୋଇଯାଇ ନାନୀକୁ ତା'ର ଉପର ଘରକୁ ଟାଣି ନେଉ ନେଉ ଅଶ୍ରୁଭରା କଣ୍ଠରେ ସେ କହିଲା–କେତେ ବର୍ଷ ପରେ ତତେ ଦେଖିଲି ନାନୀ ! ଆଗ ଟିକିଏ ଗାଧୋଇ ଖାଇପିଇ ଆରାମ କଲୁ, ପରେ ସବୁ କଥାବାର୍ତ୍ତା ହେବା । ତେଲ ଟିକିଏ ନେଇ ଆସୁଛି, ତୋ ଗୋଡ଼ ହାତରେ ଲଗାଇ ଦେବି । ଆହା, କେତେ କଷ୍ଟ ତୋତେ ନ ହୋଇଥିବ !

ଲୁହରେ ଭାସୁ ଭାସୁ ଫିକ୍ କରି ହସି ପକାଇଲା ସ୍ୱର୍ଣ୍ଣ । ଭାବିଲା–ନା, ହେମଟା ଠିକ୍ ସେହି ପିଲାଦିନର ଭଳି ରହିଛି, ପରମଜ୍ଞାନୀ ଭଳି କଥାବାର୍ତ୍ତା କରିବା ଢଙ୍ଗଟା ଜମା ବଦଳିନି ତାର ।

ସେତେବେଳକୁ ହେମର କୋଳ ମଣ୍ଡନ କରି ସାରିଲାଣି ପରମ ରୂପବାନ ଶିଶୁ ବିଶ୍ୱନାଥ । ଖିଆପିଆ ସରିବା ପରେ ଶୋଇବା ଘରେ ନାନୀର କୋଳକୁ ଆଉଜି ବସି ତା'ର ସମସ୍ତ ଦୁଃଖ କାହାଣୀ ଶୁଣିଲା ହେମଲତା । ତା'ର ଦୁଃସାହସିକତା କଥା ଜାଣିଲା, କିଛି ସମୟ ସ୍ତବ୍ଧ ହୋଇ ବସିରହିଲା ।

କାହାଣୀ ଶେଷ କରି କୁଣ୍ଠିତା ଭାବରେ ସ୍ୱର୍ଣ୍ଣ କହିଲା–

–କାଲି ସକାଳୁ ମତେ ନନାଙ୍କ ପାଖକୁ ପଠାଇ ଦେବୁ ହେମ ? ଜାଣିଶୁଣି ତୋର ମାନମର୍ଯ୍ୟାଦାକୁ ମୁଁ ତଳକୁ ପକାଇ ଦେଇଛି, ତତେ ଟିକିଏ ଦେଖିବାର ଲୋଭ ସମ୍ଭାଳି ପାରିଲିନି, ଚାଲି ଆସିଲି । କ୍ୱାଇଁ ସାଆନ୍ତେ କ'ଣ ଭାବିବେ ? ତୋର ବନ୍ଧୁବାନ୍ଧବ, ତୋର ଲୋକବାକ ସମସ୍ତେ କ'ଣ ଭାବୁଥିବେ ? ସତ କହୁଛି ହେମ, ମୋ ବୁଦ୍ଧି କୁଆଡ଼େ ଲୋପ ହୋଇଯାଇଥିଲା । ବଡ଼ ରାସ୍ତାରେ ଯାଉ ଯାଉ କଡ଼ରେ ପୋତା ହୋଇଥିବା କାଠ ପଟା ଦେହରେ ରୂପଦେଈପୁର ନାଁ ଲେଖା ହୋଇଥିବା ଦେଖି ଆଉ ସମ୍ଭାଳି ରହି ପାରିଲିନି, ଚାଲି ଆସିଲି ।

ହେମ କହିଲା–ଭଲ କରିଛୁ । ମୋ ପାଖକୁ ଚାଲି ଆସି ତୁ ଖୁବ୍ ଭଲ କରିଛୁ ନାନୀ । ତୋ ଶାଶୂଘର ଲୋକେ କ'ଣ ତତେ ନନାବୋଉଙ୍କ ପାଖରେ ନିଶ୍ଚିନ୍ତରେ ରହିବାକୁ ଦେଇଥାନ୍ତେ ? ଅଧିକରେ ସେମାନଙ୍କୁ ଗୁଡ଼ାଏ କଷ୍ଟ ଦେଇଥାନ୍ତେ । ତୁ ମୋ'ରି ପାଖରେ ରହିବୁ, ଆଉ କୁଆଡ଼େ ଯିବୁ ନାହିଁ ।

—ହେମ ! ତୋର ସେ ପିଲାଳିଆ ବୁଦ୍ଧି ଆଜିଯାଏ ଗଲାନାହିଁ ଦେଖୁଛି । ଭଉଣୀର ଘରେ କେହି ରହନ୍ତି ? ଲୋକେ କ'ଣ କହିବେ, କ୍ୱାଇଁ କ'ଣ ଭାବିବେ ? ସେ କଥା ଅସମ୍ଭବ, ମୁଁ କାଲି ଚାଲିଯିବି ।

—ଲୋକେ ତ ନିନ୍ଦା କରିବେ, ଏଣୁ ତେଣୁ କହିବେ, ସେ କଥା ଜାଣିଛି ନାନୀ, ହେଲେ କହି କହି ଦିନେ ଥକିଯିବେ ସେମାନେ । ଏଇଲେ ତ ଘର ଛାଡ଼ି ଆସିଛୁ ବୋଲି କ'ଣ ନା କ'ଣ କହୁଥିବେ ସମସ୍ତେ । ଲୋକଙ୍କ କଥାକୁ ଖାତିର କଲେ ଆମର ଚଳିବନି । ଆଉ କ୍ୱାଇଁଙ୍କ କଥା ? ମୁଁ ତାଙ୍କୁ ଭଲରୂପେ ଜାଣେ; ସେ ଦେବତା ଭଳି ମଣିଷ । ରହ, ଟିକିଏ ବସିଥା; ମୁଁ ଏହିକ୍ଷଣି ତାଙ୍କୁ ପଚାରି ଦେଇ ଆସୁଛି ।

ମୁହୂର୍ତ୍ତକରେ ସ୍ୱର୍ଣ୍ଣର ହାତ ମୁଠାରୁ ନିଜ ହାତଟାକୁ ଛଡ଼ାଇ ନେଇ, କବାଟ ଖୋଲି, ମଲ, ପାହୁଜି, ଚୁଡ଼ି, କଙ୍କଣର ସଙ୍ଗୀତ ତୋଳି ଅଦୃଶ୍ୟ ହୋଇଗଲା ହେମଲତା । କମ୍ପିତ ହୃଦୟରେ ପଥର ପରି ଅସହାୟା ଭାବରେ ପଲଙ୍କ ଉପରେ ନିଦ୍ରିତ ଶିଶୁ ବିଶ୍ୱନାଥ ଆଡ଼କୁ ଚାହିଁ ବସି ରହିଲା ସ୍ୱର୍ଣ୍ଣ ।

ଅଳ୍ପ ସମୟ ପରେ ହେମର ଅଳଙ୍କାର ଧ୍ୱନି ସହିତ କଠଉର ଖଟ୍ ଖଟ୍ ଶବ୍ଦ ତାକୁ ଚମକାଇ ଦେଲା । ପଲଙ୍କ ଉପରୁ ଉଠି ତଳେ ଠିଆ ହୋଇ ପଡ଼ିଲା ସେ । ହେମ ପଶି ଆସିଲା ଘର ଭିତରକୁ । ଆନନ୍ଦରେ ଉଛୁଳି ପଡୁଥାଏ ତା'ର ହସ ହସ ମୁହଁ, କଠଉର ଶବ୍ଦ ଅଟକି ଯାଇଛି ଦ୍ୱାରର ସେ ପଟେ ।

ଜମିଦାର ଚୌଧୁରୀ ନାରାୟଣ ଦାଶ ହେମଠାରୁ ବୟସରେ ତେଇଶି ବର୍ଷ ବଡ଼ ତେଣୁ ସ୍ୱର୍ଣ୍ଣଠାରୁ ମଧ ବଡ଼, ତେବେକେ ହେମର ବଡ଼ ଭଉଣୀ ହିସାବରେ ସ୍ୱର୍ଣ୍ଣ ତାଙ୍କର ଗୁରୁଜନ । ପର୍ଦ୍ଦାର ଯୁଗ ସେ । ତେଣୁ ଦ୍ୱାର ସେ ପାଖରେ ଥାଇ ନାରାୟଣ ଦାଶେ କହିଲେ—ନାନୀଙ୍କୁ ମୁଁ ନମସ୍କାର ହେଉଛି ।

ତାପରେ ପୁଣି କହିଲେ—ହେମ; ନାନୀଙ୍କୁ କହ ସେ ନିର୍ଭୟରେ ଏଠି ରହିବେ । ତାଙ୍କ ଶ୍ୱଶୁର ଘର ଲୋକେ ଏ ଇଲାକା ଭିତରକୁ ଆସିବାକୁ ସାହସ କରିବେନି । କାଲି ସକାଳେ ମୁଁ ସବାରୀ ଗଉଡ଼ ପଠାଇ ଶାଶୂ ଶ୍ୱଶୁରଙ୍କୁ ମୋର ଡକାଇ ଆଣିବି । ସେମାନଙ୍କ ପରାମର୍ଶ ନେବା । ହେମ, ନାନୀଙ୍କ ରହିବାର ସବୁ ସୁବିଧା କରିଦିଅ ।

ଏତିକି କହି ନାରାୟଣ ଦାଶ ଫେରିଗଲେ ।

ହେମଲତା ତା ନାନୀ ବେକକୁ ଆଦରରେ କୁଣ୍ଢେଇ ଧରି କହିଥିଲା—ନା, ନାନୀ ମୁଁ ତତେ ଆଉ କେବେ ଛାଡ଼ିବିନି; ତୋ ଶାଶୂଘର ଲୋକେ ତତେ ପାଇଲେ ଏଥର ଜୀଅନ୍ତାରେ ମାରିଦେବେ ।

ସେହି ଦିନରୁ ପ୍ରଭାବଶାଳୀ ଜମିଦାର ଚୌଧୁରୀ ନାରାୟଣ ଦାଶଙ୍କ ରାଜପ୍ରାସାଦରେ ଦୁଃଖିନୀ ସ୍ୱର୍ଣ୍ଣଲତା ରହିବାପାଇଁ ସ୍ଥାୟୀ ବନ୍ଦୋବସ୍ତ ହୋଇଯାଇଥିଲା । ପରଦିନ ନୀଳକଣ୍ଠ ଓ ଅନ୍ନପୂର୍ଣ୍ଣା ଡକାହୋଇ ଆସିଥିଲେ । ହେମଲତାଙ୍କ ଭାଇ ସଦାଶିବ ମଧ ଆସିଥିଲେ ।

ନାରାୟଣ ଓ ହେମଲତାଙ୍କ ଅନୁରୋଧକୁ ଏଡ଼ି ପାରି ନ ଥିଲେ ସେମାନେ । ପରିସ୍ଥିତିର ସତ୍ୟତା ଉପଲବ୍ଧି କରି ସ୍ୱର୍ଣ୍ଣର ନିରାପତ୍ତା ପାଇଁ ତାକୁ ଛାଡ଼ି ଯାଇଥିଲେ ହେମ ପାଖରେ ।

ଏହିପରି ହେମର ମାୟାରେ, ଶିଶୁ ବିଶ୍ୱନାଥର ମାୟାରେ ଓ ରାଧାଗୋବିନ୍ଦଙ୍କ ମାୟାରେ ଆବଦ୍ଧ ହୋଇଯାଇ ଚୌଧୁରୀପ୍ରାସାଦର ମା' ପଦବୀ ଗ୍ରହଣ କରି ସ୍ୱର୍ଣ୍ଣଲତା ଶେଷନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ ସେହି ରୂପଦେଈପୁରରେ ନିଜର ଜୀବନ କଟାଇଥିଲେ ।

ସେ କାଳର ନିୟମ ଅନୁସାରେ ଭଗ୍ନୀପତି ଠିକ୍ ସ୍ୱାମୀଙ୍କ ଅଗ୍ରଜ ପରି ଗଣା ଯାଉଥିଲେ । ତେଣୁ ନାରାୟଣ ଦାଶ କେବେ ସ୍ୱର୍ଣ୍ଣଲତାକୁ ସ୍ୱଚକ୍ଷୁରେ ଦେଖି ନଥିଲେ ।

ତେବେକେ ବାହାର ଜଗତରେ ଲୋକେ କ'ଣ କୁହାକୁହି ହୋଇନଥିଲେ ? କିନ୍ତୁ ସେସବୁ ଅକାଳ ମେଘର ଆଡ଼ମ୍ବର ପରି ନିଷ୍ଫଳ ହୋଇଥିଲା । କେହି କିଛି କ୍ଷତି କରି ପାରି ନ ଥିଲେ ।

ସେହି ବର୍ଷ ଚନ୍ଦ୍ରଶେଖରଙ୍କ ବାହାଘର ଅନୁଷ୍ଠିତ ହୋଇଥିଲା ।

x x x

ଯୁଦ୍ଧ କ୍ଷେତ୍ରରେ ଏକତ୍ର ହୋଇଥିବା ଉଭୟପକ୍ଷୀୟ ସୈନ୍ୟମାନଙ୍କ ମଧ୍ୟରେ ପିତୃବ୍ୟ, ଆଚାର୍ଯ୍ୟ, ମାତୁଳ, ଭ୍ରାତା, ପୁତ୍ର, ପୌତ୍ର, ସଖା, ଶ୍ୱଶୁର ଏବଂ ବନ୍ଧୁମାନଙ୍କୁ ଦେଖି ବିଷାଦଯୁକ୍ତ ହୋଇ ଅର୍ଜ୍ଜୁନ କହିଥିଲେ–

'ହେ କେଶବ ! ଯୁଦ୍ଧରେ ସ୍ୱଜନମାନଙ୍କୁ ମାରି କି ଫଳ ହେବ ? ମୁଁ ଜୟ, ରାଜ୍ୟ ଓ ସୁଖ କିଛି ଇଚ୍ଛା କରୁନାହିଁ । ଏମାନେ ମୋତେ ମାରିଲେ ସୁଦ୍ଧା ମୁଁ ଏମାନଙ୍କୁ ମାରିବି ନାହିଁ । ସାମାନ୍ୟ ପୃଥିବୀ କଥା କିଏ ପଚାରେ ? ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତ୍ରିଲୋକ ଲାଭ କରିବାପାଇଁ ସୁଦ୍ଧା ମୁଁ ଏମାନଙ୍କୁ ମାରିବି ନାହିଁ । ଯଦି ଏ ସଂସାରରେ ଭିକ୍ଷାନ୍ନ ଭୋଜନ କରିବାକୁ ହୁଏ ତାହାହିଁ ଶ୍ରେୟଃ କିନ୍ତୁ ଗୁରୁଜନମାନଙ୍କୁ ବିନାଶ କଲେ ଇହଲୋକରେ ରକ୍ତମିଶ୍ରିତ ବିଷୟ ସୁଖ ଭୋଗ କରିବାକୁ ପଡ଼ିବ ।'

ଲୋତକପୂର୍ଣ୍ଣ ଆକୁଳ ଚକ୍ଷୁ-ଅର୍ଜ୍ଜୁନଙ୍କୁ ଭଗବାନ ଶ୍ରୀକୃଷ୍ଣ ଉପଦେଶ ଦେଲେ – ଯାହା ଭବିତବ୍ୟ ନିଶ୍ଚୟ ହେବ । ଜ୍ଞାନୀ ବ୍ୟକ୍ତି ଶୋକ କରନ୍ତି ନାହିଁ ।

ଫଳରେ ହସ୍ତିନାପୁରୀ ଏକ ବିରାଟ ଶ୍ମଶାନ ଭୂମିରେ ପରିଣତ ହୋଇ ଯାଇଥିଲା । ଭାଗ୍ୟର ନିର୍ଦ୍ଦେଶ ଭବିତବ୍ୟ ।

ବିଶ୍ୱନାଥଙ୍କ ମୃତ୍ୟୁ ହେଲା ପରେ ଧର୍ମ ଆଚରଣର ଏକ ପ୍ରବଳ ଉନ୍ମତ୍ତତା ଦେଖା ଦେଇଥିଲା ଚନ୍ଦ୍ରଶେଖର ଓ ମାହେଶ୍ୱରୀଙ୍କ ଭିତରେ । ସକାଳ ଆଠଟାଠାରୁ ସନ୍ଧ୍ୟା ଆଠ ଯାଏ ନୀଳମଣିଙ୍କ ଶୟନକକ୍ଷ ସାମନାରେ ବାରଣ୍ଡାରେ ମସିଣା ସବୁ ପଡୁଥିଲା । ଆଉ ବୁଢ଼ା ବୁଢ଼ା ବ୍ରାହ୍ମଣ ପଣ୍ଡିତମାନେ ଆସି ଗୀତା, ଭାଗବତ ପ୍ରଭୃତି ଧର୍ମଶାସ୍ତ୍ରମାନ ପଢୁଥିଲେ, ଆଲୋଚନା କରୁଥିଲେ । ଆତ୍ମୀୟସ୍ୱଜନ ଶ୍ରୋତା, ଶ୍ରୋତ୍ରୀ ମଧ୍ୟ ଆସି ଯୋଗ ଦେଉଥିଲେ ସେ ଅନୁଷ୍ଠାନରେ ।

ଘର ଚଟାଣ ଉପରେ କାଛକୁ ଆଉଜି ଶ୍ୱେତବସ୍ତ୍ରରେ ଆପାଦମସ୍ତକ ଆବୃତା ନୀଳମଣି ଏକ ପଥର ଖଣ୍ଡ ପରି ବସି ଥାନ୍ତି – ଠିକ୍ ପାଷାଣୀ ଅହଲ୍ୟାଙ୍କ ପରି ।

କାଳେ ଅଳ୍ପ ବୟସ୍କା ନୀଳମଣିଙ୍କ ମନରେ କେଉଁ ଛିଦ୍ର ପଥରେ ଦୁର୍ବଳତା ପ୍ରବେଶ କରିବ, ପାପ ପ୍ରବେଶ କରିବ, ସେହି ଆଶଙ୍କାରେ ତାଙ୍କର ଶୁଭେଚ୍ଛୁ ଯାଆ ଓ ଦେଢ଼ଶୁରଙ୍କୁ ରାତିରେ ନିଦ ହେଉ ନଥାଏ । ସେମାନେ ଜାଣି ନଥିଲେ ଭଗବଦ୍ ଗୀତା ପ୍ରଭୃତି ଧର୍ମଶାସ୍ତ୍ର ନୀଳମଣିଙ୍କର କଣ୍ଠସ୍ଥ ଥିଲା । ଆଉ ମଧ୍ୟ ସ୍ୱାମୀଙ୍କ ସହିତ ନୀଳମଣିଙ୍କ ପ୍ରାଣ ନାମକ ଅସଲ ବସ୍ତୁଟି ଯେ ଚାଲି ଯାଇଥିଲା, ସେ କଥା ସେମାନଙ୍କୁ ଜଣା ନଥିଲା । ନୀଳମଣିଙ୍କ ଶରୀରଟା କେବଳ ଯନ୍ତ୍ର ପରି ଚାଲବୁଲ କରୁଥିଲା । ସ୍ୱାମୀଙ୍କ କାୟାର ଛାୟା ପରି ରହିଥିବା ନୀଳମଣିଙ୍କ ମନରୁ ଜୀବନ ପ୍ରତି ଥିବା ସମସ୍ତ ସ୍ପୃହା ଲୁପ୍ତ ହୋଇ ଯାଇଥିଲା ।

କି ସନ୍ଦେହୀ ଓ ନିର୍ବୋଧ ଥିଲେ ଚନ୍ଦ୍ରଶେଖର ଓ ମାହେଶ୍ୱରୀ ! ଯଦି ନିୟମ ନିଷ୍ଠାର ନିଶ୍ଛିଦ୍ର କାରାଗାର ଭିତରେ ଜଣକୁ ଶୃଙ୍ଖଳାବଦ୍ଧ କରି ରଖି ଦିଆଯାଏ ତାହେଲେ କ'ଣ ପାପ ଦେଖା ଦେବ ନାହିଁ ? ପାପ ପୁଣ୍ୟର ଜାତସ୍ଥଳୀ ହେଲା ଏଇ ମନଟା । ଆଉ ଏ ମନକୁ ଶୃଙ୍ଖଳାବଦ୍ଧ କରି ରଖିବାର ସାଧ କାହାର ଅଛି ?

ସେ କେତେଦିନ ନୀଳମଣି କି ଅତ୍ୟାଚାର ସହି ନ ଥିଲେ ? ଏକ ପ୍ରାଣହୀନ ଶବକୁ ଗୀତାର ବାଣୀ ଶୁଣାଇଲା ପରି ଧର୍ମ କଥନ ଚାଲିଥାଏ ଅନବରତ । ଅତି ନିଷ୍ଠା ସହକାରେ ରାନ୍ଧିବାଢ଼ି ଯାଆ ମାହେଶ୍ୱରୀ ଆଣି ହବିଷ୍ୟାନ୍ନ ରଖନ୍ତି ଆଗରେ, ଖାଇବାକୁ ବାଧ୍ୟ କରନ୍ତି । ବିଶ୍ୱାସ କରିପାରନ୍ତି ନାହିଁ ଯେ ନୀଳମଣିଙ୍କର ଭୋକ ବୋଲି ଅନୁଭୂତି ହିଁ ନାହିଁ, ବରଂ ସନ୍ଦେହ କରନ୍ତି–ହବିଷ୍ୟାନ୍ନରେ ତାଙ୍କର ରୁଚି ନାହିଁ ବୋଲି । ସମୟ ସମୟରେ ସେଥିପାଇଁ ଅପ୍ରିୟ କଥା ମଧ୍ୟ କହି ପକାନ୍ତି ।

ସେଦିନ ସେମାନେ ଯଦି ନୀଳମଣିଙ୍କ ଭବିଷ୍ୟତ ଜାଣିଥାନ୍ତେ ? ଜାଣିଥିଲେ ବି କ'ଣ ଭବିତବ୍ୟକୁ ବାଧା ଦେଇପାରିଥାନ୍ତେ ? ନା ।

ପରୀକ୍ଷିତଙ୍କ ଭଳି ମହାଧର୍ମପରାୟଣ ଓ ମହାପ୍ରତାପୀ ରାଜା ଯେତେ ଆଗ୍ରହରେ ନିଶ୍ଛିଦ୍ର ଲୌହ ପ୍ରାସାଦ ନିର୍ମାଣ କରାଇ ଥିଲେ ମଧ୍ୟ ଭବିତବ୍ୟ ଏକ ମାୟାବୀ ବ୍ରାହ୍ମଣ ରୂପେ ଆବିର୍ଭାବ ହେଲେ, ତକ୍ଷକ ରୂପ ଗ୍ରହଣ କଲେ ଓ ଦଂଶନ କଲେ ପରୀକ୍ଷିତଙ୍କୁ । ସେହିପରି ସତୀ ବେହୁଲାର

ଫୁଲ ଶଯ୍ୟାର ଫୁଲ ସହିତ ଭବିତବ୍ୟ ଆସି ପହଞ୍ଚିଥିଲା କଳା ନାଗୁଣି ରୂପରେ, ଦଂଶନ କରିଥିଲା ସ୍ୱାମୀ ଲକ୍ଷ୍ମୀଧରକୁ ।

ନା, ଭାଗ୍ୟରେଖାକୁ କେହି ବଦଳାଇ ପାରିବ ନାହିଁ ।

x x x

ଖାଇ ସାରିଲା ପରେ ଟିକିଏ ନିଶ୍ଚିନ୍ତରେ ଯଦି ଶୋଇ ପାରନ୍ତେ ନୀଳମଣି ? ସେ ଉପାୟ ନାହିଁ । ଅବସର ମିଳିଲା ବେଳେ ନିଦ ଆସେ ନାହିଁ ଆଖିକୁ । ସେ ଭାବନ୍ତି—ଦେବବ୍ରତ ଆଉ ସୁଜାତା ଏପର୍ଯ୍ୟନ୍ତ ଫେରିଲେ ନାହିଁ । ଆଜି ସୁନନ୍ଦା ଘରେ ନାହିଁ । ଆଜିକାଲି ଆଉ ସ୍ତ୍ରୀ ଲୋକମାନେ ଘର ଭିତରେ ଆବଦ୍ଧ ହୋଇ ରହିବାକୁ ଚାହୁଁ ନାହାନ୍ତି ।

ସୁଜାତାର ପାଟି ଶୁଭିଲା । ସକାଳ ସାଢ଼େ ଆଠଟାରୁ ଘରୁ ବାହାରି ଯାଇଥିଲା ସେ । ଏବେ ତିନିଟା ବାଜିବ, ଫେରିଲା । ଆଉ ଫେରିବା କ୍ଷଣି ସାଙ୍ଗେ ସାଙ୍ଗେ ସତେ ଯେପରି ଘରର ସବୁତକ ଦୋଷତ୍ରୁଟି ଏକତ୍ର ଦେଖି ପାରିଛି । ସେଥିପାଇଁ ଏହିପରି ଚିତ୍କାର କରୁଛି !

ବଡ଼ବୋହୂ ସୁନନ୍ଦା ବେଶ୍ ଚଲାକଚତୁର ଝିଅଟିଏ । ସମାଜ ସେବା ନାଁରେ ସେ ମଧ ଘର ଭିତରର ବନ୍ଧନରୁ ଖସି ଯାଇଛି ।

କେବଳ ବନ୍ଧନ ଭିତରେ ରହି ଯାଇଛନ୍ତି ନୀଳମଣି । ଆଶ୍ଚର୍ଯ୍ୟ !

ଠିକ୍ ପିତାମହ ଭୀଷ୍ମଙ୍କ ପରି, ଯେ କି ଆଜନ୍ମ ବ୍ରହ୍ମଚାରୀ ଥିଲେ । ସଂସାରରେ ତାଙ୍କର କିଛିହେଲେ ବନ୍ଧନ ନ ଥିଲା । କିନ୍ତୁ କେବଳ କର୍ତ୍ତବ୍ୟବୋଧ ପାଇଁ ତାଙ୍କୁ ହିଁ ଭୋଗିବାକୁ ପଡିଥିଲା ଶରଶଯ୍ୟାର ସେହି ଅଶେଷ ମର୍ମନ୍ତୁଦ ଯନ୍ତ୍ରଣା ।

ସୁପ୍ରକାଶ, ଲୀନା, ମିତା ଓ ମଣ୍ଟୁ ସ୍କୁଲ—କଲେଜକୁ ଯାଇଛନ୍ତି, ମଧୁଛନ୍ଦା ଯାଇଛି ପିକ୍‌ନିକ୍‌ରେ । ସୁନନ୍ଦା ତାଙ୍କ ମହିଳା ସମିତି ମିଟିଙ୍ଗ୍‌କୁ ।

ଦେବବ୍ରତ ଆଉ ସୁଜାତା ଫେରିଛନ୍ତି । ସ୍ୱାମୀ ସ୍ତ୍ରୀ ଦୁହେଁ ଯାକ ଚିକିତ୍ସକ ।

ସୁଜାତାର କଥା ଶୁଭୁଛି, ଗୋବିନ୍ଦକୁ ପଚାରୁଛି—ଡ୍ରଇଂ ରୁମ୍ ଆଜି ଭଲରୂପେ ସଜଡ଼ାଯାଇନି କାହିଁକି ଗୋବିନ୍ଦ ? ଆଜି ଫୁଲଦାନୀର ଫୁଲ ବଦଳା ହୋଇନି ଦେଖୁଛି । ଦିନକୁ ଦିନ ତମମାନଙ୍କର ସାହସ ବଢ଼ି ଯାଉଛି, ନାହିଁ ? ଏତେ ଗୁଡ଼ାଏ ଲୋକ ରହିଛ କାହିଁକି ତାହେଲେ ?

—ମା, ମଝିଆ ନାନୀ ପରା ବାରଣ କରିଥିଲେ ! ସେ ନାଚ ପ୍ରାକ୍‌ଟିସ୍ କରୁଥିଲେ ଏ ଘରେ ।

—ଏ ଘରେ ! ନାଚ ପ୍ରାକଟିସ୍ ! ହୁଁ । ମଧୁଛନ୍ଦାର କାମ ତାହେଲେ ! — ସ୍ୱାମୀ ଓ ସ୍ତ୍ରୀ ଦୁହେଁଯାକ ଯେତେବେଳେ ଦ୍ୱାର ପାଖରେ ଆସି ଠିଆ ହେଲେ, ନୀଳମଣି କହିଲେ—ଲୁଗା ପାଲଟି ମୁହଁ ହାତ ଧୋଇ ଖାଇବ ଯାଅ ।

ସୁଜାତା କହିଲା—ଦେଖୁ ନାହାନ୍ତି ବଡ଼ ମା ଏ ଲୋକଗୁଡ଼ାକଙ୍କ କଥା ! ତେଣୁ ଖଟି ଖଟି ଦରମରା ହୋଇ ମଣିଷ ଆସିଲା ବେଳକୁ ଡ୍ରଇଂ ରୁମ୍‌ଟା ଏକାବେଳେ ଛିନ୍‌ଛତ୍ର ହୋଇ ପଡ଼ି ରହିଛି । ନିଜେ ଛନ୍ଦା କ'ଣ ଟିକିଏ ଏସବୁ ଦେଖନ୍ତେ ନାହିଁ ? କ'ଣ ଛୁଆଟିଏ ହୋଇଛନ୍ତି ?

ନୀଳମଣି କିଛି କହିବା ପୂର୍ବରୁ ଦେବବ୍ରତ କହିଲା—ନା, ବହୁତ ବଡ଼ ମଣିଷଟିଏ ହୋଇଗଲାଣି ଛନ୍ଦା ! ପିଲାଙ୍କ ଉପରେ ସବୁବେଳେ ଦୋଷ ଲଦି ଦିଅ ନାହିଁ ସୁଜାତା । ଏସବୁ ଆମମାନଙ୍କର ଦେଖିବା କଥା ।

—ସେ ଘରେ ନାଚ ପ୍ରାକ୍‌ଟିସ୍ ନ କଲେ କ'ଣ ଚଳନ୍ତାନି ?

—ଆଉ କେଉଁଠି କରିବ ? ଟି.ଭି., ଟେପ୍‌ରେକର୍ଡ଼ର — ସବୁ ତ ସେଇ ଘରେ ରହିଛି । ମିଛରେ ଡେରି କରନି ସୁଜାତା, ଆସ ।

## (୫)

ସୁଜାତାର ଗୋରା ତକ ତକ ସୁନ୍ଦର ମୁହଁଟା ଅପମାନରେ ଲାଲ୍ ହୋଇଗଲା । ସେ କିଛି କହିବା ପୂର୍ବରୁ ଶଯ୍ୟାଶାୟିନୀ ନୀଳମଣି ଆଉ ଥରେ ତାଗିଦା ଦେଲେ, ତମେ ଦିହେଁ ଗଲ, ଶୀଘ୍ର ଖାଇପିଇ ବିଶ୍ରାମ ନେବ । ସୁନନ୍ଦା ଘରେ ନାହିଁ, ମହିଳାସଦନକୁ ଯାଇଛି । ସେଠି ସେ ଖିଆପିଆ କରିବ । ଘରେ ସେ ଥିଲେ ତ କିଛି ଚିନ୍ତାର କଥା ନ ଥିଲା । ଆଜି ପିଲାଏ ଆଉ ପ୍ରଭା ଖିଆପିଆ କେମିତି କ'ଣ ଯେ କରିଥିବେ ସେ କଥା ଦେଖିବାକୁ କିଏ ଅଛି ? ସୁଜାତା, ଯାଆ ତ ମା, ପିଲାଙ୍କୁ ଟିକିଏ ଦେଖିନେବୁ !

ସୁଜାତା ଚାଲିଗଲା । ଦେବବ୍ରତ ସ୍ନେହବୋଳା ମଧୁର କଣ୍ଠରେ ପଚାରିଲା—ବଡ଼ ମା, ଗୋଡ଼ହାତ, ଆଣ୍ଠୁ ଦରଜ କମ୍ ଅଛି ତ ?

—କମିବନି ? ତୁ ଔଷଧ ଦେଇଛୁଟି ! ଗଲୁ ଏଥର, ସବୁଦିନ ଏମିତି ଅଢ଼େଇ ପହରକୁ ଭାତ ଖାଇଲେ ଦିହ ଖରାପ ହେବନି ? ମତେ ବଡ଼ ଦୁଃଖ ଲାଗୁଛି, ବୁଝିଲୁ ?

ଦେବବ୍ରତ ତା'ର ସ୍ୱଭାବସିଦ୍ଧ ମଧୁର ହସ ଆଉ ଥରେ ହସି କହିଲା, ଆମେ ଡାକ୍ତରଲୋକ, ଆମର ବେଳ ଜଗିଲେ ଚଳିବ ବଡ଼ ମା ? ଭଗବାନଙ୍କୁ ଯେପରି ବିଶ୍ରାମ ନାହିଁ, ଡାକ୍ତରଙ୍କୁ ସେପରି ବିଶ୍ରାମ ନାହିଁ । ସେମାନଙ୍କ ପାଇଁ କାଳ ବେଳ ସବୁ ଜଗିବା ନିଷିଦ୍ଧ ।

ନୀଳମଣି ହସିଦେଇ କହିଲେ—ଏ କଥା ଆଗରୁ ଜାଣିଥିଲେ ତତେ କେବେ ଡାକ୍ତରୀ ପଢ଼ାଇ ନଥାନ୍ତି ଦେବ । ଆଚ୍ଛା ହେଲା ଏଥର, ଯାଉଛୁ ନା ନାହିଁ ଯେ ? ମୁଁ ଉଠୁଛି—

—ଆରେ ବାବାରେ ! ମୁଁ ଯାଉଛି । କହି ହସି ହସି ଚାଲିଗଲା ଦେବବ୍ରତ ।

ଦେବବ୍ରତ ଭଲ ଡାକ୍ତର ରୂପେ ସୁନାମ ଅର୍ଜ୍ଜନ କରିପାରିଛି । ଖାଲି ସେତିକି ନୁହେଁ, ନୀଳମଣିଙ୍କ ଆଦର୍ଶ ଅନୁସାରେ ଦରିଦ୍ରନାରାୟଣଙ୍କ ସେବାକୁ ଜୀବନର ବ୍ରତ ବୋଲି ଗ୍ରହଣ କରିଛି ମଧ୍ୟ ।

ଆଉ କେତେ ବର୍ଷ ବଞ୍ଚିଥିଲେ ବିଜୟ ମଧ୍ୟ ଏଭଳି ସୁନାମ ଅର୍ଜ୍ଜନ କରି ପାରିଥାନ୍ତା ।

ନୀଳମଣି ବହୁତ ଆଶା ନେଇ ବିଜୟକୁ ଡାକ୍ତରୀ ପଢ଼ାଇଥିଲେ । ସେକାଳର ଡାକ୍ତରୀ । ବିଜୟ କଲିକତାକୁ ଯାଇ ସେଠାରେ ପଢ଼ି ଡାକ୍ତରୀ ପାସ୍ କରିଥିଲା ।

ଚନ୍ଦ୍ରଶେଖର ଓ ମାହେଶ୍ୱରୀଙ୍କର ସେହିପରି ଦୟନୀୟ ଭାବରେ ମୃତ୍ୟୁ ହୋଇଯିବା ପରେ ନୀଳମଣି ଯେତେବେଳେ ହଠାତ୍ ଏ ଘରର ଏକଛତ୍ର ଅଧିକାରିଣୀ ହେଲେ, ମନକୁମନ୍ କେତେ ଯେ ନୂଆ ନୂଆ ଦୁଃସାହସିକ କଥା କରି ଯାଇଥିଲେ, ଆଜି ସେ କଥା ଭାବି ସେ ନିଜେ ଆଶ୍ଚର୍ଯ୍ୟ ହୋଇଯାଆନ୍ତି ।

ପ୍ରଥମ କରି ମାହେଶ୍ୱରୀଙ୍କ ବାପଘର ଗାଁରେ ଗୋଟିଏ ଡାକ୍ତରଖାନା ଆଉ ପୁଅ ପିଲାଙ୍କ ପାଇଁ ସ୍କୁଲଟିଏ ବସାଇଥିଲେ । ସରକାରଙ୍କଠାରୁ ଅନୁମତି ଓ ସମସ୍ତ ପ୍ରକାର ସାହାଯ୍ୟ ଆଣିବାରେ ନୀଳମଣିଙ୍କ ନନା ସହାୟକ ହୋଇଥିଲେ । ଜଣେ ମିସନାରୀ ସାହେବ ଡାକ୍ତର ନିଯୁକ୍ତ ହୋଇଥିଲେ ସେ ଡାକ୍ତରଖାନାରେ ।

ବହୁତ ତିକ୍ତ କଟୁ ସମାଲୋଚନା ଓ ବିଦ୍ରୂପର ମୁହାଁମୁହିଁ ହେବାକୁ ପଡ଼ିଛି ସେଥିପାଇଁ । ଚୌଧୁରୀ ନାରାୟଣ ଦାଶଙ୍କ ବୋହୂ ନୀଳମଣି ବ୍ରାହ୍ମ ହୋଇଗଲେ, ଖ୍ରୀଷ୍ଟିଆନ୍ ହୋଇଗଲେ ପ୍ରଭୃତି ଅନେକ ପ୍ରକାର କୁତ୍ସାରଟନା କରାଯାଇଥିଲା ତାଙ୍କ ନାଁରେ । କିନ୍ତୁ ପରେ ଯେଉଁମାନେ ନିନ୍ଦା କରିଥିଲେ ସେମାନେ ହିଁ ଶରଣାପନ୍ନ ହେଲେ ନୀଳମଣିଙ୍କର । ଅସୁସ୍ଥତାବେଳେ ଦରକାର ପଡ଼ିବାରୁ ପାଗଳ ପରି ସେମାନେ ଧାଇଁଲେ ସେହି ଖ୍ରୀଷ୍ଟିଆନ୍ ଡାକ୍ତରଖାନାକୁ ଚିକିତ୍ସା ପାଇଁ ।

ପରିକଳ୍ପନା ଗୁଡ଼ିକ ସ୍ୱାମୀ ବିଶ୍ୱନାଥଙ୍କର ଥିଲା । ନିର୍ଜ୍ଜନ ରାତିରେ ଛାତ ଉପରେ ଜହ୍ନ ଆଲୁଅରେ ବସିଥିବାବେଳେ ବିଶ୍ୱନାଥ ଯେପରି ଆଧୁନିକ କାଳର ରୂପକଥା ଶୁଣାଉଥାନ୍ତି । ପରାଧୀନ ଦେଶ ସ୍ୱାଧୀନ ହେବ । ଦୁଃସ୍ଥ ଦରିଦ୍ରଙ୍କ ସେବା ମଧ୍ୟ ଦେଶ ସେବାର ହିଁ ଅଙ୍ଗ । ଆଖପାଖର କେତୋଟି ଗାଁ ପାଇଁ ଗୋଟିଏ ଭଲ ଡାକ୍ତରଖାନା ବସନ୍ତା । ପିଲାଙ୍କ ପାଠ ପଢ଼ା ପାଇଁ କେତେଟା ସ୍କୁଲ । ଅକାଳ-ମରଣ ସଂଖ୍ୟା ବଢ଼ିଯାଆନ୍ତା ନାହିଁ । ରୋଗୀମାନେ ଚିକିତ୍ସିତ

ହୋଇପାରନ୍ତେ । ଠିକଣା ସମୟରେ ଚିକିତ୍ସା ଓ ଔଷଧ ନ ପାଇ ଅସହାୟ ଅବସ୍ଥାରେ କେତେ ଲୋକ ଯେ ମରି ଯାଉଛନ୍ତି—କଥାଗୁଡ଼ିକ ଥିଲା ବିଶ୍ୱନାଥଙ୍କର । ଓଃ ! କି ନିଷ୍ଠୁର ଭାବରେ ତାହା ସତ ବୋଲି ପ୍ରମାଣିତ ହୋଇଗଲା ତାଙ୍କ ନିଜର ଜୀବନରେ !

ଯଦି ସେତେବେଳେ ଡାକ୍ତରଖାନା ଓ ଅଭିଜ୍ଞ ଡାକ୍ତର ଥାଆନ୍ତେ, ଆଜିକାଲି ପରି ଚିକିତ୍ସା ଓ ଚିକିତ୍ସକଙ୍କ ସୁବିଧା ଥାଆନ୍ତା, ତା'ହେଲେ ତ ବିଶ୍ୱନାଥ ଏଭଳି ଅସହାୟ ଭାବରେ ଅକାଳରେ ମରିଯାଇ ନ ଥାନ୍ତେ !

ତାଙ୍କରି ସେ କଥାଗୁଡ଼ିକୁ ଅନେକ ସମୟରେ ମନେପକାନ୍ତି ନୀଳମଣି—ମଣି, ମୋ ହାତରେ ଯଦି ଜମିଦାରୀ ରହିଥାନ୍ତା ନା, ମୁଁ ପଇସା ଖର୍ଚ୍ଚ କରି ଏସବୁ କରାଇ ଦେଇଥାନ୍ତି । ଲୋକଙ୍କ ଭିତରେ ଏ ସବୁ ଚେତନା ଜାଗ୍ରତ କରିବାକୁ ପଡ଼ିବ । ଖାଲି ଦୀପଟିଏ ଜାଳି ଦେଲେ ହେବନି, ସେ ଦୀପକୁ ତେଲ ଓ ବଳିତା ପକାଇ ପକାଇ ଜଳାଇ ରଖିବାକୁ ପଡ଼ିବ ମଧ୍ୟ ।

ସେହି ଜହ୍ନରାତିରେ ଗୁଣୁ ଗୁଣୁ ସ୍ୱରରେ ବିଶ୍ୱନାଥ ଗାଉଥାନ୍ତି—ବନ୍ଦେ ମାତରଂ, ସୁଜଳାଂ ସୁଫଳାଂ ମଳୟଜ ଶୀତଳାଂ, ଶସ୍ୟଶ୍ୟାମଳାଂ ମାତରମ୍... ।

ଆଜି ମଧ୍ୟ ପୂରା ଗୀତଟି ମନେ ଅଛି ନୀଳମଣିଙ୍କର ।

ଚୌଧୁରୀ ନାରାୟଣ ଦାଶଙ୍କ ମୃତ୍ୟୁପରେ ଚନ୍ଦ୍ରଶେଖର ହିଁ ଏ ବିରାଟ ଜମିଦାରୀର ପ୍ରକୃତ ମାଲିକ ଥିଲେ । ଦୁଇଭାଇଙ୍କ ଭିତରେ ବୟସର ତାରତମ୍ୟ ଅନେକ ଥିଲା, ତା'ପରେ ସେକାଳର ସାମନ୍ତବାଦୀ ନିୟମ ଅନୁସାରେ ବଡ଼ଭାଇଙ୍କ ଆଗରେ ଚଉକିରେ ସୁଦ୍ଧା ବସୁ ନ ଥିଲେ ବିଶ୍ୱନାଥ, ଆଲୋଚନା କରିବା ତ ଦୂରର କଥା ।

ଅବଶ୍ୟ କଚେରି ମାନଙ୍କରେ ଦରକାର ପଡ଼ିଲେ ବଡ଼ଭାଇଙ୍କ ଅନୁରୋଧକ୍ରମେ ବିଶ୍ୱନାଥଙ୍କୁ ଯିବାକୁ ପଡୁଥିଲା କଟକ, କଲିକତା କିମ୍ବା ପାଟନାକୁ ।

ସେତେବେଳେ ବଙ୍ଗ, ବିହାର, ଓଡ଼ିଶା ଏକ ପ୍ରଦେଶ ଥିଲା । ଯିବା ଆସିବା ପାଇଁ ନଦୀପଥ ଓ ଜଗନ୍ନାଥ ସଡ଼କ ବ୍ୟବହୃତ ହେଉଥିଲା । ଏଣେ ରେଳ-ସଡ଼କ ନିର୍ମାଣ କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇ ଯାଇଥିଲା ଦେଶରେ ।

x x x

— ସେହି ପରାଧୀନ ଯୁଗଟାହିଁ କ'ଣ ସ୍ୱର୍ଣ୍ଣଯୁଗ ବା ସତ୍ୟଯୁଗ ଥିଲା ବଡ଼ ମା ? ସାହିତ୍ୟ, ବିଜ୍ଞାନ, ଆଧ୍ୟାତ୍ମିକତା ଓ ଦେଶପ୍ରେମ — ସମସ୍ତ ବିଷୟରେ ଜ୍ଞାନୀ ମହାପୁରୁଷମାନେ ଜନ୍ମଗ୍ରହଣ କରିଥିଲେ । ଯେମିତି ସ୍ୱର୍ଗ ରାଜ୍ୟକୁ ଖାଲି କରିଦେଇ ସବୁ ଦେବତାମାନେ ମଣିଷ ରୂପେ ଜନ୍ମ ହୋଇଥିଲେ, ଜନ୍ମ ହୋଇଥିଲେ ମାଟିର ଏ ପୃଥିବୀର ଧର୍ମ ସ୍ଥାପନ କରିବା ପାଇଁ । ହୁଏତ ସ୍ୱୟଂ ଭଗବାନ ନିଜର ସମସ୍ତ ପରାଶକ୍ତି ଧରି ଅବତୀର୍ଣ୍ଣ ହୋଇଥିଲେ ।

କଥାଗୁଡ଼ିକ ସ୍ୱରୂପାର । ବିଜ୍ଞାନର ଛାତ୍ରୀ ହେଲେ ମଧ୍ୟ ଧର୍ମଶାସ୍ତ୍ରରେ ତା'ର ଭାରି ଆଗ୍ରହ । ଅତି ବୁଦ୍ଧିମତୀ ଝିଅଟିଏ । ପାଖରେ ବସିଥିଲା ବେଳେ ଏମିତି ସବୁ କଥା କହେ ଠିକ୍ ବିଶ୍ୱନାଥ କହିଲା ପରି ।

—ଭଗବାନ ଜନ୍ମ ହେଲେ, ଦେବତାମାନେ ଜନ୍ମ ହେଲେ ମଣିଷ ରୂପେ, କର୍ତ୍ତବ୍ୟ ସାରିଲା ପରେ ବିଦାୟ ନେଲେ ମଧ୍ୟ । ଆମେ କେହି ସେମାନଙ୍କୁ ଚିହ୍ନିପାରିଲୁ ନାହିଁ । ଯୁଗେ ଯୁଗେ ଏହିପରି ହୋଇଛି । ବଡ଼ ମା, କିଏ କହି ପାରିବ ତମ ଭିତରେ ବା ମୋ ଭିତରେ ଭଗବାନଙ୍କର ଆତ୍ମପ୍ରକାଶ ଘଟି ନାହିଁ ? ତାଙ୍କୁ ଚିହ୍ନିବା ଏତେ ସହଜ କଥା ନୁହେଁ । ଭଗବତ୍-ଶକ୍ତିକୁ ଚିହ୍ନିବା ପାଇଁ ମଧ୍ୟ ସାଧନା କରିବା ଦରକାର, ତପସ୍ୟା କରିବା ଦରକାର, ନୁହେଁ ବଡ଼ ମା ?

ସ୍ୱରୂପା ଏବେ ଧାନବାଦକୁ ଯାଇ ଅଙ୍କଶାସ୍ତ୍ର ଉପରେ ଗବେଷଣା ଚଳାଇଛି । କେତେ ଦିନ ହେଲା ଚିଠିପତ୍ର ଆସିନି ତା'ଠାରୁ ।

ଯେପରି ବିଶ୍ୱନାଥଙ୍କ ଅଜାଘରର ସମସ୍ତ ସଦ୍‌ଗୁଣ ଓ ସମସ୍ତ ବିଦ୍‌ବତ୍ତା ନେଇ ଜନ୍ମ ହୋଇଛି ଝିଅଟା । ତା ସାନଭଉଣୀ ସୁସ୍ମିତା ମଧ୍ୟ ଠିକ୍ ବିଶ୍ୱନାଥଙ୍କ ପରି, ସ୍ୱର୍ଣ୍ଣଲତାଙ୍କ ପରି ସଦା ସ୍ୱପ୍ନମୟୀ, କଳ୍ପନା-ବିଳାସିନୀ, ସେବା-ପରାୟଣା ସୁନ୍ଦରୀ ଝିଅଟା । ତା'ର ସାହିତ୍ୟ ଜ୍ଞାନ ମଧ୍ୟ ଅପୂର୍ବ । ଇଂରାଜୀ କବିତା ଗୁଡ଼ିକୁ ଆବୃତ୍ତି କରେ ବିଶ୍ୱନାଥଙ୍କ ପରି । ଠିକ୍ ବିଶ୍ୱନାଥଙ୍କ କବିତା ଆବୃତ୍ତିର ହଜିଲା ଛନ୍ଦ ଯେପରି ନୀଳମଣି ଖୋଜି ପାଇଛନ୍ତି ସ୍ମିତାର କଣ୍ଠରେ ।

ସ୍ୱରୂପା, ସୁସ୍ମିତା, ସିଦ୍ଧାର୍ଥ ବା ମଣ୍ଟୁ । ଭାଇ ଭଉଣୀ ତିନୋଟି ।

ଯେଉଁ ବାଳକଟି ଦୀର୍ଘ ଅତୀତରେ ଏକ ମେଘାଚ୍ଛନ୍ନ ବଜ୍ରବିଦ୍ୟୁତ୍ ଭରା ରାତିରେ ଗୋଟିଏ ଘନ ଆମ୍ବବଗିଚା ଭିତରେ ଶବାରିର ଅଭ୍ୟନ୍ତରରେ ଏକାନ୍ତ ଅସହାୟା, ଭୟାତୁରା ଜନନୀଙ୍କ ଜଠରରୁ ଜନ୍ମ ହୋଇଥିଲା ଓ ଅତି ଦୀର୍ଘାୟୁ ହୋଇଥିଲା, ସେହି ବ୍ରଜବନ୍ଧୁଙ୍କ ନାତିଙ୍କର ସନ୍ତାନ ଏମାନେ । ଏମାନଙ୍କ ଦେହରେ ପ୍ରବାହିତ ହେଉଛି ଅନ୍ନପୂର୍ଣ୍ଣାଙ୍କ ରକ୍ତ, ହେମଲତା, ସ୍ୱର୍ଣ୍ଣଲତା ଓ ବିଶ୍ୱନାଥଙ୍କ ରକ୍ତ ।

ହଁ, ମଣିଷ ଏହିପରି ହିଁ ଅମର ହୋଇ ରହେ, ବଂଶର ନିରବଚ୍ଛିନ୍ନ ରକ୍ତଧାରା ତା'ର ସତ୍ତାକୁ ସୁରକ୍ଷିତ କରି ବହି ନେଇ ଚାଲେ ସୃଷ୍ଟିର ବିଲୟ ପର୍ଯ୍ୟନ୍ତ । ତା ନୁହେଁ, ହୁଏତ ସୃଷ୍ଟିର ବିଲୟ ଘଟିଲେ ମଧ୍ୟ ସତ୍ତା ରହେ ସେମିତି !

ସ୍ୱରୂପା କହେ—ବଡ଼ ମା, ଆତ୍ମା ହେଉଛି ଏକ ମୌଳିକ ପଦାର୍ଥ, ତା'ର ବିଲୟ ନାହିଁ । ଏ ମର ଶରୀର ଜଳିପୋଡ଼ି ଭସ୍ମ ହୋଇଗଲେ ମଧ୍ୟ ସେ ମୌଳିକ ପଦାର୍ଥ ଧ୍ୱଂସ ହୋଇଯାଏ ନାହିଁ । ପଞ୍ଚଭୂତରେ ମିଶି ରହିଯାଏ, ପୁଣି ଅନୁକୂଳ ଉପାଦାନ ସଂଗ୍ରହ କରି ଦେହ ଧାରଣ କରେ ।

କିନ୍ତୁ ସେ ଦେହଧାରଣର ମୂଲ୍ୟ ଆଉ କ'ଣ ଅଛି ନୀଳମଣିଙ୍କ ପାଖରେ ? ବିଶ୍ୱନାଥ କ'ଣ ଆଉ ସେହି ଏକା ରୂପ ପରିଗ୍ରହ କରି ଫେରିଆସିବେ ତାଙ୍କ ପାଖକୁ ? ବିଜୟ କ'ଣ ଫେରିଆସିବ ନା ସେ ଦିନଗୁଡ଼ିକ ଆଉ ଫେରିଆସିବ ?

ଅତୀତ ଆଉ ଫେରିବନି ।

ଦଶବର୍ଷର ବିଜୟକୁ ମଣିଷ କରିବାକୁ କମ୍ କଷ୍ଟ ହୋଇ ନ ଥିଲା । ହୁଏତ ନୀଳମଣି ଅତିମାତ୍ରାରେ କର୍ତ୍ତବ୍ୟ ସଚେତନ ହୋଇ ପଡ଼ିଥିଲେ ବୋଲି କି କ'ଣ, ବିଜୟର ସ୍ୱାସ୍ଥ୍ୟ ପିଲାଦିନରୁ ହିଁ ଦୁର୍ବଳ ! ଟିକକରେ ଥଣ୍ଡା ଲାଗେ, ଜର ହୁଏ, ବଂଶର ଏକମାତ୍ର ସମ୍ପତ୍ତିକୁ ଯକ୍ଷପରି ଆଗୁଳି ରଖିଥାନ୍ତି ନୀଳମଣି । ଚଢ଼େଇଟି ଯେପରି ନିଜର ଶାବକଟିକୁ ସମସ୍ତ ଦୁର୍ଯୋଗରୁ ରକ୍ଷା କରିବା ପାଇଁ ବକ୍ଷପୁଟ ତଳେ ରଖି ନିଜର ପିଠି ପାତିଦେଇ ସବୁତକ ଝଡ଼ଝଞ୍ଜା ସହେ, ସେହିପରି ବିଜୟକୁ ପାଳିଥିଲେ ସେ ।

ଚନ୍ଦ୍ରଶେଖର ଓ ମାହେଶ୍ୱରୀ ମରିଯାଇ ଅଧିକ ଋଣୀ କରିଦେଲେ ନୀଳମଣିଙ୍କୁ । ସେ ଋଣ ଭାରର ସୁଧ କ୍ରମଶଃ ବଢ଼ିଲା ସିନା ଆଉ ସୁଝା ହୋଇ ପାରିଲା ନାହିଁ । ଦୀର୍ଘ ପଞ୍ଚାନବେଟି ଗ୍ରୀଷ୍ମ ଅତୀତ ହୋଇଗଲାଣି ।

ନୀଳମଣି ବିଜୟକୁ ଅଙ୍କ, ଇଂରାଜୀ, ବିଜ୍ଞାନ ପଢ଼ାଇବା ପାଇଁ ସାହେବ ମାଷ୍ଟର ନିଯୁକ୍ତ କଲେ । ସଂସ୍କୃତ ଓଡ଼ିଆ ଓ ହିନ୍ଦୀ ପଢ଼ାଇବା ପାଇଁ ବିଦ୍ୱାନ୍ ପଣ୍ଡିତମାନଙ୍କୁ ନିଯୁକ୍ତି ଦେଲେ । କଟକର ବସାଘରେ ରହି ଏଣ୍ଟ୍ରାନ୍‌ସ ପରୀକ୍ଷା ଦେଇଥିଲା ସେ ।

ପ୍ରତି ସପ୍ତାହରେ ଘରୁ ଖାଣ୍ଟି ଗୁଆଘିଅ, ପନିପରିବା, ପିଠା, ମିଠେଇ, ଚୂଡ଼ା, ଚାଉଳ କଟକକୁ ଯାଉଥିଲା । ସାହେବ ଡାକ୍ତରଙ୍କ ପରାମର୍ଶକ୍ରମେ ବଳକାରକ ଔଷଧ ମଧ୍ୟ କିଣା ଯାଉଥିଲା ।

ପିତୃମାତୃହୀନ ବାଳକଟି ଯେପରି ମୁହୂର୍ତ୍ତକ ପାଇଁ ସୁଦ୍ଧା କୌଣସି ପ୍ରକାର ଅଭାବ ଅନୁଭବ ନ କରିବ ସେଥିପାଇଁ ସବୁବେଳେ ସଜାଗ ଥିଲେ ନୀଳମଣି ।

କିନ୍ତୁ ଏସବୁ ସତ୍ତ୍ୱେ ସମାଲୋଚନା ଶୁଣିବାରୁ ରକ୍ଷା ମିଳି ନଥିଲା । ଏ ପୃଥିବୀରେ ଅଧିକାଂଶ ମଣିଷ ମାନଙ୍କର ଗୋଟିଏ ନିତ୍ୟ ପ୍ରୟୋଜନୀୟ ଅଭ୍ୟାସ ରହିଛି ନିନ୍ଦା ଗାଇବା; ଠିକ୍ ଭାତ ଖାଇଲା ପରି ସେ ଅଭ୍ୟାସ । ଏହି ପ୍ରାସାଦର ଆଶ୍ରିତମାନେ ହିଁ କହିଥିଲେ—ନିଜର ପିଲା ନ ହୋଇଥିବାରୁ ବିଜୟଟି କିପରି ବଦ୍‌ଖର୍ଚ୍ଚୀ ହୋଇ ଅବାଟରେ ଯାଇ ନିଜର ସର୍ବନାଶ କରୁ ସେଇଥିପାଇଁ କେବଳ ନୀଳମଣି ଏହିପରି ଗଦାଏ ଗଦାଏ ଟଙ୍କା ପଠାଇ ଲାଗିଛନ୍ତି !

କେତେଦିନକୁ ଥରେ ନିଜେ ନୀଳମଣି ଯାଆନ୍ତି କଟକ ବିଜୟକୁ ଦେଖି ଆସିବାକୁ । ଦିନେ ଦୁଇଦିନ ରହି ସବୁ ବୁଝି ଆସନ୍ତି । ଏଥିପାଇଁ ଶୁଣିବାକୁ ପଡ଼େ—ଆଚାରନିଷ୍ଠା କବଳରୁ

ରକ୍ଷା ପାଇବା ପାଇଁ ସେ ଯାଇ ସହରରେ ରହୁଛନ୍ତି, ଆହାରରେ, ବିଧର୍ମୀଙ୍କ ପରି ଯେତେ ସବୁ ଅନାଚାର କରୁଛନ୍ତି !!

ରାଗିବା ଦୂରରେ ଥାଉ, ହସନ୍ତି ନୀଳମଣି ସେ ସବୁ ଶୁଣି ।

ସେ ହସ ଦୁଃଖର ନା କ୍ରୋଧର ?

ବୁଝିବାର କୌଣସି ଉପାୟ ନଥାଏ କାହାର !

ନିଜର ଶ୍ୱଶୁର ନାରାୟଣ ଦାଶଙ୍କଠାରୁ ଏ ହସ ଶିଖିଥିଲେ ନୀଳମଣି ।

ଏସବୁ କଥା କହନ୍ତି ଯେଉଁମାନେ, ସେମାନେ ସମସ୍ତେ ତାଙ୍କ ଶ୍ୱଶୁରଙ୍କର ଦୂରସମ୍ପର୍କୀୟ ଆତ୍ମୀୟ ସ୍ୱଜନ । ଏ ଘରର ଅନ୍ନ, ସୁଖ, ସ୍ୱାଚ୍ଛନ୍ଦ୍ୟ ଭିତରେ ପ୍ରତିପାଳିତ । ଇଚ୍ଛା କରିଥିଲେ ନୀଳମଣି ଶାସନ କରି ପାରିଥାନ୍ତେ । କିନ୍ତୁ ଶାସ୍ତ୍ରର ବାକ୍ୟ ମନେପକାଇ ନୀଳମଣି ଚୁପ୍ ରହୁଥିଲେ–

ଦଣ୍ଡିବା ଗୁଣ ଯାର ଥାଇ, ସେ ପୁଣି କ୍ଷମା ଆଚରଇ ।

ବିଜୟ ଶୁଣିଲେ ଦୁଃଖିତ ହୋଇ ଯାଉଥିଲା, ତା'ର ଖୁଡ଼ୀମା ଯେ କି ନିଷ୍ଠାପରାୟଣା, ତା' ସେ ଜାଣିଥିଲା ।

କୌଣସି ଉଇଲପତ୍ର ନକରି ହଠାତ୍ ମରି ଯାଇଥିଲେ ଚନ୍ଦ୍ରଶେଖର । ତେଣୁ ସମ୍ପତ୍ତି ଉପରେ ନିଜର ଓ ବିଜୟର ଅଧିକାର ସାବ୍ୟସ୍ତ କରିବା ପାଇଁ ସହରକୁ ବାଧ ହୋଇ ଯିବାକୁ ପଡ଼ିଥିଲା ନୀଳମଣିଙ୍କୁ । କଚେରୀ କାମ, ଯିବାକୁ ବାଧ । ତିନିଦିନ ଖଣ୍ଡେ ରହିବାକୁ ପଡ଼ିଥିଲା ମଧ । ସାମାନ୍ୟ କିଛି ଫଳ ବ୍ୟବହାର କରି ନୀଳମଣି ତିନିଟା ଦିନ ଅକ୍ଲେଶରେ କଟାଇ ଦେଇଥିଲେ । ଥରେ ପାଣିର କ'ଣ ଅସୁବିଧା ହେବାରୁ ଟୋପାଏ ପାଣି ସୁଦ୍ଧା ମୁହଁରେ ଦେଇନଥିଲେ ନୀଳମଣି । ହସ ହସ ମୁହଁରେ ନିର୍ଜଳା ରହି ଯାଇଥିଲେ ।

ନିଜ ଆଖିରେ ଏ ସବୁ କଥା ଦେଖିଥିଲା ବିଜୟ । ଭାବୁଥିଲା–ଖୁଡ଼ୀମା କି ଧାତୁରେ ଗଢ଼ା ?

ସତରେ ନୀଳମଣି, ସ୍ୱର୍ଣ୍ଣଲତା ଏମାନେ ସବୁ କେଉଁ ଧାତୁରେ ଗଢ଼ା ହୋଇଥିଲେ ? କାର୍ତ୍ତିକ, ମାର୍ଗଶୀର, ପୌଷ ଓ ମାଘର ପ୍ରବଳ ଶୀତରେ ରାତି ଦୁଇଟାରୁ ଉଠିପଡ଼ି କୂଅପାଣି କିମ୍ବା ନଦୀ ପାଣିରେ ମୁଣ୍ଡ ଧୋଇ ଗାଧୋଇ ପକାଇ ଦିନର କାମ ପାଇଁ ପ୍ରସ୍ତୁତ ହୋଇଯାଆନ୍ତି ପରମ ନିଶ୍ଚିନ୍ତରେ ।

ତା'ପରେ ଶୁଚିତା ରକ୍ଷା ପାଇଁ ଯେ ଦିନ ଭିତରେ କେତେ ଥର ଗାଧୁଆ ହୁଏ ତା'ର ଠିକଣା ନଥାଏ । ଅଗଣାର ବଗିଚାରୁ ସେହି ଅନ୍ଧାରରୁ ହିଁ ଫୁଲ ତୁଳସୀ ତୋଳା ହେବ । ଶୀତଦିନର

ଘନ କୁହୁଡ଼ିର ଆବରଣ ଭିତରେ ସେମାନେ ବୁଲୁଥାନ୍ତି ଆଶ୍ରମବାସିନୀ ତପସ୍ୱିନୀମାନଙ୍କ ପରି, ବେଦରେ ବର୍ଣ୍ଣିତ ବ୍ରହ୍ମବାଦିନୀମାନଙ୍କ ପରି ।

ପୂଜା ଅର୍ଚ୍ଚନା ସରିଲା ବେଳକୁ ରାତି ପାହିପାହି ଆସୁଥାଏ । ରାତି ପାହିଗଲେ ଆଉ ନିଃଶ୍ୱାସ ନେବାକୁ ସମୟ ମିଳେ ନାହିଁ । ପ୍ରଜା, ଅତିଥି, ଅଭ୍ୟାଗତ, ପୂଜାପର୍ବ, କଚେରିର ହିସାବ କିତାବ ଦେଖା, ଜମିବାଡ଼ି କଥା ବୁଝିବାରେ କେଉଁଠି ସ୍କୁଲଘର ତିଆରି ହେଉଛି ତ କେଉଁଠି ଦେଉଳ, ମଠ ଅତିଥିଶାଳା ମରାମତି ଚାଲିଛି, କେଉଁ ଗାଁ'ରେ କୂଅ ଖୋଳା ହେବ, କେଉଁ ଗାଁ'ରେ ପକ୍କା ରାସ୍ତା ତିଆରି ହେବ, ଡାକ୍ତରଖାନାମାନଙ୍କର ଅଭାବ ଅସୁବିଧା, ଲୋକଙ୍କ ଗୁହାରି ଶୁଣି ବ୍ୟବସ୍ଥା କରିବା, ଏହିପରି ଅଜସ୍ର ଧନ୍ଦାରେ ସମୟ କଟେ ନୀଳମଣିଙ୍କର ।

ଆଉ ସ୍ୱର୍ଣ୍ଣଲତାମାନେ ତ ଆହୁରି ଅଧିକ ଆଶ୍ଚର୍ଯ୍ୟମୟୀ । ସେମାନଙ୍କର ତୀର୍ଥକ୍ଷେତ୍ର ତଥା କର୍ମକ୍ଷେତ୍ର ହେଉଛି ଘର । ଘରର ଅଧିବାସୀମାନେ ହିଁ ଯେପରି ସେମାନଙ୍କର ଦେବତା । ସକଳ ସୁଖରୁ ବଞ୍ଚିତା ସେହି ମହୀୟସୀମାନେ ଅନ୍ୟମାନଙ୍କୁ ଖୁଆଇ ପିଆଇ, ଅନ୍ୟମାନଙ୍କ ସେବା କରି ଅସୀମ ଆନନ୍ଦ ପାଉଥିଲେ ।

ଏକାଦଶୀର ନିର୍ଜଳା ଉପବାସରେ ନିଜ ହାତରେ ଗୁଡ଼ାଏ ବିରି, ଚାଉଳ ବାଟି ଗଦାଏ ଗଦାଏ ପୂରଦିଆ ଏଣ୍ଡୁରି ପିଠା, ମଣ୍ଡା ପିଠା ଅଧାର ବସାଇ ସିଝାଉ ଥାଆନ୍ତି ସ୍ୱର୍ଣ୍ଣଲତା । ବାହାରେ ବୈଶାଖ ଜ୍ୟେଷ୍ଠର ଧୂ ଧୂ ଖରା ଜଳୁଥାଏ, ରୋଷେଇଘର ଭିତରେ କାଠଚୁଲିର ଦାଉ ଦାଉ ନିଆଁ ପାଖରେ ସାରା ଦି'ପହରଟା ବସି ସ୍ୱର୍ଣ୍ଣଲ୍ତାଙ୍କର ପିଠା ତିଆରି ଚାଲିଥାଏ । କାହାରି ଆପତ୍ତି ସେ ଶୁଣନ୍ତି ନାହିଁ । ପରିଶ୍ରମ ନ କରିବାଟା ହିଁ ଯେପରି ପରମ ଦୁଃଖଦାୟକ ସ୍ୱର୍ଣ୍ଣଲତାଙ୍କ ପାଖରେ, ସେ ସାଧାରଣ ଦିନ ହେଉ ବା ନିର୍ଜଳା ଏକାଦଶୀ ଦିନ ହେଉ, ସେଥିପାଇଁ ଖାତର ନଥାଏ ତାଙ୍କର ।

ରକମ ରକମର ପିଠା । ଛେନା, ନଡ଼ିଆ, ସିଝା ମୁଗର ପୂରଦିଆ ମଣ୍ଡା, ବୁଟ ବାଟି ସିଝାଇ ଭାଜି ପୁଳି ଆଉ ଚନ୍ଦ୍ରକାନ୍ତି, ଛୁଞ୍ଚିପତ୍ର, ମୁଗଚୂନାର ନାଡ଼ିଲଡୁ, ତାଳରସ, ପଣସରସ ତିଆରି ପିଠା, କାକରା, ଆରିସା, ବିଭିନ୍ନ ପ୍ରକାର ନିରାମିଷ ତରକାରୀ ରାନ୍ଧି ଖୁଆଇବାରେ ନିପୁଣା ଥିଲେ ସେ ।

ନାରାୟଣ ଦାଶେ କେତେ ଥର କହିଛନ୍ତି—ହେମ, ନାନୀଙ୍କ ପିଠାପଣା ଆଉ ରାନ୍ଧଣା ମତେ ମୋ ବୋଉ କଥା ମନେପକାଇ ଦେଉଛି ।

ସ୍ୱାମୀଙ୍କ ଖାଇବା ପାଖରେ ବସି ବିଞ୍ଚଣାରେ ବିଞ୍ଚି ଦେଉ ଦେଉ ହେମ ନିଜ ଭଉଣୀର ପ୍ରଶଂସାରେ ଗର୍ବିତା ଅନୁଭବ କରନ୍ତି । ମନେ ପଡ଼ିଯାଏ ପିଲାଦିନର ଘଟଣା । ସେକାଳରେ ଲୋକଙ୍କର ଗୋଟାଏ ବିଶ୍ୱାସ ଥିଲା, ବାଘ ପାଟିରେ ହାତ ପୂରାଇଲେ ଝିଅମାନଙ୍କ ହାତର ରାନ୍ଧଣା କୁଆଡ଼େ ଭାରି ସୁସ୍ୱାଦୁ ହୁଏ । ଅବଶ୍ୟ ଜୀଅନ୍ତା ବାଘର ପ୍ରଶ୍ନ ନଥିଲା । ରାଜାମାନେ ଯେତେବେଳେ

ଶିକାର କରିବାକୁ ଯାଇ ମହାବଳବାଘମାନଙ୍କୁ ଶିକାର କରୁଥିଲେ, ପ୍ରଥା ଥିଲା, ରାଜାଙ୍କ ଲୋକେ ସେହି ମୃତ ବାଘର ଦେହଟିକୁ ବାଉଁଶରେ ଝୁଲାଇ ଆଖପାଖର ଗାଁ'ଗଣ୍ଡାମାନଙ୍କରେ ବୁଲାଇ ଗ୍ରାମବାସୀମାନଙ୍କୁ ଦେଖାଇବେ ।

ଏମିତି କେତେଥର ତାଙ୍କ ଗାଁ'କୁ ମଧ୍ୟ ବାଘ ଆସିଛି । ସତ ବାଘ ମଧ୍ୟ ଆସିଛି, ଯାହାକୁ ରାଜାଙ୍କ ଶିକାରୀମାନେ ଆସି ମାରିଛନ୍ତି ।

କିନ୍ତୁ ବାଘଟି ମୃତ ହୋଇଥିଲେ ମଧ୍ୟ ପାଟିରେ ହାତ ପୂରାଇବାକୁ ସମସ୍ତେ ଡରୁଥିଲେ, ବିଶେଷରେ ପିଲାମାନେ । ଜେଜେବାପାମାନେ ନିଜେ ଧରି ସେମାନଙ୍କ ହାତକୁ ବାଘ ପାଟିରେ ସ୍ପର୍ଶ କରାଇ ଦେଉଥାନ୍ତି । ହେଲେ କେତେଜଣ ସାହସିନୀ ଝିଅ ବି ଥିଲେ ଯେଉଁମାନେ ବେଶ୍ ନିର୍ଭୟରେ ମୃତ ବାଘର ଦରମେଲା ପାଟି ଭିତରେ ନିଜ ହାତକୁ ପୂରାଇ ଦେଇ ପାରୁଥିଲେ । ସେହି ସାହସିନୀମାନଙ୍କ ଭିତରୁ ଜଣେ ଥିଲେ ସ୍ୱର୍ଣ୍ଣଲତା ।

ନୀଳମଣିଙ୍କଠାରୁ ଏ କଥା ଶୁଣି ଲୀନା, ସ୍ୱରୂପା, ମଧୁଛନ୍ଦା ହସି ହସି ଲୋଟି ପଡ଼ିଥିଲେ । କହିଥିଲେ—କି ଅଦ୍ଭୁତ ଅନ୍ଧବିଶ୍ୱାସ ସେ ଯୁଗର !

ପୁଣି କୁଆଡ଼େ ଚୈତ୍ରମାସର ଗୋଟିଏ ଦିନ ଭୋରରୁ ଉଠି ବଟା ନିମପତ୍ର ପିଇବା ଏକ ଅଲଂଘନୀୟ ନିୟମ ଥିଲା ! ସ୍ୱର୍ଣ୍ଣଲତା କହୁଥିଲେ ଚୈତ୍ରରେ ନିମ ରସ ପିଇଲେ ଦେହଟା ପୂରା ନୀରୋଗ ରହିବ । ନିମଫୁଲର ବଡ଼ି,ନିମ ପତ୍ର ଫୁଲ ବଘରା ଭାତ, ଚୈତ୍ରମାସଟା ପୂରା ନିମ ଖାଇବାର ମହୋତ୍ସବ ଚାଲିଥାଏ ଘରେ ।

ମାହେଶ୍ୱରୀ ନୂଆ ବୋହୂ ହୋଇ ଆସିଥାନ୍ତି । ବୟସ ଜମା ନଅ ବର୍ଷ ! ହେମ ଓ ସ୍ୱର୍ଣ୍ଣଙ୍କ ଆଦରଯତ୍ନ ଭିତରେ ଏ ଘରର ଝିଅଟିଏ ପରି ଅଳଙ୍କାରର ସଙ୍ଗୀତ ତୋଳି ଖୁସୀ ମନରେ ବୁଲୁଥାନ୍ତି । ଅବଶ୍ୟ ପର୍ଦ୍ଦା ପ୍ରଥାରୁ ନିଷ୍କୃତି ନଥିଲା । ତାପରେ—ବିଶ୍ୱନାଥଙ୍କୁ ଦଶ ବର୍ଷ ହେବା ପରେ ହେମଲତାଙ୍କର ଯେଉଁ ଦ୍ୱିତୀୟ ସନ୍ତାନଟି ଆସିଲା, ସେ ଯେପରି ସାଙ୍ଗରେ ତା'ର ମା'ଙ୍କ ପାଇଁ ସ୍ୱର୍ଗ ରାଜ୍ୟର ପରୁଆନା ନେଇ ଆସିଥିଲା । ଦିନେ ରାତିରେ ହଠାତ୍ ବାହାରକୁ ଯିବାପାଇଁ ଉଠିଲାବେଳେ ହେମଲତାଙ୍କର ମଥା ଘୂରିଯିବାରୁ ତଳେ ପଡ଼ିଗଲେ ହେମଲତା । ସେହି ପତନହିଁ ହେଲା ତାଙ୍କର ମୃତ୍ୟୁର କାରଣ ।

ଘଟଣାଟା ଏତେ ଆକସ୍ମିକଭାବରେ ଘଟିଗଲା ଯେ, ରୂପଦେଇପୁରଟା ଯେମିତି ସମ୍ମୁଖରେ ବଜ୍ରପାତ ହେଲା ପରି ସ୍ତବ୍ଧ ହୋଇଗଲା ।

ସେହିଦିନୁ ଚୌଧୁରୀ ନାରାୟଣ ଦାଶ ହେଲେ ଗୃହତ୍ୟାଗୀ । ରାଧାଗୋବିନ୍ଦଙ୍କ ମନ୍ଦିର ପରିକ୍ରମା ଭିତରେ ରହିଥିବା ନିଜର ଆଉ ଗୋଟିଏ ଘରେ ଯାଇ ସେ ରହିଲେ । ହେମଲତା ବିହୀନ ଏ ରାଜପ୍ରାସାଦ ଯେପରି ଶ୍ମଶାନ ଭଳି ମନେହେଲା ତାଙ୍କୁ ।

ଘର ଭିତରର ଦାୟିତ୍ୱ ଅଜାଡ଼ି ହୋଇପଡ଼ିଲା ସ୍ୱର୍ଣ୍ଣଲତାଙ୍କ ଉପରେ । ହେମର ମୃତ୍ୟୁ ମର୍ମାନ୍ତିକ ଆଘାତ ଦେଇ କେତେଦିନ ପାଇଁ ଅଚଳ କରିଦେଲା ତାଙ୍କୁ । ହେଲେ ସଦ୍ୟ ମାତୃହରା ବାଳକ ବିଶ୍ୱନାଥ ପାଇଁ ଦମ୍ଭ ଧରିଲେ ସେ । ହେମର ସୁସଜ୍ଜିତ ହସିଲା ସଂସାର-ନୌକାଟିର ଟଳମଳ ଅବସ୍ଥା, ସେ ନୌକାର କାତ ନ ଧରିଲେ ନ ଚଳେ ।

ନୀଳମଣିଙ୍କ ଭାବନାରେ ବାଧା ପଡ଼ିଲା । ଦ୍ୱାର ମୁହଁରୁ ମୁହଁ ଗଳାଇ ଚାହିଁଲା ମିତା, କହିଲା—ବଡ଼ମା, ଚାହିଁଛ ?

—ଆସିଲୁ ମା ? ମଣ୍ଟୁର ସ୍କୁଲବସ୍ ତ ଆସିନି !

—ଏଇଲେ ଆସିଯିବ, ମୁଁ ବାଟରେ ଦେଖି ଆସିଲି !

—ଯା, ମା, ମୁହଁ ହାତ ଧୋଇ ଖାଇ ପକାଇବୁ । ହଁ ଶୁଣ ମିତା, ଆଜି ରାତିରେ ବସି ଚିଠି ଖଣ୍ଡେ ଲେଖିବାକୁ ପଡ଼ିବ, ସ୍ୱରୂପାର ଚିଠି କେତେଦିନ ହେଲା ଆସିନି ତ ! ଝିଅଟା ଯେ କ'ଣ, ଚଞ୍ଚଳ ଉତ୍ତରଟିଏ ଦେଉନାହିଁ ? ତୁ ଯା, କାମ ସାରି ଆସେ ।

ମିତାର ମୁହଁଟା ଶୁଖିଲା ଦିଶୁଛି ନା ? କ'ଣ କରିବେ ସେ ? ଔଷଧ କୃପାରୁ ପନ୍ଦରଦିନ ହେଲା ଚାଲବୁଲ କରି ପାରୁଛନ୍ତି, ପନ୍ଦରଦିନ ଶେଯରେ ପଡ଼ିଲେ । ଜରା ରୂପକ ବ୍ୟାଧି ହାତରୁ ତ ନିଷ୍କୃତି ନାହିଁ । ଆଗର ସେ ଶକ୍ତି କାହିଁ ଆଉ ?

ଆହାଃ ! ବିଚରା ପିଲା ତିନିଟା, କେତେ ଅଳ୍ପବୟସରେ ଅନାଥ ହୋଇଗଲେ, ଠିକ୍ ବିଜୟ ପରି ।

ଏ ଦୁଃଖ କାହିଁକି ? କାହିଁକି ଏ ଯନ୍ତ୍ରଣା ? ଆଉ ଏ ସୃଷ୍ଟି ମଧ୍ୟ ଗଢ଼ା ହୋଇଛି କାହିଁକି ? ଯାର ସ୍ରଷ୍ଟା ଯେ, ସେ ଈଶ୍ୱର ବା କାହାନ୍ତି ? ଈଶ୍ୱର କ'ଣ ସତରେ ଅଛନ୍ତି ?

'ନିଶ୍ଚୟ ଅଛନ୍ତି' ଦୃଢ଼ କଣ୍ଠରେ ସବୁବେଳେ କହିବ ସ୍ୱରୂପା । କହିବ, ''ବଡ଼ମା, ଜାଣିଛ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ କ'ଣ କହିଛନ୍ତି ? ସେ କହିଛନ୍ତି—ଦିନବେଳେ ତ ଗୋଟିଏ ହେଲେ ତାରା ଆକାଶରେ ଦିଶନ୍ତି ନାହିଁ, ସେଇଥିପାଇଁ କ'ଣ କହିବା ତାରା ନାହାନ୍ତି ? ଦୁଧରେ ଲହୁଣୀ ରହୁଛି, କିନ୍ତୁ ଦୁଧ ଦେଖିଲେ କ'ଣ ତା ଜାଣିହୁଏ ? ଯଦି ଲହୁଣୀ ଦେଖିବାକୁ ଚାହଁ ତେବେ ପ୍ରଥମେ ଦହି ବସାଅ, ତା'ପରେ ସୂର୍ଯ୍ୟୋଦୟ ପୂର୍ବରୁ ଦହିକୁ ମନ୍ଥନ କର, ଲହୁଣୀ ଦେଖିବ । ତେଣୁ ବଡ଼ମା, ଈଶ୍ୱରଙ୍କୁ ଦେଖିବାକୁ ହେଲେ ପ୍ରଥମେ ନିଜକୁ ସେଥିପାଇଁ ପ୍ରସ୍ତୁତ କରିବାକୁ ହେବ ।

ଏତେ ଦୁଃଖ ପାଇବା ସତ୍ତ୍ୱେ ସ୍ୱରୂପା ପ୍ରବଳ ଆସ୍ତିକ ହୋଇ ହିଁ ରହିଛି । ଆଜିକାଲିର ଝିଅ ସେ । ଆଉ ନୀଳମଣି ? ଈଶ୍ୱରଙ୍କ ସତ୍ତା ନେଇ ଦ୍ୱିଧା କରନ୍ତି ନବେ ବର୍ଷର ବୁଢ଼ା ହୋଇ ! ମନରେ ତାଙ୍କର ସବୁବେଳେ ଦ୍ୱନ୍ଦ୍ୱ । ମନେ ମନେ ସେ ପଚାରନ୍ତି—ହେ ଈଶ୍ୱର, ତମେ କ'ଣ ସତରେ ଅଛ ? ଯଦି ଅଛ ତା'ହେଲେ କହ ଏ ଦାରୁଣ ଯନ୍ତ୍ରଣାଭରା ସଂସାର ସୃଷ୍ଟିକରି ତମେ କି ଲାଭ ପାଇଛ ? କି ଲାଭ ପାଇଛ ସତରେ ?

'ଇୟଂ ବିସୃଷ୍ଟିଃ କୁତ ଆବଭୂବ ?' ଅର୍ଥାତ୍ ଏ ସୃଷ୍ଟି କେଉଁଠାରୁ ଆସିଲା ? ଏ ପ୍ରଶ୍ନ ତ ବୈଦିକଯୁଗରୁ ଆଜିପର୍ଯ୍ୟନ୍ତ ମନୁଷ୍ୟ ପଚାରି ଆସୁଛି । ତେଣୁ ଈଶ୍ୱରଙ୍କ ଅସ୍ତିତ୍ୱ ବିଷୟରେ ଏ ପର୍ଯ୍ୟନ୍ତ ମଣିଷ ସନ୍ଦିହାନ ।

ଅତଏବ ଉତ୍ତର ଦେବ କିଏ ?

ନୀଳମଣିଙ୍କ ମତରେ ଏ ଜୀବନ ହିଁ ସତ୍ୟ ଯେତେ ଅଳ୍ପସ୍ଥାୟୀ ହେଉ ପଛକେ । ଅନୁଭୂତିର ଶିଖାରେ ଜଳି ଜଳି ଉପଲବ୍‌ଧି କରିବାକୁ ପଡ଼େ ଏ ଜୀବନକୁ । ଜୀବନ ଆତ୍ମପ୍ରକାଶ କରେ ଯନ୍ତ୍ରଣା ମଧ୍ୟ ଦେଇ, ପୁଣି ସେହି ଯନ୍ତ୍ରଣା ଭିତର ଦେଇ ହିଁ ଏହାର ବିଲୟ ଘଟେ । ଯନ୍ତ୍ରଣାର ସେ ଅସୀମ ପାରାବାର ଭିତରେ ସୁଖର କେତୋଟି ମୁହୂର୍ତ୍ତ ମାତ୍ର କେତୋଟି ବୁଦ୍‌ବୁଦ ପରି ଫୁଟି ଉଠି ଅତି ଶୀଘ୍ର ମିଳାଇଯାଏ । କିନ୍ତୁ ସେହିତକ ହିଁ ସତ୍ୟ ।

କଷ୍ଟରେ କର ଲେଉଟାଉଛନ୍ତି ନୀଳମଣି, ଚେଷ୍ଟା କରୁଛନ୍ତି ଟିକିଏ ଶୋଇ ପଡ଼ିବାକୁ । ନିଦ ହୋଇଗଲେ ନିଷ୍କୃତି ମିଳିଯିବ । ନିଷ୍କୃତି ଚାହାନ୍ତି ସେ...

x x x

ଖବର କାଗଜର ପୃଷ୍ଠା ଓଲଟାଇଲା ସ୍ୱରୂପା । ଆଉ ଗୋଟିଏ ଆତ୍ମହତ୍ୟାର ଘଟଣା ପୁଣି ପ୍ରକାଶ ପାଇଛି ଆଜି । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଜଣେ କୃତୀ ଛାତ୍ରୀ, ସୁଶ୍ରୀ, ଶିକ୍ଷିତା, ଚଣ୍ଡୀଗଡ଼ଠାରେ ଆତ୍ମହତ୍ୟା କରିଛି । ଖବରକାଗଜର ସମ୍ପାଦକୀୟରେ ଲେଖା ଯାଇଛି ମଧ୍ୟ ସେହି ମର୍ମରେ ମନୁଷ୍ୟତ୍ୱର ଅପମୃତ୍ୟୁ ନାମରେ ।

ସମ୍ପାଦକ ଲେଖିଛନ୍ତି—ଦୁଃଖର କଥା ଯେ ବିଂଶଶତାବ୍ଦୀର ଶେଷଭାଗରେ ଶିକ୍ଷିତ ସଭ୍ୟସମାଜରେ ଏହି ଘଟଣା ଘଟୁଛି ଅଧିକ ।... କେବଳ ଦିଲ୍ଲୀରେ ନୁହେଁ, ଏ ଅବସ୍ଥା ଭାରତର ସର୍ବତ୍ର । ଅନେକ ଘରେ ଏହି ସମସ୍ୟା ନେଇ କ୍ରନ୍ଦନରୋଳ ଶୁଭୁଛି । ଯୌତୁକ ପ୍ରଥାର ତାଡ଼ନା ଓ ପୀଡ଼ନ ବିରୁଦ୍ଧରେ ଆଇନଗତ ସୁରକ୍ଷା ଥିଲେ ମଧ୍ୟ ଦିଲ୍ଲୀ ଭଳି ଉନ୍ନତ ସହରରେ ପ୍ରତି ପନ୍ଦରଦିନରେ ଜଣେ ଗୃହବଧୂଙ୍କୁ ଆତ୍ମହତ୍ୟା କରିବାକୁ ପଡୁଛି । ଅବଶ୍ୟ ଉତ୍ତରପ୍ରଦେଶରେ ପ୍ରତି ଦୁଇମିନିଟ୍‌ରେ ଘଟୁଛି ଗୋଟାଏ ଡକାଏତି, ତା ସାଙ୍ଗକୁ ହତ୍ୟା ଓ ନାରୀ ଧର୍ଷଣର ଘଟନା ।

ଖବରକାଗଜଟାରେ ଖାଲି ଉତ୍ତରପ୍ରଦେଶ କଥା ହିଁ ଲେଖା ଯାଇଛି ! ଦେଶର ପ୍ରତ୍ୟେକ ପ୍ରଦେଶରେ ଯେ ଊଣା ଅଧିକରେ ଏହି ଅବସ୍ଥା ହୋଇଛି, ସେ କଥା କ'ଣ ସମସ୍ତେ ଜାଣନ୍ତି ନାହିଁ ? ଚାରିଆଡ଼େ ଦୁର୍ନୀତି, ଅତ୍ୟାଚାର, ଅରାଜକତା, ଧର୍ଷଣ ଓ ଶୋଷଣ ଚାଲିଛି । ସବୁଠାରେ ସମାନଭାବରେ ଚାଲିଛି ଦୁର୍ବଳ ସରଳ ଉପରେ ସବଳ ଫନ୍ଦୀବାଜଙ୍କ ଅତ୍ୟାଚାର ।

ବିଷଣ୍ଣ ଆଖି ଦୁଇଟି ଟେକି ସ୍ୱରୂପା ଝରକାବାଟେ ଚାହିଁଲା ବାହାରକୁ । ମନେ ପଡ଼ିଲେ ବଡ଼ମା । ଆଜି ଯଦି ସେ ତାଙ୍କ ପାଖରେ ଥାଆନ୍ତା, ସମ୍ବାଦଟି ପଢ଼ି ଶୁଣାଇଥାନ୍ତା, ତାଙ୍କୁ ଆଉ କହିଥାନ୍ତା, ଦେଖ ବଡ଼ମା, ନାରୀ ପ୍ରଗତିର କାହାଣୀ ଶୁଣ । ତମର ସେ ସଫା ଛିଣ୍ଡାକନା, ନୂଆ ତାଟର ଚଳନ୍ତା ଶାଗକିଆରୀ, ଦାନ୍ତଖୁଣ୍ଟା, ଖଡ଼ିକାବିଡ଼ା, ମୁଆଁ, ଫେଣୀଶାକର ବୋଝ ସବୁ ପ୍ରଗତି ଲାଭ କରି ଖାଲି ସ୍କୁଟର, ମଟର, ଟେଲିଭିଜନ, ଫ୍ଲାଟ୍‌ଘରରେ ପରିଣତ ହୋଇ ଯାଇଛନ୍ତି । ଆଉ କେତେଦିନ ପରେ ଏ ଯୌତୁକଦାବୀ ତାଲିକାରେ ଉଡ଼ାଜାହାଜ, ମହାକାଶଯାନ ପ୍ରଭୃତି ସ୍ଥାନ ପାଇଯିବ । ଏ ଶହେବର୍ଷ ପରେ ମଧ୍ୟ ସାବିତ୍ରୀ, ସ୍ୱର୍ଣ୍ଣଲତାମାନେ ଠିକ୍ ସେହି ଏକା ଦଶାରେ ରହିଯାଇଛନ୍ତି ବଡ଼ମା, କିଛି ହେଲେ ବଦଳିନି ।

ପୁଣି ମନେପଡ଼ିଲା ସ୍ୱରୂପାର ଯେ ସେ ଭୁଲିଯାଉଛି ସେକାଳରେ ଅନ୍ନପୂର୍ଣ୍ଣା, ହେମଲତା ଓ ନୀଳମଣିମାନେ ମଧ୍ୟ ଥିଲେ ! ପର୍ଦ୍ଦାପ୍ରଥା ଥିଲା ସତ, କିନ୍ତୁ ଅନ୍ତଃପୁରର ସ୍ୱାଧୀନତା ମଧ୍ୟ ଥିଲା । ଅନ୍ତଃପୁରବାସିନୀମାନେ ଶିକ୍ଷାଦୀକ୍ଷା ନ ଥାଇ, କୌଣସି ସହାୟକ ଯନ୍ତ୍ରପାତି ନ ଥାଇ ଅବଲୀଳାକ୍ରମେ ଝୋଟି ମୁରୁଜରେ, ରଙ୍ଗୀନ୍ ସୂତା ସାହାଯ୍ୟରେ କନ୍ଥାମାନଙ୍କରେ ଚମତ୍କାର ଚିତ୍ର ସବୁ ଆଙ୍କୁଥିଲେ । ଚିତ୍ରମାନଙ୍କରେ ପଶୁପକ୍ଷୀ, ବୃକ୍ଷଲତା, ଶବାରିବାହକ, ଶବାରି, ଦେବଦେବୀଙ୍କ ମୂର୍ତ୍ତି, ରାମାୟଣ ଓ ମହାଭାରତର କାହାଣୀ ସବୁର ନାୟକ ନାୟିକାମାନେ ରୂପ ଗ୍ରହଣ କରୁଥିଲେ । ବିଭିନ୍ନ ପ୍ରକାର ଅଳଙ୍କାରର ଚିତ୍ର ସବୁ ମଧ୍ୟ ଅଙ୍କା ଯାଉଥିଲା । ସେକାଳର ସେମାନଙ୍କର ସେହି କଳାନୈପୁଣ୍ୟ ଆଜିର ଚାରୁକଳାର ଜନ୍ମଦାତ୍ରୀ । ସବୁଠାରେ ଅନ୍ତଃପୁର କେବଳ କାରାଗାର ନଥିଲା, ପ୍ରତିଭାର ବିକାଶଭୂମି ମଧ୍ୟ ଥିଲା । କେତେଗୁଡ଼ିଏ ଭଲକଥା ମଧ୍ୟ ଥିଲା ସେକାଳରେ । ବଡ଼ମା ଯୁକ୍ତି ବାଢ଼ିବେ ସେ ବିଷୟରେ । ସିନ୍ଦୂରା ଫାଟିବା ପୂର୍ବରୁ ଶେଯ ଛାଡ଼ିବା ଅଭ୍ୟାସ ଥିଲା । ସ୍ତ୍ରୀ ଲୋକମାନେ ଗୃହ ଓ ପରିଜନଙ୍କ ସେବାକୁ ହିଁ ଦେବ ସେବା ବା ଧର୍ମକାର୍ଯ୍ୟ ବୋଲି ଭାବୁଥିଲେ ।

ସ୍ୱରୂପା ବଡ଼ମାଙ୍କୁ ତା'ର କହିନାହିଁ ଯେ ଏ କାଳରେ ଆସ୍ତେ ଆସ୍ତେ ଅଘଷା ଦାନ୍ତରେ ଚାହା ପିଇବାଟା ମଧ୍ୟ ଗୋଟାଏ ଅଭ୍ୟାସ ବା ଫେସନରେ ପରିଣତ ହୋଇଗଲାଣି । ଶିକ୍ଷିତା ଅଶିକ୍ଷିତାଙ୍କ ମଧ୍ୟରେ କୌଣସି ତାରତମ୍ୟ ନାହିଁ । ଏକାଳର ଗୃହିଣୀ ବରଂ ଗର୍ବ କରି କହନ୍ତି, 'ଛୁଆର ସବୁ କାମ ସକାଳୁ ତା ବାପ କରି ଦିଅନ୍ତି । ମଇଳାକନା ବା ନେପ୍‌କିନ୍ ବଦଳାଇବାଠାରୁ ଆରମ୍ଭ କରି ଗାଧୋଇଦେବା ଓ ଦୁଧବୋତଲ ଧରି ପିଆଇବା ପର୍ଯ୍ୟନ୍ତ ସବୁ ସେ କରନ୍ତି । ମତେ ତ ପୁଣି ତା'ରି ଭିତରେ ରୋଷେଇବାସ କରି ଟିଫିନ୍ ତିଆରି କରିବାକୁ ପଡ଼େ !'

ଏକାଳର ମହିଳାମାନେ ବାହାରର କର୍ମକ୍ଷେତ୍ର ମାନଙ୍କରେ ଯୋଗ ଦେଇ କର୍ମଜୀବୀ ହୋଇଛନ୍ତି, ତେଣୁ ଅଧିକ ଦାୟିତ୍ୱ ବଢ଼ିଯାଇଛି ସେମାନଙ୍କର'। ଏକାଳରେ ଅର୍ଥର ପ୍ରାଚୁର୍ଯ୍ୟ ଥିବା ଦରକାର । ଏ ଯୁଗଟାହିଁ ଯେପରି ହୋଇଯାଇଛି ଅର୍ଥଲୋଭୀ, ଅର୍ଥର କାଙ୍ଗାଳ । ଏ ଯୁଗର ଲକ୍ଷ୍ୟ ତ୍ୟାଗ ନୁହେଁ, ଭୋଗ ହିଁ ଏହାର ଲକ୍ଷ୍ୟ ।

ନୀଳମଣି ଉପଦେଶ ଦିଅନ୍ତି, ତୃଷ୍ଣା ହେଉଛି ଅଭାବର ସୃଷ୍ଟିକାରିଣୀ ମା । ସବୁ ପାଇବାର ନିଶା ସ୍ୱର୍ଣ୍ଣମୃଗକୁ ଧରିବା ପରି ନିଶା । ଗୃହିଣୀମାନଙ୍କର ନିଜ ଘର ଓ ପିଲାଙ୍କୁ ସମ୍ଭାଳିବା ପ୍ରଥମ କର୍ତ୍ତବ୍ୟ ।

ମଧୁଛନ୍ଦା ଆପତ୍ତି କରେ—ବଡ଼ମା, ତମର ଆଇଡ଼ିଆ ବଡ଼ ପୁରୁଣାକାଳିଆ ସତରେ !

ହସନ୍ତି ନୀଳମଣି, କହନ୍ତି—ମୁଁ ନିଜେ ତ ସେଇ ପୁରୁଣାକାଳର ମଣିଷଟେ । ତେବେ ସବୁକାଳଯାକ କ'ଣ ଏକା ନୁହେଁ ମଧୁଛନ୍ଦା ? ଏ ଯୁଗରେ କେତେ ଅସ୍ତ୍ରଶସ୍ତ୍ର ଆବିଷ୍କାର କରାଗଲା । ତା'ର କରାମତି ସବୁ ଆମେ ଦେଖୁଛେ । ହେଲେ ତ୍ରେତୟାଯୁଗରେ କ'ଣ ଅସ୍ତ୍ରଶସ୍ତ୍ର ନଥିଲା ? ବାଣମାନେ ନିଆଁ ବର୍ଷୁଥିଲେ, ବର୍ଷା କରାଉଥିଲେ । ପୁଷ୍ପକ ବିମାନ ମଧ ଥିଲା । ଆମେ ବିଶ୍ୱାସ କରିପାରୁ ନଥିଲେ । କିନ୍ତୁ ଆଜି ଯେତେବେଳେ ମହାକାଶଯାନଟି ଯାଇ କେଉଁ ସୁଦୂର ମଙ୍ଗଳଗ୍ରହରେ ଓହ୍ଲାଇ ପରୀକ୍ଷା ନିରୀକ୍ଷା କରି ଏ ପୃଥିବୀକୁ ଖବର ପଠାଉଛି, ଚିତ୍ର ପଠାଉଛି, ସେ କଥାକୁ ଆମେ ତ ବିଶ୍ୱାସ କରୁଛେ ?

ବଡ଼ମା'ଙ୍କ ମୁହଁରୁ ଏଭଳି କଥା ଶୁଣିବାକୁ ଭାରି ଭଲଲାଗେ ସ୍ୱରୂପାକୁ । କୌଣସି ଅନ୍ୟାୟ ଦେଖିଲେ ମଧୁଛନ୍ଦା ଓ ସ୍ୱରୂପାକୁ ନୀଳମଣି କହନ୍ତି – ''ଏ ସବୁ ଅନ୍ୟାୟର କ'ଣ ପ୍ରତିକାର ନାହିଁ ?''

ହାତର ଖବରକାଗଜଟାକୁ ଆଉଥରେ ଚାହିଁଲା ସ୍ୱରୂପା । ପୁଣି ପଢ଼ିଲା ଖବରଟିକୁ । ଦୁର୍ବୋଧ ଗଣିତଶାସ୍ତ୍ରର ଅନେକ ଜଟିଳ ଗୋଲକଧନ୍ଦା ଭିତରେ ପଶି, ବାହାରି ଆସି ପାରିଛି ସ୍ୱରୂପା । ନିଜର ତୀକ୍ଷ୍ଣ ବୁଦ୍ଧିକୁ ପ୍ରୟୋଗ କରି ଗୁଡ଼ିଏ ଜଟିଳ ସୂତ୍ର ଆବିଷ୍କାର କରିପାରିଛି, କିନ୍ତୁ ଦୁର୍ବଳ, ଅସହାୟ ସରଳ ଉପରେ ସବଳ କୁଟିଳ, ଦୁର୍ମତିମାନଙ୍କର ଅତ୍ୟାଚାର କିପରି ବନ୍ଦ ହେବ ସେ ସୂତ୍ର ପାଇ ପାରୁନାହିଁ ।

ବଡ଼ ଆଦରରେ ନୀଳମଣି ତା'ର ସୁରେଖା ନାଁକୁ ବଦଳାଇ, ନାଁ ଦେଇଥିଲେ ସ୍ୱରୂପା । ସବୁବେଳେ କହିବେ—ଶ୍ରୀରାମଙ୍କ ସ୍ୱରୂପା ଶକ୍ତି ସୀତାଦେବୀ ତୁ । ତାଙ୍କରି ପରି ସୁନ୍ଦର, ଶାନ୍ତ ଆଉ ସହିଷ୍ଣୁ । ମୋର ଶାଶୂ, ମାଉସୀ ଶାଶୂ ଆଉ ଯାଙ୍କରି ସ୍ୱରୂପ ତୁ, ସେମାନଙ୍କ ରକ୍ତ ବୋହୁଛି ତୋର ଶିରା ପ୍ରଶିରାରେ ।

ଜୀବନର ସାତ ଆଠବର୍ଷ କି ଦୁର୍ଗତି ଭିତରେ ନ କଟିଛି ସ୍ୱରୂପାର ! ମାତ୍ର ତିନୋଟି ସନ୍ତାନ ହୋଇଥିଲେ ମଧ୍ୟ ପିତା ସୁଖ ସ୍ୱାଚ୍ଛନ୍ଦ୍ୟରେ ରଖି ପାରିନାହାନ୍ତି । ମଣ୍ଟୁ ତଳେ ପୁଅଟିଏ ହୋଇ ମରିବା ପରଠୁ ବୋଉ ସୂତିକା ରୋଗରେ ପଡ଼ି ଶଯ୍ୟାଶାୟିନୀ ହୋଇଥିଲା । ଏ ଦେଶର ସତୁରିଭାଗ ଲୋକଙ୍କ ଭାଗ୍ୟ ପରି ତା ନନା ମଧ୍ୟ ଅବସ୍ଥାଚକ୍ରରେ ପଡ଼ି ଗାଁ ସ୍କୁଲରେ ଶିକ୍ଷକତା କରୁଥିଲେ । ସରଳ, ଦୟାଳୁ ଏବଂ ଈଶ୍ୱରବିଶ୍ୱାସୀ ପରମ ଆଦର୍ଶବାଦୀ ଲୋକ ସେ । ସରଳ ମଣିଷଟିଏ ହୋଇଥିବାରୁ ପଦେ ପଦେ ଅସୁବିଧାର ମୁହାଁମୁହିଁ ହୋଇ କ୍ରମଶଃ ନିର୍ଦ୍ଧନତା ଆଡ଼କୁ ଗତି କରୁଥିଲେ ।

ପିତାଙ୍କର ସରଳ ସୁନ୍ଦର ଚେହେରାଟି ମନେ ପଡ଼େ ସ୍ୱରୂପାର । କି ସିଧାସଳଖ ଚାଲି ! ପରୋପକାର ସହ ନିଜର ଦାରିଦ୍ର୍ୟକୁ ବେଶ୍ ଗର୍ବର ସହିତ ହିଁ ଗ୍ରହଣ କରିଥିଲେ ନନା ତା'ର । ହୁଏତ କେତେବେଳେ ଶସ୍ତା ଚଟି ହଳେ ଅଛି ପାଦରେ, କେବେ ସେତକ ମଧ୍ୟ ନାହିଁ । ଛିଣ୍ଡା, ତାଳିପକା କାମିଜ ଓ ଲୁଗା ଥାଏ ପରିଧାନରେ । କେହି କେବେ ତାଙ୍କୁ ଛତାଟିଏ ବି ଧରି ଚାଲିବାର ଦେଖିନାହାନ୍ତି । ଘଣ୍ଟା ପିନ୍ଧିବା ତ ଦୂରର କଥା । ଆଶ୍ଚର୍ଯ୍ୟ କଥା ହେଉଛି ଲୋକେ କେବେହେଲେ ତାଙ୍କୁ ଅପ୍ରସନ୍ନ ଦେଖନ୍ତି ନାହିଁ । ସଦାପ୍ରସନ୍ନ ଗୋରା ତକ ତକ ମୁହଁଟା ।

ସେମାନଙ୍କ ଘର କୋଠାଘର ହୋଇଥିଲେ ମଧ୍ୟ ଏକ କୁଟୀରଠାରୁ ବି ଅଧିକ ଅଭାବ ଥିଲା ତା ଭିତରେ । ସେ ଘରଟିରେ କେବଳ ସ୍ନେହ ସରାଗ ବସ୍ତୁଟି ଅପର୍ଯ୍ୟାପ୍ତ ରହିଥିଲା, ଜଣେ ଅନ୍ୟ ଜଣକ ପାଇଁ ଅକ୍ଳେଶରେ ନିଜ ପ୍ରାଣ ଢାଳି ଦେବାକୁ ଯେମିତି ସଦାପ୍ରସ୍ତୁତ ଥାଆନ୍ତି ।

ପିଲାଙ୍କର କିଛି ସୁବିଧା ହେବ ବୋଲି ଅନେକ ସମୟରେ ନନାଙ୍କର ଭୋକ ନଥାଏ । ବୋଉ ତ କପ୍‌ଟିଏ ଚାହା ଖାଇ ସନ୍ଧ୍ୟାପର୍ଯ୍ୟନ୍ତ କାମ କରି ଚାଲିଥାଏ ଅବିଶ୍ରାନ୍ତ ଭାବରେ । ପରମ ଶାନ୍ତ ଓ ସହିଷ୍ଣୁ ବୋଉ ।

ନନାଙ୍କ ଦାତାପଣିଆକୁ ସମାଲୋଚନା କରି ସାହିପଡ଼ିଶା ଅଭିଯୋଗ ଜଣାଇଲେ ବୋଉ ହସି କହେ, ଭଗବାନ ଚଳେଇ ଦେବେ ।

କେବେ ନିଜେ ସଦାଶିବ ଯଦି କହନ୍ତି—ରେଖା ବୋଉ, ସ୍ୱଭାବଟାକୁ ବଦଳାଇ ପାରୁନି । ଜଣେ ମାଗିଲେ ମନା କରି ପାରୁନି ମୁଁ । ନିଜର ନଥିଲେ ବି ଧାର କରି ଦାନ କରୁଛି !

କଥାଟାକୁ ହାଲୁକା କରିଦେଇ ବୋଉ ହସି ହସି କହିବ—ଖାଲି କ'ଣ ତମର ଏ ସ୍ୱଭାବ ? ତମ ବଂଶର ଏ ଗୁଣ । ତମ ବୁଢ଼ା ବାପାଙ୍କ କଥା ଶୁଣିନାହଁ ? ତୋଟାରୁ ଆମ୍ବ ଆସିଲେ ପରା ଭାରୁଆକୁ ସାଙ୍ଗରେ ଧରି ଯାଇଁ ଗାଁ ଗାଁ ଘର ଘର ବୁଲି ବାଣ୍ଟି ଦେଇ ଆସିବେ ! ପୋଖରୀରୁ ମାଛ ଧରାହେଲେ ନେଇ ଯାଚି ଦେଇ ଆସିବେ ସମସ୍ତଙ୍କ ଘରେ । ଧାନ କରଜ ଦେବା ନାଁ'ରେ କେତେ କେତେ ଧାନ ବଣ୍ଟା ନ ହୋଇଛି ? ମରୁଡ଼ି ପଡ଼ିଲେ ତ ଅମାର ଖୋଲି ଦେଉଥିଲେ ଲୋକଙ୍କ ପାଇଁ ! ତାଙ୍କ ତୁଳନାରେ ତମେ ଏବେ କ'ଣ ବା ଦେଇ ପାରୁଛ ?

(୬)

ସତରେ ! ବଂଶ ! ବଂଶର ଧାରା ଅର୍ଥାତ୍ ରକ୍ତର ଏକ ପ୍ରବହମାନ ସ୍ରୋତ ସାଧାରଣତଃ ପୂର୍ବପୁରୁଷଙ୍କ ଗୁଣ ଓ ଦୋଷ ନେଇ ଏକ ଅନାଦିଯୁଗ ପାଇଁ ଯେପରି ଧାବମାନ ହୁଏ ନବଜାତକମାନଙ୍କ ଧମନୀରେ ! ସେ ରକ୍ତର ପ୍ରଭାବ ପୁଣି ଏତେ ବେଶୀ ଯେ ପୂର୍ବଜଙ୍କ ଆକୃତି ସହିତ ପ୍ରକୃତି ମଧ ସୃଷ୍ଟି କରିପାରେ ନବଜାତକଠାରେ । ସାମାନ୍ୟତମ ଜିନିଷ ଗୁଡ଼ାକ, ଯଥା, କଥା କହିବାର ଭଙ୍ଗୀ, ଭ୍ରୂକୁଞ୍ଚନ, ଏପରିକି କଣ୍ଠସ୍ୱର ମଧ ସବୁ ଏକା ଭଳି ହୋଇଯାଏ ! ଏପରିକି ହସ୍ତାକ୍ଷର ସୁଦ୍ଧା ଏକାପ୍ରକାର ହୋଇ ଯାଇପାରେ । ବଂଶର ସେହି ପ୍ରବହମାନ ରକ୍ତସ୍ରୋତ ଯେପରି କଥା କହେ ପ୍ରତ୍ୟେକ ଶିରାପ୍ରଶିରାରେ । ସେହି ସବୁ କଥା ଭାବିଲେ ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ ଯେ ମଣିଷ ଅମର, ସେ ବଞ୍ଚିରହେ ତା'ର ଦାୟାଦମାନଙ୍କ ଭିତରେ । ତେଣୁ ବ୍ରଜବନ୍ଧୁଙ୍କ ସେହି ରକ୍ତଧାରା ଏକାପ୍ରକାର କଥା କହେ ସଦାଶିବଙ୍କ ଶିରାପ୍ରଶିରାରେ, ଆଦେଶ ଦିଏ ଦାନ କରିବାକୁ, ଆଦେଶ ଦିଏ ନିଜକୁ ବାଣ୍ଟି ଦେବାକୁ । ସଦାଶିବ କିପରି ସେ ଆଦେଶକୁ ଅମାନ୍ୟ କରି ପାରିଥାନ୍ତେ ?

ତେଣୁ ଏକଦା ବଜ୍ରବିଦ୍ୟୁତ୍‌ରେ ପ୍ରକମ୍ପିତ, ତମସାଘେରା ଘନ ରାତ୍ରିରେ ଭାଗ୍ୟ ଓ ଭଗବାନଙ୍କୁ ଭରସା କରି ଆସନ୍ନପ୍ରସବା ନାରୀଟି ଶବାରିରେ ଯେଉଁ ଦୁଃସାହସିକ ଯାତ୍ରା କଷ୍ଟ ବରି ନେଇଥିଲା ବାଟିଏ ସମ୍ପତ୍ତି ପାଇବା ପାଇଁ, ସେ ବାଟିଏ ସମ୍ପତ୍ତି ପାଇଥିଲା ଯେ, କିନ୍ତୁ ଆମ୍ବ ବଗିଚା ଭିତରେ ସେହି ଅବସ୍ଥାରେ ଜନ୍ମ ହୋଇଥିବା ଶିଶୁଟି ସତେ ଯେପରି ଜଣେ ସନ୍ନ୍ୟାସୀର ବୈରାଗ୍ୟ ହିଁ ଧରି ଆସିଥିଲା । ବ୍ରଜବନ୍ଧୁଙ୍କର ଦାନର ସ୍ପୃହା ସାଙ୍ଗକୁ ବୈରାଗ୍ୟ ମିଶିଯିବାରୁ ରାଜାଙ୍କଠାରୁ ପ୍ରାପ୍ତ ବାଟିଏ ସମ୍ପତ୍ତି ସରିଯିବାକୁ ଅତି ବେଶୀ ସମୟ ଲାଗିନଥିଲା ।

ମହାରାଜାଙ୍କ 'ଶାଢ଼ି' ବା 'ଶିରପା' ପାଇବାର ସ୍ମାରକୀ ସ୍ୱରୂପ ଖାଲି ରହି ଯାଇଥିଲା ବଡ଼ କୋଠାଘରଟି । ଆଜି ମଧ ଅଛି । ସଂସ୍କାର ଅଭାବରୁ ଜରାଜୀର୍ଣ୍ଣ, ହୁଏତ ଦିନେ ଭୁଷୁଡ଼ି ପଡ଼ି କେବଳ ଗୋଟାଏ ଭଙ୍ଗା ଇଟା, କାଠ, ଚୂନର ବିରାଟ ସ୍ତୂପଟିଏ ହୋଇଯିବ ।

ନା, ନା । ସ୍ୱରୂପା ବଞ୍ଚି ଥାଉ ଥାଉ ସେ କଥା ନହେଉ । ମଣ୍ଟୁ ଅଛି, ବଂଶର ରକ୍ତଧାରା ଏବେ ବି ଜୀଇଁ ରହିଛି, ବ୍ରଜବନ୍ଧୁଙ୍କ ଉତ୍ତରାଧିକାରୀ ହେବ ମଣ୍ଟୁ । ତାକୁ ମଣିଷ ପରି ମଣିଷଟିଏ

କରିବ ସ୍ୱରୂପା । ପୁଣି ତାକୁ ନେଇ ପ୍ରତିଷ୍ଠା କରିବ ସେହି ଘରେ, ଯେଉଁ ଘରଟି ତା ନନା ଓ ବୋଉଙ୍କର ଅମରପ୍ରେମର ପୀଠସ୍ଥଳୀ । ଯେଉଁଟିରେ ଏବେ ବି ଭରି ରହିଛି ଅଜସ୍ର ସ୍ମୃତି ଚିହ୍ନ । ଭରି ରହିଛି ଦୁଆରରେ, ଦୁଆର ବନ୍ଧରେ, କାନ୍ଥରେ, ବାଡ଼ରେ । ଅଳତା ଲଗାଇ ସାରିଲା ପରେ ଅନ୍ୟମନସ୍କ ଭାବରେ ବୋଉ କାନ୍ଥରେ ହାତ ପୋଛି ଦେଇଛି କେଉଁଠି, କେଉଁଠି ନନା ଦୁଇଧାଡ଼ି ନୀତିକଥା ଲେଖି ଦେଇଛନ୍ତି । ଖାଲି ଏ ପୁରୁଷର ନୁହେଁ, ବହୁ ଅତୀତର ସ୍ମୃତି ଚିହ୍ନମାନେ ମଧ୍ୟ ଅକ୍ଷତ ଅବସ୍ଥାରେ ରହିଛନ୍ତି ଆଜି ପର୍ଯ୍ୟନ୍ତ । ଜେଜେମାଠୁ ଶୁଣିବା କାହାଣୀ –

ଦିନେ ଦ୍ୱାର ଉପରେ ଥିବା ଖୋପରେ ତରତରରେ କଟୁରୀଟା ରଖିବାକୁ ଯାଇ ଦାଡୁଆ ଓ ଭାରି କଟୁରୀଟା ଖସି ପଡ଼ିଥିଲା ବ୍ରଜବନ୍ଧୁଙ୍କ ମୁଣ୍ଡ ଉପରେ, ସୃଷ୍ଟି କରିଥିଲା ଗୋଟିଏ ଗଭୀର କ୍ଷତ । ସେ କଟୁରୀଟା ପୁଣି ତଳର କାଠ ଏରୁଣ୍ଡି ବନ୍ଧ ଉପରେ ପଡ଼ି ତାକୁ ହାଣି ଘଟଣାଟିକୁ ଲିପିବଦ୍ଧ କରି ରଖି ଦେଇଥିଲା ।

ଏରୁଣ୍ଡିବନ୍ଧ ହଣା ହୋଇଥିବା ଚିହ୍ନ ଏ ପର୍ଯ୍ୟନ୍ତ ରହିଛି ଅବିକଳ ଭାବରେ । କାରଣ ସେକାଳର କାଠ, ସେ କାଳର କାରିଗର । ସେମାନେ ସମସ୍ତେ ସଚ୍ଚୋଟ ଥିଲେ, ଭେଜାଲ ନଥିଲେ । ସେ କାଳର ସେ କାଠକୁ ପୋକ ଖାଇଦେଇ ନଷ୍ଟ କରିଦେଇ ପାରିନି ଆଜି ପର୍ଯ୍ୟନ୍ତ ।

ସେଦିନ କୁଆଡ଼େ ବ୍ରଜବନ୍ଧୁ ମୁଣ୍ଡର ସେ ଗଭୀର କ୍ଷତକୁ ଭ୍ରୂକ୍ଷେପ ନକରି ବିରାଟ ପାଗଟିଏ ମୁଣ୍ଡରେ ବାନ୍ଧି ଦେଇ ରାମଲୀଳା ଦେଖିବାକୁ ସାଙ୍ଗେ ସାଙ୍ଗେ ଚାଲି ଯାଇଥିଲେ । ଯାତ୍ରାରୁ ଫେରିଲା ବେଳକୁ ମୁଣ୍ଡ ବନ୍ଧା ଲୁଗାଟି ପୂରାପୂରି ଭିଜି ଯାଇଥିଲା ରକ୍ତରେ । ଘଟଣା ଦେଖି ବ୍ରଜବନ୍ଧୁ ନିରୁଦ୍‌ବିଗ୍ନ ଭାବରେ କିଛି ଔଷଧି ଗଛ ପତ୍ର ବାଡ଼ିରୁ ତୋଳି ଆଣି ଛେଚି କ୍ଷତ ଜାଗାରେ ଲଦି ଦେଇ ପୁଣି ଆଉ ଗୋଟିଏ ଲୁଗାକୁ ପାଗ ରୂପେ ବାନ୍ଧି ଦେଇଥିଲେ । ଘରର କାହାକୁ କିଛି କହି ନ ଥିଲେ ଆରଦିନ ପର୍ଯ୍ୟନ୍ତ !

ନିଜର ସମସ୍ତ ଯନ୍ତ୍ରଣାକୁ ସମସ୍ତଙ୍କଠାରୁ ଗୋପନ କରି ରଖିବାର ଅଦ୍ଭୁତ ପ୍ରକୃତି ଆଜିଯାଏଁ ରହିଛି ଏ ବଂଶରେ ।

ସ୍ୱରୂପା ଭାବିଲା—ଯଦି ନନା ବ୍ରଜବନ୍ଧୁଙ୍କ ପରି ହୋଇ ନଥାନ୍ତେ ତା'ହେଲେ ଜୀବନର ସ୍ରୋତଟା ହଠାତ୍ ଏଭଳି ବନ୍ଦ ହୋଇଯାଇ ନଥାନ୍ତା । ନନା ଅକ୍ଳେଶରେ ନୀଳମଣିଙ୍କଠାରୁ ବୋଉର ଚିକିତ୍ସା ପାଇଁ ଅର୍ଥ ସାହାଯ୍ୟ ନେଇ ପାରିଥାନ୍ତେ । ସହରର ଡାକ୍ତରଖାନାକୁ ନେଇ ଚିକିତ୍ସା କରାଇ ପାରିଥାନ୍ତେ, କିନ୍ତୁ ସାହାଯ୍ୟ ପାଇବା ଭୟରେ ଖବରଟିଏ ସୁଦ୍ଧା ସେ ଦେଇ ନଥିଲେ ନୀଳମଣିଙ୍କୁ ।

ନୀଳମଣି ଯେତେବେଳେ ଖବର ପାଇଲେ—ଏକା ସଙ୍ଗେ ଦୁଇଟିଯାକ ଖବର ପାଇଲେ । ପତ୍ନୀଙ୍କ ମୃତ୍ୟୁର ତୀବ୍ର ଶୋକକୁ ଦିନକଠାରୁ ଅଧିକ ସହି ପାରି ନାହାନ୍ତି ସଦାଶିବ । ନିରୁପାୟ ହୋଇ ଆତ୍ମହତ୍ୟା କରି ନିଷ୍କୃତି ପାଇଛନ୍ତି । ସାରା ଜୀବନର ସମସ୍ତ ଆଦର୍ଶ ପରୋପକାର,

ଦୟା, ଦାନ, ମଧୁର ବ୍ୟବହାର ଓ ସଦାପ୍ରସନ୍ନ ରହିବାର ସେ ଅପୂର୍ବ ଶକ୍ତି ସବୁ ଯେପରି ଅର୍ଥହୀନ ହୋଇ ଯାଇଥିଲା ନିମିଷକରେ !

କିଏ ଜାଣିଛି—ଯେତେବେଳେ ପାପ ଓ ପୁଣ୍ୟର ଓଜନ ମପା ଯାଇଥିବ, ନିକିତିର କେଉଁ ପଲାଟି ତଳକୁ ହୋଇଥିବ ସଦାଶିବଙ୍କର ?

ବିଶ୍ୱନାଥଙ୍କ ଅଜା ଘର, ହେମଲତା ଓ ସ୍ୱର୍ଣ୍ଣଲତାଙ୍କ ଜନ୍ମସ୍ଥାନ, ତେଣୁ ନୀଳମଣିଙ୍କର ଅତି ପ୍ରିୟ ଥିଲେ ସେମାନେ । ପୂଜାପର୍ବରେ ନୂଆ ଲୁଗାପଟା, ଫଳପରିବା, ନଡ଼ିଆପଇଡ଼, ବିରିମୁଗ, ଆରିସାକାକରା ଦହି ମାଛର ଭାର ସବୁବେଳେ ପଠାଇଛନ୍ତି ନୀଳମଣି । ପିଲାଙ୍କୁ ଆଣି ତାଙ୍କ ନିକଟରେ ଛାଡ଼ିବାକୁ ମଧ ଅନୁରୋଧ ଜଣାଇଛନ୍ତି କେତେଥର । କିନ୍ତୁ ସେହି ଅପୂର୍ବ ବଂଶଧାରାର ଆତ୍ମସମ୍ମାନବୋଧ ଜିନିଷଟା–ସଦାଶିବ ତା କବଳରୁ ମୁକ୍ତି ପାଇପାରି ନାହାନ୍ତି ।

ଦୁଃସମ୍ବାଦ ପାଇ ଶବାରି ଗଉଡ଼ ଧରି ନୀଳମଣି ନିଜେ ଯାଇ ପହଞ୍ଚିଥିଲେ ସେଠାରେ । ଘରର ଅବସ୍ଥା ଦେଖି ସ୍ତମ୍ଭିତ ହେଲେ । ଶୁଦ୍ଧିକ୍ରିୟା ସରିଲା ପରେ ଅନାଥ ପିଲା ତିନୋଟିଙ୍କୁ ସାଙ୍ଗରେ ଧରି ଫେରି ଆସିଥିଲେ ।

x x x

ପିଲାମାନେ ସମସ୍ତେ ସ୍କୁଲ ଓ କଲେଜ୍‌ରୁ ଫେରିଲେଣି, ସୁପ୍ରକାଶ ଛଡ଼ା । ତେଣୁ ଏତେବେଳକୁ ଟିକିଏ ଗହଳ ଚହଳ ଜଣାଯାଉଛି ଉପର ମହଲାରେ ।

ସୁଜାତା ପିଲାଙ୍କ କାମ ସାରି ଡ୍ରେସିଂ ଟେବୁଲ ପାଖରେ ଠିଆ ହୋଇ ପ୍ରସାଧନ କରୁଥିଲା । ଦେବବ୍ରତ ନିଜେ ପ୍ରସ୍ତୁତ ହୋଇ କହିଲା, ସୁଜାତା, ମୁଁ ଯାଉଛି ବୋଉଙ୍କୁ ଇଞ୍ଜେକ୍‌ସନ୍‌ଟା ଦେଇ ତାଙ୍କ ପାଖରେ ବସି ଟିକିଏ କଥାବାର୍ତ୍ତା କରିଯିବି । ତମେ ଠିକ ସମୟରେ ବଡ଼ମାଙ୍କୁ ତାଙ୍କ ଔଷଧଟା ଖୁଆଇ ଦେବ ।

ସୁନନ୍ଦାଙ୍କ ସାରାଦିନର ଅନୁପସ୍ଥିତି କ୍ଷୋଭ ସୃଷ୍ଟି କରି ଥିଲା ସୁଜାତାର ମନରେ, ତାହା ଏପର୍ଯ୍ୟନ୍ତ ଦୂର ହୋଇ ନ ଥିଲା । ଦର୍ପଣକୁ ଚାହିଁ ପାଉଡ଼ର ଲଗାଉ ଲଗାଉ ସୁଜାତା କହି ପକାଇଲା, ଏ ଘରକୁ ଭଲ ନର୍ସଟିଏ ହୋଇ ମୁଁ ଆସିଛି । ପୁଣି ନାନୀ ଆଜି ନାହାନ୍ତି ଯେ ଏଇଲେ ସାଙ୍ଗେ ସାଙ୍ଗେ ମତେ ଠାକୁରଙ୍କ ଶୀତଳ ମଣୋହି ପାଇଁ ସବୁ କଥା ଯୋଗାଡ଼ କରି ପଠାଇବାକୁ ପଡ଼ିବ । ଏତକଯାକ ଲୋକ ଖିଆପିଆ କରିବେ, କାହାପାଇଁ କି ବ୍ୟବସ୍ଥା ହେବ, କିଏ କ'ଣ ଖାଇବେ ପଥ୍ୟ ରାନ୍ଧିବା କଥା ଅଛି, ସବୁ ତ ଆଜି ଏକୁଟିଆ ମତେ କରିବାକୁ ପଡ଼ିବ । କମ୍ କାମ ହେଲାଣି ? ତମେ ବରଂ ଯାଇ ବଡ଼ମା'ଙ୍କୁ ଔଷଧଟା ଦେଇ ଦିଅ ।

ସୁଜାତାର କଥା କହିବାର ଢଙ୍ଗଟା ସବୁବେଳେ ମଣିଷକୁ ବିରକ୍ତ କରିଦିଏ । ଦେବବ୍ରତ ଗମ୍ଭୀର ହୋଇଯାଇ କହିଲା, ଏ ଘରର ବୋହୂ ହୋଇ ଆସିଲାବେଳକୁ ଏସବୁ କରିବାକୁ ପଡ଼ିବ

ବୋଲି କ'ଣ ଜାଣି ନଥିଲ ସୁଜାତା ? ତା'ଛଡ଼ା ଡାକ୍ତରଖାନାରେ ତ ଶହେ ରୋଗୀଙ୍କୁ ଦେଖିବାର ଧୈର୍ଯ୍ୟ ତୁମର ଅଛି, ହେଲେ ଘରର ଦି' ଚାରିଜଣ ରୋଗୀଙ୍କୁ ଦେଖିଲା ବେଳକୁ ତମେ ଖାଲି ନର୍ଭ ହୋଇଯାଉଛ ? କ୍ଲିନିକ୍‌ରେ ପହଞ୍ଚିବାକୁ ମୋର ଡେରି ହୋଇ ଯିବନି ?

ଫଁ କିନା ନିଃଶ୍ୱାସ ପକାଇ ସୁଜାତା କହିଲା, ହଁ ସେଇଟା ତମର ଗୋଟାଏ ଭଲ ପ୍ଲି ରହିଛି ।

—ଅର୍ଥାତ୍ ?

—ତୁମେ ରାଗିବ ଜାଣେ, ମୁଁ କ'ଣ ଯାଇ କ୍ଲିନିକ୍‌ରେ ବସି ପାରନ୍ତି ନାହିଁ ନା କ'ଣ ?

ଏଥର ଦେବବ୍ରତ ରାଗିଲାନି, ହସି ଉଠି ତୀର ଭଳି ପ୍ରଶ୍ନଟିଏ ନିକ୍ଷେପ କଲା, ତମେ କ'ଣ ପୁରୁଷଟିଏ ହୋଇ ଜନ୍ମ ହୋଇପାରି ନ ଥାନ୍ତ ସୁଜାତା ?

ଆବଶ୍ୟକୀୟ ବେଗ୍‌ପତ୍ର ଧରି ଘରୁ ବାହାରି ଗଲା ଦେବବ୍ରତ । ଦେବବ୍ରତ ଯେତିକି ଭଲ ସେତିକି ମନ୍ଦ ହୋଇପାରେ । ହେବ ନାହିଁ ? ନୀଳମଣିଙ୍କ ହାତରେ ଗଢ଼ା ଯେ !

ସୁଜାତାର ପ୍ରସାଧନକୁ ବିଫଳ କରି ଦୁଇ ଧାର ଲୁହ ଝରି ପଡ଼ିଲା ତା ଆଖିରୁ । ଅକସ୍ମାତ୍ ରାଗରେ ଯେପରି ଜଳି ଉଠିଲା ସେ । ରାଗ ତା'ର ଦେବବ୍ରତ ଉପରେ, ନୀଳମଣିଙ୍କ ଉପରେ, ସୁନନ୍ଦାଙ୍କ ଉପରେ, ଶେଷରେ ନିଜ ଉପରେ ମଧ୍ୟ ।

ଏ ଯୁଗରେ ପୁଣି ଏଭଳି ବିରାଟ ଏକାନ୍ନବର୍ତ୍ତୀ ପରିବାରର ବୋଝ ମୁଣ୍ଡାଇ କିଏ ଚଳୁଛି ଯେ ? କାହିଁ, ତା'ର ଜଣାଶୁଣାରେ ତ କେହି ହେଲେ ଜଣେ ନାହାନ୍ତି । ତା'ର ସାଙ୍ଗମାନେ ସମସ୍ତେ ଯେ ଯାହାର ଚାକିରିଟିଏ କରି ତଥା କ୍ଲିନିକ୍‌ଟିଏ କରି ବେଶ୍ ସ୍ୱାଧୀନ ଭାବରେ ନିଜ ନିଜର ଘରକରଣା କରୁଛନ୍ତି । ତା'ଭଳି ହନ୍ତସନ୍ତ ହେଉଛି କିଏ ? ସେମାନେ ନିଜ ନିଜର ସ୍ୱାମୀ ଓ ସନ୍ତାନ ମାନଙ୍କ ସହ ରହିଛନ୍ତି, ଛବି ଭଳି ନିଜ ଘରଟିମାନ ସଜାଇ ରଖିଛନ୍ତି ଆଧୁନିକ ଯୁଗରେ ମିଳୁଥିବା ସମସ୍ତ ପ୍ରକାର ସୌଖୀନ ଜିନିଷରେ । ଯେଉଁ ଦିନ ଇଚ୍ଛା ହେଲା ତ ଘରେ ରାନ୍ଧିଲେ, ନ ହେଲା ତ ବାହାରେ ହୋଟେଲ ମାନଙ୍କରେ, ରେଷ୍ଟୋରାଁ ମାନଙ୍କରେ ଯାଇ ଖାଇ ଦେଇ ଆସୁଛନ୍ତି । ଏବେ ଏ ଦେଶରେ ମଧ୍ୟ ବଢ଼ିଆ ଟିଣରେ ଭର୍ତ୍ତି ଖାଦ୍ୟମାନ ମିଳିଲାଣି । ସପ୍ତାହ ଶେଷରେ କିମ୍ବା ଛୁଟିଦିନ ଗୁଡ଼ିକରେ ସ୍କୁଟର ବା ମଟରରେ ବସି, ସାଙ୍ଗରେ ପିକ୍‌ନିକ୍‌ର ସରଞ୍ଜାମମାନ ନେଇ ଫୁର୍ତ୍ତି କରିବାକୁ ଚାଲି ଯାଉଛନ୍ତି, ସମସ୍ତେ ଜୀବନଟାକୁ ଉପଭୋଗ କରୁଛନ୍ତି । ସେମାନେ, ଆଉ ସୁଜାତା ?

ତା'ଭଳି ଏପରି ଘୋରଣାର ଚକି ପରି ଦିନ ଯାଉଛି କାହାର ? ଏ ଘରେ ତା'ର ଦୁଃଖ ବା ବୁଝୁଛି କିଏ ? ଦୁଃଖ ଜଣାଇବାକୁ ଗଲାକ୍ଷଣି ଶୁଣିବାକୁ ପଡ଼ିବ—ଚାକିରି ଛାଡ଼ିଦିଅ । ଏଭଳି ହନ୍ତସନ୍ତ ହେବାକୁ ତମକୁ କିଏ କହୁଛି ? ଘରେ କ'ଣ କିଛି ଅଭାବ ଅଛି ?

ସୁଜାତା ନିଜର ମନ୍ଦ ଭାଗ୍ୟକୁ ଦୋଷ ଦେଉଥିଲା । ପର୍ଦ୍ଦା ବାହାରେ ଥାଇ ସୁଦାମ କହିଲା, ସାନବୋହୂ ମା ! ପ୍ରାମ୍‌ରୁ ଛୁଆ ବାବୁ ଜମା ଉଠୁ ନାହାନ୍ତି, କାନ୍ଦୁଛନ୍ତି । ଆପଣ ନ ଗଲେ ତ ଉଠିବେନି । ଝିଅ ମା ଆଣିବାକୁ ଗଲେ, ହେଲେ ମନା କଲେ ସେ ।

ସାନ ପିଲାଙ୍କୁ ପ୍ରତି ସନ୍ଧ୍ୟାରେ ଠେଲା ଗାଡ଼ିରେ ନେଇ ରୂପମତୀ ନଈକୂଳରେ ବୁଲାଇ ଆଣିବାର ବ୍ୟବସ୍ଥା ଅଛି ଏ ଘରେ । ପିଲାଦିନେ ସୁପ୍ରକାଶ, ମଧୁଛନ୍ଦା, ଲୀନା ସମସ୍ତେ ଯାଉଥିଲେ । ଏବେ ସାନୁ ଆଉ ମୁନୁଙ୍କର ପାଳି ପଡ଼ିଛି—ସୁଜାତାଙ୍କର ଦିଓଟି ଛୋଟ ପୁଅ । ଘରକୁ ଫେରିଲା ପରେ ପ୍ରାମ୍‌ରୁ ଉଠି ଆସିବାକୁ ସାନୁ କେବେ ରାଜି ହେବନି । ନିଜେ ସୁଜାତା ତଳକୁ ଓହ୍ଲାଇ ତାକୁ ନ ଆଣିଲା ପର୍ଯ୍ୟନ୍ତ ଜିଦ୍ କରି ବସିଥିବ ସେଠି ।

ତରବରରେ ଆଖି ପୋଛି ଦେଇ ସୁଜାତା ଓହ୍ଲାଇ ଗଲା ତଳକୁ । ଭାବିଲା ନିଜେ ଯଦି ଆଜି ଭିନ୍ନ ହୋଇ ଏକୁଟିଆ ଘରେ ରହିଥାନ୍ତା ତାହେଲେ ଏ ଜିଦ୍‌ଖୋର ଛୁଆଟାକୁ ଠିକଣା କରିଥାନ୍ତା ମାଡ଼ ଦେଇ । ସାନୁର କାନ୍ଦ ଶୁଣି ଶାସନ କରିବାକୁ ସେଠି ତ ଆଉ ନୀଳମଣି ନ ଥାନ୍ତେ !

ଓଃ, ତା'ର ଏକାନ୍ତ ନିଜର ଗୋଟିଏ ଝକ୍‌ଝକ୍ ଚକ୍‌ଚକ୍ କରୁଥିବା ସୁନ୍ଦର ଛୋଟିଆ ଘର ଥାଆନ୍ତା, ଯେଉଁଠି କି ଆଜିକାଲିର ଢଙ୍ଗରେ ସେ ଶାସନ କରି ନିଜ ପିଲାଙ୍କୁ ମନ ମୁତାବକ ମଣିଷ କରି ପାରିଥାନ୍ତା ! କି ଆଶ୍ଚର୍ଯ୍ୟ ! ଏ ଘରେ ତା ନିଜ ପିଲାଙ୍କୁ ଶାସନ କରିବା ଅଧିକାର ଟିକକ ମଧ ତା'ର ନାହିଁ !

ଏ ଘରେ ସେ ବୋହୂ ହୋଇଥିଲେ ମଧ ଜଣେ ଆଶ୍ରିତ ପରି ! ଆଶ୍ରିତ ତ ! ଏ ଘରେ ସମସ୍ତେ ଆଶ୍ରିତ, ସେହି ଦୁଇଟି ବୁଢ଼ୀଙ୍କ ଛଡ଼ା । ଜଣେ ଚିରଦିନ ପାଇଁ ପକ୍ଷାଘାତ ରୋଗଗ୍ରସ୍ତ, ଆଉ ଜଣେ ଆଂଶିକ ଭାବରେ ରୋଗିଣୀ ହେଲେ ମଧ ଗୋଟାଏ ସାମ୍ରାଜ୍ୟର ସାମ୍ରାଜ୍ଞୀ ଭଳି ହିଁ ପ୍ରବଳ ପ୍ରତାପୀ । ତାଙ୍କ କଥାରେ ଏ ଘରେ ପାନରୁ ଚୂନ ଖସିବାର ଉପାୟ ନାହିଁ ।

ତଳ ମହଲାର ଲମ୍ବା ବାରଣ୍ଡା ଅତିକ୍ରମ କଲାବେଳକୁ ସୁଜାତା ଦେଖିଲା—ମାଧବ ତା'ରି ପାଖକୁ ଆସିଛି । ମନେ ପଡ଼ିଲା—ରାଧାଗୋବିନ୍ଦଙ୍କ ମନ୍ଦିରକୁ ଗୁନ୍ଥା ହୋଇଥିବା ଫୁଲମାଳ ଯିବ ସନ୍ଧ୍ୟା ବେଶ ପାଇଁ । ଶୀତଳ ମଣୋହିର ସାମଗ୍ରୀତକ ଯିବ । ଅତିଥି ଅଭ୍ୟାଗତଙ୍କ ରାତ୍ରି ଭୋଜନର ବ୍ୟବସ୍ଥା ପାଇଁ ଆବଶ୍ୟକୀୟ ଜିନିଷପତ୍ର ବାହାର କରି ଦେବାକୁ ପଡ଼ିବ ଭଣ୍ଡାରରୁ । ବ୍ୟବସ୍ଥାଟା ତ କିଛି କମ ନୁହେଁ । ସନ୍ଧ୍ୟା ଆରତି ଦର୍ଶନ ପାଇଁ ଯେତେ ଭକ୍ତ ଉପସ୍ଥିତ ଥିବେ ସମସ୍ତେ ଶୀତଳ ମଣୋହିର ପ୍ରସାଦ ପାଇବେ । ତା'ଛଡ଼ା ଥାଳିଟିଏ ପ୍ରସାଦ ଯିବ ପୁରୋହିତଙ୍କ ଘରକୁ, ଥାଳିଟିଏ ଗୁରୁଙ୍କ ଘରକୁ, ଥାଳିଟିଏ ଆସିବ ଏଠାକୁ ।

ଓହୋ ! ଏକାଳରେ ପୁଣି ଏଇଗୁଡ଼ାକ ରହିଛି ! କି ଅଦ୍ଭୁତ ! କି ଅଦ୍ଭୁତ !

ସୁଜାତାର କ୍ଷୋଭକୁ ଆହୁରି ବଢ଼ାଇ ଦେଇ ରାମ ବୋଉ ମଧ ପାଖରେ ଆସି ହାଜର ହୋଇଗଲା । ରନ୍ଧାଶାଳରୁ ଖବର ଚାଲି ଆସିଲାଣି । ରାତିର ରନ୍ଧନର ବ୍ୟବସ୍ଥା ପାଇଁ ଜିନିଷପତ୍ର

ବାହାର କରି ବରାଦ ଦେବାକୁ ହେବ ! ସେଥିରେ ପୁଣି ଆମିଷ, ନିରାମିଷ, ଭାତ, ଜଳଖିଆ, ପିଲାଙ୍କ ଖାଇବା ଓ ବଡ଼ଙ୍କ ଖାଇବା । କି ଜଞ୍ଜାଳ ! କି ଜଞ୍ଜାଳ !!

କିନ୍ତୁ କିଛି ସମୟ ପରେ ସେଇ ସୁଜାତା ମୁହଁର ସମସ୍ତ ବିଷଣ୍ଣତାକୁ ଲିଭାଇ ଦେଇ, ମୁହେଁ ହେବ ହସ ଧରି, ଜଳଖିଆ ଥାଳିଆ ଧରି, ନୀଳମଣିଙ୍କ କକ୍ଷରେ ପ୍ରବେଶ କଲା ।

ଟିକିଏ ଜଳଖିଆ ଖାଇଲା ପରେ ନୀଳମଣି ଔଷଧ ଖାଇବେ । ପୁଣି ନୀଳମଣିଙ୍କ ପାଖରେ ବସି ଜଳଖିଆ ଖାଇବ ଦେବବ୍ରତ । ବଡ଼ଭାଇ ସତ୍ୟବ୍ରତ ନାହାନ୍ତି, ଦିଲ୍ଲୀ ଯାଇଛନ୍ତି, ନହେଲେ ସେ ମଧ୍ୟ ଖାଇଥାନ୍ତେ ।

ପିଲାଙ୍କର ଖାଇବା ନିଜ ଆଖିରେ ନ ଦେଖିଲେ କୁଆଡ଼େ ନୀଳମଣିଙ୍କ ମନ ବୋଧ ହୁଏ ନାହିଁ । ଯେତେବେଳେ ସକ୍ଷମ ଥାଆନ୍ତି ସମସ୍ତେ ଭାତ ଖାଇ ବସିଲାବେଳେ ଯାଇ ପାଖରେ ବସନ୍ତି । ଆମିଷର ବ୍ୟବସ୍ଥା ଥାଏ, ତେଣୁ ସବୁ ଅଲଗା । ଜଳଖିଆ, ଦୁଧ, ଫଳ ଯାହା ଖିଆଯାଏ, ଏଇ ଘରେ ବସି ଖାଆନ୍ତି ଦି ଭାଇଯାକ । ନୀଳମଣିଙ୍କ ପାଖରେ ଏବେ ବି ଏ ଦୁଇ ଭାଇ ଯେମିତି ଛୋଟ ପିଲା, ଠିକ୍ ଲୀନା ଆଉ ମଣ୍ଟୁ ପରି ।

ହାତ ଧୋଇ ଦୁଆର ବାଟେ ପଶୁ ପଶୁ ହସି ହସି କହିଲା ଦେବବ୍ରତ—ବେଳ ହୋଇଗଲାଣି ବଡ଼ମା ।

—ସେ କଥା ଜାଣିଛି । ବସି ଜଳଖିଆ ଖାଇ ଦୁଧ ଗିଲାସେ ପିଇବାକୁ କେତେ ଡେରି ଲାଗିବ ଯେ ?

ସୁଜାତା ଟେବୁଲ ଉପରେ ଦେବବ୍ରତ ପାଇଁ ସଜାଡ଼ି ରଖି ଦେଇ ଆଦର କରି ଖୁଆଇ ବସିଲା ବଡ଼ମାଙ୍କୁ । କେତେ ସମୟ ପୂର୍ବେ ଯେଉଁ କ୍ଷୋଭ ଜମି ଯାଇଥିଲା ମନ ଭିତରେ, ଏବେ ହାଲୁକା ମେଘ ଖଣ୍ଡେ ପରି କୁଆଡ଼େ ସେ ଭାସି ଯାଇଛି ।

ସୁଜାତାର ପ୍ରକୃତିଟା ହିଁ ଏହିପରି ।

ଖାଉ ଖାଉ ଦେବବ୍ରତ କହିଲା—ଅନେକ ଲୋକ ଅପେକ୍ଷା କରି ବସିଥିବେ ମତେ ।

ସୁଜାତା ହସି ଦେଇ କହିଲା—ଦାତବ୍ୟ ଚିକିତ୍ସାଳୟ ଖୋଲିଛ, ଲୋକ ତ ନିଶ୍ଚୟ ଦିନକୁ ଦିନ ବେଶୀ ହେବେ । ଆଜି କାଲିକାର ଦିନରେ ମାଗଣାରେ ଚିକିତ୍ସା ପାଇଲେ କିଏ ନ ଆସିବ ?

—ଭଗବାନ କ'ଣ ଦେବକୁ ଦରିଦ୍ର କରିଛନ୍ତି ସୁଜାତା ? ଦରିଦ୍ର ଅସହାୟଙ୍କ ସେବା କରିବା ମଣିଷର ଧର୍ମ ମା ! ଦେବ ଏ ଘରର ଆଦର୍ଶ ପାଳୁଛି । ବିନା ପଇସାରେ ରୋଗୀଙ୍କ ଚିକିତ୍ସା କରିବା ଗୋଟାଏ ମହାପୁଣ୍ୟ ।

କଣ୍ଠସ୍ୱର କୋମଳ ହେଲେ ମଧ୍ୟ ବେଶ୍ ଗର୍ବିତ ଭାବରେ ହିଁ କହିଲେ ନୀଳମଣି । ସତ୍ୟବ୍ରତ ଆଉ ଦେବବ୍ରତ ତାଙ୍କରି ହାତରେ ଗଢ଼ା ମଣିଷ । ମଣିଷ ଭଳି ମଣିଷ ହୋଇଛନ୍ତି ।

ତା'ପରେ ଦେବବ୍ରତକୁ ଲକ୍ଷ୍ୟ କରି କହିଲେ, ପ୍ରଭାକୁ ଦେଖି ଆସିଲୁ ଦେବ ? ଆଜି ସୁନନ୍ଦା ନାହିଁ । ପ୍ରଭା ଖାଇଲା ବେଳେ ଦେଖିବାକୁ ଆଜି କେହି ନାହାନ୍ତି ।

ହଁ, ବଡ଼ମା ତାଙ୍କ ପାଖରେ ଟିକିଏ ବସିଲି । ଇଞ୍ଜେକସନ୍‌ଟା ବି ଦେଇଦେଲି । ମାଳତୀ ମା଼ ପାଖରେ ଅଛି । ସୁଜାତା ତ ଏବେ ଯିବ ଜଳଖିଆ ଖୁଆଇବାକୁ ।

'ବାପା, ସୁଦାମକୁ କହିଦେବୁ, ମହିଳା ସଦନକୁ କାହାକୁ ପଠାଇବାକୁ, ସୁନନ୍ଦା ଆସିବ ।' ଟିକିଏ ରହି ନୀଳମଣି ପୁଣି କହିଲେ—ମଧୁଛନ୍ଦା ପିକ୍‌ନିକ୍‌ରେ ଚାଲିଗଲା । ସୁନନ୍ଦା ଜାଣିନି । ଆଜି ରାତିରେ ମଧ ମଧୁଛନ୍ଦା ଫେରିବନି । ପିଲାଙ୍କୁ ଯେ ଏମାନେ କିଭଳି ମଣିଷ କରୁଛନ୍ତି, ମୁଁ ବୁଝି ପାରୁନି ଦେବ !

—ତମେ ମନା କରି ଦେଲନି ବଡ଼ମା ? ରାତିରେ କାହିଁକି ବାହାରେ ରହିବ ସେ ?

ସୁଜାତା କହିଲା—ମଧୁ କ'ଣ ସ୍ୱରୂପା ହୋଇଛି ଯେ ବଡ଼ମା'ଙ୍କ କଥା ମାନି ଘରେ ରହିଥାନ୍ତା ?

କ୍ଳାନ୍ତ ଭାବରେ ନୀଳମଣି କହିଲେ—ଏଥର ଭଲମନ୍ଦ ସବୁ କଥା ବୁଝିବା ଭାର ସୁନନ୍ଦାର, ସୁଜାତାର । ସେମାନେ ଯେମିତି ବଢ଼ାଇବେ ପିଲାମାନେ ସେମିତି ବଢ଼ିବେ । ପ୍ରକୃତରେ ସୁନନ୍ଦା ମଧୁଛନ୍ଦାକୁ ବହୁତ ମୁହଁ ଦେଇଛି । ଆଜି ସେ ଆସୁ, ମୁଁ କହିବି ତାକୁ । ହେଲେ ବାପା, ସବୁକାଳେ ମୁଁ କ'ଣ ଶାସନ କରିବାକୁ ସଂସାରର ଦଉଡ଼ିଟାକୁ ଏମିତି ନିଜ ହାତରେ ଧରି ବସିଥିବି ? ମୋର ଆଉ ଛୁଟି ନାହିଁ ? କହୁଥିଲି କ'ଣ କି...ଏ ବର୍ଷ ଆଗ ମଧୁଛନ୍ଦାର ବାହାଘରଟା ସାରିଦେବା ।

ସୁଜାତା କହିଲା—ଏକା ସଙ୍ଗେ ସ୍ୱରୂପାର ବାହାଘରଟା ମଧ କରି ଦିଅନ୍ତୁ, ବଡ଼ମା ।

—ସେ ପରା ଡକ୍ଟରେଟ୍ ସାରିଲାପରେ କ'ଣ ଡି.ଏସ.ସି. କରିବ କହୁଛି ?

ଦେବବ୍ରତ କହିଲା—ବାହାଘର ହେଲାପରେ ଡି.ଏସ.ସି. କଲେ ଚଳିବ ବଡ଼ମା ।

—ଆଚ୍ଛା ସେଇୟା କରିବା । ସୁଜାତା, ମା, ତୋର ସେ କକେଇଙ୍କ ପାଖକୁ ଚିଠି ଖଣ୍ଡେ ଲେଖି ଦେବୁଟି । ପଚାରିବୁ ଏ ବର୍ଷ ଶଚୀର ବାହାଘର କଲେ ସେମାନଙ୍କର କ'ଣ ଅସୁବିଧା ହେବ କି ? ବାହାଘର ତ ଠିକ୍‌ଠାକ୍ ହୋଇ ରହିଛି । ଖାଲି ଯାହା ଦିନ ସ୍ଥିର କରିବା କଥା ।

ଦେବବ୍ରତ କହିଲା—ବଡ଼ମା, ଶଚୀ ଚାକିରି ବି ପାଇଗଲାଣି । ମାଜିଷ୍ଟ୍ରେଟ୍ ରୂପେ ଯୋଗ ଦେଇଛି ।

ନୀଳମଣି ଆନନ୍ଦିତ ହୋଇଗଲେ । ମୁହଁ ଧୋଇ ଔଷଧ ଖାଇ କହିଲେ, 'ଆଜି ନିଶ୍ଚୟ ଚିଠି ଲେଖିବୁ ସୁଜାତା, କାଲି ସକାଳୁ ଆଉ ତତେ ବେଳ ହେବ ନାହିଁ । ହଁ, ଦେବ, ମାଧବକୁ କି କାହାକୁ କହିବୁ ସୁନନ୍ଦାକୁ ଆଣିବାକୁ କିଏ ଯିବ ।

ଚିନ୍ତିତା ବଡ଼ମା'ଙ୍କୁ ସାନ୍ତ୍ୱନା ଦେବାପାଇଁ ଦେବବ୍ରତ କହିଲା, ମୁଁ ନିଜେ ଯାଉଛି, ଆଗ ଭାଉଜଙ୍କୁ ନେଇ ଆସିବି, ତାପରେ ଯିବି କ୍ଲିନିକ୍‌କୁ ।

—ନା, ନା ତୁ ହଇରାଣ ହେବୁ । ବରଂ ଡ୍ରାଇଭରକୁ କହିବୁ ତତେ କ୍ଲିନିକ୍‌ରେ ଛାଡ଼ି ଦେଇ ଯାଇ ସୁନନ୍ଦାକୁ ନେଇ ଆସିବ । ପୁଣି ଦଶଟା ବେଳକୁ ଯିବ ତତେ ଆଣିବାକୁ ।

ଦେବବ୍ରତ ତା'ର ସ୍ୱଭାବ ସୁଲଭ ହସ ହସି କହିଲା, ନା ବଡ଼ମା, ଗାଡ଼ିର କିଛି ଦରକାର ନାହିଁ । ରାତିରେ ଟିକିଏ ଚାଲି ଚାଲି ଆସିବାକୁ ଭଲ ଲାଗିବ । ଚାଲି ଚାଲି ଆସିଲେ ଏକ୍‌ସରସାଇଜ ହେବ, ଜହ୍ନପକ୍ଷ ରାତି ତ, ଭାରି ସୁନ୍ଦର ଲାଗିବ ।

ଆଚ୍ଛା ହେଉ, ସୁଦାମକୁ ପଠାଇ ଦେବି, ତୋ ସଙ୍ଗେ ଆସିବ ।

ହୋ ହୋ ହୋଇ ହସି ଉଠିଲା ଦେବବ୍ରତ । କହିଲା—ବଡ଼ମା, ମୁଁ କ'ଣ ସାନୁ ହେଇଛି କି ? ରାସ୍ତା ଭୁଲି ଯିବି ?

ହସି ହସି ମୁହଁ ଧୋଇ ତଉଲିଆରେ ହାତ ପୋଛି ଚାଲିଗଲା ସେ । ପଛେ ପଛେ ସୁଜାତା ମଧ୍ୟ ଚାଲିଗଲା । ତେଣେ ଯେ କେତେ କାମ ପଡ଼ି ରହିଛି, ବସିବାର ଉପାୟ ନାହିଁ ତାର ।

ରାସ୍ତା ଭୁଲି ଯିବି ?

ଦେବବ୍ରତର ସେ କଥା ପଦକ ! ନୀଳମଣିଙ୍କ ହୃଦ୍‌ଯନ୍ତ୍ରଟାକୁ ଯେପରି କିଏ ଧକ୍‌କା ଦେଲା । ବିଶ୍ୱନାଥ ରାସ୍ତା ଭୁଲି ଯାଇଥିଲେ !

ଏହି ରୂପମତୀ ନଦୀ କଡ଼ର ବୁଦୁବୁଦୁକିଆ ଜଙ୍ଗଲ ଭରା ରାସ୍ତାରେ ବାଟବଣା ହୋଇ ଯାଇଥିଲେ ସେ । ବାଟବଣା ହୋଇଯାଇ ଅକାଳ ମୃତ୍ୟୁକୁ ବରଣ କରିଥିଲେ !

ଓଃ ! ବିଶ୍ୱନାଥଙ୍କ ବିନା ଏତେ ବର୍ଷ ନୀଳମଣି ବଞ୍ଚିରହି ପାରିଲେ କିପରି ? କିପରି ବଞ୍ଚି ରହିଲେ ?

ରୂପମତୀ ନଦୀ ! ଅବଶ୍ୟ ସେହି ଏକା ରୂପମତୀ ନଦୀକୂଳ ହୋଇଥିଲେ ମଧ୍ୟ ଆଜି ଆଉ ସେଦିନର ପରି ରହି ନାହିଁ । ଅନେକ ଅନେକ ପରିବର୍ତ୍ତନ ହୋଇଗଲାଣି । ସେ କାଳର ଯେଉଁମାନେ ବଞ୍ଚିଛନ୍ତି ଏବେ ଦେଖିଲେ ଆଶ୍ଚର୍ଯ୍ୟ ହୋଇଯାଉଛନ୍ତି । ନଈର କୂଳେ କୂଳେ ଓସାରିଆ ପିଚୁ ରାସ୍ତା ତିଆରି ହୋଇଛି, । ରୂପମତୀ ନଈ ଉପରେ ଲୁହା ଓ ସିମେଣ୍ଟ କଂକ୍ରିଟ୍‌ର ବିରାଟ ପୋଲ ନଈର ଏକୂଳ ଓ ସେ କୂଳକୁ ଏକାଠି କରି ଦେଇଛି । ଡଙ୍ଗା ଯେ ସମ୍ପୂର୍ଣ୍ଣ ଲୁଚିଗଲାଣି ତା ନୁହେଁ, ତେବେ କାଁ ଭାଁରେ ଗୋଟିଏ ଗୋଟିଏ ଦିଶେ । ମାଛ ମାରିବା ହୁଲି ଡଙ୍ଗା ହିଁ ବେଶୀ । ସେହିପରି ସେଇଠି ରହିଛି ରୂପନାରାୟଣଙ୍କ ମନ୍ଦିର, ତା'ର ପରିସର ଆହୁରି ବିସ୍ତୃତ, ଆହୁରି ମାର୍ଜିତ ହୋଇଯାଇଛି ।

ପ୍ରତିବର୍ଷ ଶିବରାତ୍ରି ଦିନ ବିରାଟ ମେଳା ବସେ ସେଠି । ନଦୀ ସେପାରିର ସହରମାନଙ୍କରୁ ଜିନିଷପତ୍ର ଆସେ ବିକ୍ରି ହେବାପାଇଁ । ସଉଖୀନ୍ ଥିଏଟର୍ ବି ହୁଏ, ରାମଲୀଳା । ରାସଲୀଳା ପ୍ରଭୃତି ଯାତ୍ରା ଦେଖାଇବାକୁ ପ୍ରସିଦ୍ଧ ଯାତ୍ରା ପାର୍ଟିମାନେ ମଧ୍ୟ ଆସନ୍ତି । ସରକାରଙ୍କ ଲୋକମଙ୍ଗଳ ବିଭାଗ ପକ୍ଷରୁ ଲୋକଙ୍କୁ ଶିକ୍ଷଣୀୟ ଚଳଚିତ୍ର ଦେଖାଇବା ବନ୍ଦୋବସ୍ତ ହୁଏ । ପ୍ରଦର୍ଶନୀ ବସେ । କେତେଟା ଦିନ ହୋ ହା, ଗୀତ, ନାଚ, ନାଟକ, ଯାତ୍ରା ଦେଖା ଭିତରେ କଟିଯାଏ ।

ଠିକ୍ ସେହିପରି ପ୍ରଭୁ ରାଧାଗୋବିନ୍ଦଙ୍କ ଦୋଳଉତ୍ସବ, ରାସଉତ୍ସବ, ଝୁଲଣଯାତ୍ରା, ଜନ୍ମାଷ୍ଟମୀ, ଚନ୍ଦନମଉଜ ମଧ୍ୟ ଅନୁଷ୍ଠିତ ହୁଏ ମହା ସମାରୋହରେ । କହିବାକୁ ଗଲେ ଆଜିକାଲି ଆଉ ସେକାଳ ପରି ନିର୍ଜ୍ଜନତା ନାହିଁ ରୂପଦେଈପୁରରେ । ସେ ନିସ୍ତବ୍ଧ ବନଭୂମି ମଧ୍ୟ ଆଉ ନାହିଁ; ବନାକୀର୍ଣ୍ଣ ପଥ ସବୁ ପରିଣତ ହୋଇଛନ୍ତି ଓସାରିଆ ପିଚୁ ରାସ୍ତାରେ । ସେହି ରାସ୍ତାମାନଙ୍କ କଡ଼ରେ ବିଜୁଳିବତୀ ଓ ଟେଲିଗ୍ରାଫ୍ ଖୁମ୍ବମାନ ରହିଛନ୍ତି । ଅନେକ ଜାଗାରେ ସଯତ୍ନବର୍ଦ୍ଧିତ ବଗିଚା ବା ପାର୍କ । ଅନେକ ଜାଗାରେ ପାଣିକଳର ବ୍ୟବସ୍ଥା ରହିଛି ।

ଏବେ ଗଭୀର ରାତିର ନିର୍ଜ୍ଜନତା ଭିତରେ ମଧ୍ୟ ସଦାଜାଗ୍ରତ ପ୍ରହରୀମାନଙ୍କ ପରି ବିଦ୍ୟୁତ ଆଲୋକଶ୍ରେଣୀ ପ୍ରହରା ଦେଉଛନ୍ତି । ନଦୀ ଥିବାରୁ ଆସ୍ତେ ଆସ୍ତେ ଦୂର ଦୂରାନ୍ତରେ ଗୋଟିଏ ଦୁଇଟା କଳ କାରଖାନା ବି ବସିବା ଆରମ୍ଭ ହୋଇଗଲାଣି । ସେ ଦିନର ସେଇ ରୂପଦେଈପୁର ଗାଁ କହିବାକୁ ଗଲେ ଏବେ ଗୋଟିଏ ପରିଚ୍ଛନ୍ନ ଛୋଟିଆ ସହରରେ ପରିଣତ ହୋଇଗଲାଣି ।

ଏବେ ଆଉ ଲୋକଙ୍କୁ ସେକାଳ ପରି ହାଟପାଳିକୁ ଚାହିଁ ରହିବାକୁ ପଡୁନାହିଁ । ଅନେକ ଦୋକାନ ବଜାର ବସି ଗଲାଣି; ଚାହିଁଲାକ୍ଷଣି ଜିନିଷ ମିଳି ଯାଉଛି ।

ସେ ସମୟରେ ହାଟପାଳି ବସୁଥିଲା ସପ୍ତାହକୁ ତିନିଥର । ତିନିଥର ତଟକା ସଜ ଜିନିଷ ଭାର ଭାର ହୋଇ ଆସୁଥିଲା ଅଭ୍ୟନ୍ତରରେ ରହିଥିବା ଗାଁ'ମାନଙ୍କରୁ । ସେ ଗାଁ'ଗୁଡ଼ିକ ପ୍ରଧାନତଃ ଆଦିବାସୀ ବହୁଳ । ସେମାନେ ପତ୍ରଦନା ମାନଙ୍କରେ ଜାମୁକୋଳି, ଛତୁ, ଚୂନାମାଛ, ଲଙ୍କାବାଦାମ, ଅନେକ ପ୍ରକାର କୋଳି ଆଣୁଥିଲେ ବିକ୍ରି କରିବାପାଇଁ । ଆଦିବାସୀ ପୁରୁଷ ଓ ସ୍ତ୍ରୀମାନେ ଭାରରେ କିମ୍ବା ମୁଣ୍ଡରେ ବୋହି ଜୀବନିକା ରସରେ ପରିପୂର୍ଣ୍ଣ ପରିପୁଷ୍ଟ ତଟକା, ସଜ ଓ ସତେଜ ବିଲାତି ବାଇଗଣ, କଳା ଜକଜକ ଦିଶୁଥିବା ବାଇଗଣ, କଖାରୁ, ଜହ୍ନି, ଭେଣ୍ଡି, ଲାଉ, ସବୁପ୍ରକାର ଶାଗ ପ୍ରଭୃତି ଆଣୁଥାନ୍ତି । ଶୀତଦିନ ପରିବା; ତିନି କିସମର କୋବି ଓ ବିଲାତି ପ୍ରଭୃତି ଉପରେ ପାହାନ୍ତିଆର କାକରଟୋପା ଗୁଡ଼ିକ ଲାଗି ରହିଥାଏ । ଶିମ୍ବ ମଞ୍ଜି, କାନ୍ଦୁଳ (ହରଡ଼), ଝୁଡୁଙ୍ଗ ମଞ୍ଜି, ଚୀନାବାଦାମ ପ୍ରଭୃତି ସାଙ୍ଗକୁ ଭାର ଭାର ଆମ୍ବ, ପଣସ, ସପୁରୀ, କମଳା, କଦଳୀ ଆସେ । ଠେକିମାନଙ୍କରେ ଦହି, ଦୁଧ, ଘିଅ, ଛେନା, ଖୁଆ ସବୁ ଆଣନ୍ତି ସେମାନେ । ତା ସହିତ ବାଦାମଖଜା, ମୁଢ଼ି, ମୁଢ଼ିମୁଆଁ, ଦୋଭଜା ଖଇ, ଉଖୁଡ଼ା ମଧ୍ୟ ଆଣୁଥିଲେ । ଶଗଡ଼ ଶଗଡ଼ ଗୁଡ଼ ମାଠିଆ ଆସେ, ଶସ୍ୟ ଆସେ ବିଭିନ୍ନ ପ୍ରକାରର ।

ଧରିତ୍ରୀ ଯେପରି ଅନ୍ନପୂର୍ଣ୍ଣା ରୂପ ପରିଗ୍ରହଣ କରିଥିଲା ସେତେବେଳେ ।

ସବୁ କି ସୁନ୍ଦର ଖାଣ୍ଟି ଜିନିଷ, କେଉଁଥିରେ ଭେଜାଲ ମିଶୁ ନଥିଲା । ଏବେ ସଜ ପରିବା କି ସଜ ଫଳ ଦେଖିବା ସ୍ୱପ୍ନ ହୋଇଗଲାଣି । ସେକାଳ ପରି ଆଜିକାଲି ଆଦିବାସୀ ଲୋକମାନେ ଆଉ ଆସୁନାହାନ୍ତି । ଅଭାବ, ଦାରିଦ୍ର୍ୟ କବଳରେ ପଡ଼ି ଦୂର ଦୂରାନ୍ତରର ବିଭିନ୍ନ ଖଣି ଅଞ୍ଚଳରେ କାମ କରିବାକୁ ନିଜ ନିଜ ଗାଁ ଛାଡ଼ି ଚାଲି ଯାଇଛନ୍ତି ଅଧିକାଂଶ । ବ୍ୟବସାୟୀ ମାନେ ସାଇକେଲ ଖଣ୍ଡେ ଖଣ୍ଡେ ଧରି ଯାଇ ବିଭିନ୍ନ ଜାଗାରୁ ସଂଗ୍ରହ କରି ଆଣନ୍ତି ଜିନିଷ, ସାତଦିନ ପାଇଁ ସେହି ବାସି ପରିବାପତ୍ର ପ୍ରଭୃତିର କାରବାର ଚାଲେ ଦୋକାନମାନଙ୍କରେ ।

ସେ କାଳରେ ଜିନିଷ କି ଶସ୍ତା ଥିଲା ! ପୁରୀରେ ରହିଥିଲା ବେଳେ ନନାଙ୍କ ସଙ୍ଗେ ମାଛହାଟକୁ ଯାଇ ଦିଇଟା ପଇସା ପକାଇ ଦେଇ ବାଉଁଶିଆଏ ସଜମାଛ ଧରି ଫେରିଛନ୍ତି ନୀଳମଣି । ସହର ବଜାରରେ ମାଂସ ସେର ଚାରିଅଣା । ଟଙ୍କାକୁ କେତେ ସେର ଦୁଧ, ଛେନା, ରାବିଡ଼ି, ଚିପୁଡ଼ା ସର ବା ସରଭଜା ମିଳୁଥିଲା ।

ମନେ ପଡ଼ିଲା ନଖା-ତେଲି କଥା । ଖାଣ୍ଟି ତେଲ ଆଣି ଦୁଆର ମୁହଁରେ ମାପି ଦେଇ ଯାଉଥାଏ । ତା'ର ବାଁ ହାତ ବୁଢ଼ା ଆଙ୍ଗୁଠିର ନଖଟା ବଢ଼ି ବଢ଼ି ଗୋଲାକୃତି ହୋଇ ବୁଲି ଯାଇଥାଏ । ସେହି ନଖ ଅଗରେ ପୁଣି ସୁନା ବନ୍ଧେଇ ହୋଇଥାଏ ! ତେଲିର ହସ ହସ ମୁହଁଟା ଏବେ ବି ଆଖି ଆଗରେ ଭାସି ଉଠୁଛି ।

ବାଳିକା ନୀଳମଣି ବଡ଼ କୌତୁକରେ ଦେଖନ୍ତି ସେ ନଖକୁ, ପଚାରନ୍ତି ତମେ ଏ ନଖ କାହିଁକି ରଖିଛ ଯେ ?

ତେଲି ଉତ୍ତର ଦେଉଥିଲା—ମୋ ଟଙ୍କା ପଇସା ସବୁ ପରା ୟାରି ଭିତରେ ରହିଛି ଝିଅ-ମା !

ବିସ୍ମୟରେ ହତବାକ୍ ହୋଇ ନୀଳମଣି କହନ୍ତି—କାହିଁ ଦିଶୁନି ତ ?

—ବୋକା ଝିଅଟେ ! ନଖ ରଖିଲେ ନଖ ଯେତେ ବଢ଼ି ବଢ଼ି ଯାଏ, ପଇସା ସେତେ ବଢ଼ି ବଢ଼ି ଯାଏ, ବୁଝିଲ ନା ଝିଅ ମା ? ମୋ ଘରେ ମୋ ପଇସା ଅଛି ।

ନୀଳମଣି ହାରନ୍ତି ନାହିଁ, ପଚାରନ୍ତି—ନନା ତ ଆମର ନଖ ରଖି ନାହାନ୍ତି, ତା ବୋଲି ତାଙ୍କର କ'ଣ ପଇସା ନାହିଁ ?

ଏଥର ତେଲି ହାରେ । ହସି ହସି କହେ—ଝିଅ ମା'ଙ୍କର କେତେ ବୁଦ୍ଧି !

ଲୋକଟା ସବୁବେଳେ ମୁଣ୍ଡରେ ସିନ୍ଦୂର କଲି ଲଗାଉଥିଲା, ଡାହାଣ କାନ ଉପରେ ବିଡ଼ିଟିଏ, କାନ୍ଧରେ ଖଣ୍ଡେ ନାଲି ଗାମୁଛା ।

କେଉଁ ସୁଦୂର ଅତୀତର କଥା । କିନ୍ତୁ କେମିତି କେଜାଣି ନୀଳମଣିଙ୍କ ସ୍ମୃତିପଟରେ ସ୍ପଷ୍ଟ ହୋଇ ରହି ଯାଇଛି ।

ଅନେକ ବର୍ଷ ପରେ ନୀଳମଣିଙ୍କ ସାନ ଭାଇ ଥରେ ଯେତେବେଳେ ତାଙ୍କୁ ଦେଖିବାକୁ ଆସିଥିଲେ, କହିଥିଲେ—ବଡ଼ ଆଶ୍ଚର୍ଯ୍ୟ କଥା ନାନୀ ! ସେ ନଖା-ତେଲି କଥା ମନେ ଅଛି ତୋର ? ଲୋକଟା ଦେଖିବାକୁ ଯେମିତି ଥିଲା ଠିକ୍ ସେମିତି ଅଛି । ମନେ ହେବ ବୟସ ତାକୁ କେବେ ଛୁଇଁ ପାରିବନି !

ଅବଶ୍ୟ ନୀଳମଣି ଆଉ ତାକୁ ଦେଖି ନାହାନ୍ତି ।

ଚିନ୍ତାଶୂନ୍ୟ ମଣିଷ ଜଣେ ଜଣେ ଏମିତି ରହି ଯାଆନ୍ତି ଠିକ୍ ଏକାପରି ଅନେକ ବର୍ଷ ଯାଏ । ସତେକି ବାର୍ଦ୍ଧକ୍ୟ ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ, ଏ କଥା ସତ ।

ହେଇଟି ଠିକ୍ ଏଇ ତାରିଣୀଟା ପରି । ତାରିଣୀ ଏ ଘରର ଖଞ୍ଜା ହୋଇ ରହିଥିବା କେଉଟ, ବୋହୂ ହେଲା ଅମଳରୁ ତାକୁ ଦେଖି ଆସୁଛନ୍ତି ନୀଳମଣି ! ପ୍ରତିଦିନ ଟଟକା ମାଛ ଆଣି ଦେଇଯାଏ ସେ । ନୀଳମଣିଙ୍କ ଜୀବନରେ କେତେ ଝଡ଼ ଝଞ୍ଜା ଦେଖା ଦେଇଛି, ନୀଳମଣିଙ୍କ ପରିବାର ଶାଖାପ୍ରଶାଖା ବିସ୍ତାର କରିଛି, ତାରିଣୀର ବରାଦ ବଢ଼ିଯାଇଛି କିନ୍ତୁ ଲୋକଟା ଦେଖିବାକୁ ସେହି ଏକାପରି ରହିଛି ।

ଜମିଦାରୀ ଉଚ୍ଛେଦ ଆଇନ ପ୍ରଚଳିତ ହେବା ପୂର୍ବରୁ ଅନେକଦୂର ପର୍ଯ୍ୟନ୍ତ ବିସ୍ତାରିତ ହୋଇ ରହିଥିଲା ଚୌଧୁରୀ ନାରାୟଣ ଦାଶଙ୍କ ଜମିଦାରୀର ସୀମା । ବିଜୟ ଟିକିଏ ବଡ଼ ହେଲା ପରେ ତାକୁ ସାଙ୍ଗରେ ଧରି ନିଜ ଜମିଦାରୀକୁ ବୁଲି ବୁଲି ଦେଖି ଆସିଥିଲେ ନୀଳମଣି । ରୂପମତୀ ନଦୀର ଏପାରିରେ ଏବଂ ସେପାରିରେ ରହିଥିଲା ସେ ସବୁ । ବିଭିନ୍ନ ଜାଗାରେ କେତୋଟି ଗାଁ ପାଇଁ ଡାକ୍ତରଖାନାଟିଏ, ସ୍କୁଲଟିଏ, କେଉଁଠି କୂଅ, କେଉଁଠି ପୋଖରୀ ସବୁ କରାଉଥିଲେ ।

## (୭)

ସ୍ୱାଧୀନତା ଆନ୍ଦୋଳନର ଢେଉ ଯେତେବେଳେ ସାରା ଭାରତବର୍ଷକୁ ଉଛୁଳାଇ ଥିଲା, ଏ ଅଞ୍ଚଳରେ ମଧ ଆସି ଲାଗିଥିଲା ସେ ସ୍ରୋତର ସ୍ପର୍ଶ । ଦେଶ, ସ୍ୱରାଜ୍ୟ, ନେତୃବୃନ୍ଦଙ୍କ ଉତ୍ସାହ ଏ ବିଷୟରେ ଆଭାସ ପାଇଥିଲେ ନୀଳମଣି ବିଶ୍ୱନାଥଙ୍କଠାରୁ ।

ପରବର୍ତ୍ତୀକାଳରେ ଦେଶାତ୍ମବୋଧକ ଆନ୍ଦୋଳନ ଆରମ୍ଭ ହେଲା ତୀବ୍ର ଭାବରେ । ଅହିଂସ ସଂଗ୍ରାମୀମାନେ ଗାଁ ଗାଁ ବୁଲି ପ୍ରଚାର କାର୍ଯ୍ୟ ଚଳାଇଲେ; ଆଚାର୍ଯ୍ୟ ହରିହରଙ୍କ ପରି ମହାନ୍ ମହାନ୍ କର୍ମୀମାନେ ନିଜ ମୁଣ୍ଡରେ ଖଦଡ଼ ଲୁଗା, ଶାଢ଼ି, ଚାଦର ବୁଜୁଳା ଧରି ଘରେ ଘରେ ନେଇ ବିକ୍ରି କରି ଲୋକଙ୍କୁ ସଚେତନ କରାଇଥିଲେ ସ୍ୱରାଜ୍ୟ ବିଷୟରେ ।

ଘରେ ଘରେ ଅରଟ ସ୍ଥାପିତ ହୋଇଥିଲା । କପା ଚାଷ ବହୁଳ ଭାବରେ କରାଯାଇ ଲୋକଙ୍କୁ ବୁଝାଇ ଦିଆ ଯାଇଥିଲା—କୁଟି ଖାଅ, କାଟି ପିନ୍ଧ, ବିଦେଶୀ ଜିନିଷ ବର୍ଜ୍ଜନ କର ।

ସମୁଦ୍ରରେ ଜୁଆର ଉଠିଲା ପରି ସାରା ଦେଶରେ ଚହଳ ପଡ଼ିଗଲା 'ବିଦେଶୀ ଶାସକଙ୍କ ସହିତ ଅସହଯୋଗ କର ।' ସାରା ଦେଶରେ ଦେଶମାତାକୁ ଶୃଙ୍ଖଳମୁକ୍ତ କରିବାର ହୋମାଗ୍ନି ଜଳି ଉଠିଲା ହୁତାଶନ ରୂପଧରି । ଓଡ଼ିଶାରେ ମେଦିନୀପୁରଠାରୁ ଆରମ୍ଭ କରି ଗଞ୍ଜାମ ଜିଲ୍ଲାରୁ କୋରାପୁଟ ପର୍ଯ୍ୟନ୍ତ ଖେଳି ଯାଇଥିଲା ସେ ଦାବାନଳ । ନେତାମାନେ କାରାବରଣ କରିବାର ସମ୍ବାଦମାନ ଆସୁଥାଏ ପ୍ରତିଦିନ ।

ଅସହଯୋଗ ଆନ୍ଦୋଳନକୁ ପରାହତ କରିବାପାଇଁ ହିଂସ୍ର ଦମନଲୀଳା ଚାଲିଥାଏ ବ୍ରିଟିଶ ଶାସକଙ୍କର । କେବଳ ଶୋଭାଯାତ୍ରା ବାହାର କରିବାପାଇଁ ଉତ୍ସାହ ଦେଇଥିବା ବ୍ୟକ୍ତିମାନଙ୍କୁ ସୁଦ୍ଧା ନିର୍ଦ୍ଦୋଷରେ ପୁଲିସ ଗୁଳିର ଶିକାର ହେବାକୁ ପଡ଼ିଲା । ଅହିଂସା ସଂଗ୍ରାମର କର୍ମୀମାନେ ଦେଶମୁକ୍ତି ଆନ୍ଦୋଳନର ପବିତ୍ର ବାଣୀ ଉଚ୍ଚାରଣ କରୁ କରୁ ହସି ହସି ଜୀବନ ବଳି ଦେଉଥାନ୍ତି । ସେ ସଂଗ୍ରାମରେ ଦଶମ ଶ୍ରେଣୀର ଛାତ୍ର ସୁଦ୍ଧା ଶହୀଦ ହୋଇଥିଲେ ।

ଶହୀଦ ହେଲେ ଲକ୍ଷ୍ମଣ ନାଏକ,

ରଘୁନାଥ, ଦିବାକର—

ଦେଶକୁ ସ୍ୱାଧୀନ କରିବାର ସେହି ରଣଭୂମିରେ ଜଣା ଅଜଣା କେତେ ଯେ ଜୀବନ ଅକାଳରେ ଝରି ପଡ଼ିଛି, ସେ ଇତିହାସର ସ୍ମୃତି ଏହି ଧୂଳିକଣା ଧରି ରଖିଥିବ ନିଜ ବୁକୁରେ ।

ନିଜେ ନୀଳମଣି ଉଦବୁଦ୍ଧ ହୋଇ କିଛି ଦିନ ନିଜେ ସୂତା କାଟିଥିଲେ, ଖଦଡ଼ ଥାନ ପିନ୍ଧିଥିଲେ । ଅହିଂସା ସଂଗ୍ରାମର ସୈନିକମାନଙ୍କୁ ସବୁପ୍ରକାରେ ସାହାଯ୍ୟ କରିଥିଲେ ।

ନୀଳମଣିଙ୍କ ମୁହଁରେ ସାମାନ୍ୟ ଟିକିଏ ହସ ଫୁଟି ଉଠିଲା । କେତେଗୁଡ଼ିଏ ଦେଶାତ୍ମବୋଧକ ଗୀତ ମଧ୍ୟ ରଚନା କରିଥିଲେ ସେ । ସେ ଗୀତଖାତା ଏବେ ବି କେଉଁଠି ପଡ଼ିଥିବ । ଭବିଷ୍ୟତ୍‌ରେ ଦିନେ ସୁପ୍ରକାଶ କିମ୍ବା ସୁଭୁ, ସାନୁଙ୍କ ପିଲାମାନେ କେଉଁ କାଠ ସିନ୍ଦୁକର ଅଭ୍ୟନ୍ତରରୁ କାଳର ମଳିନତାରେ ଜୀର୍ଣ୍ଣ ସେହି ଖାତାକୁ ଆବିଷ୍କାର କରିବେ । ଆଉ କୁହାକୁହି ହେବେ—ଆମର ବଂଶରେ ଅତୀତରେ ଜଣେ ସ୍ତ୍ରୀଲୋକ ଏ ଗୀତକୁ ରଚନା କରିଥିଲେ । ଠିକ ଯେପରି ସ୍ୱର୍ଣ୍ଣଲତାଙ୍କ ବାକ୍ସରୁ ଖାତାସବୁକୁ ନୀଳମଣି ନିଜେ ଆବିଷ୍କାର କରି ମନେ ମନେ ଭାବିଥିଲେ !

ସେତେବେଳକୁ ଏ ପୃଥିବୀରେ ନୀଳମଣି ନାମଧାରିଣୀ ସେହି ବୁଢ଼ୀଟିର ଅସ୍ତିତ୍ୱ ବୋଲି କିଛି ନଥିବ ଆଉ । କାହିଁ କେତେ ଦିନଠାରୁ ଦେହଟା ଧୂଳିରେ, ପାଉଁଶରେ ଏକାକାର ହୋଇ ପବନରେ ଉଡ଼ି କେଉଁଆଡ଼େ ଅଦୃଶ୍ୟ ହୋଇ ଯାଇଥିବ । ହୁଏତ ଏହି ରୂପମତୀର ସ୍ରୋତରେ ହିଁ ଧୋଇ ହୋଇଯାଇ କେଉଁ ନଦୀ ଉପନଦୀ ସଙ୍ଗେ ମିଶି ସମୁଦ୍ର ତରଙ୍ଗରେ ଲୀନ ହୋଇ ଯାଇଥିବ ।

ସେ କାଳର ମଣିଷ ହେଲେବି ନୀଳମଣି ନାସ୍ତିକ । ସେ ଈଶ୍ୱରଙ୍କୁ ମାନନ୍ତି ନାହିଁ । ପୁର୍ନଜନ୍ମରେ ବିଶ୍ୱାସ କରନ୍ତି ନାହିଁ । ଭାବନ୍ତି ଜଗତଟା ହିଁ ବାସ୍ତବ । ଫୁଲଟି ସକାଳେ ଫୁଟେ, ସନ୍ଧ୍ୟାରେ ଝରିଯାଏ । କେବେ କେବେ ଝଡ଼ ବର୍ଷାରେ ବା ଅନ୍ୟ କିଛି ଦୁର୍ଯୋଗ ହେତୁ ଅକାଳରେ ମଧ୍ୟ ଝରେ । ଖସିପଡ଼େ ମାଟିର ଧୂଳି ଭର୍ତ୍ତି ଛାତି ଉପରକୁ । ସେହି ନିର୍ଦ୍ଦିଷ୍ଟ ଫୁଲଟି ଆଉ କୌଣସି ଦିନ ପୁଣି ଫୁଟିବନି । ସେଇୟା ହେଉଛି ଜୀବନ ।

ହଁ, ଆନ୍ଦୋଳନର ସେହି ଝଡ଼ ଭିତରେ କମଳା ନେହେରୁଙ୍କ ମର୍ମାନ୍ତିକ ନାଟକୀୟ ଅକାଳ ବିୟୋଗ ହୋଇଥିଲା । ମୌଲାନା ଆଜାଦଙ୍କର ଧର୍ମପତ୍ନୀ ବନ୍ଦୀଶାଳାରେ ଆବଦ୍ଧ ରହିଥିବା ସ୍ୱାମୀଙ୍କ ପାଇଁ ଅତର ଶିଶିଟିଏ ଓ ନିଜ ହାତ ବୁଣା ଆସନ ଖଣ୍ଡିକ ସାଇତି ଦେଇ ପ୍ରାଣତ୍ୟାଗ କରିଥିଲେ । ଆଗାଖାଁ ପ୍ରାସାଦର ଅସ୍ୱାସ୍ଥ୍ୟକର ବାତାବରଣ ଭିତରେ କାରାବାସିନୀ ଅବସ୍ଥାରେ ହିଁ କସ୍ତୁରୀବାଈ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଦେଶ-ସ୍ୱାଧୀନତାର ସୂର୍ଯ୍ୟୋଦୟ ଦେଖିବା ଏମାନଙ୍କ ଭାଗ୍ୟରେ ଘଟିନଥିଲା । ଅଥଚ ସାରା ଜୀବନଟା ସେମାନେ ଉତ୍ସର୍ଗ କରି ଦେଇଥିଲେ ଏହି ଯଜ୍ଞବେଦୀରେ ।

ଅବଶ୍ୟ ସେହି ଯଜ୍ଞବେଦୀରେ ସେତେବେଳକୁ ଅଜସ୍ର ସ୍ତ୍ରୀ, ପୁରୁଷ, ବାଳକ, ତରୁଣ, ତରୁଣୀ, ବୃଦ୍ଧ, ବୃଦ୍ଧା ନିଜକୁ ଆହୁତି ଦେଇ ସାରିଲେଣି । ଓଡ଼ିଶାର ବରପୁତ୍ର ଗୋପବନ୍ଧୁଙ୍କ ମହାପ୍ରୟାଣ ଘଟିଛି ।

କସ୍ତୁରୀବାଈଙ୍କ ମୃତ୍ୟୁର ଅଳ୍ପଦିନ ପରେ ଦେଶ ସ୍ୱାଧୀନ ହେଲା । ଦୁଇଶହ ବର୍ଷର ଶୃଙ୍ଖଳ ଫିଟିଗଲା । ଆନନ୍ଦରେ ଅଧୀର ହୋଇ ଉଠିଲେ ଦେଶବାସୀ । କିନ୍ତୁ ଗାନ୍ଧିଜୀ ନିଜେ ଅପସରିଗଲେ କ୍ଷମତାର ପରିସର ଭିତରୁ । ଏକ ଚରମ ଦୁଃଖଦାୟକ ଘଟଣା ଘଟିଗଲା । ଅଖଣ୍ଡ ଭାରତ ଭାଗ ଭାଗ ହୋଇଗଲା ।

ବୁଦ୍ଧଦେବ କୁଆଡ଼େ ଗୃହତ୍ୟାଗ କରି ଚାଲିଗଲା ବେଳକୁ ନିଜର ପରିହିତ ବସ୍ତ୍ରଟି ସୁଦ୍ଧା ଟେକି ଦେଇଥିଲେ ସାରଥିଙ୍କ ହାତକୁ । ସାଙ୍ଗରେ ଆଣିଥିବା ଚୀରକ ପରିଧାନ କରି ଈଶ୍ୱରଙ୍କୁ ଖୋଜିବା ପାଇଁ ପଶିଥିଲେ ଘୋର ବନର ଅଭ୍ୟନ୍ତରକୁ । ସେ ଜାଣି ପାରିନଥିଲେ ଯେ ସେ ନିଜେ ହିଁ ଈଶ୍ୱର !

ସ୍ୱାଧୀନତାର ଅମୃତ-ପାତ୍ରକୁ ହାତରେ ପାଇ ଗାନ୍ଧିଜୀ ସ୍ୱପ୍ନ ଦେଖିଥିଲେ ଏ ଦେଶର ଅଗଣିତ ନରନାରୀଙ୍କୁ ଅମୃତସ୍ୟ ପୁତ୍ରାଃ କରି ଗଢ଼ିବାକୁ । ପୁରାଣ ବର୍ଣ୍ଣିତ ସେହି ରାମରାଜ୍ୟ ପ୍ରତିଷ୍ଠା କରିବାକୁ । କିନ୍ତୁ ତାହା ହୋଇପାରିଲା ନାହିଁ ।

ସତରେ କ'ଣ ରାମଙ୍କ ସେ ରାଜ୍ୟ ତ୍ରୁଟିହୀନ ଥିଲା ! ଯେଉଁ ରାଜ୍ୟର ଶାସନ ଅନୁସାରେ ଆସନ୍ନ-ପ୍ରସବା ଜାନକୀ ନିର୍ବାସିତା ହୋଇଥିଲେ କୌଣସି ଦୋଷ ନଥାଇ ? ପ୍ରଜାଙ୍କର ମନରେ ତୃପ୍ତି ଆଣିବାପାଇଁ ହତଭାଗିନୀଙ୍କୁ ବନର ଶୋଭା ଦେଖାଇବାର ପ୍ରଲୋଭନରେ ପ୍ରବଞ୍ଚନା କରି ପୁତ୍ର ପ୍ରତିମ ଦେବର ଲକ୍ଷ୍ମଣ ସଙ୍ଗରେ ନେଇ ବନରେ ଏକାକିନୀ ଛାଡ଼ି ଦେଇ ଆସିଥିଲେ ?

ଆହା !—'ଅଗ୍ରଜ ଆଜ୍ଞାବହ ସୌମିତ୍ରୀ ରଥୀ
ରାମହୃଦୟ-ଜ୍ୟୋସ୍ନା ବୈଦେହୀ ସତୀ
ବିସର୍ଜ୍ଜି ଭାଗିରଥୀ ତୀର କାନନେ
ଲେଉଟାଇଲେ ରଥ ଅଥୟ ମନେ...!'

ମନେ ମନେ ଗୀତଟି ଆବୃତ୍ତି କଲେ ନୀଳମଣି ।

ଇତିହାସର ପୃଷ୍ଠା ଖୋଲିଲେ ଦେଖାଯିବ ତ୍ରୁଟି ରହିଛି ପ୍ରତ୍ୟେକ ଯୁଗରେ ।

ରାମରାଜ୍ୟର ସୁଖସ୍ୱପ୍ନ ନଷ୍ଟ ହୋଇଗଲା ।

ନୂଆଖାଲିର ଲୋମହର୍ଷଣକାରୀ ହତ୍ୟାକାଣ୍ଡ ଘଟଣାରେ ଗାନ୍ଧିଜୀଙ୍କ ସ୍ୱପ୍ନ ମଧ୍ୟ ନଷ୍ଟ ହୋଇଗଲା । ଆଉ ବଞ୍ଚିରହିବା ବ୍ୟର୍ଥ ମନେ ହୋଇଥିଲା ତାଙ୍କର ।

ସ୍ୱାଧୀନତା ରୂପକ ନବଜାତକଟି ଭୂମିଷ୍ଠ ହେଉ ହେଉ କିଏ ଯେପରି ଶାଣିତ ଅସ୍ତ୍ରଦ୍ୱାରା ରକ୍ତାକ୍ତ କରି ପକାଇଲା ତାକୁ !

ତାପରେ—

୧୯୪୮ ମସିହା ଜାନୁଆରୀ ତିରିଶ ତାରିଖ । ଏକ ଅକାଳ ବଜ୍ରପାତ ହେଲା । ଖାଲି ଆମ ଦେଶ ନୁହେଁ, ସାରା ପୃଥିବୀ ଯେପରି ସ୍ତମ୍ଭିତ ହୋଇଗଲା ।

ଯୁଗମାନବ ମହାତ୍ମାଙ୍କୁ ହତ୍ୟା କରାଗଲା । ଯୀଶୁଖ୍ରୀଷ୍ଟଙ୍କୁ କ୍ରୁଶବିଦ୍ଧ କରାଯାଇଥିଲା, ଶ୍ରୀକୃଷ୍ଣଙ୍କୁ ହତ୍ୟା କରିଥିଲା ଜାରାଶବର ବିଷ-ତୀରର ସାହାଯ୍ୟରେ ।

ମହାତ୍ମାଗାନ୍ଧୀଙ୍କ ପରି ଜଣେ ପରମ ଏକନିଷ୍ଠ ଅହିଂସାସାଧକ ଏ ପୃଥିବୀରେ ଜନ୍ମ ହୋଇଥିଲେ । ତାଙ୍କୁ ହତ୍ୟା କରି, ନିଧନ କରି ପାରିବା ଭଳି ନରାଧମ ମଧ୍ୟ ଏ ପୃଥିବୀରେ ଜନ୍ମ ହୋଇଥିଲା । ଦୁଇଟିଯାକ ଅବିଶ୍ୱାସ୍ୟ, ତେବେକେ ଏହା ସତ୍ୟ ।

ଆନନ୍ଦର ସୂର୍ଯ୍ୟ ଉଦୟ ହେଉ ନହେଉଣୁ ଯେପରି ଅସ୍ତ ହୋଇଗଲା । ୧୯୪୮ ମସିହା ଜାନୁଆରୀ ତିରିଶି, ଏ ଦେଶର ଗୋଟିଏ ଚରମ ଦୁର୍ଦ୍ଦିନ । ସେତେବେଳକୁ ଦୂରଦର୍ଶନ ହୋଇନାହିଁ, ଆକାଶବାଣୀ ହିଁ ପ୍ରଚାର କଲା ଶୋକସଙ୍ଗୀତ—

ଜନନୀ ବିକଳ କ୍ରନ୍ଦନ ଶୁଣି ସାନ୍ତ୍ୱନା କେ ଦେବରେ ?

ପ୍ରକୃତରେ ସେ ଶୋକର ଆଉ ସାନ୍ତ୍ୱନା ନଥିଲା ।

ଯୁଗ ଏକ ଈଶ୍ୱରଙ୍କୁ ହରାଇଲା ।

ନୀଳମଣିଙ୍କ ଚିନ୍ତାର ସ୍ରୋତ ଅଟକିଗଲା ସେଇଠି । ସ୍ମିତା ଆସି ପାଖରେ ବସି ସ୍ୱରୂପା ପାଖକୁ ଚିଠିଟିଏ ଲେଖିବାକୁ ବସିଲା । ନୀଳମଣି ଡାକିଦେଲେ ।

ଛୋଟ ଚିଠିଟିଏ । କେତେବା ସମୟ ଲାଗିବ ଲେଖିବାକୁ ? ଅତି ବେଶୀ ହେଲେ ଅଧଘଣ୍ଟାଏ । ଚିଠିଟି ଲେଖିଦେଇ, ଭଲ ମନ୍ଦ ଖବର ନେଇ, ବଡ଼ମା'ଙ୍କ ପାଦ ଉପରେ ହାତ ବୁଲାଇ ଦେଇ ପଢ଼ାପଢ଼ି କରିବାକୁ ଚାଲିଗଲା ସ୍ମିତା । ପାଖରେ ବସିବାକୁ ସମୟ ବା କାହାର ଅଛି ?

ଆଉଥରେ ଏକାକୀ ହୋଇଗଲେ ନୀଳମଣି । ଘଣ୍ଟାର ଗତି ମନ୍ଥର ହେଲାପରି ଲାଗୁଛି । କାନ୍ଥରେ ଟଙ୍ଗା ହୋଇଥିବା ଚିତ୍ରଗୁଡ଼ିକୁ ଚାହିଁ ଦେଖିଲେ । ବିଶ୍ୱନାଥଙ୍କର ସବୁ ବୟସର ଫଟୋ ଅଛି । ଅତି ଶୈଶବରେ ହେମଲତାଙ୍କ କୋଳରେ, ପିତାମାତା ଉଭୟଙ୍କ ସହିତ, ସ୍ୱର୍ଣ୍ଣଲତା ଓ ହେମଲତାଙ୍କ ସହିତ । ଚନ୍ଦ୍ରଶେଖର ଓ ମାହେଶ୍ୱରୀଙ୍କ ସହିତ । ତା'ପରେ ସେହି ବିଶେଷ ଫଟୋଟି— ନୀଳମଣିଙ୍କ ସହିତ !

ଆଠବର୍ଷର ବାଳିକା ନୀଳମଣି ଏକ ବିରାଟ ପାଟବସ୍ତ୍ର ପିନ୍ଧି, ମଥାରେ ସୁନାର ଅଳକା, ହଳଦୀପତ୍ର, ଚନ୍ଦ୍ର-ତାରା, ଗୋଲାପ ଫୁଲ, ସେବତୀ ଫୁଲ ଓ ଦେହରେ ଅଜସ୍ର ଅଳଙ୍କାରରେ ଭୂଷିତା ହୋଇ ବସିଛନ୍ତି ଶ୍ୱଶୁରଙ୍କ ପାଦ ନିକଟରେ । ପାଖରେ କିଶୋର ବିଶ୍ୱନାଥ ବସିଛନ୍ତି ସେକାଳର ପୋଷାକ ପିନ୍ଧି । ଦିହିଁଙ୍କ ମୁହଁ ଦିଓଟି ସଜ ପଦ୍ମଫୁଲ ପରି ଦିଶୁଛି । ନୀଳମଣି ମଧ୍ୟ ପିନ୍ଧିଛନ୍ତି, ସେକାଳ ଢଙ୍ଗର ପୁରାହାତବାଲା ଜାମା । ବେକରେ, ହାତରେ ଫୁଲ ଲାଗିଛି । ତା ଉପରେ ସେ ପାଟଶାଢ଼ି ! ଅଦ୍ଭୁତ ଦିଶୁଛି !

ଫଟୋଟି ବଡ଼ ପ୍ରିୟ ଥିଲା ବିଶ୍ୱନାଥଙ୍କର । ଆହୁରି କେତୋଟି ଫଟୋ ଅଛି । ଦୁଇଜଣ, ଅନ୍ୟମାନଙ୍କ ସହିତ । ସେ କାଳରେ ସମ୍ଭ୍ରାନ୍ତ ପରିବାରମାନଙ୍କରେ ବିଦେଶୀ ଫଟୋ ଗ୍ରାଫରକୁ ଡକାଇ ଆଣି ଫଟୋ ଉଠାଇବା ଓ ନିଜର ଚିତ୍ର ଅଙ୍କନ କରାଇବା ଖିଆଲ ଅତିବେଶୀ ପରିମାଣରେ ରହିଥିଲା ।

ଅତି ସୁନ୍ଦର ଓ ମୂଲ୍ୟବାନ୍ ବନ୍ଧେଇ କରାଯାଇଥିବା ତୈଳଚିତ୍ର ଗୁଡ଼ିଏ ମଧ୍ୟ ଟଙ୍ଗା ହୋଇଛି । ଚୌଧୁରୀ ନାରାୟଣ ଦାଶଙ୍କ ପିତାମାତାଙ୍କ ତୈଳଚିତ୍ର ଓ ପ୍ରଥମ ସ୍ତ୍ରୀଙ୍କ ତୈଳଚିତ୍ର ମଧ୍ୟ ରହିଛି ଆଜି ପର୍ଯ୍ୟନ୍ତ ।

ଚିତ୍ରଗୁଡ଼ିକ ଅକ୍ଷୁଣ୍ଣ ହୋଇ ରହି ପାରିଛି, କିନ୍ତୁ ଚିତ୍ରର ମଣିଷମାନେ ? ରହିପାରି ନାହାନ୍ତି ।

ବିଶ୍ୱନାଥଙ୍କର ବାଳକ ରୂପ ଏବେ ମଧ୍ୟ ଆଖି ଆଗରେ ଦେଖାଯାଏ । ବିଶ୍ୱନାଥଙ୍କୁ ଅତି ଆଦରରେ ଟାଣିଆଣି ଜବରଦସ୍ତି ପାଖରେ ବସାଇ ଦିଅନ୍ତି ସ୍ୱର୍ଣ୍ଣଲତା ତାସ ଖେଳିବା ବାହାନାରେ ।

ଗୋଲ ଗୋଲ ହୋଇ ଗଞ୍ଜପା ତାସ ସେ । ବିଶ୍ୱନାଥ, ମାହେଶ୍ୱରୀ, ସ୍ୱର୍ଣ୍ଣଲତା ଆଉ ନୀଳମଣି । ହାରିଗଲେ କାନ୍ଦିକାଟି ସ୍ୱର୍ଣ୍ଣଲତାଙ୍କୁ ଅଥୟ କରି ଦେଉଥାନ୍ତି ନୀଳମଣି । ବୋହୂପଣିଆର ଆଦ୍ୟଅକ୍ଷର ବି ଜଣାନଥିଲା ସେତେବେଳେ, ତେଣୁ ମାହେଶ୍ୱରୀ ଓ ବିଶ୍ୱନାଥ ଯେ ଷଡ଼ଯନ୍ତ୍ର କରି ତାଙ୍କୁ ହରାଉଛନ୍ତି, ସେ ବିଷୟରେ ତିଳେ ହେଲେ ସନ୍ଦେହ ରହୁନଥିଲା—ସେଥିପାଇଁ କେତେ ଆପତ୍ତି, ଅଭିଯୋଗରେ ଘରଟାକୁ ମୁଖରିତ କରି ଦେଉଥିଲେ ସେ । ତେଣୁ ମଝିରେ ମଝିରେ ମାଉସୀଙ୍କ କହିବା ଅନୁସାରେ ବାଧ୍ୟହୋଇ କେତେବେଳେ ମାହେଶ୍ୱରୀଙ୍କୁ ଆଉ କେତେବେଳେ ବିଶ୍ୱନାଥଙ୍କୁ ଜାଣି ଜାଣି ହାରିବାକୁ ପଡୁଥିଲା ।

ମଝିରେ ମଝିରେ ବାପଘରକୁ ଦି' ଦିନ ପାଇଁ ଚାଲିଗଲା ବେଳେ ଏ ଘରର ସମସ୍ତଙ୍କ ପାଇଁ ନୀଳମଣିଙ୍କ ବାଳିକା ମନଟା ଝୁରିହୁଏ । ଏ ଘରର ସମସ୍ତେ ବହୁତ ମନେ ପଡ଼ନ୍ତି । ଆଶ୍ଚର୍ଯ୍ୟ ! ପରମପ୍ରିୟ ସେ ପିତୃଗୃହ ଯେପରି ପରର ବୋଲି ମନେହୁଏ ! ସାତ ଆଠବର୍ଷର ଝିଅଟିଏ, ପ୍ରେମ ବିଷୟରେ ସେତେବେଳେ ସେ ଜାଣିଥିଲା ବା କ'ଣ ?

କେଉଁ ଗୋଟାଏ ବହିରେ ନୀଳମଣି ପଢ଼ିଥିଲେ—ପୂଜାଠାରୁ ଜପ ବଡ଼ । ଜପଠାରୁ ଧ୍ୟାନ ବଡ଼ । ଧ୍ୟାନଠାରୁ ଭାବ ବଡ଼, ଆଉ ଭାବଠାରୁ ବଡ଼ ମହାଭାବ । ସେହି ମହାଭାବ ହିଁ ହେଉଛି ପ୍ରେମ ।

ପ୍ରେମ କେଉଁଠି କାମନାଯୁକ୍ତ, କେଉଁଠି କାମନାବିହୀନ, ଆତ୍ମା ସହିତ ଦେହର ସମ୍ପର୍କ ପରି ପ୍ରେମ ସହିତ ସମ୍ପର୍କ କାମନାର । ପ୍ରେମର ଆଧାର ଯଦି ଶାରୀରିକ ସୁଖ କେବଳ ହୋଇଥାନ୍ତା ତା'ହେଲେ ଏତେବର୍ଷ ପରେ ମଧ୍ୟ ବିଶ୍ୱନାଥଙ୍କ ସ୍ମୃତିଗୁଡ଼ିକୁ ମନେ ପକାଇ ବିକଳ ହୁଅନ୍ତେ ନାହିଁ ନୀଳମଣି ।

ପ୍ରେମର ପ୍ରଭାବ ଅସୀମ । ନିଃସ୍ୱାର୍ଥପର ଭାବରେ ଆତ୍ମବଳି ଦେବାର ନିର୍ଭୀକତା ସେ ଶିଖାଏ ଦେଶପ୍ରେମୀ ସୈନିକକୁ, ନିଃସ୍ୱାର୍ଥପର ସାମଜସେବୀକୁ, କର୍ତ୍ତବ୍ୟ ପରାୟଣ ନାବିକ ବା ଚାଳକଙ୍କୁ । କେଉଁଠାରେ ଏହା ସନ୍ତାନପ୍ରେମ ତ କେଉଁଠାରେ ଭ୍ରାତୃପ୍ରେମ, କେଉଁଠାରେ ବା ବନ୍ଧୁପ୍ରେମ; ପିତାମାତାଙ୍କ ପ୍ରତି ପ୍ରେମ ପୁଣି କର୍ତ୍ତବ୍ୟପ୍ରେମ ।

ରାମଙ୍କ ବନବାସର ଦୁଃଖ ସହି ନପାରି ଦଶରଥ ସଙ୍ଗେ ସଙ୍ଗେ ଜୀବନ ତ୍ୟାଗ କରି ଉତ୍କୃଷ୍ଟ ସନ୍ତାନପ୍ରେମର ନିଦର୍ଶନ ରଖି ଯାଇଛନ୍ତି । ପିତାଙ୍କ ପ୍ରତି ଓ ସତ୍ୟ ପ୍ରତି ପ୍ରେମ ହେତୁ ରାମଚନ୍ଦ୍ର ପ୍ରଫୁଲ୍ଲ ମନରେ ଚଉଦବର୍ଷ ପାଇଁ ବନବାସର ଘୋର ଦୁଃଖକୁ ବରଣ କରି ନେଇଥିଲେ ଭ୍ରାତୃପ୍ରେମର ପରାକାଷ୍ଠା ଦେଖାଇ । ନବବିବାହିତା ପତ୍ନୀ ଏବଂ ସମସ୍ତ ରାଜସୁଖକୁ ଛାଡ଼ି ବନବାସୀ

ହୋଇଥିଲେ ଲକ୍ଷ୍ମଣ ମଧ୍ୟ । ଆଉ ଭରତ ? ତାଙ୍କର ପ୍ରେମନିଷ୍ଠା କ'ଣ କମ ? ସେ ଅଯୋଧ୍ୟାପୁରୀର ବାହାରେ ଏକ କୁଟୀରରେ ବନବାସୀ ଋଷି ପରି ଜୀବନ କଟାଇଛନ୍ତି ଚଉଦବର୍ଷ । ଭୁଲି ଯାଇଛନ୍ତି ରାଜଭୋଗକୁ, ଭୁଲିଛନ୍ତି, ନବପରିଣୀତା ମାଣ୍ଡବୀଙ୍କୁ । ସୀତାଙ୍କ ପ୍ରେମବି ବର୍ଣ୍ଣନାତୀତ ।

ସେ ପ୍ରେମ ତ ଅତୁଳନୀୟ । ନିଃସ୍ୱାର୍ଥପର ଭାବରେ ମନପ୍ରାଣ ଢାଳି ସ୍ନେହ-ସେବା କରିବାହିଁ ପ୍ରେମର ଏକମାତ୍ର ସଂଜ୍ଞା ।

ଆଉ ନୀଳମଣିଙ୍କ ପ୍ରେମ କ'ଣ ? ରାଜା ଦଶରଥ କି ସତୀ ସୀତାଙ୍କ ପରି ବିଶ୍ୱନାଥଙ୍କ ମୃତ୍ୟୁ ହେବା ସହିତ ନୀଳମଣିଙ୍କ ଜୀବନଟା ମାଙ୍ଗେ ସାଙ୍ଗେ ଚାଲିଗଲା ନାହିଁ କାହିଁକି ? ସବୁ ହେଉଛି ଭାଗ୍ୟଲିପି ! ଅଦୃଷ୍ଟର ପରିହାସ ! ପ୍ରାରବ୍ଧ କର୍ମ !

ହଁ, ସବୁ ହେଉଛି ଭାଗ୍ୟଲିପି । ତା ନ ହେଲେ ପ୍ରଭାବତୀ କାହିଁକି ଏ ଘରକୁ ବୋହୂ ହୋଇ ଆସିଥାନ୍ତା ?

ନାରୀ ଓ ପ୍ରକୃତି—ଦୁହିଁଙ୍କ ଭିତରେ ଏକ ଅଦ୍ଭୁତ ପ୍ରକାର ସାମଞ୍ଜସ୍ୟ ରହିଛି । ନାରୀର ଏକ ରୂପ ହେଉଛି ଶାନ୍ତ, ସହିଷ୍ଣୁ, ମହିମାମୟୀ, ସ୍ନେହମୟୀ ଓ କଲ୍ୟାଣମୟୀ । ସେ କ୍ଷେତ୍ରରେ ସେ ସର୍ବଂସହା ସୃଷ୍ଟିକାରିଣୀ ମାତା ଧରିତ୍ରୀ ପରି ! ଶୁଭଦା, ବରଦା ଜଗଜ୍ଜନନୀଙ୍କ ପରି !

ଆଉ ଏକପ୍ରକାରର ନାରୀ ହେଉଛନ୍ତି—ଅସହିଷ୍ଣୁ, ହିତାହିତଜ୍ଞାନଶୂନ୍ୟ । ଅସୂୟାପରା ଓ ଅତିନିଷ୍ଠୁରା । ସେମାନେ ପ୍ରଳୟ-ରୂପିଣୀ ସର୍ବଗ୍ରାସୀ ପ୍ରବଳ ବନ୍ୟାଭରା ନଦୀ ପରି, ଯେ କି ନିଜର ତଟଦେଶକୁ ଗ୍ରାସ କରି ଗ୍ରାମାଞ୍ଚଳକୁ ଗ୍ରାସ କରି ଧ୍ୱଂସ ହିଁ ସାଧନ କରେ ।

ପ୍ରଭାବତୀ ହେଉଛି ସେହି ପ୍ରକାରର । ସେ ପୁଣି ଏ ଘରକୁ ବୋହୂ ହୋଇ ଆସିଲା ଏବଂ ସେଥିପାଇଁ ନୀଳମଣି ହିଁ ଦାୟୀ ରହିଲେ !

ସମ୍ଭ୍ରାନ୍ତବଂଶୀୟ ଦରିଦ୍ର ବ୍ରାହ୍ମଣ ଶିକ୍ଷକଙ୍କୁ କନ୍ୟାଦାୟରୁ ମୁକ୍ତ କରି ଉପକାର କରିବାର ଆଦର୍ଶ ହିଁ ରହିଥିଲା ନୀଳମଣିଙ୍କର । ସେ କାଳର ଡାକ୍ତରୀ ପାସ କରିଥିବା ବିଜୟ ପାଇଁ କଲିକତା, ପାଟନା, ବିହାର ପ୍ରଭୃତି ଜାଗାମାନଙ୍କରେ ବାସ କରୁଥିବା ଧନୀ ଖାନଦାନୀ ପରିବାରମାନଙ୍କରୁ ହିଁ ବିବାହ ପ୍ରସ୍ତାବମାନ ଆସିଥିଲା, କିନ୍ତୁ ନୀଳମଣି ଭୁଲ କଲେ ।

ନିଜର ଏଗାର ବର୍ଷ ବୟସର ଝିଅଟିର ବିବାହ ଅନୁଷ୍ଠାନରେ କିଛି ସାହାଯ୍ୟ ପାଇବା ଆଶାରେ ଗାଁ ସ୍କୁଲର ପଣ୍ଡିତ ରଘୁନାଥ ମିଶ୍ରେ ଆସିଥିଲେ ନୀଳମଣିଙ୍କ ପାଖକୁ । ସ୍ଥାନୀୟ ଲୋକ ସେ ନୁହଁନ୍ତି । ନିଜର ଦରିଦ୍ର ଅବସ୍ଥା ତାଙ୍କୁ ପୁରୀର କେଉଁ ଗୋଟାଏ ଶାସନ ଗାଁ'ରୁ ନେଇ ଆସିଥିଲା ଏତେ ଦୂରକୁ ।

ନୀଳମଣିଙ୍କ ଦ୍ୱାରା ପ୍ରତିଷ୍ଠିତ ଗୋଟିଏ ପ୍ରାଇମେରୀ ସ୍କୁଲର ହେଡ଼ ପଣ୍ଡିତ ରୂପେ ନିଯୁକ୍ତି ପାଇଥିଲେ ସେ । ବହୁ କୁଟୁମ୍ବୀ, ଅର୍ଥାଭାବର ଅଗାଧ ସମୁଦ୍ରରେ ଅଣନିଃଶ୍ୱାସୀ । ବାଧ ହୋଇ

ରାଜି ହୋଇଥିଲେ ଚାରୋଟି ସନ୍ତାନର ପିତା ବିପତ୍ନୀକ ହୋତା ମହାଶୟଙ୍କ ହାତରେ ଝିଅ ପ୍ରଭାବତୀକୁ ଗୌରୀଦାନ ଦେଇ କନ୍ୟାଦାନର ପୁଣ୍ୟ ଅର୍ଜ୍ଜନ କରିବାକୁ ।

ପ୍ରଭାବତୀର ଅତୁଳନୀୟ ସୌନ୍ଦର୍ଯ୍ୟର ପ୍ରଶଂସା ଲୋକଙ୍କ ମୁହଁରୁ ଶୁଣି ଆଉ ମଧ୍ୟ ଥରେ ଅଧେ ତାକୁ ନିଜ ଆଖିରେ ଦେଖି ହୋତାଏ ରଘୁ ମିଶ୍ରଙ୍କ ପାଖକୁ ବିବାହ ପ୍ରସ୍ତାବ ଦେଇ ଖବର ପଠାଇ ଥିଲେ । ହୋତାଙ୍କ ବଡ଼ ପୁଅଟି ପ୍ରଭାବତୀଠାରୁ ବୟସରେ ବର୍ଷଟିଏ ବଡ଼ ।

ବରପକ୍ଷର କିଛି ଦାବୀ ନଥିଲେ ମଧ୍ୟ ତାଳ ଖଣ୍ଡେ, ମସିଣା ପିଢ଼ା, କଂସାବାସନ ଦିଖଣ୍ଡି, ବରର ଜୋଡ଼, କନ୍ୟାର ବଉଳପାଟ, ମୁକୁଟ ଗଇଣ୍ଠାଳ, ବାରିକ-ପୁରୋହିତଙ୍କ ଲୁଗା, ବିଦାକି ମର୍ଯ୍ୟାଦା, ଜାଇ, ବଡ଼ି, ଲଡ୍ଡୁ, ଦହି ମାଛ ଇତ୍ୟାଦି କେତେ ଖର୍ଚ୍ଚ ରହିଛି ତ ! ଟଙ୍କା କିଛି ନିହାତି ଦରକାର ।

ପ୍ରଭାବତୀର ତଳକୁ ଆହୁରି ତିନୋଟି ଝିଅ ରଘୁ ମିଶ୍ରଙ୍କର । ପୁଣି ମୃତ ଭଉଣୀର ପୁଅ ଝିଅ ହୋଇ ତିନୋଟି ରହିଛନ୍ତି ତାଙ୍କ ପାଖରେ । ଘରେ ମୋଟ ସାତଟି ଛୁଆ, ବିଧବା ମା ଅଛନ୍ତି । ମନ ଅରାଜି ଥିଲେ ମଧ୍ୟ ପରିସ୍ଥିତିର ଚାପରେ ରଘୁ ମିଶ୍ରେ ହଁ କରିଥିଲେ ଏ ପ୍ରସ୍ତାବରେ ।

ବାହାଘରର ସମୁଦାୟ ଖର୍ଚ୍ଚ ପାଇଁ ଅର୍ଥ ସାହାଯ୍ୟ ଦେବାକୁ ମଧ୍ୟ କୁଣ୍ଠିତ ନଥିଲେ ହୋତାଏ, ହେଲେ ଲାଜରେ ନେଇପାରି ନାହାନ୍ତି ରଘୁ ମିଶ୍ରେ । ସେ ନୀଳମଣିଙ୍କ ପାଖକୁ ଭିକ୍ଷା କରିବାକୁ ଆସି ନଥିଲେ, ଆସିଥିଲେ ଅନୁରୋଧ ଜଣାଇବାକୁ ଯେ ଏକକାଳୀନ କିଛି ମୋଟା ଅଙ୍କର ଅର୍ଥ ଦେଇ ମାସକୁ ମାସ ତାଙ୍କ ଦରମାରୁ ଆସ୍ତେ ଆସ୍ତେ ଟଙ୍କା କଟାଇ ନେବା ପାଇଁ ।

ବୁଢ଼ା ଗୁମାସ୍ତା ଖବରଟା ଦେବାକୁ ଆସି ମୂଳରୁ ଚୂଳ ପର୍ଯ୍ୟନ୍ତ ଘଟଣାଟି ବର୍ଣ୍ଣନା କରିଥିଲେ ନୀଳମଣିଙ୍କ ଆଗରେ । ବର ଓ କନ୍ୟାର ବୟସର ତାରତମ୍ୟ କଥା ଶୁଣି କ୍ରୋଧରେ ଜଳି ଉଠିଲେ ଯେପରି ନୀଳମଣି । ରଘୁ ମିଶ୍ରଙ୍କୁ କହି ପଠାଇଲେ—ଏ ବିବାହ ପ୍ରସ୍ତାବ ଛାଡ଼ିବାକୁ ପଡ଼ିବ । ହୋତାଙ୍କୁ ମନା କରି ଶୀଘ୍ର ଖବର ପଠାଇ ଦିଆଯାଉ । ମିଶ୍ରେ ଲାଗିପଡ଼ି ସୁପାତ୍ରଟିଏ ଖୋଜନ୍ତୁ, ନୀଳମଣି ପୂରା ବାହାଘର ଖର୍ଚ୍ଚତକ ବହନ କରିବେ ।

ରଘୁ ମିଶ୍ରଙ୍କ ବୁଦ୍ଧି ହଜିଗଲା, ସେ ଯେ ହୋତାଙ୍କୁ କଥା ଦେଇ ପକାଇଛନ୍ତି ! ବାକ୍ୟ ଫେରାଇ ନେବା ଅସମ୍ଭବ । ଲୁହ ଛଳ ଛଳ ଆଖିରେ ହାତ ମକଚି ମକଚି ନିଜର ଅସମର୍ଥତା କଥା କହୁ ନ କହୁଣୁ ଅନ୍ତରାଳବର୍ତ୍ତିନୀ ନୀଳମଣି ଯେପରି ବାରୁଦ ଭଳି ଫାଟି ପଡ଼ିଲେ ।

ଗୁମାସ୍ତାଙ୍କୁ ଲକ୍ଷ୍ୟ କରି କହିଲେ—ମିଶ୍ରେ ଯଦି ନିହାତି ଏ ବାହାଘର କରିବେ ତ କରନ୍ତୁ, ହେଲେ ମାସକ ଭିତରେ ଅନ୍ୟ କେଉଁଠି ଚାକିରି ଦେଖି ଏଠୁ ଚାଲି ଯିବାକୁ ପଡ଼ିବ ତାଙ୍କୁ । ଏହିପରି ଆଦର୍ଶ ବିହୀନ ଶିକ୍ଷକଙ୍କଠାରୁ ପିଲାଏ ଶିଖିବେ କଣ ?

ରଘୁ ମିଶ୍ରେ ଆଗରୁ ଶୁଣିଥିଲେ—ରାଣୀ ମା'ଙ୍କ ପାଖକୁ ସାହାଯ୍ୟ ପାଇଁ ଗଲେ ସେ ସୁବର୍ଣ୍ଣକଳସ ଢାଳି ଦିଅନ୍ତି କିନ୍ତୁ ରଘୁ ମିଶ୍ରଙ୍କ ଦଦରା କପାଳକୁ ବଜ୍ର ପଡ଼ିଲା ।

ପରମ କଲ୍ୟାଣମୟୀ ପ୍ରଶାନ୍ତ ମୂର୍ତ୍ତି ଭିତରେ ଏହି ସେ ନୀଳମଣି ଯାହାଙ୍କୁ କି ଯମ ଭଳି ଡରୁଥିଲେ ସମସ୍ତେ, କହୁଥିଲେ–ଗୋରା ପଲଟଣଙ୍କଠୁ ବି ଆହୁରି କଡ଼ା ଲୋକ । ଥରେ ନିଷ୍ପତ୍ତି ନେଲେ ଆଉ ଏପଟ ସେପଟ ହେବାର ସାଧ ନାହିଁ । ସତେ ଯେପରି ବିଚାରାଳୟର ଜଣେ ପ୍ରବୀଣ ବିଚାରପତି ସେ, ଯେ କି କେବଳ ଆଇନର ଖଣ୍ଡାଧାରକୁ ହିଁ ଚିହ୍ନିଛନ୍ତି ।

–ଗରିବ ବ୍ରାହ୍ମଣ ଭାସିଯିବ ମା, ଦଶ ପ୍ରାଣୀର କୁଟୁମ୍ବ ଧରି ଚଳୁଛି ! ସତକୁ ସତ ପିଲାଙ୍କ ପରି କାନ୍ଦି ପକାଇ ଥିଲେ ରଘୁ ମିଶ୍ରେ ।

ଏହା ପରର ଘଟଣାଟିକୁ ଦୈବୀ ସଂଯୋଗ ବୋଲି କହିବାକୁ ହେବ । ଜନ୍ମାଷ୍ଟମୀ ହେବ, ସାତ ଦିନ ଯାଏ ରାଧାଗୋବିନ୍ଦଙ୍କ ମନ୍ଦିରରେ ମହୋତ୍ସବ ଲାଗିବ । ସଜାସଜି ଚାଲିଛି । ମନ୍ଦିରର ବେଢ଼ା, ବଗିଚା, ଅତିଥିଶାଳା, ରନ୍ଧନଶାଳା ପ୍ରଭୃତି ସଫାସୁତରା କରାଯାଇ ଚୂନ ସଫେଇତି ହେଉଛି । ବିଭିନ୍ନ ରଙ୍ଗମାନ ଲଗାଇ ସିଂହାସନ ଓ ମୂର୍ତ୍ତିମାନେ ଚିତ୍ରିତ ହେବେ ସବୁ ବର୍ଷ ପରି ।

ମାଉସୀ ସ୍ୱର୍ଣ୍ଣଲତା ଓ ଶ୍ୱଶୁର ନାରାୟଣ ଦାଶ ବଞ୍ଚିଥିଲା ପର୍ଯ୍ୟନ୍ତ ତଦାରଖ କରିବା ଭାର ଥିଲା ସେମାନଙ୍କର । ତା'ପରେ କିଛିଦିନ ଚନ୍ଦ୍ରଶେଖର ଦେଖୁଥିଲେ । ତା'ପରେ ଦାୟିତ୍ୱ ନେବାକୁ ହୋଇଛି ନୀଳମଣିଙ୍କୁ । ସେଥିପାଇଁ ସେଦିନ ସେ ଯାଇଥାନ୍ତି ସେଠାକୁ । ସାଙ୍ଗରେ ବୁଢ଼ା ଗୁମାସ୍ତା ଦାଶରଥୀ, ରାମବୋଉ ଓ ଅନ୍ୟ ଜଣେ ପରିଚାରିକା ।

ଏତିକିବେଳକୁ ଜଣେ ବୁଢ଼ୀଙ୍କ ସହିତ ଦୁଇ ଝିଅ ଠାକୁରଙ୍କ ଦର୍ଶନ ପାଇଁ ଆସି ପହଞ୍ଚିଲେ । ହାତରେ ଫୁଲ ଚାଙ୍ଗୁଡ଼ି, ଭୋଗରାଗ କିଛି ଧରିଛନ୍ତି । ନୀଳମଣି ଆଶ୍ଚର୍ଯ୍ୟ ହେଲେ, କ୍ଷୁବ୍ଧ ହେଲେ କିନ୍ତୁ ତାଙ୍କର ମୁଗ୍ଧ ଦୃଷ୍ଟି ଯାଇ ପଡ଼ିଲା ପ୍ରଭାବତୀର ଅପୂର୍ବ ସୁନ୍ଦର କଅଁଳ ମୁହଁଟିରେ । ନିଜ ଜୀବନକାଳ ଭିତରେ ଏଡ଼େ ସୁନ୍ଦର ଝିଅଟିଏ କେବେ ଦେଖି ନାହାନ୍ତି ସେ । ସାଙ୍ଗରେ ଆସିଥିବା ବୁଢ଼ୀ ବୋଧହୁଏ ରାମବୋଉଠାରୁ ନୀଳମଣିଙ୍କ ପରିଚୟ ବିଷୟରେ ପଚାରି ବୁଝୁଥାନ୍ତି ।

ବୁଢ଼ୀ ମା'ଙ୍କ ଆଦେଶ ଅନୁସାରେ ଝିଅ ଦୁଇଟି ନୀଳମଣିଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ । ଗୁମାସ୍ତା ଦାଶରଥୀ ଚିହ୍ନାଇ ଦେଲେ–ହେଇଟି ରାଣୀ ମା ! ରଘୁ ମିଶ୍ରଙ୍କ ପିଲାଏ, ଆଉ ଏ ହେଉଛନ୍ତି ତାଙ୍କ ବୋଉ । ଏଇଟି ହେଉଛି ସେଇ ପ୍ରଭା, ଯାହା କଥା କହିବାକୁ ସେଦିନ ମିଶ୍ରେ ଆସିଥିଲେ ।

ଅଳ୍ପ କେତେ ସମୟ ପାଇଁ ନୀଳମଣି ଭାବିଲେ–ସତେ କ'ଣ ରାଧାଗୋବିନ୍ଦ ମାୟା କଲେ ? କୌତୁକ କଲେ ? ନା, ମଣିଷ ଆପେ ଆପେ ଭ୍ରମବଶତଃ ଏହିପରି ଆପଣା ଜାଲରେ ଛନ୍ଦି ହୋଇଯାଏ ?

ସାଧାରଣତଃ ଜମିଦାରଙ୍କ ଘରର ଲୋକେ ମନ୍ଦିରକୁ ଆସିଲାବେଳେ ଅନ୍ୟାନ୍ୟ ସମସ୍ତଙ୍କୁ ଦ୍ୱାର ମନାଥାଏ । ଜଗିବା ଲୋକଟିର ତ୍ରୁଟି ଯୋଗୁ ଏମାନେ ଭିତରକୁ ଚାଲି ଆସିଥିଲେ,

ବର୍ତ୍ତମାନ ନିଜର ଅପରାଧ ଉପଲବ୍ଧି କରି ଡରି ଯାଇଥାନ୍ତି । ଯାହାହେଉ ରଘୁ ମିଶ୍ରଙ୍କ ବୋଉ ସାହସ ସଂଗ୍ରହ କରି କହିଲେ—ରାଣୀ ମା, ଆପଣ କହିଲେ ବୋଲି । ନହେଲେ ଝିଅଟାକୁ ତ ଆମେ ଭସାଇ ଦେଇଥାନ୍ତୁ—ମା ରାଣୀ ! ଆପଣଙ୍କ ଆଜ୍ଞାରେ ହୋତାଙ୍କୁ ନାହିଁ କରି ଖବର ପଠାଇ ଦେଲା ପୁଅ ।

କଥାଟା ବୁଝିପାରି ନୀଳମଣି ସଂକ୍ଷେପରେ କହିଲେ—ଭଲ କରିଛନ୍ତି । ଏ ହେଉଛି ପ୍ରଭା ! ମିଶ୍ରଙ୍କ ବଡ଼ ଝିଅ ?

—ହଁ ରାଣୀ ମା, ଏଇଟି ଝିଅ, ଆଉ ଏଇଟି ହେଲା ଭାଣିଜୀ । ମୋ ଝିଅର ଝିଅ । ସଂସାର କରୁଥିବା ଝିଅ ମୋର ଆଖି ବୁଜି ଦେଇଛି । କ୍ୱାଇଁ ଆଉଥରେ ବାହା ହୋଇଛନ୍ତି । ପିଲାଏ ମୋ ପାଖରେ ଅଛନ୍ତି ।

ନିଜର ସୁନ୍ଦର ମହାର୍ଘ ହସରୁ ଟିକିଏ ଝରାଇଦେଇ ପିଲାଦିହିଁଙ୍କୁ ଆଶୀର୍ବାଦ କଲେ ନୀଳମଣି । କୌଣସି କଥା କହି ନଥିଲେ ।

ହଁ ସେ ଦିନ, ରାଧାଗୋବିନ୍ଦଙ୍କ ମନ୍ଦିରରୁ ଘରକୁ ଫେରିଆସିବା ପରେ ହଠାତ୍ ତାଙ୍କର ଇଚ୍ଛା ହେଲା, ସେହି ଅତିସୁନ୍ଦର ଝିଅଟିକୁ ସେ ନିଜର ବୋହୂ କରି ଆଣନ୍ତେ ନାହିଁ ଘରକୁ ? ବିଜୟ ସହିତ ପ୍ରଭାବତୀର ବାହା କରାଇ ଦିଅନ୍ତେ ।

ପ୍ରଭାବତୀର ସୁନ୍ଦର ମୁହଁଟିର ଛବି ପ୍ରଲୋଭିତ କଲା ସ୍ୱର୍ଣ୍ଣମୃଗ ପରି ।

## (୮)

ସମ୍ଭ୍ରାନ୍ତବଂଶର ପଦ ମର୍ଯ୍ୟାଦାର ଏକ ନିର୍ଦ୍ଦିଷ୍ଟ ସୀମାରେଖା ରହିଥିଲା ସେତେବେଳେ । ଠିକ୍ ଲକ୍ଷ୍ମଣଙ୍କ ଦ୍ୱାରା ଅଙ୍କିତ ତିନୋଟି ଗାର ପରି ସେହି ସୀମାରେଖା ଏକାବେଳେ ସୁନିର୍ଦ୍ଦିଷ୍ଟ ଥିଲା ।

ବିଶ୍ୱନାଥ କହୁଥିଲେ—'କେବଳ ସତୀ ଶିରୋମଣି ସୀତାଙ୍କ ପାଇଁ ସେହି ରେଖା ତିନୋଟି ଉଦ୍ଦିଷ୍ଟ ନ ଥିଲା ମଣି, ସାରା ନାରୀଜାତି ପାଇଁ ବିଚକ୍ଷଣ ସମାଜବିଦ୍‌ମାନେ ଟାଣି ଦେଇଥିଲେ—ନାରୀର ମର୍ଯ୍ୟାଦାର ସୀମାରେଖା ତାହା । ସେହି ନିର୍ଦ୍ଦିଷ୍ଟ ସୀମାରେଖାର ବାହାରକୁ ପାଦ ଦେଲାକ୍ଷଣି ପ୍ରତି ମୁହୂର୍ତ୍ତରେ କୌଣସି ନା କୌଣସି ବିପଦରେ ପଡ଼ିବାର ସମ୍ଭାବନା ରହିଥିବାରୁ ଏ ନିଷେଧାଜ୍ଞା ରହିଛି ।

ନିର୍ଲୋଭତା, ସଂଯମ ଏବଂ ଧର୍ମ—ତିନୋଟି ରେଖା । ଏହାକୁ ନାରୀମାନେ ଅତିକ୍ରମ ନ କଲେ ହିଁ ଭଲ । ବିଶେଷଭାବରେ ଆମ ସଂସ୍କୃତିରେ ନାରୀମାନଙ୍କ ଉପରେ ହିଁ ଧର୍ମରକ୍ଷା ତଥା ବଂଶରକ୍ଷା କରିବାର ପ୍ରଧାନ ଦାୟିତ୍ୱ ଲଦି ଦିଆଯାଇଛି । କାରଣ ତା'ର ଦେହ ଓ ମନର ପବିତ୍ରତା ଉପରେ ହିଁ ଗଢ଼ିଉଠେ ଆଗାମୀ ମନୁଷ୍ୟ ସମାଜ, ଆଗାମୀ ପୃଥିବୀ, ଆଗାମୀ ଯୁଗ । ସେ ପବିତ୍ରତା ଯେତେବେଳେ ନଷ୍ଟ ହୋଇଛି, ପୃଥିବୀରେ ମହା ବିଭ୍ରାଟ ଦେଖାଦେଇଛି । ଯୁଗ ସମ୍ପୂର୍ଣ୍ଣରୂପେ ନଷ୍ଟ ହୋଇଯାଇଛି ।'

କି ସୁନ୍ଦର କଥାଗୁଡ଼ିକ କହୁଥିଲେ ବିଶ୍ୱନାଥ । ଲକ୍ଷ୍ମଣଙ୍କ ତିନି ରେଖା—ନିର୍ଲୋଭତା, ସଂଯମ ଓ ଧର୍ମ !

ହଁ, ସେଦିନ ରାଧାଗୋବିନ୍ଦଙ୍କ ମନ୍ଦିରରୁ ଫେରି ଆସିଲା ପରେ ହଠାତ୍ ତାଙ୍କର ଇଚ୍ଛା ହେଲା—ସେହି ସୁନ୍ଦର ଝିଅଟାକୁ ସେ ବୋହୂ କରନ୍ତେ, ବିଜୟ ସହିତ ବାହା କରାଇ ଦିଅନ୍ତେ ।

ପୁରୀ ଜିଲ୍ଲାର ଅସଲ ସମ୍ଭ୍ରାନ୍ତବଂଶୀୟ ଶାସନୀ ବ୍ରାହ୍ମଣ ହେଉଛନ୍ତି ରଘୁ ମିଶ୍ରେ । କିନ୍ତୁ ଗୋଟାଏ ବଡ଼ ବାଧା ରହିଛି । ତାଙ୍କରିଠାରୁ ଦରମା ପାଉଥିବା ଜଣେ ଲୋକଙ୍କଘରୁ ଝିଅଟିଏ ଆଣିଲେ ଚାରିଆଡ଼େ କଥା ଉଠିବ । ବଂଶମର୍ଯ୍ୟାଦା ତଳେ ପଡ଼ିବ । ଏତେବଡ଼ ବଂଶର ସନ୍ତାନ ବିଜୟର ଶ୍ୱଶୁର ହେବେ ରଘୁ ମିଶ୍ରେ ?

ନା, ନା ଅସମ୍ଭବ ।

ନୀଳମଣିଙ୍କ ଦିନଗୁଡ଼ିକ ଖାଲି ଦ୍ୱିଧା ଭିତରେ କଟିବାକୁ ଲାଗିଲା ।

ଖାନ୍‌ଦାନ ଥିବା ପ୍ରସିଦ୍ଧ ପ୍ରହରାଜଙ୍କ ଘରୁ ପ୍ରସ୍ତାବ ଆସିଲା ବିଜୟ ପାଇଁ । ପ୍ରହରାଜେ ବିରାଟ ଧନୀ । କଲିକତାରେ ଘର ଅଛି, ପାଟନାରେ ଅଛି । ବଡ଼ ବଡ଼ କେତୋଟି ବ୍ୟବସାୟ ପ୍ରତିଷ୍ଠାନ ମଧ୍ୟ ରହିଚି । ଏଣେ ନିଜର ମଧ୍ୟ ରହିଛି ବିରାଟ ଜମିଦାରୀ । ତାଙ୍କ ଠାକୁର ଘରେ କୁଆଡ଼େ ଗୋପାଳଜୀଉଙ୍କ ସିଂହାସନ ଗଢ଼ାହୋଇଛି ସୁନା ଇଟାରେ ! ଝିଅକୁ ସେ ମୁଣ୍ଡଠାରୁ ଆରମ୍ଭ କରି ପାଦ ଯାଏଁ ସୁନା, ହୀରା, ନୀଳା, ମୋତିରେ ଛାଇଦେବେ ବୋଲି ପ୍ରତିଶ୍ରୁତି ଦେଇଥା'ନ୍ତି ।

ପ୍ରସ୍ତାବଟି ମନକୁ ପାଇଲା ବିଜୟର । ପରିବାରର ବର୍ଷୀୟସୀ ସଧବା ଆତ୍ମୀୟା ଦୁଇଜଣ, ଦାଶରଥୀ ପ୍ରଭୃତି କେତେଜଣଙ୍କ ସଙ୍ଗେ ଝିଅକୁ ଦେଖି ଆସିବାକୁ ବିଜୟକୁ ବାଧ୍ୟ କରି ପଠାଇଲେ ନୀଳମଣି । ମନକୁ ପାଇଲେ ସେ ନିଜେ ଯାଇ ଦେଖି କନ୍ୟାକୁ ଆଶୀର୍ବାଦ କରି ଆସିବେ ।

କିନ୍ତୁ ବିଧାତାଙ୍କ ନିର୍ଦ୍ଦେଶ ରହିଛି ଏ ଘରକୁ ପ୍ରଭାବତୀ ବଧୂ ହୋଇ ଆସିବ ।

ପ୍ରହରାଜଙ୍କ ଘନ କୃଷ୍ଣବର୍ଣ୍ଣା ଝିଅଟିକୁ ଦେଖି କାହାରି ମନକୁ ପାଇ ନଥିଲା ସେଦିନ ।

ସେତେବେଳେ ହଠାତ୍ ନିଜର ଗୋଟିଏ ଦୁର୍ବଳ ମୁହୂର୍ତ୍ତରେ ବିଜୟ ଆଗରେ ପ୍ରଭାବତୀର କଥା କହି ପକାଇଲେ ନୀଳମଣି । ନିଜର ଇଚ୍ଛା ପ୍ରକାଶ କଲେ । ଆଉ ଖୁଡ଼ୀମା'ଙ୍କ ଇଚ୍ଛା ଜାଣିଲାପରେ ବିଜୟ ବିନା ଦ୍ୱିଧାରେ ରାଜି ହୋଇଯାଇଥିଲା । ବିଜୟ ଆଖିରେ ଖୁଡ଼ୀମା' ତା'ର ଧନରେ ଲକ୍ଷ୍ମୀସ୍ୱରୂପା, ବୁଦ୍ଧିରେ ସରସ୍ୱତୀ, ଶକ୍ତିରେ ସାକ୍ଷାତ୍ ଭଗବତୀ । ଯେ ସାମାନ୍ୟ ଗୋଡ଼ିଟିଏ ଛୁଇଁଲେ ବି ତାହା ଅବଶ୍ୟ ସୁନା ପାଲଟିବ !

ଖୁଡ଼ୀମା'ଙ୍କ ପସନ୍ଦ କେବେହେଲେ ଅକଲ୍ୟାଣକାରୀ ହେବନାହିଁ । ଦାରିଦ୍ର୍ୟ ଓ ପଦମର୍ଯ୍ୟାଦା କଥା ଯେତେବେଳେ ଅତି କୁଣ୍ଠିତ ଭାବରେ ନୀଳମଣି କହିଲେ, ହସି ହସି ବିଜୟ କହିଥିଲା—ଏକାଧାରରେ ସବୁକଥା ଠିକ୍‌ରୂପେ ପାଇବା ଯେ ଏ ବିଶ୍ୱସଂସାରରେ ଏକ ଅସମ୍ଭବ କଥା ଖୁଡ଼ୀମା' !

ସେ ସାନ୍ତ୍ୱନା ଦେଇଥିଲା ନୀଳମଣିଙ୍କୁ ।

ପ୍ରକୃତରେ ବିଜୟ ମନଟା ଥିଲା ଶୁଦ୍ଧ ସ୍ୱଚ୍ଛ ସ୍ଫଟିକ ପରି । ଖୁଡ଼ୀମା'ଙ୍କ ଉପରେ ଅସୀମ ବିଶ୍ୱାସ ରଖି ପ୍ରଭାବତୀକୁ ଦେଖିବାକୁ ସୁଦ୍ଧା ସେ ରାଜି ହୋଇନଥିଲା ।

ତେଣୁ କୌଣସି କଥାକୁ ଆଉ ଭ୍ରୂକ୍ଷେପ ନ କରି ନୀଳମଣି ପ୍ରଭାବତୀକୁ ହିଁ ଏ ଘରର ବୋହୂ କରି ନେଇ ଆସିଲେ ।

ଦରିଦ୍ର ସ୍କୁଲ ଶିକ୍ଷକ ରଘୁ ମିଶ୍ରଙ୍କ କନ୍ୟା ପ୍ରଭାବତୀ ଯୁବରାଣୀ ପଦରେ ଅଧିଷ୍ଠିତା ହୋଇ, ଗଣ୍ଠିଆଳରେ ବନ୍ଧା ହୋଇ, ସ୍ୱାମୀଙ୍କ ଆଗେ ଆଗେ ଆସି ପ୍ରବେଶ କଲା ଏ ରାଜ ପ୍ରାସାଦରେ ବେଶ୍ ଆନନ୍ଦିତ ମନରେ ।

କିନ୍ତୁ ଅଳ୍ପ କେତେଦିନ ପରେ ଚଉଦ ବର୍ଷର ଝିଅଟିର ବିଷୟାନୁରକ୍ତି ଦେଖି ନୀଳମଣି ଏକାବେଳେ ହତବାକ୍ ହୋଇଗଲେ ।

ପ୍ରାସାଦର ଅତୁଳନୀୟ ଐଶ୍ୱର୍ଯ୍ୟକୁ ଦେଖି ବିମୁଗ୍ଧ ହୋଇ ପ୍ରଭାବତୀ ଭାବିଲା—ଏ ସବୁ ମୋର ! ଏ ସବୁର ଏକଛତ୍ର ଅଧିକାରିଣୀ ହେଉଛି କେବଳ ମୁଁ !!

ପ୍ରଭାବତୀର ଦୃଷ୍ଟି ନୀଳମଣିଙ୍କ ଦୃଷ୍ଟିଠାରୁ ମଧ୍ୟ ଆହୁରି ତୀକ୍ଷ୍ଣ, ବୁଦ୍ଧି ତା'ର ଆହୁରି ଅଧିକ ପ୍ରଖର, କାନ ଦୁଇଟି ଆହୁରି ଅଧିକ ସତର୍କ !

x x x

'ସିନ୍ଦୁକର ଚାବିଟାକୁ ତମେ ନିଜ ପାଖରେ ରଖୁନାହଁ ?' ପରିଚୟ ହେବାର ଅଳ୍ପଦିନ ପରେ ହିଁ ନବବଧୂ କହିଲା ତା' ସ୍ୱାମୀକୁ ।

ପ୍ରଥମେ କଥାଟା ବୁଝିପାରିଲା ନାହିଁ ବିଜୟ । ତା'ପରେ ଯେତେବେଳେ ବୁଝିଲା ସ୍ତମ୍ଭିତ ହୋଇଗଲା । ଯେପରି କଥା କହିବାର ସମସ୍ତ ଶକ୍ତି ହଜେଇଦେଲା । ତା'ପରେ ଗମ୍ଭୀର

ହୋଇ କହିଲା—ଏଭଳି କଥା ଆଉଦିନେ କହିବ ନାହିଁ ପ୍ରଭା । ଖୁଡ଼ୀମା ଶୁଣିଲେ ବଡ଼ ଦୁଃଖିତା ହେବେ ।

'କାହିଁକି ? ସମ୍ପତ୍ତି କ'ଣ ଖାଲି ତାଙ୍କରି ?' ବାଳିକା ବଧୂ ବର୍ଷୀୟସୀ ପ୍ରୌଢ଼ା ପରି ନିର୍ଭୀକ ଭାବରେ କହିଲା !!

ବିଜୟର ଦେହର ବର୍ଣ୍ଣ ଭାରି ଗୋରା, ତେଣୁ ତା' ମୁହଁଟା ଲାଲ୍ ହୋଇଗଲା ରାଗରେ । ପଦଟିଏ କଥା କହିଲା ସେ—ହଁ ।

ତା'ପରେ ପ୍ରଭାବତୀ ତୃତୀୟ ପ୍ରଶ୍ନ ପଚାରିବାକୁ ଉଦ୍ୟତ ହେବା ମାତ୍ରେ ଉଠି ପଡ଼ି ଘରୁ ବାହାରିଗଲା ସେ ।

ପରମ ଆଶ୍ଚର୍ଯ୍ୟ ! ନୀଳମଣିଙ୍କ ନିର୍ବାଚନ ଆଜି ପର୍ଯ୍ୟନ୍ତ କେବେ ଭୁଲ୍ ହୋଇ ନଥିଲା; କିନ୍ତୁ ବିଜୟର କପାଳକୁ ସେ ଗଣନା ଭୁଲ୍ ହେଲା ।

ଦିନ ପରେ ଦିନ ବିତି ଯିବାକୁ ଲାଗିଲା । ବିଜୟର ନବ ବିବାହିତ ଜୀବନର ସମସ୍ତ ଆନନ୍ଦ ଯେମିତି ଉଭେଇଗଲା । ତା'ର ଇଚ୍ଛାହେଲା— ସେହି ପିଲାଦିନେ ଯେପରି ଧାଇଁ ଯାଉଥିଲା ସେ ନୀଳମଣିଙ୍କ ପାଖକୁ, ସେହିପରି ଧାଇଁଯିବ । ସେହିପରି ଧାଇଁ ଯାଇ ତାଙ୍କ କୋଳରେ ମୁହଁ ଲୁଚାଇ ଅଶ୍ରୁଧାରକୁ ଉନ୍ମୁଖ କରିଦେବ । କହିବ—ଖୁଡ଼ୀ-ମା, ସୁନ୍ଦର ଫୁଲମାଳଟିଏ ଭାବି ଆମେ ଏକ ବିଷଧର ସର୍ପକୁ ବରଣ କରି ନେଇ ଆସିଲେ । ଏ ସର୍ପର ବିଷ ଯେ ଉତ୍କଟ ! ଏ ବିଷରେ ମୋର ସାରା ଜୀବନଟା ଜଳିଯିବ ।

ପ୍ରକୃତରେ ପ୍ରଭାବତୀର କଥାର ଜ୍ୱାଳାରେ ବିଜୟର ସୁନ୍ଦର ଓ ନିଷ୍ପାପ ଜୀବନଟା ଝଲସିଗଲା, ଜଳିଗଲା, ଭସ୍ମ ହୋଇଗଲା ନିହାତି ଅକାଳରେ ।

ବିଜୟ ସେଦିନ ଯେତେବେଳେ ଶୋଇବା ଘରୁ ବାହାରି ଆସି, ବାରଣ୍ଡାର ରେଲିଂକୁ ଧରି ମନର ଉଦ୍‌ବେଳିତ ବେଦନାକୁ ଚିପି ରଖିବାକୁ ଚେଷ୍ଟା କରୁଥିଲା—ନୀଳମଣି ସେତେବେଳେ ରାଧାଗୋବିନ୍ଦଙ୍କ ମନ୍ଦିରର ମାର୍ବଲ ଚଟାଣ ଉପରେ ବସି ଅତି ଆନନ୍ଦ ମନରେ ରାଧାରାଣୀଙ୍କ ପାଇଁ ମାଳ ଗୁନ୍ଥୁଥିଲେ । ଥରକୁ ଥର ନିରେଖି ଦେଖୁଥିଲେ ସେମାନଙ୍କ ସୁଠାମ ସୁନ୍ଦର ମୁଖକମଳକୁ । ଶ୍ରୀରାଧାଙ୍କ ମୁହଁରେ ଯେପରି ହସ ଉଛୁଳି ପଡୁଛି, ସେହି ହସର ଢେଉ ଆସି ଲାଗିଛି ଶ୍ରୀକୃଷ୍ଣଙ୍କ ସ୍ମିତ ଅଧରରେ, ପୁଣି ସେହି ହସ ଯାଇ ଫୁଟିଛି ନୀଳମଣିଙ୍କ ଓଠରେ ।

ଆହା, ପ୍ରେମର ଯୁଗଳମୂର୍ତ୍ତି କି ମନୋରମ ! ରାତ୍ରିର ନିର୍ଜ୍ଜନତା ଭିତରେ, ଆକାଶର ତରଙ୍ଗାୟିତ ଜ୍ୟୋତ୍ସ୍ନା ଭିତରେ, ଅସୁମାରୀ ନକ୍ଷତ୍ର-ଖଚିତ ନୀଳ ଆକାଶର ଚନ୍ଦ୍ରାତପ ତଳେ ଏହି ଅନୁରକ୍ତି, ଏହି ପ୍ରଗାଢ଼ ପ୍ରେମ ପୁଣି ଦେଖା ଦେଇଥିବ ବିଜୟ ଓ ପ୍ରଭାବତୀଙ୍କ ଯୁଗଳ ପ୍ରାଣରେ । ହାତରେ ହାତ ଛନ୍ଦି, ଜଣେ ଜଣକ ଛାତି ଉପରେ ମଥା ରଖି ମୃଦୁ ମୃଦୁ ଗୁଞ୍ଜନ ତୋଳି କଥାବାର୍ତ୍ତା

କରୁଥିବେ, ସେ ଆଳାପ ଯେ ଯୁଗ ଯୁଗର, ସେ ଆନନ୍ଦର ଧାରା ଯେ କେଉଁ ଅନାଦି କାଳରୁ ବହି ଆସୁଛି । ଏହି ଆନନ୍ଦ ଓ ଏହି ଅନୁରକ୍ତି ହିଁ ତ ଜୀବନ !

ଏ ସବୁ ଭାବି ନୀଳମଣି ମନକୁ ମନ ହସୁଥିଲେ, ସ୍ୱାମୀଙ୍କ କଥା ମନେ ପକାଉଥିଲେ । ପ୍ରଭାବତୀ ବୋହୂ ହୋଇ ଆସିବା ପରଠାରୁ ପ୍ରତିଦିନ ସନ୍ଧ୍ୟାରେ ରାଧାଗୋବିନ୍ଦଙ୍କ ମନ୍ଦିରକୁ ଆସିବାର ଗୋଟାଏ ନିୟମ କରି ଦେଇଛନ୍ତି ନୀଳମଣି । ନବଦମ୍ପତ୍ତି ପରସ୍ପରକୁ ଚିହ୍ନିବାର ନିର୍ବିଘ୍ନ, ନିର୍ଜ୍ଜନ, ଅଖଣ୍ଡ ଅବସର ଦେବାର ବ୍ୟବସ୍ଥା ଭିତରେ ଏ ବି ଗୋଟିଏ ବ୍ୟବସ୍ଥା ତାଙ୍କର ।

ହେମଲତା ଏ ଖେଳ ଖେଳିଥିଲେ, ସ୍ୱର୍ଣ୍ଣଲତା ଖେଳିଥିଲେ, ଆଜି ପାଳି ଆସିଛି ନୀଳମଣିଙ୍କର । ରାଧାକୃଷ୍ଣଙ୍କୁ ଝୁଲଣ ଦୋଳିରେ ବସାଇ ବିମୁଗ୍ଧ ନୟନରେ ଯୁଗ୍ମରୂପ ଦେଖୁ ଦେଖୁ ସେହି ଦୋଳି ଝୁଲାଇ ଦେବାର ଦଉଡ଼ି ସେ ହାତରେ ଧରିଛନ୍ତି ।

ଆଦର କରି ନିଜର ନୂପୁର ଲଗା ପାହୁଜି ହଳକ ପ୍ରଭାବତୀର ପାଦରେ ପିନ୍ଧାଇ ଦେଇଥିଲେ ନୀଳମଣି ତାକୁ ଅନ୍ୟସବୁ ଅଳଙ୍କାରରେ ମଣ୍ଡିତ କଲାବେଳକୁ । ଇଚ୍ଛା—ରୁଣୁଝୁଣୁ ସଙ୍ଗୀତର ଧ୍ୱନି ତୋଳି ରାଜକୁମାରୀଟିଏ ପରି ସେ ଘୂରି ବୁଲୁ ଏ ଘରେ । ବାତ୍ସଲ୍ୟ ସ୍ନେହରେ ଗଦ୍‌ଗଦ ହୋଇ ସେହି ଚଉଦ ବର୍ଷର ଝିଅଟିର କାନିରେ ହିଁ ନୀଳମଣି ବାନ୍ଧି ଦେଇଥିଲେ ଏଡ଼େ ବଡ଼ ଭଣ୍ଡାର ଘରର ଚାବି । କହିଥିଲେ—ମୁଁ ବଞ୍ଚି ଥାଉ ଥାଉ ତୁ ଘରକରଣା ଶିଖିଯା ମା' । ଏ ଘରର ନୀତି ନିୟମ, ଚଳଣି, ସବୁ ବିଷୟରେ ତୋତେ ପାଠ ପଢ଼ିବାକୁ ପଡ଼ିବ । ତୁ ଦକ୍ଷ, ଅଭିଜ୍ଞ ହୋଇଗଲେ ମୋର ଛୁଟି ।

ଭାବିଲେ—ଆଃ, କି ସ୍ୱସ୍ତିର ନିଃଶ୍ୱାସ ମୁଁ ନେବି ସେଦିନ, କି ଗଭୀର ପ୍ରଶାନ୍ତିରେ ମନକୁ ବୁଡ଼ାଇ ଦେଇ ମୁଁ ବିଶ୍ରାମ ନେବି, ଯେଉଁ ବିଶ୍ରାମ କି ମୁଁ ଲୋଡ଼ିଆସୁଛି ଦୀର୍ଘ ସତରବର୍ଷ ହେଲା ! ଆଶଙ୍କା ନାହିଁ, ଉତ୍କଣ୍ଠା ନାହିଁ, ଦାୟିତ୍ୱ ନାହିଁ, କିଛି ଜଞ୍ଜାଳ ନାହିଁ, ଚିନ୍ତାବିହୀନ ହେବି; ସ୍ୱର୍ଗର ମନ୍ଦାକିନୀ ଧାରା ଭଳି ପବିତ୍ର ପ୍ରଶାନ୍ତ ଅଖଣ୍ଡ ଅବସର ଭିତରେ ମନ ଆନନ୍ଦରେ ବୁଡ଼ିଯିବି ମୁଁ, ମୋର ଏ ମହାନ୍ ଦାୟିତ୍ୱର ବୋଝ ତୋ ହାତକୁ ତୋଳିଦେଇ । ତୁ ହେବୁ ଜମିଦାର ନାରାୟଣ ଚୌଧୁରୀଙ୍କ ଯୋଗ୍ୟ ନାତୁଣୀ ବୋହୂ ।

କିନ୍ତୁ....

ନୀଳମଣିଙ୍କ କଳ୍ପନାର ଆକାଶଚୁମ୍ବୀ ମିନାର କାଚଘର ଭଳି ଝଣ୍ ଝାଣ୍ ହୋଇ କଟୁ ଶବ୍ଦ ସୃଷ୍ଟି କରି ଭାଙ୍ଗି ପଡ଼ିଲା । ଭୁଷୁଡ଼ି ପଡ଼ିଲା ଅତି ଅଳ୍ପଦିନରେ । ଯେପରି ଏତେ ବଡ଼ ଘରଟାର ପ୍ରତ୍ୟେକ ଅଂଶରେ ବିଞ୍ଚିହୋଇ ପଡ଼ିଲା ସେହି ଭଗ୍ନ ମିନାରର ସାଂଘାତିକ କାଚଖଣ୍ଡଗୁଡ଼ାକ, ଉଣା ଅଧିକେ ସମସ୍ତଙ୍କୁ କ୍ଷତବିକ୍ଷତ କରି ରକ୍ତାକ୍ତ କରି ପକାଇଲା । ରକ୍ତାକ୍ତ କଲା ନୀଳମଣିଙ୍କ ବରଫଶୁଭ୍ର ମନକୁ; କିନ୍ତୁ ଶାନ୍ତ, ଉଦାର, ନିଷ୍ପାପ ବିଜୟର ଛାତି ଭିତରେ ତା'ର ହୃତ୍‌ପିଣ୍ଡରେ ଯେପରି ଯାଇ ବିନ୍ଧି ହୋଇଗଲା—ହୃତ୍‌ପିଣ୍ଡର ସେ ରକ୍ତକ୍ଷରଣ ଆଉ ବନ୍ଦ ହେଲା ନାହିଁ ।

ଦାରିଦ୍ର୍ୟ ନୀଚମନୋବୃତ୍ତିର ପରିଚାୟକ ନ ହୋଇପାରେ, ସେ କଥା ସତ, କିନ୍ତୁ ତା' ହେଲେ ଏତେ ବେଶୀ ନୀଚତା ପ୍ରଭାବତୀ ପାଇଲା କେଉଁଠାରୁ ?

ଦିନକର କଥା—ବଗିଚାପଟ ଫାଟକର ଜଗୁଆଳୀ ଜଣକ ରଘୁମିଶ୍ରଙ୍କ ଘରୁ ଆସିଥିବା ଲୋକଟିକୁ ଟାଣି ଟାଣି ଆସି ପହଞ୍ଚିଲା । କହିଲା—ମା, ଭଣ୍ଡାରଘରୁ କେତେ ଜିନିଷ ଚୋରି କରି ଏ ନେଇ ଯାଉଥିଲା ।

—ମୁଁ ଧରିଲି ।

ଜଗୁଆଳୀଟି ଅବଶ୍ୟ ଚିହ୍ନି ନ ଥିଲା ପ୍ରଭାବତୀର ବାପଘର ଲୋକକୁ । ସେତେବେଳକୁ ବଡ଼ ଅଗଣାଟାରେ ଦେଖଣାହାରୀଙ୍କ ଦଳଟା ଜମିଗଲାଣି । ଲୋକଟି ଭୟରେ କାନ୍ଦିପକାଇ କହିସାରିଲାଣି, ମୋର କିଛି ଦୋଷ ନାଇଁ ରାଣୀ ମା, ଆଜ୍ଞା ମଣିମା ! ଝିଅ ସାଆନ୍ତାଣୀ ଏସବୁ ଦେଇ ଏମିତି ଲୁଚେଇ ତାଙ୍କ ବାପଘରେ ନେଇ ଦେଇ ଦେବାକୁ କହିଥିଲେ ।

ଝିଅ ସାଆନ୍ତାଣୀ, ଅର୍ଥାତ୍ ପ୍ରଭାବତୀ !!

ଲୋକଟି କାନ୍ଦ ସ୍ୱର ଲମ୍ବାଇ କହୁଥାଏ—ବାପଘର ଆଜ୍ଞା ନ ଥିଲା ଘର ତ, ଟିକିଏ କ'ଣ ପଠେଇଦେବାକୁ ମନ ହେଲା । ହେଲେ ମୋର କିଛି ଦୋଷ ନାଇଁ, ଆଜ୍ଞା । ମୁଁ କେତେ ମନା କଲି, ହେଇଟି ଦେଖନ୍ତୁ ସେ ଏ ଟଙ୍କାଟା ମତେ ଦେଲେ । କେହି ନ ଦେଖିଲାପରି ନେଇଯିବାକୁ ତାଗିଦା ଦେଲେ ।

ପାଖରେ ଥିବା ଖମ୍ବଟାକୁ ଧରି ପକାଇ ସତେ ଯେପରି ମୂର୍ଚ୍ଛା ହେବା ଅବସ୍ଥାରୁ ନିଜକୁ ରକ୍ଷାକଲେ ନୀଳମଣି । ରାମରାଜ୍ୟର ପ୍ରଶାନ୍ତି ଭିତରେ ଅକସ୍ମାତ୍ ସୀତାଙ୍କ ଅପବାଦ ଧ୍ୱନିତ ହୋଇଉଠିଛି । କିଛି ସମୟ ପାଇଁ ବୁଦ୍ଧି ହଜିଗଲା ନୀଳମଣିଙ୍କର । ତା'ପରେ ନିଜର ପ୍ରତ୍ୟୁତ୍ପନ୍ନମତିତା ଯୋଗୁଁ ପରିସ୍ଥିତିକୁ ସମ୍ଭାଳି ନେଇ, ମୁହଁ ଉପରକୁ ହସ ଟାଣିଆଣି ଶୁଖିଲାକଣ୍ଠରେ ସେ କହିଲେ, ତମେ ଭୁଲ ବୁଝିଲ ବନବାସୀ ! ବୋହୂକୁ ମୁଁ କହିଥିଲି ତମକୁ ଏସବୁ ଜିନିଷ ଦେଇ ବିଦା କରିବାକୁ । ଏ ସବୁ ତମେ ନିଜେ ନବ ବୁଝିଲ ? ବୋହୂଟା ପିଲାଲୋକ ତ, ଠିକ୍ କଥାଟା ବୁଝେଇ କହିପାରିନି ।

ସେଠାରୁ ଚାଲି ଆସି ନିଜ ଘରଟା ଭିତରେ ସେହି ଶେଯଟାରେ ସେ ବାତାହତ କଦଳୀ ଗଛ ପରି ଲୋଟି ପଡ଼ିଥିଲେ । ଚୋରି ! ପ୍ରଭାବତୀ ଚୋରି କରିଛି !

ମଣିମୁକ୍ତା ଖଚିତ ରତ୍ନ ସିଂହାସନ, କୁବେର ଭବନଠାରୁ ଆହୁରି ଅଧିକ ସୁନ୍ଦର ଅଯୋଧ୍ୟାର ରାଜପ୍ରାସାଦ, ନବରତ୍ନମଣ୍ଡିତ ପଲଙ୍କ, ମଣି ମୁକ୍ତା ଖଚିତ ସ୍ୱର୍ଣ୍ଣପାଦୁକା ତ୍ୟାଗକରି, ସମସ୍ତ ପ୍ରକାର ସୁଖଭୋଗ ତ୍ୟାଗକରି ବନବାସର ଘୋର ଦୁଃଖକୁ ହସି ହସି ବରି ନେଇଥିଲେ ପ୍ରଭୁ ଶ୍ରୀରାମଚନ୍ଦ୍ର । ଆଷାଢ଼ର ମେଘପୁଞ୍ଜକୁ ନିନ୍ଦା କରୁଥିବା ଭ୍ରମର କୃଷ୍ଣକୁଞ୍ଚିତ ନିଜର କେଶରାଶିକୁ ବରପତ୍ରର କ୍ଷୀରରେ ଅଭିଷିକ୍ତ କରି ଜଟାରେ ପରିଣତ କରିଥିଲେ । କମଳକୋରକ ତୁଲ୍ୟ ପାଦ

ଦୁଇଟିକୁ କଣ୍ଟକାକୀର୍ଣ୍ଣ ପଥରେ ଚଲାଇ କ୍ଷତବିକ୍ଷତ କରିଥିଲେ । ରାଜପୁରୀର ଅମୃତମଣୋହୀ ବଦଳରେ କନ୍ଦମୂଳ, ଫଳ ଆହାର କରି ଶୀତ, ଖରା, ବର୍ଷାର କଷ୍ଟ ସହିଥିଲେ ଭାଇ ଓ ପତ୍ନୀଙ୍କ ସହିତ । ସତ୍ୟ ରକ୍ଷା ପାଇଁ ଦୀର୍ଘ ଚଉଦବର୍ଷ କାଳର ଏ ଦୁଃଖଭୋଗ ବିଫଳ ହୋଇ ଯାଇଥିଲା ସତୀ ସୀତାଙ୍କ ଚରିତ୍ରର ନିନ୍ଦା ହେତୁ ।

ଠିକ୍ ସେହିପରି ବିଫଳତା ଅନୁଭବ କରିଥିଲେ ନୀଳମଣି ସେଦିନ ! ଏ କ'ଣ କଲେ ସେ ? ଅମୃତ କୁଣ୍ଡରେ ଆଣି ଯେପରି ବିଷର ମଞ୍ଜିଟିଏ ପୋତିଦେଲେ ! ଚନ୍ଦନ ବୃକ୍ଷରେ କାଳ ସର୍ପକୁ ଛନ୍ଦିଦେଲା ପରି ବିଜୟ ପରି ସ୍ନେହଶୀଳ, ସତ୍ୟବ୍ରତ ପୁଅଟି ସହିତ ପ୍ରଭାବତୀ ପରି ନୀଚମନା ଝିଅକୁ ଛନ୍ଦିଦେଲେ !

ବଜ୍ରାହତା ହେଲେ ମଧ ଦୀର୍ଘଜୀବୀ ବନସ୍ପତି ପରି ହିଁ ଆଜିପର୍ଯ୍ୟନ୍ତ ଊର୍ଦ୍ଧ୍ୱମଥା ହୋଇ ରହି ଆସିଛନ୍ତି ନୀଳମଣି । ଆଜି ମନେହେଲା—ସମସ୍ତଙ୍କ ଆଗରେ ଆଉ ମୁହଁ ଟେକି ଚାଲିବାର ଉପାୟ ସୁଦ୍ଧା ନାହିଁ ।

x x x

ଏଥର ପ୍ରଭାବତୀକୁ ଚିହ୍ନିପାରି ଅନ୍ତଃପୁରର ଶତ୍ରୁ କେତେଜଣ ସୁବିଧା ନେଲେ । ନୀଳମଣିଙ୍କୁ ନିନ୍ଦା କରି ତାକୁ ପ୍ରଶଂସା କଲାକ୍ଷଣି ଦାନରେ ପ୍ରଭାବତୀ ସହସ୍ରଭୁଜା ହୋଇଯାଉଥିଲା । ଆଉ ନୀଳମଣି କରୁଥିବା ସମସ୍ତ ବ୍ୟୟକୁ କେବଳ ଅପବ୍ୟୟ ବୋଲି ଭାବିଲା । ମନେ ମନେ ସେ ନୀଳମଣିଙ୍କର ଜଣେ ପ୍ରଧାନ ଶତ୍ରୁ ହୋଇଗଲା ।

ପତ୍ନୀର ସୁନ୍ଦର ମୁହଁର ପ୍ରଲୋଭନରେ ପଡ଼ି ଯଦିବା କେବେ ଛୁଟିରେ ବିଜୟ ଘରକୁ ଆସୁଥିଲା, ଖୁଡ଼ୀମା'ଙ୍କ ନିନ୍ଦାର କୀର୍ତ୍ତନ ଶୁଣି ସଞ୍ଚିତ ଅନୁରାଗକୁ ମୁହୂର୍ତ୍ତକରେ ହରାଇ ଦେଉଥିଲା । ବିଜୟର ସେ ଗୋରା ଟକ ଟକ ସୁନ୍ଦର ହସ ହସ ମୁହଁଟା କ୍ରମଶଃ ବିଷଣ୍ଣରୁ ବିଷଣ୍ଣତର ହୋଇଗଲା । ଆଖି ତଳେ ଦେଖା ଦେଲା କଳା ଦାଗ, ହସିବା ପ୍ରାୟ ଛାଡ଼ିଦେଲା କହିଲେ ଚଳେ ।

ସବୁ ଦେଖନ୍ତି ନୀଳମଣି । ଜାଣନ୍ତି, କିନ୍ତୁ କ'ଣ କହି ଆଉ ସାନ୍ତ୍ୱନା ଦେବେ ଭାଷା ଖୋଜି ପାଆନ୍ତି ନାହିଁ । ବିଜୟର ବେକରେ ସେ ଯେ ବିଷଧର କାଳ ସର୍ପକୁ ଛନ୍ଦି ଦେଇଛନ୍ତି । ମୁକ୍ତିର ଉପାୟ ନାହିଁ ।

ତେବେକେ ନୀଳମଣି ଆଶାକୁ ଛାଡ଼ି ନାହାନ୍ତି । ପ୍ରଭାବତୀକୁ ସଜାଡ଼ିବାର ଆଶା ତଥାପି ରଖିଛନ୍ତି ସେ । ନୂଆକରି ତାକୁ ଗଢ଼ିବେ । ସେ ଘଟଣାଟି ଘଟିବା ପରଠାରୁ ନିଜେ ଉଦ୍ୟମ କରି ଥରକୁ ଥର ରଘୁମିଶ୍ରଙ୍କ ଘରକୁ ନାନା ପ୍ରକାର ଦ୍ରବ୍ୟର ବୋଝ ପଠାଇଛନ୍ତି । ପର୍ବପର୍ବାଣୀ ଆଳରେ ଲୁଗାପଟା ମଧ ପଠାଇଛନ୍ତି ।

କିନ୍ତୁ ନୀଳମଣିଙ୍କ ସେ ଚେଷ୍ଟା ବ୍ୟର୍ଥ ହୋଇଥିଲା । ପ୍ରଭାବତୀ ନିଜର ପ୍ରକୃତି ବଦଳାଇ ପାରିଲା ନାହିଁ । ଥରେ ନିଜର କୌଣସି ଯନ୍ତ୍ରପାତି କିଣିବା ପାଇଁ ହଜାରେ ଟଙ୍କା ନେଇ ଯାତ୍ରାର

ଆୟୋଜନ କରୁଥିଲା ବିଜୟ । ସୁଯୋଗ ଦେଖି ପ୍ରଭା ସେ ଟଙ୍କା ନେଇଯାଇଥିଲା । ଅତି କଷ୍ଟରେ ବିଜୟକୁ ଶାନ୍ତ ରହିବାର ଉପଦେଶ ଦେଇ ଆଉ ହଜାରେ ଟଙ୍କା ଦେଇଥିଲେ ନୀଳମଣି ।

ସାଧାରଣତଃ ପିତୃଗୃହକୁ ଯିବାକୁ କେବେହେଲେ ଆଗ୍ରହୀ ହେଉନଥାଏ ପ୍ରଭା । କିନ୍ତୁ ସେଦିନ ବିଜୟ ଯାଉ ନଯାଉଣୁ ସେଠାକୁ ଯିବାର ଇଚ୍ଛା ହେଲା ତା'ର । ସେ ଲୁଗାପଟା ସଜାଡ଼ିଲା ।

ବୁଦ୍ଧିମତୀ ନୀଳମଣି ଖଣ୍ଡିଏ ଚିଠି ଲେଖି ପଠାଇଥିଲେ ରଘୁମିଶ୍ରଙ୍କ ପାଖକୁ ପ୍ରଭାବତୀ ଯିବା ପୂର୍ବରୁ—ପ୍ରଭା ହାତରେ ହଜାରେ ଟଙ୍କା ପଠାଇଲି, ଆପଣ ନିଶ୍ଚୟ ରଖିବେ ।

ଚିଠିଟି ଆଗରୁ ପଠାଇଦେଲେ ନୀଳମଣି । ଚିଠିଟି ପଠାଇବା ମୂଳରେ ଦୁଇଟି ଉଦ୍ଦେଶ୍ୟ ଥିଲା । ଏକ ହେଉଛି ପ୍ରକୃତରେ ପ୍ରଭାବତୀ ଯଦି ଟଙ୍କା ନ ନେଇଥାଏ ତେବେ ଆପତ୍ତି କରିବ । ରଘୁ ମିଶ୍ରେ କ୍ଷୁବ୍ଧ ଭାବରେ କିଛି ଜଣାଇବେ । ଆଉ ପ୍ରଭା ଯଦି ଟଙ୍କା ନେଇଥାଏ ତ ଭବିଷ୍ୟତରେ ଆଉ ଏ ଧରଣର ଅନ୍ୟାୟ କରିବାକୁ ଡରିବ ।

ପ୍ରକୃତରେ ପ୍ରଭାବତୀ ସ୍ତମ୍ଭିତ ହୋଇଯାଇଥିଲା । ମନର ଅସହ୍ୟ-କ୍ରୋଧ ସତ୍ତ୍ୱେ ଧରାପଡ଼ିଯିବାର ଲଜ୍ଜାକର ଗ୍ଲାନିରେ ଆକଣ୍ଠ ବୁଡ଼ିଯାଇଥିଲା ।

ନୀଳମଣି ସତର୍କ ହେଲେ । ଭଣ୍ଡାର ଘର ଚାବି ଆଣି ଆଉ ଥରେ ବାନ୍ଧିଲେ ନିଜ କାନିରେ । ଦୀର୍ଘନିଃଶ୍ୱାସଟିଏ ପକାଇ ଭାବିଲେ—ମଣିଷ ଚାହିଁଲେ ଖାଲି ବିଶ୍ରାମ ମିଳିଯାଏ ନାହିଁ, ବିଶ୍ରାମ ନେବା ଅବସର ମଧ୍ୟ ଭାଗ୍ୟଦେବତାଙ୍କ ହାତ ମୁଠାରେ ରହିଛି । ଭାଗ୍ୟରେ ଥିଲେ ମିଳିବ ।

ସୁବିଧା ହାସଲ କରୁଥିବା ଅନ୍ତେବାସିନୀମାନେ ଏ ଘଟଣାରେ ଉତ୍‌କ୍ଷିପ୍ତା ହୋଇଗଲେ ଯେପରି । ପ୍ରଭାବତୀର ପ୍ରତିନିଧିତ୍ୱରେ ଗୋଟାଏ ବିରୋଧ ଦଳ ଗଢ଼ିଲେ ।

ଅତୀତରେ ନୀଳମଣିଙ୍କ ନିନ୍ଦାରେ ବ୍ୟଥିତ ହୋଇ ବିଜୟ ଅନେକଥର ପ୍ରସ୍ତାବ ଦେଇଥିଲା— ଏହି ସବୁ ଆଶ୍ରିତଙ୍କୁ ଦୂରଦୂରାନ୍ତରକୁ ସ୍ଥାନାନ୍ତରିତ କରିଦେବାକୁ । ଏତେଦିନ ପରେ ହଠାତ୍ ନୀଳମଣି ସେ ପ୍ରସ୍ତାବଟାକୁ କାର୍ଯ୍ୟକାରୀ କଲେ । ଆଶ୍ରିତମାନଙ୍କ ସମସ୍ତ ଅଶ୍ରୁପାତ, ଅନୁନୟ, ବିନୟ ବ୍ୟର୍ଥ ହୋଇଗଲା । ସର୍ବପ୍ରଥମେ ଗୃହଶତ୍ରୁମାନଙ୍କୁ ବିଦାୟ କରିଦେଲେ ସେ । ଅବଶ୍ୟ ତୀର୍ଥମାନଙ୍କରେ ସେମାନଙ୍କ ରହିବା ଖର୍ଚ୍ଚ ତାଙ୍କୁ ହିଁ ବହନ କରିବାକୁ ପଡ଼ିଥିଲା । ନ କରିଥା'ନ୍ତେ କିପରି ? ଅନେକ କାଳରୁ ଏ ଘରେ ସେମାନେ ଯେ ରହି ଆସିଥିଲେ ! କେତେ ଜଣ ଏ ଘରେ ଜନ୍ମ ହୋଇଥିଲେ ମଧ୍ୟ ।

ସମସ୍ତେ ନିନ୍ଦା କଲେ । କହିଲେ—ଗୋରା ପଲଟଣଙ୍କଠାରୁ ମଧ୍ୟ ଆହୁରି ଅଧିକ କଡ଼ା ନୀଳମଣିଙ୍କ ଶାସନ ।

x x x

ପ୍ରଭାବତୀ ସମ୍ପୂର୍ଣ୍ଣ ଏକାକିନୀ ହୋଇଗଲା । ସମସ୍ତ ପ୍ରକାର କ୍ଷମତାରୁ ବଞ୍ଚିତା ହୋଇ କ୍ରୁଦ୍ଧା ସର୍ପିଣୀ ପରି ବିଷ ଉଦ୍‌ଗାର କରିବାକୁ ଲାଗିଲା ଯେପରି ସହସ୍ରଧାରାରେ । ସେ ବିଷରେ

ଜର୍ଜ୍ଜରିତା । ନୀଳମଣି ଅତିଷ୍ଠ ହୋଇ ଥରେ ବିଜୟ ପାଖରେ ପ୍ରସ୍ତାବ ବାଢ଼ିଲେ – ପ୍ରଭା ହାତରେ ଘରର ସବୁ ଦାୟିତ୍ୱ ଦେଇ ନିଜେ କାଶୀବାସିନୀ ହେବେ !

ମଳିନ ହସଟିଏ ହସି ବିଜୟ ଉତ୍ତର ଦେଲା–ଭାରି ଭଲ ହେବ ଖୁଡ଼ୀମା, ଚାଲ ତମ ସଙ୍ଗେ ମୁଁ ମଧ୍ୟ ଚାଲିଯିବି । ଏ ସବୁ ମତେ ମଧ୍ୟ ଆଉ ଭଲ ଲାଗୁନାହିଁ ।

ନୀଳମଣି ହତବାକ୍ ହୋଇ କିଛିକ୍ଷଣ ପାଇଁ ଚାହିଁ ରହିଲେ ତା' ମୁହଁକୁ !

ବିଜୟ କହିଲା, ତମେ ଚାଲିଗଲେ ଏ ଘର, ଏ ସମ୍ପତ୍ତି ପୂରାପୂରି ନଷ୍ଟ ହୋଇଯିବ । ଏଠି ବସି ବସି ମୁଁ ଆଉ ସେ ଧ୍ୱଂସକୁ ଦେଖି ପାରିବିନି !

ଯା'ପରେ ଆଉ ନୀଳମଣି କ'ଣ କହିଥା'ନ୍ତେ ?

କଥାରେ ଅଛି–ହିଂସା ପରକୁ ଜଳାଇ ଦିଏ ସତ, କିନ୍ତୁ ନିଜକୁ ମଧ୍ୟ ଦଗ୍ଧ କରେ । ବୃକ୍ଷରୁ ହିଁ ଅଗ୍ନିର ଜନ୍ମ; କିନ୍ତୁ ସେହି ଅଗ୍ନି ବିରାଟ ବୃକ୍ଷକୁ ଏକ ଭସ୍ମସ୍ତୂପରେ ପରିଣତ କରି ଦେଇପାରେ ।

ପ୍ରଭାବତୀର ମନର ଜ୍ୱାଳା ଅନ୍ୟମାନଙ୍କୁ ଜଳାଉଥିଲା ସତ, କିନ୍ତୁ ତା' ନିଜ ଶରୀରକୁ ମଧ୍ୟ ଯେପରି ଜାଳି ଦେଇଥିଲା । କାହାରିକୁ ଦଂଶନ କରି ନ ପାରିଲେ ନାଗୁଣୀ ଯେପରି କ୍ରୋଧରେ ନିଜକୁ ହିଁ ଦଂଶନ କରେ, ସେହିପରି ନିଜକୁ ଦଂଶନ କରିଥିଲା ସେ । କିଛିଦିନ ପରେ ମୃତ କନ୍ୟାସନ୍ତାନଟିଏ ପ୍ରସବ କରି ଚିରକାଳ ପାଇଁ ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇପଡ଼ିଲା ।

ବିଜୟ ନିଜେ ଚିକିତ୍ସକ, ଚିକିତ୍ସାରେ କୌଣସି ତ୍ରୁଟି କରି ନ ଥିଲା । ସ୍ନେହ, ଆଦର, ସେବା ଯତ୍ନରେ ନୀଳମଣି ମଧ୍ୟ ତ୍ରୁଟି କରି ନାହାନ୍ତି । ତା'ର ସମସ୍ତ ଦୋଷକୁ କ୍ଷମାକରି ତାକୁ ବିବେକ ବୁଦ୍ଧିହୀନା ଶିଶୁଟିଏ ପରି ହିଁ ଦେଖି ଆସିଛନ୍ତି । କଲିକତାରୁ, ପାଟନାରୁ ସାହେବ ଡାକ୍ତରଙ୍କୁ ଅଣା ଯାଇଥିଲା; କିନ୍ତୁ ମନର ନିଆଁରେ ପ୍ରଭାବତୀ ଦଗ୍ଧ କରି ସାରିଥିଲା ନିଜର ସ୍ୱାସ୍ଥ୍ୟକୁ ।

ଖାଲି ସେତିକି ନୁହେଁ, ବଂଶରେ ଉତ୍ତରାଧିକାରୀର ସମ୍ଭାବନା ମଧ୍ୟ ରହିଲା ନାହିଁ । ନୀଳମଣିଙ୍କ ମୁଣ୍ଡରେ ବଜ୍ର ପଡ଼ିଲା ଯେପରି । କେତେ ବର୍ଷ ପରେ ଦ୍ୱିତୀୟ ବିବାହର ପ୍ରସ୍ତାବ ଉଠାଇଲାକ୍ଷଣି ବାଧା ଦେଇ ବିଜୟ ପୋଷ୍ୟପୁତ୍ର ଗ୍ରହଣ କରିବାର କଥା କହିଲା ।

ପୋଷ୍ୟପୁତ୍ରର ଚାରା ପୋତି ଦେଇଥିଲେ ଚନ୍ଦ୍ରଶେଖର । କଥାଟା ଶୁଣି ନୀଳମଣିଙ୍କ ଅନ୍ତର ଶିହରି ଉଠିଲା । ବିଜୟକୁ ବୁଝାଇବାକୁ ବହୁତ ଚେଷ୍ଟା କଲେ କିନ୍ତୁ ନିଜର ବିବାହିତ ଜୀବନର ଏହି ଦୁଃଖାତ୍ମକ ପରିଣତି ବିବାହ ପ୍ରତି ଦାରୁଣ ବୈରାଗ୍ୟ ଜନ୍ମାଇଥିଲା ବିଜୟର ମନରେ । ସେ ଆଦୌ ସମ୍ମତ ହେଲାନାହିଁ ଆଉଥରେ ବାହା ହେବାକୁ ।

ତା'ପରେ—ତା'ପରେ ଯେଉଁଦିନ ଅତି ଆନନ୍ଦିତ ମନରେ ହସି ହସି ସତ୍ୟବ୍ରତକୁ ପୋଷ୍ୟପୁତ୍ର କରିବାକୁ କହିଲା ବିଜୟ, ଆଖି ଆଗରେ ସାପ ଦେଖିଲା ପରି ଚମକି ପଡ଼ି କହି ଉଠିଲେ ନୀଳମଣି—ନା, ନା, ବିଜୁ ସେ କଥା ହୋଇ ପାରିବନି, କଦାପି ନୁହେଁ ।

ବିସ୍ମୟବିମୂଢ଼ ବିଜୟ ପଚାରିଲା—କାହିଁକି ଖୁଡ଼ୀମା' ? ଏତେ ଭଲ ପିଲା ମୁଁ ଆଉ କେଉଁଠି ଦେଖିନି, ତା'ଛଡ଼ା ସେ ତ ତମ ନିଜର—

ନୀଳମଣିଙ୍କ ଅନ୍ତରତଳେ ଝଡ଼ ବହୁଥିଲା ଯେପରି । ହଁ, ସତ୍ୟବ୍ରତ ତାଙ୍କ ନିଜର, ତାଙ୍କ ସାନଭାଇ ରମେଶର ପୁଅ, ତାଙ୍କ ନିଜ ପୁତୁରା । ଆଉ ସେଇଥିପାଇଁ କେବଳ ଏ କଥା ସମ୍ଭବ ହୋଇପାରିବ ନାହିଁ ।

ଅନେକ ବର୍ଷ ତଳେ—କାଳେ ନିଜ ପିତୃବଂଶର ଶିକ୍ଷାରେ ପଡ଼ି ନୀଳମଣି ମତ ବଦଳାଇ ବିଜୟକୁ ତ୍ୟାଗ କରି ସେହି ବଂଶର ଦାୟାଦକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିବେ, ସେହି ଆଶଙ୍କାରେ ଚନ୍ଦ୍ରଶେଖର ଓ ମାହେଶ୍ୱରୀ ତାଙ୍କୁ ତାଙ୍କ ବାପ ଘରକୁ ଯିବାକୁ ଛାଡ଼ି ଦେଇ ନ ଥିଲେ । ଏ ବିରାଟ ସମ୍ପତ୍ତିର ଏକ ଅଂଶ ସେ ବଂଶକୁ ଚାଲିଯିବ, ଏ ଭୟଥିଲା ସେମାନଙ୍କର !

ଭଗବାନଙ୍କର କି ନିଷ୍ଠୁର ପରିହାସ ସତେ ! ସଂସାରରେ ଏତେ ପିଲା ଥାଉ ଥାଉ ତାଙ୍କରି ଭାଇ ରମେଶର ପୁଅକୁ ନିଜର ପୋଷ୍ୟପୁତ୍ର କରିବ ବୋଲି ବାଛିଲା ବିଜୟ ! ଆର୍ତ୍ତକଣ୍ଠରେ ନୀଳମଣି କହିଲେ—ସେ କଥା ଅସମ୍ଭବ ବିଜୁ, ତା ହୋଇ ପାରିବନି ।

—କାହିଁକି ଖୁଡ଼ୀମା ? ମାମୁ ଏତେ ଭଲ ମଣିଷ, ପିଲାଗୁଡ଼ିକ ତାଙ୍କର ସମସ୍ତେ ଭଲ, ଭଲ ପାଠ ପଢୁଛନ୍ତି । ସବୁଠାରୁ ବଡ଼ଟି ଶିବୁ । ତାକୁ ଡାକ୍ତରୀ ପଢ଼ାଇବା ପାଇଁ ମୁଁ ମାମୁଙ୍କୁ କହିଛି । ଶିବୁକୁ ହିଁ ପୋଷ୍ୟପୁତ୍ର କରିବାକୁ ଇଚ୍ଛାଥିଲା ମୋର । ହେଲେ ବଡ଼ ପୁଅକୁ ତ ସେ ଦେଇ ପାରିବେନି, ତା'ତଳ ସତ୍ୟବ୍ରତକୁ ଆମେ ଆଣିବା । ଖୁଡ଼ୀମା, ତମେ ଜମା ମନା କରନି ।

ନୀଳମଣି କ'ଣ କହିବେ ? ଚନ୍ଦ୍ରଶେଖର ଓ ମାହେଶ୍ୱରୀଙ୍କ ଆଶଙ୍କା କଥା କିପରି କହିବେ ? ପରଲୋକଗତ ଆତ୍ମା ବୋଲି ଯଦି କିଛି ଥାଆନ୍ତି, ତା'ହେଲେ ସେମାନେ ଯେ ଏ ଘଟଣାରେ କେତେ ବେଶୀ ବ୍ୟଥିତ ହେବେ ସେ କଥା କିପରି କହିବେ ସେ ବିଜୟକୁ ?

ଟିକିଏ ଭାବି ସେ କହିଲେ—ବିଜୁ, ଲୋକଙ୍କ କଥା ଜାଣିନାହୁଁ ? ମତେ ସମସ୍ତେ ନିନ୍ଦା କରିବେ, କହିବେ ମୋ ଶିକ୍ଷାରେ ପଡ଼ି ତୁ ଏଇୟା କଲୁ । ବରଂ ନିତ୍ୟାନନ୍ଦଟିକୁ ଆଣିବା ।

ନିତ୍ୟାନନ୍ଦ ହେଉଛି ମାହେଶ୍ୱରୀଙ୍କ କକେଇଙ୍କ ନାତି ।

ଏତେକାଳ ପରେ ବୋଧହୁଏ ସେହି ଥରଟିଏ ପାଇଁ କେବଳ ଖୁଡ଼ୀମା'ଙ୍କ ଉପରେ ରାଗିଥିଲା ବିଜୟ । କଥା ନ କହି ମୁହଁ ଥମ୍ ଥମ୍ କରି ଉଠି ଯାଇଥିଲା ପାଖରୁ । ପୁଣି କେତେବେଳ

ପରେ ନିଜକୁ ସମ୍ଭାଳି ହସି ହସି ଆସି ପହଞ୍ଚିଲା ପାଖରେ । କହିଥିଲା—ଖୁଡ଼ୀମା, ମୋ ପୋଷ୍ୟପୁତ୍ରକୁ ମୁଁ ବାଛିବି । ତମକୁ ହଁ କରିବାକୁ ପଡ଼ିବ ।

ହାରିଯାଇ ନୀଳମଣି କହିଥିଲେ—ତା' ହେଲେ ମୁଁ କହୁଛି, ସତ୍ୟକୁ ଆଣେ । ଆଉ ନିତ୍ୟାନନ୍ଦକୁ ମଧ୍ୟ ଆଣେ । ତା'ହେଲେ ଅନ୍ତତଃ ସହଜରେ ଲୋକେ ମତେ ଦୋଷ ଦେଇ ପାରିବେ ନାହିଁ ।

ପୁଣି ରାଗି ଯାଇ କହିଥିଲା ବିଜୟ—ଥାଉ ଥାଉ ଖୁଡ଼ୀମା' । ଲୋକନିନ୍ଦାକୁ ଡରି ଆମେ ଗୋଟିଏ ଭଲପିଲାର ଭବିଷ୍ୟତ୍ କାହିଁକି ନଷ୍ଟ କରିଦେବା ଯେ ? ନିତ୍ୟାନନ୍ଦ ରହିଲେ ସତ୍ୟ ଭଲ ମଣିଷଟିଏ ହୋଇ ପାରିବ ନା ? ତମେ ନିଜେ କହିଲ ଖୁଡ଼ୀମା' ?

ବିଜୟର କଥା ସତ । ମାହେଶ୍ୱରୀ ଅନେକ ଦିନରୁ ମରି ଯାଇଥିଲେ ସୁଦ୍ଧା ନୀଳମଣି ବିଜୟର ମାମୁଁଘର ସଙ୍ଗେ ସମ୍ପର୍କ ଛିଣ୍ଡାଇଦେଇ ନାହାନ୍ତି । ପୂଜାପର୍ବରେ ଡକରା ହକରା ସେକାଳୁ ଚାଲି ଆସୁଛି । ପିଲାଙ୍କୁ ଡକାଇ ଆଣି କିଛି କିଛି ଦିନ ପାଖରେ ରଖିଛନ୍ତି ନୀଳମଣି, ତେଣୁ ସମସ୍ତଙ୍କୁ ଚିହ୍ନନ୍ତି ।

ନୀଳମଣିଙ୍କୁ ନୀରବ ରହିବା ଦେଖି ବିଜୟ କହିଲା—ଲୋକଙ୍କ କହିବାଟାକୁ ଆମେ ପୁଣି ଖାତିର କରିବା ଖୁଡ଼ୀମା' ? ଏ ବଂଶର ଭଲ ମନ୍ଦ ଦେଖିବାନି ? ନିଜର ପୁଅ ହେଉ ବା ପୋଷିତ ପୁଅ ହେଉ, ଯୋଗ୍ୟଟିଏ ହେଲେ ହିଁ ବଂଶର ଟେକ ରଖି ପାରିବ, ବୁଢ଼ା ବୟସରେ ତମର ଭାର ନେବ, ମୋର ଭାର ନେବ ।

—ମୁଁ କ'ଣ ଅମର ଫଳ ଖାଇ ଜନ୍ମ ହେଇଛି କି ରେ ବିଜୁ ? ଆଉ ମୋର ବା କି ଚିନ୍ତା ? ମୁଁ ଯେତେଦିନ ବଞ୍ଚିଥିବି, ତୁ ତ ଅଛୁ ମୋର ଭାର ନେବାକୁ । ତୋ' ରି ହାତରେ ସବୁ ଟେକିଦେଇ ମୁଁ ଆଖି ବୁଜି ଦିଅନ୍ତି ଯଦି, ସେ ମୋର ମହାଭାଗ୍ୟ ହୁଅନ୍ତା ।

—ହଉ ହେଲା । ତମ ଭାର ମୁଁ ନେବି । କିନ୍ତୁ ମୋର ଭାର ଯେ ନେବ ତାକୁ ତ ପୁଣି ଠିକ୍ ରୂପେ ଏବେ ଠାରୁ ଗଢ଼ିବାକୁ ପଡ଼ିବ ? ତମେ ମନା କର ନାହିଁ ଖୁଡ଼ୀମା' ! ସତ୍ୟବ୍ରତଟିକୁ ଆମେ ଆଣିବା ।

ବାଧ ହୋଇ ସମ୍ମତି ଦେବାକୁ ପଡ଼ିଥିଲା ନୀଳମଣିଙ୍କୁ ।

x x x

ଓଃ ! ଓଃ ! ଓଃ !

କଡ଼ ଲେଉଟାଉ ଲେଉଟାଉ ନୀଳମଣିଙ୍କ ଆର୍ତ୍ତ କଣ୍ଠରୁ ବାହାରୁଛି—ଓଃ !!

ଦେହର ଯନ୍ତ୍ରଣା ନା ମନର ଯନ୍ତ୍ରଣା ବାରିପାରୁ ନାହାନ୍ତି ସେ ।

ହେଲେ—ଭାର ନେଲା କିଏ ? କିଏ କାହାର ଭାର ନେଲା ? ବିଜୟ ନୀଳମଣିଙ୍କର ଭାର ନେଲା ନା ନୀଳମଣି ବିଜୟର ଭାର ନେଲେ ?

ହଁ–ବିଜୟର ପରୁଆନା ହିଁ ଆଗ ଆସି ପହଞ୍ଚିଗଲା । ହୁଏ ତ ସତରେ ନୀଳମଣି ଅମର ଫଳ ଖାଇ ଜନ୍ମ ହୋଇଥିଲେ । ସେକଥା ମନେପଡ଼ିଲେ ନୀଳମଣିଙ୍କ ଜରାଜୀର୍ଣ୍ଣ ଆଖି ଦୁଇଟା ଏବେ ମଧ୍ୟ ପୂରିଯାଉଛି ଲୁହରେ ।

ବିଜୟକୁ ସେ ନିଜେ ଜନ୍ମ କରି ନଥିଲେ ସତ; କିନ୍ତୁ ନିଜ ଜନ୍ମିତ ପୁତ୍ର ଯଦି ହୋଇଥା'ନ୍ତା, ତା'ହେଲେ କ'ଣ ୟାଠାରୁ ଅଧିକ ସ୍ନେହ ସେ ତାକୁ କରିଥା'ନ୍ତେ ?

ବିଜୟ ଜିଦ୍‌କରି ସତ୍ୟବ୍ରତକୁ ନେଇ ଆସିଲା । ପୁଣି ଖାଲି ସତ୍ୟବ୍ରତକୁ ନୁହେଁ, ତା' ସହିତ ଦେବବ୍ରତକୁ ମଧ୍ୟ । କହିଲା–ଖୁଡ଼ୀମା' ! ଏକୁଟିଆ ରହିଲେ ସତ୍ୟର ମନ ଖରାପ ଲାଗିବ । ଦି'ଭାଇଯାକ ଏକାଠି ରହିଲେ ବେଶ୍ ଭଲ ହେବ । ଓଃ, ମୋର ପିଲାଦିନଟା ଯେ କି ଏକୁଟିଆ ମତେ ନ ଲାଗିଛି ! ଦୁଃଖଟାକୁ ମୁଁ ନିଜ ଅଙ୍ଗରେ ନିଭେଇଛି ।

ପିଲା ଦୁଇଟି ବିଜୟର ଅପରିଚିତ ନଥିଲେ । ପୂଜାପାର୍ବଣ ଦିନମାନଙ୍କରେ ତ ଆସୁଥିଲେ ଏ ଘରକୁ, ତା'ଛଡ଼ା ତା'ର ଚାକିରିସ୍ଥଳରେ ହିଁ ସଂସ୍କୃତ ଅଧ୍ୟାପକରୂପେ ନିଯୁକ୍ତି ପାଇଥିଲେ ମାମୁ, ଅର୍ଥାତ୍ ନୀଳମଣିଙ୍କ ଭାଇ ।

ରାସ୍ତାର ଏ ପଟରେ ବିଜୟର ଘର, ରାସ୍ତା ଆରପଟେ ଅଧ୍ୟାପକଙ୍କ ଘର । ତେଣୁ ମାମୁ ଭଣଜାଙ୍କ ଭିତରେ ବହୁତ ସୌହାର୍ଦ୍ଦ୍ୟ ଜନ୍ମିଥିଲା । ବିଜୟର ଚାକର ପୂଝାରୀ ଥିବା ଖାଲି କ୍ୱାଟର୍ସଟି ସବୁ ପିଲାଙ୍କର କ୍ରୀଡ଼ାସ୍ଥଳୀ ହୋଇଥିଲା । ଆମ୍ବ, ପିଜୁଳି, ଜାମୁଗଛ ଅଛି । ପୁଣି କାନ୍ଥକଡ଼କୁ ଲାଗି ଅଛି କାଶୀବରକୋଳି ଗଛଟାଏ–ସାହିଟାଯାକର ପିଲାଙ୍କର ଦୃଷ୍ଟି ତା'ରି ଉପରେ । ପିଲାଙ୍କର ଦଉଡ଼ା ଦଉଡ଼ି, ଫଳ ତୋଳା, ଫଳ ଖିଆ ଦେଖୁଦେଖୁ ଛୁଟିଦିନ ମାନଙ୍କରେ ବାରଣ୍ଡାରେ ଆରାମ ଚଉକିଟା ଉପରେ ଅଧାଶୁଆ ଭାବରେ ଶୋଇ ବିଜୟର ଖରାବେଳଟାଯାକ କଟି ଯାଉଥାଏ ।

କଳ୍ପନାର ଚକ୍ର ଘୂରିବୁଲେ–ସବୁ ଯଦି ଭଲରେ ହୋଇଥା'ନ୍ତା, ଅର୍ଥାତ୍ ପ୍ରଭାବତୀ ଠିକ୍ ଥାଆନ୍ତା, ତା' ନିଜର ତିନି ଚାରୋଟି ପୁଅ ଝିଅ ଏମିତି ଦଉଡ଼ା ଦଉଡ଼ି କରୁଥା'ନ୍ତେ, ଚାକର ପୂଝାରୀଙ୍କ ପାଖରେ ଅଳି କରୁଥା'ନ୍ତେ ଆମ୍ବ କଷି ବା ପାଚିଲା ପିଜୁଳି ତୋଳିଦେବା ପାଇଁ, ଦି' ପହରେ ବିଶ୍ରାମ ନେବାର କଟକଣାକୁ ନ ମାନି ସାରା ଦିନଟା କଟାଉଥାଆନ୍ତେ ଏ ଗଛମୂଳ ମାନଙ୍କରେ, ମାମୁଙ୍କ ପରି ଆନନ୍ଦ ଓ କୋଳାହଳ ଭିତରେ ତା' ଦିନଗୁଡ଼ିକ ମଧ୍ୟ କଟି ଯାଇଥା'ନ୍ତା ।

ଶିଶୁମାନଙ୍କ ଦରୋଟି କଥାବାର୍ତ୍ତା ଯେଉଁ ଘରେ ଗୁଞ୍ଜରିତ ହୋଇନାହିଁ, ସେ ଘର କି ଘର ? ସେ ଘର ଘର ନୁହେଁ । ସେ ଜୀବନ ଜୀବନ ନୁହେଁ । ଓଃ, ତା' ଜୀବନଟା କେଡ଼େ ନିଃସଙ୍ଗ– ଗୋଟାଏ ମରୁଭୂମି ପରି ଶୁଖିଲା ।

ହୁଏତ ବିଜୟର ନିଜ ଜୀବନର ଦୁର୍ଦ୍ଦଶା ହିଁ ତାକୁ ଶିଶୁମାନଙ୍କ ପ୍ରତି ଅଧିକ ସ୍ନେହପ୍ରବଣ କରିଥିଲା । ଚିକିତ୍ସକର ନିଷ୍ଠୁର କର୍ତ୍ତବ୍ୟ କରି ମଧ୍ୟ କରୁଣାର ଅବତାର ଥିଲା ସେ —ଆଉ କରୁଣାର

ଅବତାର ଥିଲା ବୋଲି ତ ପ୍ରଭାବତୀର ସମସ୍ତ ଅପରାଧ ସତ୍ତ୍ୱେ ତାକୁ କ୍ଷମାକରି ବଞ୍ଚିଥିବା ପର୍ଯ୍ୟନ୍ତ ତା'ର ଯତ୍ନ ନେଇଥିଲା । ଅମୂଲ୍ୟ ରତ୍ନଟିକୁ ମାଟିପିଣ୍ଡୁଳା ଭାବି ପ୍ରଭାବତୀ ସିନା ଚରମ ଭୁଲ୍ କରି ନିଜର ସର୍ବନାଶକୁ ଡାକି ଆଣିଥିଲା !

ଆଉ ପ୍ରଭାବତୀକୁ ବୋହୂ ରୂପରେ ବାଛିବାରେ ନିଜେ ନୀଳମଣି ମଧ କି ମାରାତ୍ମକ ଭୁଲ୍ ନ କଲେ !

କିନ୍ତୁ ଏ ଜଗତରେ କିଏ ଭୁଲ୍ ନ କରେ ?

ମଧୁଛନ୍ଦାର ଭାଷାରେ କମ୍ପ୍ୟୁଟର ମଧ ଭୁଲ୍ କରି ଦେଉଛି !! ନୀଳମଣି ତ ଛାର ମନୁଷ୍ୟ ମାତ୍ର ।

ଓଃ ! ଓଃ !

ଶେଯରେ ଶୋଇ ରହି ଖାଲି ଭାବିବାରେ ମଧ କ'ଣ କ୍ଳାନ୍ତି ନାହିଁ ? ନୀଳମଣିଙ୍କ ଆଖିର ପତା ଦୁଇଟି ଏଥର ନିଦରେ ଭାରିହୋଇ ଆସୁଛି ।

ସେ ଛାଇ ଛାଇ ନିଦ ଭିତରେ ଥରକୁ ଥର ମନେପଡୁଛି—ସୁନନ୍ଦା ଏ ପର୍ଯ୍ୟନ୍ତ ଫେରି ନାହିଁ । ମଧୁଛନ୍ଦା ଆଜି ବାହାରେ ରହିବ ।

ଗୋଟାଏ ମଧୁର ବାସ୍ନାରେ ଯେପରି ସମ୍ମୋହିତା ହୋଇ ଯାଉଛନ୍ତି ନୀଳମଣି ! କ'ଣ ଘରେ ଦିଆଯାଇଥିବା ଝୁଣା, ଗୁଗ୍‌ଗୁଳର ଧୂପ ବାସ୍ନା ଏ ? ନା ଶରତରେ ଫୁଟିଥିବା ଶେଫାଳୀ ଫୁଲର ବାସ୍ନା ? ମିଠା ଏବଂ କଡ଼ା ମିଶ୍ରିତ ଏକ ଅପୂର୍ବ ବାସ୍ନା ସେ ।

କ୍ରମଶଃ ହଜି ଯାଉଛନ୍ତି ନୀଳମଣି । ହଜି ଯାଉଛନ୍ତି ନିଦ ସମୁଦ୍ରର ଅତଳ ଗହ୍ବରରେ, ଏକ ପ୍ରଶାନ୍ତିମୟ ରାଜ୍ୟରେ ।

## ( ୯ )

ତା'ପର ଦିନର କଥା ।

ସେ ପର୍ଯ୍ୟନ୍ତ ମଧୁଛନ୍ଦା ପିକନିକ୍‌ରୁ ଫେରି ନ ଥିଲା । କଥାଟା କଣ୍ଟାଭଳି ଖେଞ୍ଚି ହେଉଥିଲା ନୀଳମଣିଙ୍କ ମନରେ । ସ୍ୱରୂପା ଯାଇ ଦୂରରେ ରହି ପଢ଼ାପଢ଼ିର ପ୍ରସ୍ତାବ ଉଠାଇବା ଦିନ ମନଟା ଏହିପରି ଟଣକି ଉଠିଥିଲା ତାଙ୍କର । ନା, ଚଞ୍ଚଳ ଝିଅ ଦୁଇଟାକୁ ବାହା କରିଦେଇ ଏ ଚିନ୍ତାରୁ ମୁକ୍ତି ପାଇବେ ସେ ।

ସେ ଭାବିଲେ—ହୁଁ ! ଆଜିକାଲିର ମା'ମାନଙ୍କ କଥା ଦେଖ ! କେଡ଼େ ନିଶ୍ଚିନ୍ତରେ ରହିଛି ସୁନନ୍ଦା ଅଥଚ ସେ ମରୁଛନ୍ତି ଭାବି ଭାବି !

ଏହି ସୁନନ୍ଦା ପ୍ରଥମେ କେତେ ବର୍ଷ ବେଶ୍ ବୋହୂଟିଏ ହୋଇଥିଲା । ସମୟର ସ୍ରୋତ ବଦଳି ଗଲା । ସମୟ ସ୍ରୋତକୁ କିଏ ବା ବାଧା ଦେଇ ପାରିବ ? ବାଧା ଦେଲେ ଆବର୍ତ୍ତ ସୃଷ୍ଟି ହେବ, ସେହି ଆବର୍ତ୍ତରୁ ପ୍ରଳୟ ସୃଷ୍ଟି ହେବା ମଧ ବିଚିତ୍ର ନୁହେଁ । ବାଧା ଦେଇଥିଲେ ପରିସ୍ଥିତି ହୁଏତ ବିକ୍ଷୁବ୍ଧ ହୋଇ ଯାଇଥାନ୍ତା, ଘରର ଶାନ୍ତି ନଷ୍ଟ ହୋଇଥାନ୍ତା !

ବାଧା ଦେବାକୁ କ'ଣ ଡରିଲେ ନୀଳମଣି ?

ହଁ, ଡରିଲେ ।

ପ୍ରଭାବତୀଙ୍କୁ ସୁଧାରିବାକୁ ଯାଇ ତାଙ୍କ ମନର ମୂଳଦୁଆ ଚହଲି ଯାଇଥିଲା । ସେହି ଦିନୁ କିପରି ଗୋଟାଏ ଅବସାଦ ଗ୍ରାସ କରିଥିଲା ତାଙ୍କୁ । କିନ୍ତୁ, ସେତେବେଳେ ବିଜୟ ଆପଣା ଦୁଃଖକୁ ଘୋଡ଼ାଇ ପକାଇ ତାଙ୍କୁ ଭାଙ୍ଗି ପଡ଼ିବାକୁ ଦେଇ ନଥିଲା । କହିଥିଲା ସେ—ଖୁଡ଼ୀମା, ତମେ ଭାଙ୍ଗି ପଡ଼ିଲେ ରୂପଦେଈପୁରର ଏ ବିରାଟ ଜମିଦାରୀ ଭାଙ୍ଗି ପଡ଼ିବ । ଘରର ଚୂନ ଯେତେ ଉଚ୍ଚମାନର ହୋଇଥିଲେ ବି ମୂଳଦୁଆ ଭୁଷୁଡ଼ିଲେ ସେ ଘର କେତୋଟି ମୁହୂର୍ତ୍ତରେ ମାଟି ସହିତ ମିଶିଯିବ ।

ବିଜୟ କ'ଣ ଜାଣି ପାରିଥିଲା ଆଗରୁ ଯେ ତା'ର ଜୀବନ କାଳର ପରିସୀମା ନୀଳମଣିଙ୍କଠାରୁ କମ୍, ବହୁତ କମ୍ ! ସୁଦକ୍ଷ ଆଇନଜ୍ଞମାନଙ୍କୁ ଡକାଇ ପରାମର୍ଶ କରି କେତେ ଆଗରୁ ସେ ଉଇଲ କରି ଦେଇଥିଲା ସତେ ! ଆଉ କେତେ ସୁଚତୁର ଭାବରେ ତାଙ୍କୁ ଏ ବିରାଟ ଭୂସମ୍ପତ୍ତିର ଏକଛତ୍ରବାଦିନୀ ସାମ୍ରାଜ୍ଞୀ କରି ଦେଇଗଲା । ନୀଳମଣିଙ୍କ ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନୀଳମଣି ହିଁ ପ୍ରଭୁ, ତାଙ୍କରି ଇଚ୍ଛା, ତାଙ୍କରି କଥା ଅନୁସାରେ ସମସ୍ତ କାର୍ଯ୍ୟ ପରିଚାଳିତ ହେବ ।

ହଠାତ୍ ହୃଦଯନ୍ତ୍ରକ୍ରିୟା ବନ୍ଦ ହୋଇ ମୃତ୍ୟୁ ହୋଇଗଲା ବିଜୟର ।

ଓଃ ! ଭାବିଲା କ୍ଷଣି ଛାତି ଭିତରେ ଗୋଟାଏ ବିରାଟ ଶୂନ୍ୟତା ଅବୋଧ ଯନ୍ତ୍ରଣା ସୃଷ୍ଟି କରି ଜଳର ଘୂର୍ଣ୍ଣି ପରି ହୃଦ୍‌ଯନ୍ତ୍ରଟାକୁ ମନ୍ଥି ଦେଉଛି । ସେଇଥିପାଇଁ ନୀଳମଣିଙ୍କ କଣ୍ଠରୁ ଆପେ ଆପେ ବାହାରି ଯାଉଛି ଗୋଟାଏ ଆର୍ତ୍ତଧ୍ୱନି—ଓଃ !

ବିଜୟ ଚାଲିଗଲା ପରେ ନୀଳମଣିଙ୍କର ଇଚ୍ଛା ହୋଇଥିଲା—ଏସବୁ ଛାଡ଼ି ଦେଇ ଯେଉଁଆଡ଼େ ଦୁଇ ଆଖି ଯିବ ଚାଲିଯିବେ । ଆଉ ନୁହେଁ । ଆଉ ସେ ପାରିବେନି, ସହି ପାରିବେନି, ସହିବା ଶକ୍ତି ସୀମା ଅତିକ୍ରମ କରିଗଲାଣି ।

ସେତିକିବେଳେ ଯଦି ବିଷର ପାତ୍ରଟିଏ କିଏ ମୁହଁ ଆଗରେ ଧରାଇ ଦେଇଥା'ନ୍ତା, ହସି ହସି ପିଇ ଦେଇଥା'ନ୍ତେ ନୀଳମଣି । କିନ୍ତୁ ନୀଳମଣି ଅମର ଫଳ ଖାଇ ଜନ୍ମ ହୋଇଛନ୍ତି । ତାଙ୍କ

ହୃଦ୍‌ଯନ୍ତ୍ରଟା କୁଆଡ଼େ ବହୁତ ଶକ୍ତିଶାଳୀ । ବିଜୟ କହିଦେଇ ଯାଇଛି—ସେ ପରା ଚୌଧୁରୀ ବଂଶର ମୂଳଦୁଆ ! ସେ ବିଚଳିତ ହେଲେ ସବୁ ଦୋହଲିଯିବ । ଶ୍ୱଶୁର ଘରର ଏ ବିରାଟ ଅନୁଷ୍ଠାନକୁ ସମ୍ଭାଳିବ କିଏ ?

ସାରା ଶରୀରରେ ମାୟାର ସହସ୍ର ଗଣ୍ଠି ପଡ଼ିଛି, ସେଗୁଡ଼ିକ ଛିଣ୍ଡାଇବାର ସାଧ କାହାର ଅଛି ?

ସେଥିପାଇଁ ମାୟାଜାଲରେ ଆବଦ୍ଧା ନୀଳମଣି ଭାବନ୍ତି ମଧୁଛନ୍ଦା, ସ୍ୱରୂପା ଓ ମିତାଙ୍କୁ ସୁପାତ୍ର ଦେଖି ବାହା କରାଇ ଦେବେ । ପ୍ରଥମେ ମଧୁଛନ୍ଦା ଆଉ ସ୍ୱରୂପାର ବାହାଘର କରି ଦେବେ । ପାତ୍ର ମଧ ଠିକ୍ କରି ସାରିଛନ୍ତି ସେ ।

ଶିବବ୍ରତର ପୁଅ ସୌମ୍ୟେନ୍ଦ୍ର ବଡ଼ ଭଲ ପିଲାଟିଏ । ବୁଦ୍ଧିମାନ୍, ସୁନ୍ଦର, ସଚ୍ଚରିତ୍ର, ସବୁଦିଗରୁ ଦେଖିଲେ ଉପଯୁକ୍ତ । ତା'ର ଆଚାର, ବ୍ୟବହାର, କଥାବାର୍ତ୍ତାରେ ଏ ଘରର ସମସ୍ତେ ମୁଗ୍‌ଧ । ତା'ରି ସହିତ ସେ ବିବାହ ଦେବେ ସ୍ୱରୂପାର । ବନ୍ଧୁରେ ବନ୍ଧୁ ବାନ୍ଧିବେ । ବିଶ୍ୱନାଥଙ୍କ ଅଜାଘର ସହିତ ନୀଳମଣିଙ୍କ ପିତୃଗୃହର ସମ୍ବନ୍ଧ ଅକ୍ଷୁଣ୍ଣ କରି ରଖିବେ, କାରଣ ଶିବବ୍ରତ ହେଉଛନ୍ତି ନୀଳମଣିଙ୍କର ଚାରିଭାଇଙ୍କ ମଧରୁ ଜଣେ ।

ଆଉ ମଧୁଛନ୍ଦା ପାଇଁ ବାଛିଛନ୍ତି ଶଚୀନ୍ଦ୍ରକୁ, ସୁଜାତାର ଦୂରସମ୍ପର୍କୀୟ ଜଣେ ଆତ୍ମୀୟଙ୍କ ପୁଅ । ପିଲାଟି ଦିନରୁ ତାକୁ ଦେଖୁଛନ୍ତି ନୀଳମଣି । ଏବେ ନୂଆ କରି ଡେପୁଟି ମାଜିଷ୍ଟ୍ରେଟ ହୋଇଛି ସେ ।

ମନର ଇଚ୍ଛାକୁ ଶୀଘ୍ର ପୂର୍ଣ୍ଣ କରିଦେବା ପାଇଁ ଏଥର ସ୍ୱରୂପା ଛୁଟିରେ ଆସିଥିଲା ବେଳେ ସେ କଥାଟା କହିଥିଲେ ସ୍ୱରୂପାକୁ ।

—ମୁଁ ବଞ୍ଚି ଥାଉ ଥାଉ ତୋର ଆଉ ମଧୁର ବାହାଘର କରାଇ ଦେବି ସ୍ୱରୂପା ! ମୁଁ ସୌମ୍ୟକୁ ଠିକ୍ କରି ରଖିଛି ତୋ'ରି ପାଇଁ । ଶିବୁ ସାଙ୍ଗରେ କଥାବାର୍ତ୍ତା ମୋର ସରିଛି—ଆଚ୍ଛା, କେତେଦିନ ତଳେ ସୌମ୍ୟ ତତେ କିଛି କହିନି ?

ସ୍ୱରୂପାର ଗୋରା ମୁହଁଟା ଲାଲ ପଡ଼ିଗଲା ସେ କଥା ଶୁଣି । ମନେ ପଡ଼ିଲା—ଦୁଇ ଚାରିଦିନ ତଳର ଏକ ଗୋଧୂଳି ସନ୍ଧ୍ୟାର କଥା ।

ସବୁ ଦିନର ଅଭ୍ୟାସ ପରି ସେଦିନ ମଧ ସଭା ଉପର ଛାତକୁ ଯାଇ ବୁଲୁଥିଲା ସେ, ବୁଲୁଥିଲା ଗୋଧୂଳିର ରକ୍ତବର୍ଣ୍ଣସ୍ନାତ ଆକାଶଟାକୁ ଚାହିଁ ଚାହିଁ—ଅନନ୍ତ ଆକାଶ ବିସ୍ତୃତ ହୋଇ ରହିଛି ମୁଣ୍ଡ ଉପରେ, ରାତ୍ରିର ଆଗମନ ପାଇଁ ପ୍ରସ୍ତୁତି ଚାଲିଛି ଚାରିଆଡ଼େ । ଗୋଧୂଳିର ଏ ଲଗ୍ନଟି କାହାକୁ କ'ଣ ଲାଗେ କେଜାଣି, ସ୍ୱରୂପାର ମନରେ ବିଷଣ୍ଣତା ଭରିଦିଏ ସବୁବେଳେ । ବିଦାୟ ବେଳର କରୁଣତା ପରି ହୃଦୟକୁ କରିଦିଏ କ୍ରନ୍ଦସୀ । ମନେ ହୁଏ—ଆଜିର ଏ ଦିନଟିର

ମୃତ୍ୟୁ ହୋଇ ଯାଇଛି, ଏ ଦିନ ଆଉ ଫେରିବ ନାହିଁ । ପ୍ରତ୍ୟେକ ପଳାୟମାନ ମୁହୂର୍ତ୍ତକଣାରେ ବିଳପି ଉଠୁଛି ବିଦାୟର କରୁଣ ଧ୍ୱନି ।

ଏ ବିଶ୍ୱସଂସାରରେ ଯେପରି ସେ ହିଁ ହେଉଛି ଏକମାତ୍ର ଜୀବିତ ପ୍ରାଣୀ ବୋଲି ମନେହୁଏ ତା'ର । ଚିର-ନିଃସଙ୍ଗ, ଚିର-ଏକାକୀ । ଏହି ନିଃସଙ୍ଗତା ତା'ର ଯେପରି ଯୁଗ ଯୁଗର । କାହିଁ କେତେ ଯୁଗ ହେଲା ଯେପରି ସେ କି ଏକ ଅଜଣା ବସ୍ତୁର ସନ୍ଧାନରେ ବ୍ୟାପୃତ ହୋଇ ରହିଛି— କ'ଣ ସେ ବସ୍ତୁ ?

ସବୁବେଳେ ତା'ର ହୃଦୟ ଉତ୍ତର ଦିଏ ପରମହଂସ ଶ୍ରୀ ରାମକୃଷ୍ଣଦେବଙ୍କ ଭାଷାରେ— କାହିଁ ସେ ସୁରଶୈବାଳିନୀ ? କାହାନ୍ତି ସେ ଚୈତନ୍ୟମୟ ଜ୍ୟୋତି ?

ପରମହଂସଙ୍କ ଅନୁଭୂତିରେ ଏହି ସମସ୍ତ ବିଶ୍ୱ ସୃଷ୍ଟି ହିଁ ଏକ ଅପୂର୍ବ ସୁରଝଙ୍କାର । ଗ୍ରହନକ୍ଷତ୍ରରେ, ବୃକ୍ଷରେ, ତୃଣରେ, ନୀହାରିକା କଣାରେ ବାଜୁଛି ଏକ ଗୀତ ଛନ୍ଦ—ଧାଉଁଛି ଧ୍ୱନିର ଭୁବନପ୍ଲାବିନୀ ସୁରଶୈବାଳିନୀ ।

ଶ୍ରୀରାମକୃଷ୍ଣ ଦେଖିଛନ୍ତି—ସେହି ସୁରଶବ୍ଦ ଯେପରି ଏକ ଉଜ୍ଜ୍ୱଳ ଚୈତନ୍ୟ ପରି ପ୍ରତିଭାତ । ଯେପରି ସୂର୍ଯ୍ୟ ଉଇଁଛି ରାତ୍ରିର ଆକାଶରେ । ଇନ୍ଦ୍ରିୟ ଜଗତରେ ହୋଇଛି ଚୈତନ୍ୟର ଆବିର୍ଭାବ !

ସ୍ୱରୂପା କ'ଣ ସେହି ଚୈତନ୍ୟ ସୂର୍ଯ୍ୟଙ୍କୁ ରାତ୍ରିର ଆକାଶରେ ଦେଖିବ ବୋଲି ପ୍ରତିଦିନ ଏକାକିନୀ ଉଠି ଆସୁଛି ଛାତ ଉପରକୁ ? କାହିଁ, ସେ ତ କେବେ ସେହି ଅପୂର୍ବ ସଙ୍ଗୀତର ମୂର୍ଚ୍ଛନା ଶୁଣି ପାରୁନାହିଁ ? ସେହି ଅପୂର୍ବ ଆଲୋକକୁ ଦେଖି ପାରୁନାହିଁ, ଅନୁଭବ କରି ପାରୁନାହିଁ ସେହି ଅପରୂପ ମହାନ୍ ସତ୍ତାକୁ ।

ଭଗବାନ ଶ୍ରୀକୃଷ୍ଣ କହିଛନ୍ତି—

ମୟା ତତମିଦଂ ସର୍ବଂ ଜଗଦବ୍ୟକ୍ତମୂର୍ତ୍ତିନା......

ମୁଁ ଅବ୍ୟକ୍ତ ରୂପରେ ଏହି ଜଗତ୍ ବ୍ୟାପି ରହିଛି......

ସେହି ଅବ୍ୟକ୍ତଙ୍କୁ ବ୍ୟକ୍ତ ରୂପରେ ଦେଖିବାର ମୃଗତୃଷ୍ଣା ନେଇ କ'ଣ ସ୍ୱରୂପା ଖୋଜି ବୁଲୁଛି ଜନ୍ମଜନ୍ମାନ୍ତର ?

ତା ହୃଦୟ ଭିତରୁ ସବୁବେଳେ ଚିତ୍କାର ଉଠୁଛି—

କିରୀଟିନଂ ଗଦିନଂ ଚକ୍ରହସ୍ତମିଚ୍ଛାମି ତ୍ୱାଂ ଦ୍ରଷ୍ଟୁମହଂ ତଥୈବ

ତେନୈବ ରୂପେଣ ଚତୁର୍ଭୁଜେନ ସହସ୍ର ବାହୋ ଭବ ବିଶ୍ୱମୂର୍ତ୍ତେ !

ହେ ବିଶ୍ୱମୂର୍ତ୍ତେ ! ସେହି କିରୀଟାଦିଯୁକ୍ତ ଚତୁର୍ଭୁଜ ରୂପରେ ଆବିର୍ଭୂତ ହୁଅ । ମୁଁ ତୁମକୁ ସେହି ରୂପରେ ଦେଖିବାକୁ ଇଚ୍ଛା କରୁଛି । ନଚେତ୍, ହେ ଭଗବାନ ! ତୁମେ ମତେ

ତୁମର ସୌମ୍ୟ ମନୁଷ୍ୟ ରୂପରେ ହିଁ ଦେଖାଦିଅ । ଏ ସକଳ ଜିଜ୍ଞାସା, ସକଳ ଅନୁସନ୍ଧାନର ଅବସାନ ହୋଇଯାଉ ।

ସେହି ଅଦୃଶ୍ୟ ଶକ୍ତିମାନଙ୍କ ନିକଟରେ ଉର୍ଦ୍ଧ୍ୱମୁଖୀ, ନିମୀଳିତନୟନା ସ୍ୱରୂପା ପ୍ରାର୍ଥନା କରୁଥିଲା ଯୁକ୍ତକରରେ । ଚକ୍ଷୁର ଉପାନ୍ତରୁ ତା'ର ଝରିପଡୁଥିଲା ନିର୍ମଳ ଅଶ୍ରୁର ଧାରା । ସେହେତୁ ଅତି ଆଗ୍ରହରେ ଦଉଡ଼ି ଦଉଡ଼ି ଛାତ ପାହାଚ଼ରେ ଉଠି ଆସିଥିଲେ ମଧ ସୌମ୍ୟେନ୍ଦ୍ରକୁ ଅଟକି ଯିବାକୁ ପଡ଼ିଥିଲା ଖୋଲା ଦ୍ୱାର ମୁହଁରେ । ବିସ୍ମୟବିମୂଢ଼ ଅବସ୍ଥାରେ ପଥରର ମୂର୍ତ୍ତିଟିଏ ପରି ଠିଆହୋଇ ରହିଲା ସେ । ଅପେକ୍ଷା କରି ରହିଲା ସ୍ୱରୂପାର ସେ ଧ୍ୟାନ ଭାଙ୍ଗିବା ପର୍ଯ୍ୟନ୍ତ । ସେ ମୁହୂର୍ତ୍ତରେ ତା'ର ଭ୍ରମ ହେଲା ସ୍ୱରୂପା ଏ ମର୍ତ୍ତ୍ୟର ନୁହେଁ, କୌଣସି ଦେବୀ ପ୍ରତିମା ସେ, ଶାପଭ୍ରଷ୍ଟା ହୋଇ ଓହ୍ଲାଇ ଆସିଛି ଏ ପୃଥିବୀକୁ । ତାକୁ ମାଟିର ମଣିଷ ପରି କାମନା କରାଯାଇପାରେନା ।

ଅଥଚ ଅନେକ ଦିନପରେ ସ୍ୱରୂପାକୁ ଦେଖିବାର ଏବଂ ପାଇବାର ସୁଯୋଗ ପାଇ ଆନନ୍ଦରେ, ଉତ୍ସାହରେ ଆତ୍ମହରା ହୋଇ ପଡ଼ିଥିଲା ସେ, ହେଇଟି ଏଇ ଟିକକ ଆଗରୁ । ସ୍ୱରୂପାକୁ ଦେଖିଲା ଦିନୁ ତାକୁ ଭଲ ପାଇଛି ସେ । ଆଜି ନୂଆ ନୁହେଁ । ମନର ନିଭୃତ କୋଣରେ ସ୍ୱରୂପାକୁ ନିଜର ଜୀବନ ସଙ୍ଗିନୀ କରିବାର ବାସନା ଟିକକ ବୀଜରୁ ଅଙ୍କୁର, ଅଙ୍କୁରରୁ ଦୁଇଟି ପତ୍ର ପର୍ଯ୍ୟନ୍ତ ଆକାର ଧରିଥିଲା । କିଛି ଦିନ ତଳେ ବଡ଼ମା'ଙ୍କ ଅର୍ଥାତ୍ ନୀଳମଣିଙ୍କ ଇଚ୍ଛାର କଥା ପିତାଙ୍କ ମୁହଁରୁ ଶୁଣି ତାହା ଯେପରି ଅକସ୍ମାତ୍ ପତ୍ର, ଫୁଲ ଓ କଢ଼ରେ ଆଚ୍ଛାଦିତ ଏକ ବୃକ୍ଷ ହୋଇଗଲା । ଅବଶ୍ୟ ନନା ସେ କଥା ବୋଉଙ୍କ ଆଗେ କହୁଥିଲେ ଏବଂ ଇଚ୍ଛାପୂର୍ବକ ଉଚ୍ଚ କଣ୍ଠରେ କହୁଥିଲେ ଯେପରି ଆର ଘରେ ଥାଇ ମଧ ସୌମ୍ୟ ସବୁ ଶୁଣି ପାରିବ ।

ସ୍ୱରୂପା ଡକ୍ଟରେଟ୍ ଉପାଧି ଲାଭ କରି ସାରିଲା ପରେ ସେମାନଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହେବ ।

ଛୁଟିରେ ସ୍ୱରୂପା ଆସିଥିବା ଖବର ଶୁଣି ଆଜି ତାକୁ ଦେଖିବାକୁ ଧାଇଁ ଆସିଥିଲା ସେ । ଇଚ୍ଛା, ନିଜ ମୁହଁରେ ଏ ଶୁଭସମ୍ବାଦ ଦେବ ସେ ସ୍ୱରୂପାକୁ । ଖାଲି ସେତିକି ନୁହେଁ, ତା'ର ସେହି ଅତିସୁନ୍ଦର କଅଁଳ ଛୋଟ ହାତ ଦୁଇଟିକୁ ନିଜ ହାତରେ ଧରି ଏତେ ଦିନ ପରେ ତା ଆଗରେ ଉଦ୍‌ଘାଟିତ କରିବ ନିଜର ଭଲ ପାଇବାର ଇତିହାସକୁ !

ଆଜି ଯେତେବେଳେ ସେ ଆସି ଏ ଘରେ ପହଞ୍ଚିଲା, ନୀଳମଣି ଏକାକିନୀ ଥିଲେ । ତାଙ୍କ ନିକଟରେ ପଦେ ଦି'ପଦ ଭଲମନ୍ଦ କଥା ପଚାରୁ ନ ପଚାରୁଣୁ ସେ ଯେପରି ତା'ର ମନ କଥାକୁ ପଢ଼ି ଦେଲା ପରି କହିଲେ—ସୌମ୍ୟ, ଯା ଛାତ ଉପରକୁ, ସ୍ୱରୂପା ଯାଇଛି, କଥାବାର୍ତ୍ତା ହେବୁ । ଅନ୍ୟମାନଙ୍କର କ'ଣ ଖେଳ ଲାଗିଛି ଅଗଣାରେ । ସ୍ୱରୂପା ଏକୁଟିଆ ଅଛି ।

ଆନନ୍ଦରେ ପାହାଚ଼ଗୁଡ଼ିକୁ ଦୁଇ ଦୁଇଟି କରି ଅତିକ୍ରମ କରି ଆସିଥିଲା ସୌମ୍ୟ । ପୂର୍ବରାଗର ଢେଉ ଯେପରି ହୃଦୟ ଭିତରେ ଜୁଆର ସୃଷ୍ଟି କରିଥିଲା ତା'ର ।

ସେହି ନିସ୍ତବ୍ଧ ସନ୍ଧ୍ୟାରେ ଗୋଧୂଳିର ଆଲୋକ କ୍ରମବିଲୟମାନ ହୋଇ ଯାଉଥିଲା ଆଉ ରାତ୍ରିର ଅନ୍ଧକାର ଧୀରେ ଧୀରେ ଗ୍ରାସ କରୁଥିଲା ଧରଣୀକୁ । ଆକାଶରେ ଗୋଟିକ ପରେ ଗୋଟିଏ ତାରା ଫୁଟି ଆସୁଥିଲେ । କେତେବେଳ ପରେ ଗଭୀର ଦୀର୍ଘ ନିଃଶ୍ୱାସଟିଏ ପକାଇ ଯେପରି ଏ ପୃଥିବୀ ବିଷୟରେ ସଚେତନ ହେଲା ସ୍ୱରୂପା ଏବଂ ସଙ୍ଗେ ସଙ୍ଗେ ତା'ର ଦୃଷ୍ଟି ଯାଇ ପଡ଼ିଲା—ସ୍ତବ୍ଧ ହୋଇ ପ୍ରତୀକ୍ଷା କରି ରହିଥିବା ସୌମ୍ୟଙ୍କ ଉପରେ । ପ୍ରଥମେ ଚମକି ପଡ଼ିଲା ସେ । ତା'ପରେ ଚିହ୍ନିପାରି ଅପ୍ରସ୍ତୁତ ହୋଇଗଲା । ତା ଆଖିର ଲୁହ ଧାରକୁ ସୌମ୍ୟ ଦେଖି ସାରିଲାଣି । ଏହିପରି ଅସମୟରେ ସୌମ୍ୟ ଏକାବେଳେ ଛାତ ଉପରକୁ ଆସି ପହଞ୍ଚିବ ବୋଲି କିଏ ଜାଣିଥିଲା ! ବାଧ ହୋଇ ସୌମ୍ୟର ଦୃଷ୍ଟି ସମ୍ମୁଖରେ ଲୁହ ପୋଛି ପକାଇଲା ସ୍ୱରୂପା, ଲୁଚାଇବାର ବ୍ୟର୍ଥ ଚେଷ୍ଟା କଲା ନାହିଁ । କହିଲା, ସୌମ୍ୟ କେତେବେଳେ ଆସିଲ ? ବଡ଼ମା'ଙ୍କ ପାଖକୁ ଯାଇନାହଁ ?

ଉଦ୍‌ବେଳିତ ନଦୀସ୍ରୋତ ବାଧାପ୍ରାପ୍ତ ହୋଇ ସାରିଛି । କଥାର ଖିଅ ହଜି ଯାଇଛି । ସଙ୍ଗୀତ-ମୁଖର ବୀଣାର ତାରଟି ଯେପରି ହଠାତ୍ ଛିଣ୍ଡିଗଲା ! ସୌମ୍ୟ ସନ୍ତର୍ପଣରେ ନିଃଶ୍ୱାସଟିଏ ପକାଇ କହିଲା, ସେ ପରା ମତେ ତମ ପାଖକୁ ପଠାଇଲେ ?

—ଓଃ ।

ଦୁହେଁ ଚୁପ୍ ।

ଅଧିକ ସମୟ ନୀରବତା ନିତାନ୍ତ ଅଶୋଭନୀୟ ଭାବି ସୌମ୍ୟ କହିଲା, କେତେ ଦିନ ଛୁଟିରେ ଆସିଛ ସ୍ୱରୂପା ?

ଏଇ ପନ୍ଦର ଦିନ ଖଣ୍ଡେ ଆଉ କ'ଣ ? ମୋର ତ ଆସିବା କଥା ନ ଥିଲା, ହେଲେ ମୋ ଗାଇଡ୍ ଯିଏ, ସେ ଗୋଟାଏ କନ୍‌ଫରେନସ୍‌ରେ ଯୋଗ ଦେବାକୁ ମସ୍କୋକୁ ଚାଲିଗଲେ, ତେଣୁ ମୁଁ ଭାବିଲି—ତା' ଭିତରେ ଟିକିଏ ବୁଲି ଦେଇଯିବି । ଆଉ ତମ ଖବର କ'ଣ ସୌମ୍ୟ ?

ମୁଁ ? ଏଥର ସର୍ବଭାରତୀୟ ପ୍ରଶାସନିକ ପରୀକ୍ଷା ଦେବି ।

ବାଃ, ବେଶ ଭଲ ତ ! ଆଚ୍ଛା ସୌମ୍ୟ, ଏ ୟୁନିଭର୍ସ ବିଷୟରେ ତମର ମତ କ'ଣ କହିଲ ? ଈଶ୍ୱର ପରିବ୍ୟାପ୍ତ କିନ୍ତୁ ପରିଦୃଷ୍ଟ ହୁଅନ୍ତି ନାହିଁ କାହିଁକି ?

ସୌମ୍ୟ ହସିଲା, କହିଲା—ସ୍ୱରୂପା, ଏ ପ୍ରଶ୍ନ ତ ଶାଶ୍ୱତ ପ୍ରଶ୍ନ । ଏ ପ୍ରଶ୍ନର ଉତ୍ତର କ'ଣ କିଏ କେବେ ପାଇଛି ନା ପାଇବ ? ତମେ ଗଣିତ ଶାସ୍ତ୍ରର ଗବେଷିକା, ତମ ମୁହଁରେ ଏ ଆଧ୍ୟାତ୍ମିକ ତତ୍ତ୍ୱ ବିଶ୍ଳେଷଣ ବଦଳରେ Space Science ନେଇ ରହିଥିବା ପ୍ରଶ୍ନ ଶୋଭା ପାଇଥାନ୍ତା ।

ସ୍ୱରୂପା ମଧ୍ୟ ମଳିନ ହସଟିଏ ହସିଲା । କହିଲା, ତମେ ଜାଣିଥିବ ଚନ୍ଦ୍ର ପୃଷ୍ଠରେ ଯେତେବେଳେ ମଣିଷ ପ୍ରଥମେ ପାଦ ରଖିଲା, ସେ ସେହି ଅଦୃଶ୍ୟ ଈଶ୍ୱରଙ୍କୁ ହିଁ ସ୍ମରଣ କଲା ।

—ସ୍ମରଣ କରିବା ଛଡ଼ା ମଣିଷର ଯେ ଅନ୍ୟ ଉପାୟ ନାହିଁ !

—ଚାଲ, ସୌମ୍ୟ ତଳକୁ ଯିବା ।

—ତୁମକୁ ଗୋଟାଏ ଜରୁରୀ କଥା କହିବାକୁ ଆସିଥିଲି ସ୍ୱରୂପା ।

ସିଡ଼ିରେ ଓହ୍ଲାଇ ଯାଉ ଯାଉ ସ୍ୱରୂପା କହିଲା—ତଳକୁ ଆସ, କହିବ ।

ସୌମ୍ୟକୁ ଲାଗିଲା ଯେପରି ଗୋଟିଏ କକ୍ଷଚ୍ୟୁତ ତାରକା ଭଳି ଲଗ୍ନଟି ଭ୍ରଷ୍ଟ ହୋଇଗଲା ସବୁଦିନ ପାଇଁ । ଅନୁଗମନ କଲା ସେ ସ୍ୱରୂପାର ।

ସେମାନେ ଓହ୍ଲାଇ ଆସି ପହଞ୍ଚିଲେ ବ୍ୟାଡ଼ମିଣ୍ଟନ୍ ଖେଳ ଖେଳି ସରଗରମ ଆଲୋଚନା କରୁଥିବା ମଣ୍ଟୁ, ଛନ୍ଦା, ସୁପ୍ରକାଶଙ୍କ ମଝିରେ । ଖେଳର ବିଧି ବିଷୟରେ ପ୍ରବଳ ଆପତ୍ତି ଜଣାଉଥିଲା ମଧୁଛନ୍ଦା । ଚଉକିରେ ବସି ହସ ହସ ମୁହଁରେ ତା'ର ଅଭିଯୋଗ ଶୁଣୁଥିଲେ ଦେବବ୍ରତ । ସୌମ୍ୟକୁ ଦେଖିଲାକ୍ଷଣି ମଧୁଛନ୍ଦା କହିଲା, ହେଇଟି, ସୌମ୍ୟ ଭାଇନା ଆସିଲେଣି । ଆଚ୍ଛା ଭାଇନା, କହିଲ ତମେ, ପ୍ରକାଶର ଏଇଟା ଭୁଲ ନୁହେଁ କି ?

ତା'ପରେ ଖେଳ ବିଷୟରେ ଆରମ୍ଭ ହୋଇ ଯାଇଥିଲା ଆଲୋଚନା, କାରଣ ସୌମ୍ୟ ନିଜେ ଜଣେ ବିଖ୍ୟାତ ଖେଳାଳୀ ।

x x x

ଆଜି ବଡ଼ମା'ଙ୍କ କଥା ଶୁଣି ସେ ଦିନର କଥା ମନେ ପଡ଼ିଲା ସ୍ୱରୂପାର । ତା'ହେଲେ ସେ ଦିନ ସେହି ବିବାହ ପ୍ରସ୍ତାବ ଥିଲା ସୌମ୍ୟର ଜରୁରୀ କଥା ?

ପ୍ରେମ, ବିବାହ, ଘରକରଣା— ଏସବୁ ପ୍ରତି ସ୍ୱରୂପାର ରହିଥିଲା ଏକ ଆଶ୍ଚର୍ଯ୍ୟ ପ୍ରକାର ବିତୃଷ୍ଣା । ନିଜପାଇଁ ଏ କଥା ଗୁଡ଼ିକ କେବେ ଚିନ୍ତା କରି ଦେଖିନି ସେ । ଲୋକେ କହନ୍ତି ପ୍ରତ୍ୟେକ କୁମାରୀର ସ୍ୱପ୍ନ ଏହା । କିନ୍ତୁ କାହିଁ ଦିନେ ହେଲେ ତ ସେ ଭୁଲରେ ସୁଦ୍ଧା ଏ ସ୍ୱପ୍ନ ଦେଖି ନାହିଁ !

ସେହି ପ୍ରେମ, ବିବାହ, ସେହି ଘରକରଣା । ଆଉ—ଆଉ ସେ ଦୁଃଖ, ଶୋକ, ରୋଗ, ମୃତ୍ୟୁ ! ଯେଉଁଥିପାଇଁ ବୁଦ୍ଧଦେବ ନିଜର ରାଜ ଐଶ୍ୱର୍ଯ୍ୟ ସହ ତରୁଣୀ ପତ୍ନୀ ଓ ଶିଶୁପୁତ୍ରକୁ ତ୍ୟାଗ କରିଦେଇ ଚାଲି ଯାଇଥିଲେ ନିସ୍ତବ୍ଧ ରାତ୍ରିରେ । ଏ ଗୁଡ଼ିକ କେବଳ ମାୟା । ନନା ଓ ବୋଉଙ୍କ ମର୍ମାନ୍ତିକ କାରୁଣ୍ୟ-ଭରା ମୃତ୍ୟୁପରେ ବଡ଼ମା'ଙ୍କର ଏ ପରିବାରକୁ ଆସି ଆଶ୍ରିତ ଭାବରେ କାଳ କଟାଇବାଟା ହୁଏତ ତା'ର ଯୌବନକୁ ଉଚ୍ଛ୍ୱସିତ ହେବାକୁ ଦେଇ ନାହିଁ, ଜୁଆର ନ ଆସୁଣୁ ଭଟ୍ଟା ପଡ଼ି ଯାଇଛି । ଆଶ୍ରିତ ହୋଇ ରହିବାର ଦୈନ୍ୟ ସମସ୍ତ ସ୍ୱାଭାବିକ ପ୍ରବୃତ୍ତିକୁ ହୁଏତ ନିବୃତ୍ତ କରି ଦେଇଛି । ତେଣୁ ସ୍ୱରୂପା ତା'ର ଏହି ତେଇଶି ବର୍ଷର ଜୀବନରେ କେବେ ଅନୁଭବ କରି ପାରିନି ପ୍ରେମର ଉନ୍ମାଦନାକୁ, ଭଲ ପାଇବାର ଅନୁଭୂତିକୁ—ଅର୍ଥାତ୍ ସେ ସବୁ ଦିଗକୁ ମନ ବଳାଇ ନାହିଁ

କୌଣସି ଦିନ । ଆଶ୍ରିତର ବେଦନାରେ ଅହର୍ନିଶ ଜର୍ଜରିତ ହେଇ ହେଇ ସେ କେବଳ ସ୍ୱପ୍ନ ଦେଖିଛି ନିଜ ଜୀବନର ସାଫଲ୍ୟକୁ ।

ଭଲ ରୂପେ ଡ଼କ୍ଟରେଟ୍ ଉପାଧି ହାସଲ କରି ସେ କେଉଁ ବିଶ୍ୱବିଦ୍ୟାଳୟରେ ଚାକିରିଟିଏ କରିବ । ମୁକ୍ତ ହେବ ଏ ଅସହ୍ୟ କୁଣ୍ଠାବୋଧର ପରିବେଷ୍ଟନୀ ଭିତରୁ । ମଣ୍ଟୁକୁ ମଣିଷ କରିବାର ଭାର ନିଜେ ଗ୍ରହଣ କରିବ । ମିତା ପାଇଁ ଠିକ୍ କରିବ ଗୋଟିଏ ଆନନ୍ଦପୂର୍ଣ୍ଣ ଭବିଷ୍ୟତ୍ ।

କେତେ ଯେ ଦାୟିତ୍ୱ ରହିଛି ତା'ର ! ବାହା ହୋଇ ଘରଦ୍ୱାର କରି ସେ ଯଦି ରହିବ ତେବେ ତା'ର ଏ ପ୍ରଧାନ ଦାୟିତ୍ୱଗୁଡ଼ିକ ତୁଲାଇବ କିଏ ? ଆଉ – ଆଉ ତା'ର ଗବେଷଣା ? ନିଜର ଅପୂର୍ବ ବିଦ୍ୱତ୍ତା ପାଇଁ ସେ କେବେ ଗର୍ବ ଅନୁଭବ କରିନି ସତ, ତେବେ ଅଶେଷ ଆନନ୍ଦ ଲାଭ କରିଛି । ଅଙ୍କଶାସ୍ତ୍ରରେ ତା'ର ପ୍ରତିଭା ଦେଖି ମୁଗ୍ଧ ହୋଇଯାଇଛନ୍ତି ବିଶିଷ୍ଟ ଗଣିତଜ୍ଞମାନେ । ଗବେଷଣାମୂଳକ ପ୍ରବନ୍ଧଗୁଡ଼ିକ ତା'ର ଦେଶ ବିଦେଶରେ ଖ୍ୟାତି ଲାଭ କରିଛି । ସେ ପ୍ରତିଭାର ଦଶା କ'ଣ ହେବ ?

ପୃଥିବୀର ଭବିଷ୍ୟତ ତ ନିର୍ଭର କରୁଛି ଗଣିତଶାସ୍ତ୍ର ଉପରେ । କୌଣସି ନା କୌଣସି ଦିନ ଏ ପୃଥିବୀକୁ ତ୍ୟାଗ କରି ଚାଲି ଯିବାକୁ ପଡ଼ିବ ମଣିଷକୁ– 'ଯଃ ପଳାୟତି ସ ଜୀବତି'ର ପଦ୍ଧତି ଅନୁସରଣ କରି । ମାନବ ସଭ୍ୟତାର ଉତ୍କର୍ଷ ଯେଉଁ ଦିନ ଶିଖରୀର ଚୂଳ ଛୁଇଁବ, ବିଜ୍ଞାନ ସାହାଯ୍ୟରେ ମନୁଷ୍ୟ ଅସାଧ ସାଧନ କରିବ ସତ, ତଥାପି ଅମୃତ ସେ ପାଇବ ନାହିଁ, ପାଇ ପାରିବ ନାହିଁ । ଅମର ହୋଇ ରହି ପାରିବ ନାହିଁ କାରଣ ତା'ର ଆବିଷ୍କାର ପୃଥିବୀର ଏହି ସୁନ୍ଦର ପରିବେଶକୁ ନଷ୍ଟ କରି ଦେଇ ପୃଥିବୀକୁ ଅଳ୍ପାୟୁ କରିବ । ମନୁଷ୍ୟର ଗର୍ବ ଓ ଦମ୍ଭର ଶିଖରରେ ପଦାଘାତ କରି ମୁହୂର୍ତ୍ତକ ମଧ୍ୟରେ ପୃଥିବୀକୁ ଧ୍ୱଂସ ଚାପି ଦେବ ଧୂଳିକଣା ଭରା ରସାତଳକୁ, ଠିକ୍ ବଳି ରାଜାଙ୍କୁ ଭଗବାନ୍ ବାମନ ଚାପି ଦେଲାପରି । ଗୀତାରେ ଶ୍ରୀକୃଷ୍ଣ କରିଛନ୍ତି—

''କାଲୋଽସ୍ମି ଲୋକକ୍ଷୟକୃତ୍ ପ୍ରବୃଦ୍ଧୋ

ଲୋକାନ୍ ସମାହର୍ତ୍ତୁମିହ ପ୍ରବୃତ୍ତଃ

—ମୁଁ ଲୋକକ୍ଷୟକାରୀ ଅତି ଉଲ୍କଟ କାଳ ସ୍ୱରୂପ, ଏହି ପୃଥିବୀର ପ୍ରାଣୀମାନଙ୍କୁ ବିନାଶ କରିବା ନିମିତ୍ତ ପ୍ରବୃତ୍ତ ହୋଇଛି ।

—ମୁଁ କାଳ । ମୁଁ ହିଁ ମୃତ୍ୟୁ । ଅତୀବ ନିଷ୍ଠୁର ମୁଁ ।

ହଁ, ଅତ୍ୟନ୍ତ ନିଷ୍ଠୁର ନ ହୋଇଥିଲେ ଶ୍ରୀକୃଷ୍ଣରୂପୀ କାଳଦେବତା ଆପଣାର ପ୍ରିୟତମ ପୁତ୍ରକୁ ନିଜ ଚକ୍ରରେ ଛେଦନ କରିଥା'ନ୍ତେ କିପରି ? ଶୁଦ୍ର ମୁନି ଶାରଳା ଲେଖିଛନ୍ତି—

ଦେଖୁଁ ଦେଖୁଁ ବହୁ ଦୂରେ ପ୍ରଦ୍ୟୁମ୍ନେ ଦେଖିଲେ
ତାହାକୁ ଦେଖିଣ କୃଷ୍ଣ ମନେ ବିଚାରିଲେ
ଏପରି ବୀର ଯଦ୍ୟପି ମହୀରେ ରହିବ
ତିନି ଭୁବନରେ କେହି ଜିଣି ନ ପାରିବ
କିମ୍ପା ରଖିବା ଯା ଭାବି ଚକ୍ରେ ଆଜ୍ଞା ଦେଲେ
ପ୍ରଦ୍ୟୁମ୍ନର ଶିରକୁ ତୁହି କାଟ ଯା ବୋଇଲେ !!

କାଳ ଦିନେ ନା ଦିନେ ସମସ୍ତ ଗ୍ରାସ କରିବ । ଯେ ରକ୍ଷକ, ସେ ହିଁ ଭକ୍ଷକ ହେବ । ଯେ ସୃଷ୍ଟିର ଦେବତା ପୁଣି ସେ ହିଁ ଯେ ଧ୍ୱଂସର ଦେବତା ! ତେଣୁ ବର୍ତ୍ତିବାର ଉପାୟ ନାହିଁ କାହାର । ଯେଉଁ ବିଜ୍ଞାନ ବଳରେ ମଣିଷ ମୃତ୍ୟୁର ହାର କମାଇ ପାରୁଛି, ସେହି ବିଜ୍ଞାନ ହିଁ ଦିନେ ପୁଣି ମାନବ ଜାତିର ଧ୍ୱଂସର ସହାୟକ ହେବ । ମାରାତ୍ମକ ଅସ୍ତ୍ରଶସ୍ତ୍ର ତଥା ପରମାଣୁ ଯୁଦ୍ଧର ଭୟାବହତା ହିଁ ଦିନେ ପୁଣି ଏ ପୃଥିବୀ ନଷ୍ଟ କରିଦେବ, ଅଥଚ ତେଜସ୍କ୍ରିୟତାର ସର୍ବପ୍ରଥମ ଉଦ୍ଭାବକ ଯେ କି ରଞ୍ଜନରଶ୍ମି ଆବିଷ୍କାର କରିଥିଲେ ସେ ଏବଂ ତାଙ୍କର ପରବର୍ତ୍ତୀ ଉଦ୍ଭାବକ କ୍ୟୁରି-ଦମ୍ପତ୍ତି କ'ଣ ଏ ଜାତୀୟ ଆଶଙ୍କା କରିଥିଲେ ସେଦିନ ? ଭାବିଥିଲେ ସେମାନଙ୍କ ଆବିଷ୍କାର ମାନବ ଜାତିର ଅଶେଷ ଉପକାର ସାଧନ କରିବ ! ଚିକିତ୍ସା କ୍ଷେତ୍ରରେ ସମଗ୍ର ଜଗତର ମଙ୍ଗଳ କରିବ !

ମାନବ ଜାତିର ଅଶେଷ ଉପକାର ସାଧିତ ହୋଇଛି ସତ କିନ୍ତୁ କ୍ଷତିର ମଧ ସୀମା ନାହିଁ ।

ଗୋଟିଏ ଗୋଟିଏ ମହାଯୁଦ୍ଧ ଗୋଟିଏ ଗୋଟିଏ ଯୁଗର ଅବସାନ ଘଟାଇଛି । ସେହିପରି ଆଉ ଗୋଟିଏ ମହାପ୍ରଳୟଙ୍କରୀ ପରମାଣୁ ଯୁଦ୍ଧ ଏ ସମଗ୍ର ପୃଥିବୀର ଅବସାନ ଘଟାଇବ ଦିନେ, କାରଣ କ୍ଷମତା ହରାଇବାର ଭୟ ଅନ୍ଧ କରି ଦେଇଛି ଆଜିର ମଣିଷକୁ ।

ପ୍ରଳୟ ଓ ସୃଷ୍ଟି, ସୃଷ୍ଟି ଓ ପ୍ରଳୟ—ଏକ ଘୂର୍ଣ୍ଣାୟମାନ ଆବର୍ତ୍ତ । ଏ ଆବର୍ତ୍ତରୁ ମୁକ୍ତି କାହିଁ ? ତଥାପି କେତେ ଜଣ ମଣିଷ ନିଜର ସନ୍ଧାନରୁ ନିବୃତ୍ତ ହୋଇ ନାହାନ୍ତି । ତଥାପି ଗାଣିତିକ ଓ ବୈଜ୍ଞାନିକମାନେ ସେହି ମୁକ୍ତିର ପଥକୁ ଖୋଜିବାରେ ଲାଗିଛନ୍ତି । ଆଉ ସେଇଥିପାଇଁ ଚାଲିଛି ଆଜିର ଏ ଗ୍ରହରୁ ଗ୍ରହାନ୍ତରକୁ ଯିବା ଚେଷ୍ଟାର କଷ୍ଟସାଧ ଅଭିଯାନ । ପୃଥିବୀ ପରି ସୁନ୍ଦର ଓ ଜୀବନୀ ଶକ୍ତିରେ ପରିପୂର୍ଣ୍ଣ ଆଉ ଗୋଟିଏ ଗ୍ରହ କେଉଁଠି ଅଛି ? ଯାହାର ସବୁଜିମା ଉପରେ ଯାଇ ଆଶ୍ରୟ ନେଇ ହେବ, ପ୍ରଳୟ ଶେଷର ବଞ୍ଚି ଯାଇଥିବା ଭୟଭୀତ ପଳାତକମାନେ ଯାଇ ଆଶ୍ରୟ ନେଇ ପାରିବେ । ଉଦ୍‌ଜାନ ଓ ନାଇଟ୍ରୋଜେନ୍ ବୋମାର ବିଷାକ୍ତ ଭୟଙ୍କର ବାଷ୍ପର ବହଳ ସମୁଦ୍ର ଭିତରେ ସବୁଜ ବଟପତ୍ର ପରି ଆବିଷ୍କୃତ ହୋଇଥିବା ମହାକାଶ ଯାନଟି ନିର୍ବିଘ୍ନରେ ଭାସିଯିବ, ଭାସିଯିବ ସେହି ସୁଦୂର ଗ୍ରହାନ୍ତରକୁ ! ସେହି କେତେଜଣ ମଣିଷ ବା ବୈଜ୍ଞାନିକମାନେ ସେ କେଉଁ ଏକ ସୁଦୂର ମହାଗ୍ରହରେ ସୃଷ୍ଟି କରିବେ ଆଉ ଏକ ନୂଆ ପୃଥିବୀ ।

ମୁକ୍ତିର ସେହି ଜୟଯାତ୍ରା ପଥକୁ ଯଦି କ୍ଷୁଦ୍ରାତ୍‌କ୍ଷୁଦ୍ରାପି ଗୁଣ୍ଡୁଚି ମୂଷାଟିଏ ପରି କେତୋଟି ବାଲିକଣା ନେଇ ପଥ ନିର୍ମାଣରେ ସାହାଯ୍ୟ କରିପାରନ୍ତା ସ୍ୱରୂପା, ତା'ହେଲେ ଧନ୍ୟ ହୋଇଯାଆନ୍ତା ତା ଜୀବନ । ମଣିଷ ଜାତି ଯଦି ବଞ୍ଚି ରହିପାରିବ ତା'ହେଲେ ଦିନେ ନା ଦିନେ ନିଶ୍ଚୟ ସେ ଆବିଷ୍କାର କରିବ ସେହି ଅମୃତକୁ, ସ୍ୱରୂପାର ମନ ଭିତରର ସେହି ଅଭିଳାଷକୁ ଯାହା ଜରା, ବ୍ୟାଧି ଓ ମୃତ୍ୟୁରୁ ରକ୍ଷା କରିବ ମଣିଷକୁ, ଅମର ହେବ ମଣିଷ ଜାତି ।

କାହିଁ ସେ ଉଚ୍ଚ ଅଭିଳାଷ ଆଉ କାହିଁ ଏ ଘରକରଣା ? ଅତି ସାଧାରଣ ଝିଅଟିଏ ପରି ସେ କ'ଣ ଶେଷକୁ ଏ ସଂସାରର ଘରକରଣାରେ ସମାହିତ କରିବ ନିଜର ବିଦ୍‌ବତ୍ତାକୁ ?

ନା, ନା, କଦାପି ନୁହେଁ ।

x x x

—ସ୍ୱରୂପା, ସୌମ୍ୟ ତତେ କିଛି କହିନି ସେଦିନ ?

ନୀଳମଣି ପଚାରୁଛନ୍ତି । ଧ୍ୟାନମଗ୍ନା ସ୍ୱରୂପାର ଧ୍ୟାନ ଭାଙ୍ଗିଗଲା । ସ୍ୱରୂପା କିଛି ଉତ୍ତର ଦେଇପାରିଲା ନାହିଁ, ମୁଣ୍ଡଟିକୁ ହଲାଇ ଅସ୍ୱୀକୃତି ଜଣାଇଲା ଖାଲି ।

—ବଡ଼ ଆଶ୍ଚର୍ଯ୍ୟ କଥା ତ ! ଆଚ୍ଛା ମୁଁ ବୁଝିବି, କିନ୍ତୁ ତୁ ମୋର ପ୍ରସ୍ତାବରେ ରାଜି ହୁଅ । ଉପଯୁକ୍ତ ବୟସ ତୋର ହେଲାଣି, ନନା ବୋଉ ତୋର ବଞ୍ଚିଥିଲେ ତ ଏ କଥା କହିଥା'ନ୍ତେ ।

ଗୋଟାଏ ଦୁର୍ବଳ ସ୍ଥାନ ଉପରେ ଆଘାତ କରିଛନ୍ତି ନୀଳମଣି ।

—ଘରସଂସାର କରିବାକୁ ମୋର ଇଚ୍ଛା ନାହିଁ ବଡ଼ମା । କ'ଣ ହେବ ? ଏ ସବୁ ମାୟାରେ ପଡ଼ି ଖାଲି ଘାଣ୍ଟି ହେବା ହିଁ ସାର ହେବ ସିନା ! ସ୍ୱରୂପା କହିଲା ।

ନୀଳମଣି ଆଶ୍ଚର୍ଯ୍ୟ ହୋଇଗଲେ । କହିଲେ—ବିନା ଅବଲମ୍ବନରେ ଯେ ମା ଆମେ ସ୍ତ୍ରୀଲୋକମାନେ ଚଳି ପାରିବାନି !

—କାହିଁକି ବଡ଼ମା ? ସେହି ଭଗବାନଙ୍କୁ ହିଁ ଆଶ୍ରୟ କରିବି । ସେ ହେଉଛନ୍ତି ଏକମାତ୍ର ପୁରୁଷ । ଯେ ନିର୍ଲିପ୍ତ, ନିରାକାର, ମହାଶୂନ୍ୟ, ଯେ ତ୍ରିଗୁଣାତୀତ ସେ ବ୍ରହ୍ମ ହିଁ ଏକମାତ୍ର ପୁରୁଷ ବଡ଼ମା, ସମସ୍ତଙ୍କର ପିତା ସେ । ତେଣୁ କଥାରେ ଯାହା ଅଛି ବିନାଶ୍ରୟେ ନ ବର୍ତ୍ତନ୍ତି କବିତା, ବନିତା, ଲତା, ସେ ଠିକ୍ ନୁହେଁ, ପୁରୁଷମାନେ ମଧ୍ୟ ବିନାଶ୍ରୟେ ନ ବର୍ତ୍ତନ୍ତେ ।

ଶାନ୍ତ ଭାବରେ ହସିଲେ ନୀଳମଣି, କହିଲେ—ସଂସାରର ଚଲାବାଟରେ ଏକୁଟିଆ ଯିବାଠାରୁ ସଙ୍ଗୀଟିଏ ବାଛିନେବା କ'ଣ ଭଲ ନୁହେଁ ମା ? ଯେ ଅଦୃଶ୍ୟ ବୋଲି କହୁଛୁ, ତାଙ୍କର ଅସ୍ତିତ୍ୱ ବିଷୟରେ ମୁଁ ତ ସବୁବେଳେ ସନ୍ଦେହୀ, ସ୍ୱରୂପା ! ମୁଁ ଚାହେଁ ମୋର କର୍ତ୍ତବ୍ୟ ସାରି ଦେଇ

ଚାଲି ଯିବାକୁ । ଦେଖୁଛୁ ତ, ମୁଁ ଶେଯରେ ପଡ଼ିଲିଣି, ସତରେ ତ ଆଉ ଅମରଫଳ ଖାଇ ଜନ୍ମ ହେଇନି !

କଥା ଶେଷରେ ପୁଣି ହସିଲେ ନୀଳମଣି । କିନ୍ତୁ ସ୍ୱରୂପାର ସୁନ୍ଦର ଆଖି ଦୁଇଟା ଲୁହରେ ପରିପୂର୍ଣ୍ଣ ହୋଇଗଲା । ବ୍ୟାକୁଳ ଭାବରେ ସେ କହିଲା—ମୋର ଖାଲି କ'ଣ ଇଚ୍ଛା ହେଉଛି ଜାଣିଛ ବଡ଼ମା ? ସେହି ଅମର ଫଳର ସନ୍ଧାନରେ ହିଁ ନିଜ ଜୀବନଟାକୁ ମୋର ଉତ୍ସର୍ଗ କରି ଦେବାକୁ । ଜରା, ବ୍ୟାଧି, ମୃତ୍ୟୁହୀନ ଜୀବନ ଯଦି ମଣିଷ ପାଇ ଯାଆନ୍ତା—

ବାଧାଦେଇ ନୀଳମଣି କହିଲେ—କ'ଣ ହୁଅନ୍ତା ? ଜୀବନ ତ ଦୁଃଖହୀନ ହୋଇପାରିବ ନାହିଁ ! ସେହି ଦୁଃଖ ଅମର ମଣିଷକୁ ତାତିଲା ଲୁହ କରେଇରେ ଆଉଟାଇଲା ପରି ଆଉଟାଇବ । ମୃତ୍ୟୁ ତ ନଥିବ, ତାକୁ ସେ ଯନ୍ତ୍ରଣାରୁ ମୁକ୍ତି ଦେବ କିଏ ? ମୃତ୍ୟୁ ଯେ ମୁକ୍ତିଦାୟିନୀ ମା ! ମୁଁ ନିଜେ ତ ଜଣେ ଅମୃତର ସନ୍ତାନ । ଷୋହଳ ବର୍ଷ ବୟସରୁ ହିଁ ମୁଁ ଯେଉଁ ଦୁଃଖ ଭୋଗି ଆସୁଛି ତାକୁ ମାପି ହେବନି ।

ଆଉଥରେ ହସିଲେ ନୀଳମଣି, କିନ୍ତୁ ଏଥର ତାଙ୍କର ନିଷ୍ପ୍ରଭ ଆଖି ଦୁଇଟା ଛଳ ଛଳ ହୋଇଗଲା । ମୁହଁ ବୁଲାଇ ସ୍ୱରୂପା ସନ୍ତର୍ପଣରେ ନିଶ୍ୱାସଟିଏ ପକାଇଲା ।

ଏଇଥିପାଇଁ ତ ବୋଧିସତ୍ତ୍ୱ ସଂସାର ତ୍ୟାଗ କରି ଚାଲି ଯାଇଥିଲେ ! ଆଉ ସ୍ୱରୂପା ? ସେ ଦୁଃଖରୂପୀ କାଳସର୍ପକୁ ଫୁଲମାଳ ବୋଲି ନିଜ ବେକରେ ଲମ୍ବାଇବ ? ନା, ଥାଉ । ଘରକରଣାର ବନ୍ଧନରେ ବାନ୍ଧିହେବନି ସେ । କଦାପି ସେ ସେଭଳି ମାରାତ୍ମକ ଭୁଲ କରିବନି ।

—ସୌମ୍ୟ ତତେ ବହୁତ ଭଲପାଏ ମା ! ପ୍ରଗାଢ଼ କଣ୍ଠରେ କହିଲେ ନୀଳମଣି ।

ସ୍ୱରୂପା ଯେପରି ଆକାଶରୁ ଖସି ତଳେ ପଡ଼ିଗଲା । ସୌମ୍ୟ ତାକୁ ଭଲ ପାଉଛି ? କେବେ ? କେଉଁ ଦିନଠାରୁ ? କାହିଁ କେବେହେଲେ ତ ସେ ତା'ର ଭଲ ପାଇବାକୁ ଜାଣି ପାରିନାହିଁ ! କଥାରେ କି ବ୍ୟବହାରରେ କେବେହେଲେ ସେ ବ୍ୟକ୍ତ କରିନାହିଁ । କ'ଣ ଗୋପନରେ ବଡ଼ମାଙ୍କୁ ସେ କହିଛି ? ନା ନୀଳମଣିଙ୍କର ଖାଲି ଗୋଟାଏ ଅନୁମାନ ଏଇଟା ?

ଲାଜରେ ଓ ଅସ୍ୱସ୍ତିରେ କିପରି ବିବର୍ଣ୍ଣ ଦିଶିଲା ସ୍ୱରୂପାର ମୁହଁଟା ।

ନିଜର ଆଖିଦୁଇଟାର ଦୃଷ୍ଟି ପ୍ରସାରିତ କରି ନୀଳମଣି ଦେଖିବାକୁ ଚାହୁଁଛନ୍ତି, ସେ ରଙ୍ଗ କ'ଣ ଅନୁରାଗର ନା ହତାଶାର ?

ତରବରରେ ମୁହଁ ତଳକୁ କରିଦେଲା ସ୍ୱରୂପା । ଧୀରେ ଧୀରେ କହିଲା, ବଡ଼ମା, ମତେ ଟିକିଏ ଭାବିବାକୁ ସମୟ ଦିଅ । ଡକ୍ଟରେଟ୍ ପାଇବା ପରେ ଡି.ଏସ.ସି. କରିବାର ଇଚ୍ଛା ମୋର ଅଛି ।

ନୀଳମଣି କହିଲେ—ତା'ପରେ କହିବୁ ବିଲାତ ଯିବାର ଇଚ୍ଛା ଅଛି । ମଣିଷର କାମନାର ଯେ ଶେଷ ନାହିଁ ମା, ସବୁବେଳେ ତାହା ବଢ଼ି ବଢ଼ି ଚାଲେ ।

—ବଡ଼ମା, ବିଦ୍ୟା, ଜ୍ଞାନ ଏସବୁ କ'ଣ ସାଧାରଣ ପାର୍ଥିବ ବସ୍ତୁ ସହିତ ସମାନ ? ସେହି ଅମୂଲ୍ୟ ସମ୍ପଦର ଅଧିକାରୀ ଯେ ହୋଇପାରିଛି, ତା ପାଖରେ ଘର ସଂସାର କରି ରହିବାଟା ଅତି ତୁଚ୍ଛ ନୁହେଁ କି ?

ନୀଳମଣି ଆହତ ହେଲେ ଏଥର । କିଛି ସମୟ ନୀରବ ହୋଇ ରହିଲା ପରେ ଦୀର୍ଘଶ୍ୱାସଟିଏ ପକାଇ କହିଲେ—ଭଲ ରୂପେ ଭାବିଚିନ୍ତି ଯାହାହେଲେ ଗୋଟାଏ ସ୍ଥିର କରି ମତେ ତୁ ଜଣାଇବୁ । ତୁମମାନଙ୍କ ଭିତରୁ କାହାରିକୁ କୌଣସି ପ୍ରକାରେ ବାଧ୍ୟ କରିବାକୁ ବା ବାଧାଦେବାକୁ ମୁଁ ଚାହେଁନି । ତମେମାନେ ପାଠ ପଢ଼ିଛ, ଭଲମନ୍ଦ ବିଚାର କରିବା ଶକ୍ତି ହେଲାଣି, ନିଜ ନିଜ ଜୀବନର ଧାରା ତମେ ନିଜେ ହିଁ ବାଛିନେବ ।

ନୀଳମଣି ଅଭିମାନରେ କହୁଛନ୍ତି କି ପ୍ରକୃତରେ କହୁଛନ୍ତି ବୁଝି ନ ପାରି ବ୍ୟସ୍ତ ହୋଇ କହିଲା ସ୍ୱରୂପା—ବଡ଼ମା, ମୁଁ ବାହା ହୋଇ ରହିଲେ ତମେ ଯଦି ସୁଖୀ ହେବ, ତା'ହେଲେ ମୁଁ ବାହା ହେବାକୁ ରାଜି ଅଛି । ବଡ଼ମା, ତମେ ବିଶ୍ୱାସ କର ମତେ । ତମ ମନରେ କଷ୍ଟ ଦେବା ଭଳି କିଛି କରି ପାରିବିନି ମୁଁ । ତମକୁ ସୁଖୀ କରିବାକୁ ମୁଁ ସବୁ କିଛି କରିପାରିବି ।

ନୀଳମଣିଙ୍କୁ କୁଣ୍ଢାଇ ପକାଇ ଆକୁଳ କଣ୍ଠରେ କହୁଥିଲା ସ୍ୱରୂପା । ସ୍ୱର ତା'ର ଅଶ୍ରୁରୁଦ୍ଧ । ସ୍ୱରୂପାର ମୁଣ୍ଡକୁ ଆଉଁସି ଦେଇ ନୀଳମଣି କହିଲେ—ପାଗଳୀଟା ! ଏ ତ ତୋର ଅଭିମାନିଆ କଥା ହେଲା । ଆଚ୍ଛା, ତୁ ଏହିକ୍ଷଣି କିଛି ଉତ୍ତର ଦେବା ଦରକାର ନାହିଁ । ତୋର ପଢ଼ା ସରିଲା ପର୍ଯ୍ୟନ୍ତ ମତେ ଅପେକ୍ଷା କରିବାକୁ ପଡ଼ିବ । ତୁ ଭଲରୂପେ ଭାବିଚିନ୍ତି ମୋ ପାଖକୁ ଚିଠି ଲେଖିବୁ ।

ଟିକିଏ ତୁନି ରହି ଆଉଥରେ ନୀଳମଣି କହିଲେ, ମୋର ଇଚ୍ଛା—ଶଚୀ ସହିତ ମଧୁଛନ୍ଦାର ଆଉ ସୌମ୍ୟ ସହିତ ତୋର ବାହାଘରଟା ଏକାସଙ୍ଗେ କରି ଦେଇଥାନ୍ତି । ପୁଣି ମିତା କଥା ଦେଖିବାକୁ ଅଛି । ଅବଶ୍ୟ ମୁଁ ଯଦି ମରିଯାଏ ...

ଆଉ ଥରେ ଟିକିଏ ଅଟକି ହସିଲେ ସେ, କହିଲେ, ମିତା ଓ ମଣ୍ଟୁର ଭାର ତୁ ନେଇପାରିବୁ, ତତେ ସେଥିପାଇଁ ଯୋଗ୍ୟ କରି ଗଢ଼ି ଦେଇଛି, ମୋର ଆଉ କିଛି ଚିନ୍ତା ନାହିଁ ।

କୌଣସି ଉତ୍ତର ନ ଦେଇ ମୁହଁ ତଳକୁ କରି ସ୍ୱରୂପା ବଡ଼ମା'ଙ୍କ ପାଦ ଦୁଇଟି ଉପରେ ହାତ ବୁଲାଇ ଦେଉଥିଲା । ଆଖିରୁ ତା'ର ଲୁହଧାର ଝରି ପଡୁଥିଲା ।

ସସ୍ନେହରେ ନୀଳମଣି କହିଲେ—ଆଉଥରେ ପାଖକୁ ଟିକିଏ ଆସେ, ମୁଁ ଆଉଁଶି ଦିଏ ତତେ ।

ବଡ଼ମା'ଙ୍କ ସ୍ନେହବୋଳା କଣ୍ଠସ୍ୱରରେ ସ୍ୱରୂପାର ଆଖିର ଲୁହ ଅଧିକ ଉଛୁଳିଲା । ଚେଷ୍ଟା କରି ସେ କହିଲା—ତମ ପାଦଛୁଇଁଲେ ଯେ ଅଶେଷ ପୁଣ୍ୟର ଅଧିକାରିଣୀ ହେବି ବଡ଼ମା ! କର୍ମସନ୍ନ୍ୟାସ ଯୋଗରେ ତମେ ଏକାବେଳେ ଜଣେ ସିଦ୍ଧଯୋଗିନୀ ।

ନୀଳମଣି ହସି ପକାଇଲେ, କହିଲେ, କେମିତି ସିଦ୍ଧଯୋଗିନୀ ହେଲି କହିଲୁ ? ତୋର ଈଶ୍ୱରଙ୍କ ପରି ତ ମୁଁ ନିରାସକ୍ତ ବା ଉଦାସୀନ ହୋଇ ପାରିଲିନି ଏ ପର୍ଯ୍ୟନ୍ତ । ମରିବାବେଳ ହେଲା; କେବେ ଦିନଟିଏ ଠାକୁରଙ୍କ ନାମ ଜପିବାର କେହି ମତେ ଦେଖିଛ ? ସ୍ୱରୂପା, ମୁଁ ପ୍ରବଳ ନାସ୍ତିକ, ମୁଁ ଘୋର ପାପୀ ।

—ବଡ଼ମା, ଈଶ୍ୱର ତମର ଅତି ଆପଣାର ବୋଲି ସିନା ତମେ ତାଙ୍କୁ ତମ ମନରୁ ଆଢ଼େଇ ଦେଇ ପାରୁଛ ! ଶାସ୍ତ୍ରରେ ଅଛି ସମସ୍ତଙ୍କୁ ନିଃସ୍ୱାର୍ଥପର ଭାବରେ ସ୍ନେହ କରିବା, ସମସ୍ତଙ୍କର ଉପକାର କରିବା ହିଁ ଭଗବାନଙ୍କ ସେବା । ନାମ ଜପରୁ ଅଧିକ କ'ଣ ମିଳିବ ? ସେହି ସେବା ଓ ସ୍ନେହ ଭିତରେ ହିଁ ଭଗବାନ ମିଳନ୍ତି ।

ସେ ଆଲୋଚନା ସେତିକିରେ ରହିଥିଲା ସେଦିନ, କାରଣ ଲୀନା ଦଉଡ଼ି ଆସିଥିଲା ଘର ଭିତରକୁ ନୀଳମଣିଙ୍କୁ ପଚାରିବାକୁ—ରୂପନାରାୟଣଙ୍କ ମନ୍ଦିରଟି କେତେ ବର୍ଷ ତଳେ ତୋଳା ଯାଇଛି ? ମନ୍ଦିରଟି ଆଗ ତିଆରି ହୋଇଥିଲା ନା ନଈ ଉପରର ସେତୁଟି ଆଗ ତିଆରି ହୋଇଥିଲା ? ଆଉ ରାଧାଗୋବିନ୍ଦଙ୍କ ମନ୍ଦିର ? ସେ କେତେ ବର୍ଷର ପୁରୁଣା ?

ସେହି ପିଲାଟି ଦିନରୁ ଲୀନାର ପ୍ରକୃତି, ଆଦରରେ ବଡ଼ମା ନୀଳମଣିଙ୍କୁ କୁଣ୍ଢାଇ ଧରିବ, ଦୁଇହାତ ବଢ଼ାଇ ବଡ଼ମା'ଙ୍କ ଗାଲ ଦୁଇଟିକୁ ଆଉଁଶି ଗେଲ କରିବ ଟିକିଏ । ତା'ପରେ ତା'ର ପ୍ରଶ୍ନ ପଚାରିବ । ସେ ଅଭ୍ୟାସ ତା'ର ଏବେ ମଧ୍ୟ ସେହିଭଳି ରହିଛି ।

x x x

ନୀଳମଣି କେବେ ଭଗବାନଙ୍କୁ ଡାକି ନାହାନ୍ତି ବା ନାମ ଜପ କରିନାହାନ୍ତି, ସେ କଥା ସତ । ହେଲେ ଏ ଘରର ନିୟମ ଯନ୍ତ୍ରଟାକୁ ସୁନିୟନ୍ତ୍ରିତ କରି ରଖିବାପାଇଁ ପ୍ରତ୍ୟେକ ପୂଜା-ଉତ୍ସବ କରାଇ ଆସିଛନ୍ତି ଏ ପର୍ଯ୍ୟନ୍ତ । ରାଧାଗୋବିନ୍ଦଙ୍କ ଦୋଳ ଉତ୍ସବ, ଦୁର୍ଗା ପୂଜା, ରୂପନାରାୟଣଙ୍କ ସାତ ଦିନ ବ୍ୟାପୀ ପୂଜା, ସବୁ କରାଇ ଆସିଛନ୍ତି ଏପର୍ଯ୍ୟନ୍ତ । ପ୍ରତ୍ୟେକ ଉତ୍ସବରେ ଆଗରୁ ସମସ୍ତ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରି ଆଣି ଘରେ ରଖାଇବାର ଅଭ୍ୟାସ ସେହିପରି ଅଛି । ମାହେଶ୍ୱରୀଙ୍କର କିଏ କେଉଁଠି ରହିଛନ୍ତି, ସେ ଠିକଣା-ତାଲିକା ସହିତ ପ୍ରଭାବତୀଙ୍କ ଆତ୍ମୀୟ ସ୍ୱଜନମାନଙ୍କ ଠିକଣା ମଧ୍ୟ ରଖିଛନ୍ତି । ଏପରିକି ଶ୍ୱଶୁର ନାରାୟଣ ଦାଶଙ୍କ ଭଉଣୀଙ୍କ ଉତ୍ତରାଧିକାରୀମାନଙ୍କୁ ମଧ୍ୟ ନିମନ୍ତ୍ରଣ କରି ଆଣନ୍ତି ସେ ।

ଅତି ନିଷ୍ଠାପର ଭାବରେ ପ୍ରତ୍ୟେକ ପୂଜା ସମାହିତ ହୁଏ । ଜନ୍ମାଷ୍ଟମୀ ଉତ୍ସବରେ ମଧ୍ୟ ସାଧୁ-ବୈଷ୍ଣବ ମାନଙ୍କର ସମାବେଶ ଠିକ୍ ପୂର୍ବପରି ହୁଏ । ରାଧାଗୋବିନ୍ଦଙ୍କ ମନ୍ଦିର-ପ୍ରାଙ୍ଗଣରେ ସାତଦିନ ପର୍ଯ୍ୟନ୍ତ ମହୋତ୍ସବ ଅନୁଷ୍ଠିତ ହୁଏ । ସାତଦିନ ପର୍ଯ୍ୟନ୍ତ ସୁଜାତା ଛୁଟି ନିଏ । ଦୁଇ ବୋହୂ ମିଶି ବ୍ରାହ୍ମଣମାନଙ୍କ ସହାୟତାରେ ଠାକୁରଙ୍କ ଭୋଗ ତିଆରି କରନ୍ତି ଶୁଦ୍ଧପୂତ ଭାବରେ ।

ପିଲାମାନେ ମହା ଉତ୍ସାହରେ ଫୁଲମାଳ ଗୁନ୍ଥି ଦିଅନ୍ତି । ସକ୍ଷମ ଥିଲାବେଳେ ନୀଳମଣି ଏଥିରେ ମଧ୍ୟ ଭାଗ ନିଅନ୍ତି । ଅକ୍ଷମ ହେଲାବେଳେ ନୀରବ ଦର୍ଶକ ହୋଇ ବସି ଦେଖନ୍ତି । ଏବେ ଆଉ ସବୁକଥା ନିଜେ ଦେଖିବା କି ବୁଝିବା ସମ୍ଭବ ହେଉନାହିଁ ।

ଏ ବି ଏକପ୍ରକାର ଭଲ । ଧୀରେ ଧୀରେ ରଙ୍ଗମଞ୍ଚରୁ ଅପସରି ଯିବେ ସେ । ଚିରକାଳ ସଂସାର-ରଥ ଚାଳନାର ଦାୟିତ୍ୱରୁ ମୁକ୍ତି ପାଇଯିବେ, ଯେଉଁ ମୁକ୍ତି ପାଇଁ ତରୁଣ ବୟସରୁ ସେ ତପସ୍ୟା କରି ଆସୁଛନ୍ତି, ସେହି ମୁକ୍ତି । କିନ୍ତୁ କେବେ ? ତାହା ମିଳିବାକୁ ଆହୁରି କେତେଦିନ ବାକି ଅଛି ?

ଶରଶଯ୍ୟାରେ ଶାୟିତ ଶରୀରର ରକ୍ତକ୍ଷରଣ ଶେଷ ହେବାପାଇଁ କ'ଣ ଆହୁରି ଗୁଡ଼ାଏ ଦିନ ବାକି ରହିଛି ? ଏ ମହାଭାରତ ଯୁଦ୍ଧ ସରିବ କେବେ ?

ହୁଏତ ତାଙ୍କ ଜୀବନରେ କେବେ ସେ ଯୁଦ୍ଧ ସରିବ ନାହିଁ । କାରଣ ସ୍ୱରୂପାର ଭାଷାରେ— ଆସକ୍ତିର ବନ୍ଧନରେ ନିଜକୁ ସେ ଜାଲବଦ୍ଧ କରି ଦେଇଛନ୍ତି । ତରୁଣ ବୟସରେ ବୈଧବ୍ୟ ଲାଭ କରିଥିବା ସନ୍ତାନହୀନା ନୀଳମଣିଙ୍କର ଘର ହେଉଛି ଏ । ଏମାନେ ସବୁ ତାଙ୍କର କେହି ନୁହଁନ୍ତି, ପୁଣି ଏମାନେ ହିଁ ହେଉଛନ୍ତି ତାଙ୍କର ସବୁ ।

ହେଇଟି—ମଧୁଛନ୍ଦାର ଏମିତି ରାତିରେ ବାହାରେ ରହିବାଟା ତାଙ୍କୁ ବଡ଼ ଅପ୍ରୀତିକର ଜଣାଯାଉଛି, ସେଥିପାଇଁ ମଧୁଛନ୍ଦା ଓ ସୁନନ୍ଦା ଉପରେ ସେ କ୍ଷୁବ୍ଧ । ସତ୍ୟବ୍ରତ ନାହିଁ—କାମରେ ଦିଲ୍ଲୀକୁ ଯାଇଛି ସେ । କେବେ ଫେରିବ ?

କୌଣସି ଚିଠି ନଦେଇ ସ୍ୱରୂପା ଏପରି ନିରୁତ୍ତର ରହିବାଟା ଆଦୌ ଉଚିତ ନୁହେଁ ।

ସେଦିନ ପରେ ସୌମ୍ୟ ତ ଆଉ ଆସି ନାହିଁ ତାଙ୍କ ପାଖକୁ !

କଲେଜରୁ ସିଧାସଳଖ ନ ଫେରି ସୁପ୍ରକାଶ ସବୁଦିନ ଏତେ ରାତି କରି କାହିଁକି ଫେରୁଛି ଯେ ?

ଆହା—ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ ।

ନୀଳମଣି ଭାବିଲେ—ସ୍ମିତାକୁ ଡକାଇବେ କି ? କବିତା ଶୁଣିବେ ତା'ଠାରୁ । ତା'ର ସାହିତ୍ୟ-ପ୍ରିୟତା ସତେ ଯେପରି ବିଶ୍ୱନାଥଙ୍କ ସ୍ମୃତିକୁ ଉଜ୍ଜୀବିତ କରି ରଖିଛି ନୀଳମଣିଙ୍କ ମନରେ । ବିମଳା, ଅନ୍ନପୂର୍ଣ୍ଣା, ସ୍ୱର୍ଣ୍ଣଲତାଙ୍କ ପରି କବିତା ଓ ଗୀତ ରଚନା କରିବାର ପ୍ରତିଭା ରହିଛି ସ୍ମିତାର । ବିଶ୍ୱନାଥଙ୍କ ପରି ଇଂରାଜୀ ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରକ୍ତି ମଧ୍ୟ ରହିଛି ତାର । ସେ ଚମତ୍କାର ଭାବରେ ବିଭିନ୍ନ ଭାଷାର କବିତା ଆବୃତ୍ତି କରିପାରେ । ଆବୃତ୍ତି କଲାବେଳେ ମନେ ପଡ଼ନ୍ତି ବିଶ୍ୱନାଥ ! ସ୍ମିତା ଏତେ ସୁନ୍ଦର ଭାବରେ କବିତା ଆବୃତ୍ତି କରିପାରେ ଯେ ସୁନନ୍ଦା ମଝିରେ ମଝିରେ ଖୋଲାଖୋଲି ଭାବରେ କହନ୍ତି—ଦୁଃଖ ପ୍ରକାଶ କରନ୍ତି ମଧୁଛନ୍ଦାର କବିତା-ପ୍ରୀତି ନାହିଁ ବୋଲି ।

ସୁଜାତା ଖୁଡ଼ୀଙ୍କଠାରୁ ବଙ୍ଗଳା ଭାଷା ମଧ୍ୟ ଶିଖିଛି । ସବୁବେଳେ ସାହିତ୍ୟ ଭିତରେ ବୁଡ଼ି ରହିବା ସ୍ମିତାର ଏକ ଅଭ୍ୟାସ । ଆଉ ଆଉ ସମସ୍ତ ପ୍ରକାର ଭାଷା ପ୍ରତି ଅଶେଷ ଆଗ୍ରହ ତା'ର ।

ଏହିପରି କବିତା, ଗୀତ, ନାଚ, ହସଖୁସୀ, ଯୁକ୍ତିତର୍କରେ ପିଲାଙ୍କ ଦ୍ୱାରା ସରଗରମ ଘରଟା । ସେ ଘରଟା ହେଉଛି ନୀଳମଣିଙ୍କର !

ସେ କାଳର ମଣିଷ ନୀଳମଣି, କିନ୍ତୁ ପରମ ନାସ୍ତିକ । ସେ ଈଶ୍ୱରଙ୍କୁ ମାନନ୍ତି ନାହିଁ । ପୁନର୍ଜନ୍ମରେ ବିଶ୍ୱାସ କରନ୍ତି ନାହିଁ । ବିଶିଷ୍ଟ ଅଦ୍ୱୈତବାଦୀଙ୍କ ପରି ଭାବନ୍ତି ଜଗତଟା ହିଁ ବାସ୍ତବ । ଫୁଲଟି ସକାଳେ ଫୁଟେ, ସନ୍ଧ୍ୟାରେ ପୁଣି ଝରି ପଡ଼େ । କେବେ କେବେ ଝଡ଼ ବର୍ଷାରେ ହେଉ ବା ପବନ କି ଖରାର ଆତିଶଯ୍ୟରେ ହେଉ ଅକାଳରେ ମଧ୍ୟ ମଉଳି ପଡ଼େ, ଖସିଯାଏ ମାଟିର ଧୂଳିଭରା ଛାତି ଉପରକୁ । ସେହି ନିର୍ଦ୍ଦିଷ୍ଟ ଫୁଲଟି ଆଉ କୌଣସି ଦିନ ପୁ'ଣି ଫୁଟିବନି ।

ତାହା ହିଁ ହେଉଛି ଜୀବନ ।

କିନ୍ତୁ ବିଂଶଶତକର ଶେଷଭାଗରେ ଯେତେବେଳେ ଧର୍ମ, ସଂସ୍କାର, ଆଚାର ନିଷ୍ଠା, ଈଶ୍ୱରବିଶ୍ୱାସ – ଏ ସବୁର ମୂଳଦୁଆ ଦୋହଲି ଗଲାଣି, ସେତେବେଳେ ଜନ୍ମଲାଭ କରି ସ୍ୱରୂପା ଏହିପରି ପରମ ଆସ୍ତିକ ହେଲା କିପରି ? ଏହିପରି ପ୍ରଗାଢ଼ ଈଶ୍ୱରଭକ୍ତି, ସେ ପାଇଲା କେଉଁଠାରୁ ?

## (୧୦)

ସ୍ୱରୂପା ନିଜ ଅନ୍ତରର ସମସ୍ତ ସତ୍ତା ଦେଇ ବିଶ୍ୱାସ କରେ ଈଶ୍ୱରଙ୍କ ଅସ୍ତିତ୍ୱକୁ । ସ୍ୱରୂପା କହେ—ମଣିଷ ଚେଷ୍ଟା କଲେ ଈଶ୍ୱରଙ୍କୁ ନିଶ୍ଚୟ ପାଇ ପାରିବ । ପାଇ ପାରିବ ନିଜର ଏକନିଷ୍ଠ ଭକ୍ତି ଦ୍ୱାରା, ଆତ୍ମବିସ୍ମୃତ ପ୍ରେମ ଦ୍ୱାରା ।

ପୁରୁଷଃ ସ ପରଃ ପାର୍ଥ ଭକ୍ତ୍ୟା ଲଭ୍ୟସ୍ତ୍ୱନନ୍ୟୟା ।
ଯସ୍ୟାନ୍ତଃସ୍ଥାନି ଭୂତାନି ଯେନ ସର୍ବମିଦଂ ତତଂ ।

—ହେ ପାର୍ଥ ! ଯାହାଙ୍କଠାରେ ପ୍ରାଣୀମାନେ ଅବସ୍ଥିତ ଏବଂ ଯେ ଏହି ନିଖିଳ ବିଶ୍ୱବ୍ୟାପୀ ରହିଛନ୍ତି, ସେହି ଶ୍ରେଷ୍ଠ ପୁରୁଷ ମୁଁ, ଏକାନ୍ତ ଭକ୍ତିଦ୍ୱାରା ମୁଁ ପ୍ରାପ୍ୟ । ମୁଁ ପ୍ରାପ୍ୟ, ମୁଁ ଅପ୍ରାପ୍ୟ ନୁହେଁ ।

—ମୁଁ ଅବ୍ୟକ୍ତ ସତ, କିନ୍ତୁ ମୁଁ ଦୁଷ୍ପ୍ରାପ୍ୟ ନୁହେଁ । ଏକାନ୍ତ ଭକ୍ତିଦ୍ୱାରା ତୁମେ ମୋତେ ପାଇ ପାରିବ ।

ଏହା ହେଉଛି ଭଗବଦ୍ ଗୀତାର ଭକ୍ତି !

ତେଣୁ ସକାଳ ସନ୍ଧ୍ୟାରେ ସ୍ୱରୂପା ସେହି ଏକାନ୍ତ ଭକ୍ତି ସହିତ ହିଁ ପ୍ରାର୍ଥନା କରେ ଏକାଗ୍ର ଚିତ୍ତରେ—ହେ ଈଶ୍ୱର, ତୁମକୁ ପାଇବାର ସେହି ଏକାନ୍ତ ଭକ୍ତିଭାବ ହିଁ ମତେ ଦିଅ । ନିଜ ପାଇଁ ମୋର କୌଣସି ଭିକ୍ଷା ନାହିଁ । କିନ୍ତୁ ଏ ଅଭିଶପ୍ତ ସଂସାରଟା ପାଇଁ ମୁଁ ତୁମକୁ ହାତ ପାତି ମାଗିବି ସେହି ଅମୃତର ପାତ୍ର—ସେହି ଜରା, ରୋଗ, ଦୁଃଖ, ଶୋକବିହୀନ, ଚିରସବୁଜ ଅମୃତମୟ ଜୀବନ, ଅମର ଜୀବନ । ଖାଲି ଚିର ସବୁଜ ନୁହେଁ, ଚିର ନିଷ୍କଳଙ୍କ ମଧ୍ୟ । ଶରୀରର ଉତ୍କର୍ଷତା ସହିତ ମାନସିକ ଉତ୍କର୍ଷତା ଲାଭ କରନ୍ତୁ ମନୁଷ୍ୟମାନେ ।

ଏକାନ୍ତରେ ବସି ଧ୍ୟାନ କଲାବେଳେ ସତରେ ସ୍ୱରୂପା ଯେପରି ଉପଲବ୍ଧି କରିପାରେ ଏକ ଐଶ୍ୱରିକ ସତ୍ତା, ଯେପରି ଦେଖିପାରେ ଏକ ପ୍ରକାଶମୟ ଜ୍ୟୋତି । କେତେ ମୁହୂର୍ତ୍ତ ପାଇଁ ଏକ ଅଭୂତପୂର୍ବ ପୁଲକରେ, ଏକ ଅଜଣା ଆନନ୍ଦରେ ଆତ୍ମବିସ୍ମୃତ ହୋଇଯାଏ ସେ ।

କିନ୍ତୁ କାହାନ୍ତି ସେ ଈଶ୍ୱର ? ହୁଏତ ଏ ଏକ ମାନସିକ ଉପଲବ୍ଧି ମାତ୍ର, ହୁଏତ ମାନସିକ ଭ୍ରାନ୍ତି । ବାସ୍ତବରେ କୌଣସି ଅସ୍ତିତ୍ୱ ଦେଖିପାରେନି ସ୍ୱରୂପା । ପର ମୁହୂର୍ତ୍ତରେ ସେ ଆକୁଳ ହୋଇପଡ଼େ । ଛଳ ଛଳ ଆଖି ଦୁଇଟିରୁ ତା'ର ଝରିଯାଏ ଲୁହର ଦୁଇଟି ଧାର । ଅସମ୍ଭବ ପ୍ରକାର କଳ୍ପନା ସବୁ ତାକୁ ଆଚ୍ଛନ୍ନ କରିଦିଏ ।

ବୁଦ୍ଧ ଶବ୍ଦର ଅର୍ଥ ଜ୍ଞାନ । କି ମହାଜ୍ଞାନ ଲାଭ କରି ବୋଧିସତ୍ତ୍ୱ ବୁଦ୍ଧ ହୋଇଥିଲେ ?

ଅଶ୍ୱତ୍ଥ ବୃକ୍ଷ ମୂଳରେ ବସି ବୋଧିସତ୍ତ୍ୱ ତପସ୍ୟା କରିଥିଲେ ନିରଞ୍ଜନା ନଦୀ ତଟରେ । ସେ ତପସ୍ୟାରୁ କ'ଣ ଲାଭ କରିଥିଲେ ସେ ? ସେ ତ ତାଙ୍କର ସେହି କଠୋର ତପସ୍ୟା ପରେ ମଧ୍ୟ ଭଗବାନଙ୍କର କୌଣସି ରୂପ ଦେଖି ପାରି ନଥିଲେ । ତେଣୁ ଅସ୍ୱୀକାର କରିଥିଲେ ଭଗବାନଙ୍କର ଅସ୍ତିତ୍ୱକୁ । କିନ୍ତୁ ତାଙ୍କର ତପସ୍ୟାଲବ୍ଧ ଜ୍ଞାନଦ୍ୱାରା ସେ ଜନ୍ମାନ୍ତରକୁ ସ୍ୱୀକାର କରି ଯାଇଛନ୍ତି ।

ଜନ୍ମାନ୍ତରକୁ ସ୍ୱୀକାର କରିବାର ଅର୍ଥ ଏକ ମୌଳିକ ଅବିନାଶୀ ସତ୍ତାକୁ ସ୍ୱୀକାର କରିବା । ଏହି ମୌଳିକ ସତ୍ତା, ଏହି ସନାତନ ଭାବ ଯେ କି ସମସ୍ତ ଭୂତ ନଷ୍ଟ ହେଲେ ସୁଦ୍ଧା ବିନଷ୍ଟ ହୁଏ ନାହିଁ । ଶାସ୍ତ୍ର ଯାହାକୁ ସନାତନଭାବ ବୋଲି ଉଲ୍ଲେଖ କରିଛି, ବୈଜ୍ଞାନିକମାନେ ହୁଏତ ତାକୁ କହିଛନ୍ତି ମୌଳିକ ସତ୍ତା, ଅଣୁ, ପରମାଣୁ, ଜିନ୍ । ଆଉ ପଣ୍ଡିତମାନେ କହିଛନ୍ତି ଆତ୍ମା ।

କାମନା ଓ ଦୁଃଖବିହୀନ ଜୀବନ ହିଁ ମନୁଷ୍ୟର ମନରେ ସେହି ସନାତନ ଭାବକୁ ଅକ୍ଷୁଣ୍ଣ କରି ରଖେ, ନିର୍ବାଣପ୍ରାପ୍ତିର ସହାୟକ ହୁଏ । ମୋକ୍ଷଲାଭ, ଈଶ୍ୱରପ୍ରାପ୍ତି, ନିର୍ବାଣ ଏସବୁ ଏକା କଥା ।

ସ୍ୱରୂପା ଗଣିତଶାସ୍ତ୍ରର ଛାତ୍ରୀ । ପ୍ରତ୍ୟେକ ବିଷୟକୁ ସେ ଚାହେଁ ଧାରାରେ ପକାଇବାକୁ, ସ୍ୱତଃସିଦ୍ଧ ପ୍ରମାଣରୂପେ ଦର୍ଶାଇବାକୁ । ରହସ୍ୟମୟ ଶାସ୍ତ୍ର ଭିତରେ ନିହିତ ଥିବା ପ୍ରାମାଣିକ ସତ୍ୟକୁ ଆବିଷ୍କାର କରିବାକୁ ଅନେକ ସମୟରେ ନିଜକୁ ଭୁଲିଯାଏ ସେ ।

ଆଉ ଯେତେବେଳେ ସଚେତ ହୁଏ, ନିଜର ଏ ଅବସ୍ଥା କଥା ଭାବି ହସ ଲାଗେ ତାକୁ । ସେ କ'ଣ ପୂର୍ବ ଜନ୍ମରେ କୌଣସି ବୈଦିକ ଋଷିଙ୍କ ଆଶ୍ରମରେ ଜଣେ ବ୍ରହ୍ମବାଦିନୀ ରୂପେ ରହିଥିଲା ? ଅଥବା କେବେ କୌଣସି ବୌଦ୍ଧ ବିହାରରେ ସେ ଜଣେ ଭିକ୍ଷୁଣୀ ହୋଇ ରହିଥିଲା କେଉଁ ଏକ ମହାସଂଘର ?

ଅନେକ ସମୟରେ ତା'ର ପ୍ରବଳ ଇଚ୍ଛା ହୁଏ ସହରର ଏ କୋଳାହଳଭରା ପରିବେଷ୍ଟନୀକୁ ତ୍ୟାଗକରି ଚାଲିଯାଇ ବନଚାରିଣୀର ଜୀବନ କଟାଇବାକୁ । ଅହିଂସାର ଜଣେ ପରମ ଭକ୍ତ ହୋଇପଡ଼ିଛି ସ୍ୱରୂପା । ସାତ ବର୍ଷ ବୟସରୁ ଆମିଷ ପ୍ରତି ତା'ର ପ୍ରବଳ ବିତୃଷ୍ଣା ଜାତ ହୋଇଥିଲା । ତେଣୁ ସେହି ପିଲାଟିଦିନରୁ ସେ ନିରାମିଷାଶୀ ।

ହଁ, ତା ନନା ଓ ବୋଉଙ୍କର ଆକସ୍ମିକ ମୃତ୍ୟୁର ଦୁଃଖଦାୟକ ଯନ୍ତ୍ରଣା ଯେପରି ବୈରାଗ୍ୟ ଆଡ଼କୁ ଆହୁରି ଅଧିକ ଠେଲି ଦେଇଥିଲା ତାକୁ । ସେ ପିଲା ବୟସରେ ହିଁ ତାକୁ ଲାଗିଥିଲା– ଜନ୍ମର ଅର୍ଥ ହିଁ ହେଉଛି ଦୁଃଖ ।

ସେମାନଙ୍କ ମୃତ୍ୟୁପରେ ପ୍ରଥମେ ପ୍ରଥମେ କେତେ ଦିନ ପର୍ଯ୍ୟନ୍ତ ତାକୁ ଲାଗିଥିଲା—ଏ ପୃଥିବୀର ହିଁ କୌଣସି ସ୍ଥାନରେ ତା'ର ନନା ଓ ବୋଉ ନିଶ୍ଚୟ ଅଛନ୍ତି । ଇଚ୍ଛା ହୋଉଥିଲା ସମସ୍ତଙ୍କ ଅଲକ୍ଷ୍ୟରେ ଘରୁ ବାହାରିପଡ଼ି ସେ ଯାଇ ଖୋଜି ଖୋଜି ଯେକୌଣସି ପ୍ରକାରେ ଫେରାଇ ଆଣନ୍ତା ସେମାନଙ୍କୁ । ମୁକ୍ତ ପ୍ରାନ୍ତରମାନଙ୍କରେ ଦଉଡ଼ନ୍ତା । ଆଉ କଣ୍ଠ ଖୋଲିଦେଇ ଆକୁଳ ଚିତ୍କାର କରି ଡାକନ୍ତା ସେମାନଙ୍କୁ । ଯଦି ସେମାନେ ଦେଖା ନ ଦେବେ, ତା'ହେଲେ ସେହିପରି ପାଦ ଦୁଇଟିକୁ ରକ୍ତାକ୍ତ କ୍ଷତ ବିକ୍ଷତ କରିପକାଇ ଧୂଳି ଧୂସରିତ ବେଶରେ ନିଜର ଜୀବନୀ ଶକ୍ତି ନିଃଶେଷ ହେବା ପର୍ଯ୍ୟନ୍ତ ଦଉଡ଼ି ଚାଲିଥା'ନ୍ତା ପାଗଳଙ୍କ ପରି ।

ପିଲାଦିନେ—ବୋଉ ଯେତେବେଳେ ପୁରାଣ ଗପ ଗୁଡ଼ିକ କହୁଥିଲା, ମୃତ୍ୟୁଟା କେଡ଼େ ସହଜ କଥା ବୋଲି ଲାଗୁଥିଲା ସତେ ! ଚିତ୍କାର କରି ବିକଳ ହୋଇ କାନ୍ଦିଲେ ଗପରେ ହର ପାର୍ବତୀ ନିଶ୍ଚୟ ଆସି ପହଞ୍ଚି ଯାଉଥିଲେ, ଆଉ ଦୟାମୟୀ ପାର୍ବତୀଙ୍କ ଅନୁରୋଧରେ ବିଚଳିତ ହୋଇ ମହେଶ୍ୱର ନିଜ କମଣ୍ଡଳୁରୁ ପାଣି ନେଇ ଛିଞ୍ଚି ଦେଉଥିଲେ ମୃତ ବ୍ୟକ୍ତି ଉପରେ । ମୃତ ସଙ୍ଗେ ସଙ୍ଗେ ଜୀଇଁ ଉଠି ଆଖି ମକଚି ବସି ପଡୁଥିଲା, କହୁଥିଲା—କି ଗଭୀର ନିଦରେ ମୁଁ ଶୋଇ ପଡ଼ିଥିଲି !

କିନ୍ତୁ ବାସ୍ତବ କ୍ଷେତ୍ରରେ ମୃତ୍ୟୁର ବିଭୀଷିକା ଦେଖି ସ୍ତମ୍ଭିତ ହୋଇ ଯାଇଥିଲା ସେ । କାହାନ୍ତି ହରପାର୍ବତୀ ? କାହିଁ ସେ ଜୀବନ୍ୟାସ ମନ୍ତ୍ରପୂତ କମଣ୍ଡଳୁ ଜଳ ?

ମନେପଡ଼େ—ନୀଳମଣିଙ୍କ ନିକଟକୁ ଆସିଲାପରେ ଦିନେ ଗଭୀର ରାତିରେ ମଶାରି ଭିତରେ ଶୋଇ ସମସ୍ତଙ୍କ ଅଜ୍ଞାତସାରରେ ନନା ଓ ବୋଉଙ୍କ ସ୍ମୃତିକୁ ମନେପକାଇ ଆଖି ଲୁହରେ ତକିଆକୁ ଭସାଇ ଦେଉଥିଲା ସେ ।

ଧୀର ପାଦରେ ନୀଳମଣି ଆସି ମଶାରି ଟେକି ବସିଲେ ତା ପାଖରେ । ପିଲାମାନେ କିଏ କିପରି ଶୋଇଛନ୍ତି, ସେକଥା ଦେଖିବାକୁ ରାତି ଭିତରେ ତିନି ଚାରିଥର ଉଠୁଥିଲେ ନୀଳମଣି । ତେଣୁ କିଛି ନ କହି ପାଖରେ ବସି ସାନ୍ତ୍ୱନା ଦେବା ଛଳରେ ତା ପିଠି ଉପରେ ନିଜର ହାତଟିକୁ ରଖିଲେ ।

ଅଶ୍ରୁର ବନ୍ୟା ଯେପରି ବନ୍ଧ ଭାଙ୍ଗିଦେଲା । ସାନ୍ତ୍ୱନାର ସେହି କୋମଳ ସ୍ପର୍ଶ ଲୁହକୁ ଅଧିକ ଉଚ୍ଛୁଳାଇ ଦେଲା । ନୀଳମଣିଙ୍କ କୋଳରେ ମୁହଁ ଲୁଚାଇ ଦେଇ କଇଁ କଇଁ ହୋଇ କାନ୍ଦିଲା ସ୍ୱରୂପା । ଅଶ୍ରୁବିକୃତ କଣ୍ଠରେ ପଚାରିଲା—ବଡ଼ ମା', ସତରେ କ'ଣ ଆଉ ନନା ବୋଉ ମୋର ଫେରି ଆସିବେନି ?

ଟିକିଏ ସ୍ତବ୍ଧ ହୋଇଗଲା ପରେ ନୀଳମଣି ଅତି ପରିଷ୍କାର କଣ୍ଠରେ କହିଥିଲେ—ନା ।

ତାଙ୍କର ସେ କଣ୍ଠସ୍ୱରରେ କ'ଣ ଥିଲା କେଜାଣି ହଠାତ ଯେପରି ଏକ କଠୋର ଆଘାତରେ ସ୍ୱରୂପାର ଅଶ୍ରୁବନ୍ୟା ରୁଦ୍ଧ ହୋଇ ଯାଇଥିଲା । ଲୁହ ଶୁଖିଯାଇଥିଲା ଆଉ କୋହ ଏକ ଜମି ରହିଥିବା ବରଫଖଣ୍ଡ ପରି ହୃଦଯନ୍ତ୍ରଟାକୁ ମୁଠାଇ ଧରିଥିଲା । ପଥର ପାଲଟି ଯାଇଥିଲା ସେ ।

ସେହିଦିନ ଠାରୁ ବାହାରର କାହାକୁ ଆଉ କିଛି ପଚାରି ନାହିଁ । କିନ୍ତୁ ନିଜକୁ ନିଜେ ବରାବର ପଚାରି ଆସିଛି—ମୃତ୍ୟୁ ପରେ ମଣିଷର କ'ଣ ହୁଏ ?

ଏହି ପ୍ରଶ୍ନଟିର ଉତ୍ତର ପାଇବା ଆଶାରେ ବିଭିନ୍ନ ଧର୍ମ ଶାସ୍ତ୍ର ସବୁକୁ ତନ୍ନ ତନ୍ନ କରି ପଢ଼ିଛି ସ୍ୱରୂପା । ବେଦ ସବୁ ପଢ଼ିଛି, ବେଦାନ୍ତ, ଉପନିଷଦ, ସାଂଖ୍ୟଦର୍ଶନ, ଗୀତା ଭାଗବତକୁ ଅନୁଧ୍ୟାନ କରିଛି । ବିଦେଶୀ ପଣ୍ଡିତମାନଙ୍କର ଥିଓସଫି ଉପରେ ଲିଖିତ ପୁସ୍ତକ ସବୁ ମଧ ପଢ଼ିଛି । ଯେଉଁଠି ଯାହା ପାଇଲା ମୃତ୍ୟୁର ପରବର୍ତ୍ତୀ ବିଷୟ ଉପରେ ଲିଖିତ ପ୍ରବନ୍ଧମାନ ପଢ଼ିଛି । ଚେଷ୍ଟା କରିଛି ତା ପ୍ରଶ୍ନର ଉତ୍ତର ପାଇବାକୁ ।

କିନ୍ତୁ ସେ ପ୍ରଶ୍ନର ଯେ ଉତ୍ତରଦାତା, ସେ ତ ଏପର୍ଯ୍ୟନ୍ତ ଅବ୍ୟକ୍ତ । ସେ ହିଁ ହେଉଛନ୍ତି କେବଳ ସେହି ଜଣେ, ଯେ କି ଏ ପ୍ରଶ୍ନର ସଠିକ ଉତ୍ତର ଦେଇ ପାରିବେ । କୃଚ୍ଛ୍ରସାଧନା କରି ସ୍ୱରୂପା ତାଙ୍କୁ ହିଁ ଖୋଜି ବାହାର କରିବ । ଏ ଜନ୍ମରେ, ନ ହେଲେ ଆର ଜନ୍ମରେ, ନଚେତ୍ ତା'ପର ଜନ୍ମରେ ।

—ମା ଜୀ, ଆପ୍‌ଲୋଗୋଁ କି ଖତ୍ ଆଏଁ...

ମେସ୍‌ର ହିନ୍ଦୁସ୍ଥାନୀ ପରିଚାରିକା ସ୍ୱରୂପାର ଧ୍ୟାନ ଭାଙ୍ଗି ତା ହାତକୁ ବଢ଼ାଇ ଦେଲା ଦୁଇଟା ଚିଠି ।

ହସ୍ତାକ୍ଷରରୁ ଗୋଟିଏ ଚିଠି ପରିଷ୍କାର ଜଣାପଡୁଛି ସ୍ମିତାର କିନ୍ତୁ ଅନ୍ୟଟି କାହାର ?

ପ୍ରଥମେ ସ୍ମିତାର ଚିଠିଟାକୁ ଖୋଲି ପଢ଼ି ସାରିଲା ପରେ ଅନ୍ୟ ଚିଠିଟାକୁ ଖୋଲିଲା ସ୍ୱରୂପା । ଥରଟିଏ ସମ୍ବୋଧନକୁ ଚାହିଁ ତରତରରେ ଦେଖିନେଲା ତଳେ ରହିଥିବା ସ୍ୱାକ୍ଷରକୁ । ଆରେ ! ସୌମ୍ୟ ଭାଇନା । ସେ ପୁଣି ତା ପାଖକୁ ଚିଠି ଦେଇଛନ୍ତି !

ଝଲକାଏ ରକ୍ତ ଯେପରି ଖେଳିଗଲା ସ୍ୱରୂପାର ଗୋରା ମୁହଁଟିରେ, ଶଙ୍କିତ ଭାବରେ ଚିଠିଟି ପଢ଼ିଲା ସେ ।

ସ୍ୱରୂପା,

ମୋର ଚିଠି ପାଇ ଆଶ୍ଚର୍ଯ୍ୟ ହେବ ! ଯେଉଁ କଥାଟା ସେଦିନ କହିବି ବୋଲି ଛାତ ଉପରକୁ ଯାଇଥିଲି, କହିବା ସୁଯୋଗ ପାଇଲି ନାହିଁ । କିନ୍ତୁ ନ କହି ରହିବା ମଧ୍ୟ ସମ୍ଭବ ହେଲାନାହିଁ ବୋଲି ଆଜି ତମ ପାଖକୁ ମୋର ଏ ଚିଠି ଲେଖା ।

ତମେ ଶୁଣିଥିବ ସ୍ୱରୂପା ଖୁବ୍ ଶୀଘ୍ର ଆମ ଦିହିଁଙ୍କର ବିବାହ ଉତ୍ସବ ସଂଘଟିତ ହେବାକୁ ଯାଉଛି । ବଡ଼ମା'ଙ୍କର ଇଚ୍ଛା । ବଡ଼ମା ଆମର ଏକ ଅଦ୍ଭୁତ ଶକ୍ତିର ଅଧିକାରିଣୀ ସତରେ । ନ କହୁଣୁ ଜଣଙ୍କର ହୃଦୟର କଥା, ମନର କଥା ଆଶ୍ଚର୍ଯ୍ୟ ଭାବରେ ଜାଣିପାରନ୍ତି ସେ । ତା ନହେଲେ ଗତ ଚଉଦ ବର୍ଷ ହେଲା ଯେଉଁ ବାସନା ମୋ ମନ ଭିତରେ ସୁନ୍ଦର ଗୋଲାପଟି ଭଳି ଫୁଟି ରହିଛି, ସେ କଥା ସେ ଜାଣିଲେ କିପରି ?

ସତରେ କହୁଛି ସ୍ୱରୂପା, ତମକୁ ଦେଖିଲା ଦିନୁ, ସେହି ଛୋଟିଆ ଝିଅଟିଏ ହୋଇଥିଲ, ମୁଁ ତୁମକୁ ଭଲପାଇଲି । ନିଜକୁ ତମର ଯୋଗ୍ୟ କରିବାକୁ ଚେଷ୍ଟା କରିଛି ସବୁବେଳେ । ମନେ ମନେ କେତେଥର ଯେ ତମ ସହିତ ଘର ସଂସାର ଗଢ଼ି ତୋଳିଛି, କଥାବାର୍ତ୍ତା କରିଛି, ତମକୁ ନେଇ ଅସଂଖ୍ୟ କବିତା ଲେଖିଛି, ସେଥିର ହିସାବ କରି ହେବନି ।

ତମକୁ ସ୍ତ୍ରୀ ରୂପେ ପାଇଲେ ଜୀବନ ମୋର ସାର୍ଥକ ହେବ । ନିଜକୁ ଭାଗ୍ୟବାନ୍ ମନେ କରିବି ମୁଁ ।

ହଁ ଶୁଣିଲି, ଅବଶ୍ୟ ସିଧାସଳଖ କେହି ମତେ କହି ନାହାନ୍ତି, ତେବେ ଅନ୍ୟମାନେ କଥାବାର୍ତ୍ତା ହେବାରେ ଶୁଣିଲି ଯେ, ତମେ ଡକ୍ଟରେଟ୍ ପରେ ଡକ୍ଟର୍ ଅଫ୍ ସାଇନ୍‌ସ ଡିଗ୍ରୀଟା ବି କରିବାକୁ ଚାହୁଁଛ । ତା'ପରେ ବାହା ହେବାକୁ ଚାହୁଁଛ । ମୋ ମତରେ ବାହାଘର ପରେ ମଧ୍ୟ ତମେ ଚାହିଁଲେ ତମର କାମ ଜାରୀ ରଖି ପାରିବ । ଯାହା ତମ ଇଚ୍ଛା ।

ସ୍ୱରୂପା, ତମେ ଯଦି ଚାହିଁବ ପୁଣି ଆଉ ଦୁଇବର୍ଷ ସ୍ୱପ୍ନର ମିନାର ତୋଳୁ ତୋଳୁ କଟାଇ ଦେବି ଅତି ସହଜରେ । କିନ୍ତୁ ତା ପୂର୍ବରୁ ତମର ସ୍ୱୀକୃତିକୁ ସ୍ପଷ୍ଟ ରୂପେ ଜାଣିବାକୁ ଚାହେଁ ମୁଁ । ତେଣୁ ଅନୁଗ୍ରହ କରି ଦୁଇଧାଡ଼ି ଲେଖି ମୋ କଲେଜ ଠିକଣାରେ ଚିଠି ପଠାଇବ ।

ଏତିକି କେବଳ ତମକୁ ମୋର ଏକାନ୍ତ ଅନୁରୋଧ ।

ଇତି

ସୌମ୍ୟ

ସ୍ୱରୂପାର କୁମାରୀ ଜୀବନର ପ୍ରଥମ ପ୍ରେମପତ୍ର !

କିନ୍ତୁ କାହିଁ ଆନନ୍ଦରେ ତା ହୃଦୟ ଦୋହଲି ଉଠିଲା ନାହିଁ ! ମୁହଁରେ ଅନୁରାଗର ହସ ଦେଖାଗଲା ନାହିଁ ! ବଦଳରେ ଏକ ବିଷଣ୍ଣତା ଯେପରି ହୃଦୟସାଗର କୂଳରେ ଅତି ଛୋଟ ଲହରୀଟିଏ ପରି ଖେଳିଗଲା । ହାୟ, ଏତେ ଝିଅ ଥାଉ ଥାଉ ସୌମ୍ୟ ତାକୁ ହିଁ କାହିଁକି ଭଲ ପାଇଲା ?

ସେ ଯେତେବେଳେ କଲେଜରେ ପ୍ରଥମ ବର୍ଷରେ ନାଁ ଲେଖାଇଲା, ସୌମ୍ୟ ସେତେବେଳେ ପଞ୍ଚମବାର୍ଷିକ କଳାର ଛାତ୍ର । ଚେହେରାରେ, ପାଠପଢ଼ାରେ, ବ୍ୟବହାରରେ ଅତି ସୁନ୍ଦର ସେ । ଘରେ ବାହାରେ ସମସ୍ତଙ୍କର ଅତି ପ୍ରିୟପାତ୍ର ମଧ୍ୟ । ନୀଳମଣିଙ୍କ ପାଖକୁ ଆସିଲା ପରଠାରୁ ସୌମ୍ୟ, ଶଚୀନ୍ଦ୍ର ପ୍ରଭୃତିଙ୍କ ସହିତ ସ୍ୱରୂପାର ପରିଚୟ ଘଟିଥିଲା । ପୂଜାପର୍ବ ପ୍ରଭୃତି ଉତ୍ସବ ଦିନମାନଙ୍କରେ ନିମନ୍ତ୍ରିତ ହୋଇ ଆସନ୍ତି ସେମାନେ ନୀଳମଣିଙ୍କ ଘରକୁ ।

ସ୍ୱରୂପାକୁ ଜୋର କରି ଟାଣି ନେଇ ମଧୁଛନ୍ଦା ବସାଏ ସେମାନଙ୍କ ସହିତ କ୍ୟାରମ ଖେଳ ବା ତାସ୍ ଖେଳିବାପାଇଁ । ସତ୍ୟବ୍ରତ ଓ ଦେବବ୍ରତ ଯେତେବେଳେ ବ୍ୟାଡ୍‌ମିଣ୍ଟନ ବା ଟେନିସ୍ ଖେଳନ୍ତି, ସବୁ ପିଲାଏ ଡକାହୋଇ ଯାଆନ୍ତି ସେଠାକୁ । ଅନେକ ଥର ସମସ୍ତେ ମିଶି ସୌମ୍ୟ ଘରକୁ ବୁଲି ଯାଇଛନ୍ତି ମଧ୍ୟ । ତେଣୁ ସୌମ୍ୟ ତା'ର ଅପରିଚିତ ନଥିଲା ।

କଲେଜରେ ନାମ ଲେଖାଇଲା ବେଳେ ତାକୁ ଆବଶ୍ୟକ ସାହାଯ୍ୟ କରିବାକୁ ସୌମ୍ୟକୁ କହିଥିଲେ ନୀଳମଣି । ପିଲାଙ୍କ ଦଳ ଭିତରୁ ସ୍ୱରୂପା ସର୍ବପ୍ରଥମେ କଲେଜରେ ନାମ ଲେଖାଇଥିଲା । ତା'ପରେ ଛନ୍ଦା, ତା'ପରେ ସୁପ୍ରକାଶ, ତା'ପରେ ମିତା । ସେହି ଏକା କଲେଜରେ ଇଂରାଜୀ ଅଧ୍ୟାପକ ରୂପେ ନିଯୁକ୍ତି ପାଇଥିଲା ସୌମ୍ୟ । ତେଣୁ ଅନେକ ସମୟରେ ସମସ୍ତଙ୍କୁ ସାହାଯ୍ୟ କରୁଥିଲା ସେ ।

ସହପାଠିନୀମାନେ ସୌମ୍ୟର ରୂପ ଓ ଗୁଣକୁ ପ୍ରଶଂସା କରି ପରସ୍ପର ଭିତରେ ଆଲୋଚନା କରନ୍ତି । ସମୟ ସମୟରେ ପରିହାସରେ ସୌମ୍ୟକୁ ନିଜ ନିଜର ନାୟକ ରୂପେ ପରିକଳ୍ପନା କରି ଆମୋଦ କରନ୍ତି ମଧ୍ୟ । ସେ ପରିସର ଭିତରକୁ କେବେ ଯାଇନି ସ୍ୱରୂପା ।

କାରଣ ଖାଲି ପାଠପଢ଼ିବା ଛଡ଼ା ଅନ୍ୟ କୌଣସି ବିଷୟରେ ସେ ଯୋଗଦେଉ ନଥିଲା । ଏକ ବିଷାଦପୂର୍ଣ୍ଣ ନିର୍ଲିପ୍ତତା ସବୁବେଳେ ମଣ୍ଡଳଟିଏ ପରି ଘେରି ରଖିଥିଲା ତାକୁ । କେତେକ କହୁଥିଲେ ତାହା ଆତ୍ମବଡ଼ିମା ତଥା ଦାମ୍ଭିକତାର ପ୍ରତୀକ । ଖୁବ୍ ଭଲ ପଢୁଛି ବୋଲି ଅନ୍ୟମାନଙ୍କଠାରୁ ସମ୍ପୂର୍ଣ୍ଣ ଦୂରେଇ ରଖୁଛି ନିଜକୁ ଜାଣି ଜାଣି ।

ନୀଳମଣି ପ୍ରଶଂସା କରି କହିଛନ୍ତି—ହାତେ ମାପି ଚାଖଣ୍ଡେ ଚାଲିବା ଝିଅ ସ୍ୱରୂପା ।

ସୁନନ୍ଦା ଓ ସୁଜାତା ଗମ୍ଭୀର ହୋଇ ଯାଇଛନ୍ତି ଈର୍ଷାରେ ।

ମଧୁଛନ୍ଦା ଓଠ ବଙ୍କାଇ କହିଛି—ଫୁଲେଇ ନାନୀ ! ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ଧାରିଣୀ ହେବ !

ସତରେ ଭଗବାନଙ୍କ କୃପାରୁ ଅସାଧାରଣ ତା'ର ବିଦ୍‌ବତ୍ତା । ପ୍ରବୀଣ ଅଧ୍ୟାପକମାନେ ଚମତ୍କୃତ ହୋଇଯାଇଛନ୍ତି ତା'ର ସେ ପ୍ରତିଭା ଦେଖି । ଖୋଲାଖୋଲି କହିଛନ୍ତି—ସ୍ୱରୂପା ଜଣେ ଜିନିଅସ୍ ! ହୁଏତ ଖନା ଓ ଲୀଳାବତୀ ପରି ଏକ ଯୁଗ ନାରୀ ହେବ ।

ସତକୁ ସତ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ସର୍ବୋଚ୍ଚ ନମ୍ବର ରଖିଲା ସ୍ୱରୂପା । ସତକୁ ସତ ସ୍ୱର୍ଣ୍ଣପଦକମାନ ପାଇଲା ମଧ୍ୟ । ଖବର କାଗଜମାନଙ୍କରେ ତା'ର ଫଟୋ ବାହାରିଲା—ବାହାରିଲା ଭୂୟସୀ ପ୍ରଶଂସା । ଅଧ୍ୟାପକ, ଅଧ୍ୟକ୍ଷ ସମସ୍ତେ ଅଭିନନ୍ଦନ ଜଣାଇଲେ । ଆନନ୍ଦରେ କୋଳକୁ ଟାଣିନେଇ ନୀଳମଣି ମସ୍ତକ ଚୁମ୍ବନ କଲେ ।

ସତ୍ୟବ୍ରତ ଓ ଦେବବ୍ରତ ଗୋଟାଏ ଭୋଜିର ଆୟୋଜନ ମଧ୍ୟ କରି ପକାଇଲେ ଆନନ୍ଦରେ । ସେହି ମଧୁଛନ୍ଦା ହିଁ ପ୍ରଜାପତି ଭଳି ଆନନ୍ଦରେ ଡେଇଁ ଡେଇଁ ସବୁ ସଜାଡ଼ି ଦେଲା । ଜଣାଶୁଣା ସମସ୍ତେ ନିମନ୍ତ୍ରିତ ହୋଇ ଆସିଲେ । ଆତ୍ମୀୟମାନେ ସମସ୍ତେ ତ ଆସିଲେ, ତା ଛଡ଼ା ଅଧ୍ୟକ୍ଷ, ଅଧ୍ୟାପକ, ସହପାଠୀ ଓ ସହପାଠିନୀମାନେ ମଧ୍ୟ ଆସିଥିଲେ । ଏକ ବିରାଟ ଅନୁଷ୍ଠାନ ଅନୁଷ୍ଠିତ ହୋଇଥିଲା ସେଦିନ ।

କିନ୍ତୁ ଯାହାକୁ ଉପଲକ୍ଷ୍ୟ କରି ଏତେ ବଡ଼ ଗୋଟାଏ ଉତ୍ସବ ଅନୁଷ୍ଠିତ ହେଲା, ସେ ଯେପରି ଏସବୁ ଆନନ୍ଦ ଭିତରୁ ପଳାଇ ଯିବାକୁ ଚାହୁଁଥିଲା । ଚାହୁଁଥିଲା କେଉଁ ଏକ ନିର୍ଜନ ସ୍ଥାନକୁ ଯାଇ ଦୁଇ ଆଖିରୁ ଝରାଇ ଦେବ ଅସରନ୍ତି ଲୁହ ଧାର । ଆଉ ସେ ଲୁହ ଧାରରେ ପଖାଳିବ ତା ନନା ଓ ବୋଉଙ୍କ ସ୍ମୃତିକୁ ।

ଗର୍ବ କାହିଁ ? ଆନନ୍ଦ କାହିଁ ? ସେ ଜିନିଷ ଦୁଇଟା ଯେପରି ତା' ଜୀବନରୁ ଚିର ବିଦାୟ ନେଇ ଯାଇଛନ୍ତି ।

ସେଦିନ ମଧ୍ୟ ତା'ର ସାଜସଜ୍ଜା ଥିଲା ସେହିପରି ଅତି ସାଧାରଣ । ସବୁଦିନ ପରି ସେଦିନ ମଧ୍ୟ ସେ ପିନ୍ଧିଥିଲା ଧଡ଼ିଥିବା ଧଳା ମିଲ୍ ଶାଢ଼ିଟିଏ । ତା' ସାଙ୍ଗକୁ ଧଳା ବ୍ଲାଉଜ । ଅତି

ସୁରୁଚିପୂର୍ଣ୍ଣ ଭାବରେ ସର୍ବାଙ୍ଗ ଆବୃତ । ସ୍ୱରୂପା ତ ସବୁବେଳେ ଲୁଗା ଓ ବ୍ଲାଉଜ ଏଭଳି ପିନ୍ଧେ, ଯେଉଁଥିରେ ସର୍ବାଙ୍ଗ ତା'ର ଆବୃତ ହୋଇ ରହିଥାଏ । ଅଣ୍ଟା ଦିଶେ ନାହିଁ କି ବାହୁ ଦିଶେ ନାହିଁ ।

ଦାମିକା ସୁନ୍ଦର ଶାଢ଼ିଟିଏ ଷ୍ଟାଇଲ୍ କରି ତାକୁ ପିନ୍ଧାଇବାକୁ ଆପ୍ରାଣ ଚେଷ୍ଟାକରି ପରାଜିତ ହୋଇଥିଲା ମଧୁଛନ୍ଦା । ଶେଷକୁ ସତକୁ ସତ ରାଗିଯାଇ କହିଥିଲା, ବୁଝିଲୁ ସ୍ୱରୂପା, ଆର ଜନ୍ମକୁ ଗୋଟାଏ ଗେଣ୍ଡା ହୋଇ ଜନ୍ମ ହୋଇଯାଆ । ତା'ହେଲେ ଶାଢ଼ିକୁ ଆଉ ଏତେ ଗୁଡ଼ାଇ ଦେହଟାଯାକ ଘୋଡିଆଘୋଡି କରି କଷ୍ଟକରି ପିନ୍ଧିବାକୁ ପଡ଼ିବନି । ଖୋଳ ଭିତରେ ରହିଥିବୁ, ଆଖି ଦୁଇଟା ଖାଲି ଥିବ ବାହାରକୁ ।

ମଧୁଛନ୍ଦା ଅତି ରାଗିଗଲେ ଏପରିସବୁ କଥା କହେ । ତା'ର କୌଣସି କଥାରେ କେବେ ସ୍ୱରୂପା ରାଗିନାହିଁ କି ଦୁଃଖ କରିନାହିଁ । କିନ୍ତୁ ସେଦିନ ଆଖି ଛଳ ଛଳ କରି ସନ୍ତର୍ପଣରେ ନିଃଶ୍ୱାସଟିଏ ପକାଇଛି ଗୋପନରେ । ସେତିକିବେଳେ ବୋଉ କଥା ମନେ ପଡ଼ିଛି ତା'ର–ତା'ର ବୋଉ ଦେଖିବାକୁ ଦେବୀପ୍ରତିମା ପରି, ତାଳିପକା ସାତ ସିଆଁ ଲୁଗାରେ ମଧ ସବୁବେଳେ ସର୍ବାଙ୍ଗାବୃତା ସେ । କହୁଥିଲା–ଦେହକୁ ଲୁଚାଇବାକୁ ସିନା ଶାଢ଼ି ପିନ୍ଧନ୍ତି, ଆଉ ଅଧାଲଙ୍ଗଳା ହୋଇ ଶାଢ଼ି ପିନ୍ଧିବ କାହିଁକି ଯେ !

ସେଦିନ ନୀଳମଣି ମଧ ଠିକ୍ ସେ କଥା ଭାବୁଥିଲେ । ତାଙ୍କ ଖଟ ପାଖରେ ଚଉକି କେତୋଟି ପକାଇ ବସିଥିଲେ ଚାରିଜଣ ଝିଅ । ବିବାହିତା ଜଣେ ଓ ଅବିବାହିତା ତିନିଜଣ । ସେମାନେ ସମସ୍ତେ ମଧୁଛନ୍ଦାର ସାଙ୍ଗ ଓ ବିବାହିତା ଜଣକ ଜଣେ ସାଙ୍ଗର ଭାଉଜ ହେବ । ମହିଳା ବିଦ୍ୟାଳୟର ଶିକ୍ଷୟତ୍ରୀ ସୁନୀତାର ଭଉଣୀ ବିଭା ହେଉଛି । ସମସ୍ତଙ୍କୁ ନିମନ୍ତ୍ରଣ କରିବାକୁ ଆସିଛନ୍ତି । ସୁନୀତା ଜିଦ୍ କରୁଛି–ଦିନେ ଆଗରୁ ମଧୁଛନ୍ଦାକୁ ନେବାକୁ । ସବୁ ସାଙ୍ଗମାନେ ମିଶି ଦୁଇ ରାତି କଟାଇବେ । ପ୍ରିୟମ୍ବଦା ଆସିବ, ଉଷାୟିନୀ ଆସିବ । ଡଲି, ମିଲି ମଧ ଆସିବେ, ଆଉ ଆସିବେ ଲିଟି ଓ ମୋନାଲିସା ।

ପ୍ରସ୍ତାବ ଶୁଣି ସୁନନ୍ଦା ପ୍ରମାଦ ଗଣିଛନ୍ତି । ଏ ଜାତୀୟ କଥାକୁ ସତ୍ୟବ୍ରତ ଆଦୌ ପସନ୍ଦ କରନ୍ତି ନାହିଁ; କିନ୍ତୁ ସେକଥା ସିଧାସଳଖ ସେମାନଙ୍କୁ ନକହି ସୁନନ୍ଦା ଦେଖାଇ ଦେଇଛନ୍ତି ନୀଳମଣିଙ୍କୁ–କହିଛନ୍ତି ଆମର ଏଇ ଯୋଉ ବଡ଼ମା, ବାବା, ଭା'ରି କଡ଼ା ଲୋକ । ଏକାବେଳକେ ସେ କାଳର ରକ୍ଷଣଶୀଳ ଲୋକ–ଖାଇଯିବେ ।

ତାଙ୍କ ପାଟିର କଥା ନ ସରୁଣୁ ସୁନୀତା ଡେଇଁ ଡେଇଁ ଚାଲି ଯାଇଛି ନୀଳମଣିଙ୍କ ପାଖକୁ–ବଡ଼ମାକୁ ରାଜି କରାଇବା ଭାର ତାର ।

ବାଧହୋଇ ଅନ୍ୟ ସମସ୍ତେ ଯାଇଛନ୍ତି ତା ପଛେ ପଛେ, ମଧୁଛନ୍ଦା ଆସିଛି । ସୁନନ୍ଦା ରହିଯାଇଛନ୍ତି ଚାହା ଜଳଖିଆର ବ୍ୟବସ୍ଥା ଆଳରେ । ଅସଲ କଥା ହେଉଛି ନୀଳମଣିଙ୍କ ଭ୍ରୂକୁଟୀର ସମ୍ମୁଖୀନ ହୋଇପାରିବେନି ସେ । ମନେ ମନେ ଗର ଗର ହେଉଛନ୍ତି–ଆଜି କାଲିକା ଯୁଗର

ପିଲା ହୋଇ କ'ଣ ଟିକିଏ ଫୂର୍ତ୍ତି କରିବେନି ପିଲାଏ ? ସେମିତି ସେ ଶହେ ବର୍ଷ ତଳର ଚଳଣ କ'ଣ ଯୁଗଯାକ ଚାଲିଥିବ ? କି ଅନ୍ୟାୟ ! ନିଜର ଛାଞ୍ଚରେ ପକାଇ ଏକବାରେ ଏକାଭଳି ଗଢ଼ି ଦେଇଛନ୍ତି ଏ ସତ୍ୟବ୍ରତଙ୍କୁ ମଧ୍ୟ । ଭାଗ୍ୟକୁ ସତ୍ୟବ୍ରତ ନାହାନ୍ତି ଆଜି । ବଡ଼ମା ଏ ଯୁଗର ସିଦ୍ଧାନ୍ତ ତ ତମେ ଜାଣିପାରିଲ ନାହିଁ ? ଯୁଗର ବିଚାର ହେଲା—ପଙ୍କ ଭିତରେ ଆକଣ୍ଠ ବୁଡ଼ିଯିବାକୁ ପିଲାଙ୍କୁ ଛାଡ଼ିଦିଅ । ଯାହାର ଉତ୍କୃଷ୍ଟ ବଢ଼େଇବା ପ୍ରଣାଳୀ ରହିଛି, ସେ ବଳେ ବଳେ ପଦ୍ମ ହୋଇଥିଲେ ପଦ୍ମ ହୋଇ ହିଁ ଫୁଟିଉଠିବ; ଆଉ ଯେ ଯୋକ, ସେ ଯୋକ ହୋଇ ରହିବ । ନିଜ ନିଜ ପ୍ରକୃତି ଅନୁସାରେ ଗଢ଼ି ଉଠିବେ ସେମାନେ ।

କିନ୍ତୁ ନୀଳମଣିଙ୍କୁ ସେ କଥା ମୁହଁ ଫିଟାଇ କହିବାର ଉପାୟ ନାହିଁ । ଥରେ ସୁନନ୍ଦାର କେଉଁ ଗୋଟାଏ କଥାର ଉତ୍ତର ଦେବାକୁ ଯାଇ ସେ କହିଥିଲେ—କେବଳ ପ୍ରକୃତି ନୁହେଁ ମା, ଉତ୍କୃଷ୍ଟ ଗଛଟିଏ କରିବାକୁ ଗଲେ ଉତ୍କୃଷ୍ଟ ପରିବେଶ ତଥା ଉତ୍କୃଷ୍ଟ ସାରର ପ୍ରୟୋଜନ ମଧ୍ୟ ରହିଛି ଯେ । ସ୍ୱାସ୍ଥ୍ୟକର ପରିବେଶ ନହେଲେ ଉତ୍କୃଷ୍ଟ ବୀଜ ମଧ୍ୟ ରୁଗ୍‌ଣ ଚାରାରେ ପରିଣତ ହେବ ।

କଥାରେ କିଏ ହରାଇବ ନୀଳମଣିଙ୍କୁ ?

ସତରେ ପରାଜୟ ମାନିବାକୁ ପଡୁଛି ସୁନନ୍ଦାଙ୍କୁ !

ପରାଜୟ ମାନିବାକୁ ପଡ଼ିଲା ସୁନୀତାକୁ ମଧ୍ୟ ।

ରୋଗକ୍ଲିଷ୍ଟ ଶରୀରକୁ କଡ଼ ଲେଉଟାଇ ହସିବାର ସାମାନ୍ୟ ଚେଷ୍ଟାକରି କହିଥିଲେ ନୀଳମଣି—ରାତିରେ ରହିବାର ତ କିଛି କାରଣ ଦେଖୁନି ମା' । ବାହାଘର, ସତକଥା ଫେରିବାରେ ଡେରି ହେବ । ମୁଁ କହିଦେଇଥିବି ଯେତେ ଡେରି ହେଉ ପଛକେ ଡ୍ରାଇଭର ଗାଡ଼ି ନେଇ ଜଗିବ, ଛନ୍ଦାକୁ ନେଇ ଆସିବ ଭୋଜି ସରିଲେ । ମୋ ପିଲାମାନେ ଠିକ୍ ସମୟରେ ଘରକୁ ଫେରି ନ ଆସିଲେ ଯେ ମତେ ନିଦ ହେବନି ମା', ବିଛଣାରେ ପଡ଼ି ଖାଲି ଛଟପଟ ହେଉଥିବି । ହେଇଟି— ସେଦିନ ତ ସମସ୍ତେ ପିକ୍‌ନିକ୍‌କୁ ଯାଇଥିଲ । ସେଦିନ ରାତିସାରା ପରା ମୁଁ ଶୋଇପାରିନି !

କଥାଶୁଣି ମଧୁଛନ୍ଦାର ମୁହଁଟା ଆଷାଢ଼ର ମେଘ ପରି ଅନ୍ଧାର ହୋଇଗଲା । ରାଗିଯାଇ 'ବୋଉ କ'ଣ କରୁଛନ୍ତି ଦେଖି ଆସେ' କହି ଉଠି ଚାଲିଗଲା ସେ ।

ସୁନୀତାର ଭାଉଜ କହିଲେ—ଆପଣ ମନା କରିଦେଲେ, ପିଲାଙ୍କ ମନରେ ବଡ଼ କଷ୍ଟ ହେବ ଜେଜେମା । ଦିନେ ଦି'ଦିନର କଥା ତ, ପିଲାଏ ଟିକିଏ ଆନନ୍ଦ କରିବେ । ଗୀତ ନାଚ ମଉଜ ମଜଲିସ୍ କରି ଫୂର୍ତ୍ତି କରିବେ । ଦୟାକରି ଆପଣ ଅନୁମତି ଦିଅନ୍ତୁ ଜେଜେମା ।

ଝିଅଟିର କଥା ଶୁଣିଲା ପରେ ନୀଳମଣିଙ୍କ ଫିକା ଆଖିର ଦୃଷ୍ଟି ଯାଇ ପଡ଼ିଲା ତା'ର ବେଶଭୂଷା ଉପରେ । ନୀଳମଣି ଅବାକ୍ ହୋଇଗଲେ । ଭାବିଲେ—ଆଜିକାଲି ଲୁଗାପିନ୍ଧା ରୀତିଟା ତ ସୀମା ଡେଇଁଗଲାଣି । ଝିଅଟି ଯେ ସୁନ୍ଦର ସନ୍ଦେହ ନାହିଁ, ଗୋରା ତକ ତକ ଦେହ, ଗୋଲ

ମୁହଁ, ଶରୀର ଗଠନରେ ବୈଶିଷ୍ଟ୍ୟ ଅଛି ଠିକ୍ ମନ୍ଦିରର ପାଷାଣ ଗାତ୍ରରେ ଖୋଦିତ ନର୍ତ୍ତକୀ ମୂର୍ତ୍ତି ପରି କିନ୍ତୁ ସେହି ପାଷାଣୀ ପ୍ରତିମାର ଢଙ୍ଗରେ ହିଁ ଯେ ଶାଢ଼ିକୁ ପିନ୍ଧିଛି ସେ । ଜାମାଟି ଛୋଟ ହୋଇ ଯେତେ ଉପରକୁ ଯାଇଛି, ଶାଢ଼ିଟିକୁ ମୋଡ଼ାଯାଇ ସେତିକି ତଳକୁ ଅଣାଯାଇଛି । ବାରବନିତା ବା ନର୍ତ୍ତକୀଙ୍କ ପରି ନାଭି ପ୍ରଦର୍ଶନ କରିବାଟା ଏକ ଷ୍ଟାଇଲ୍‌ରେ ପରିଣତ ହେଲାଣି । ବଡ଼ ଅରୁଚିକର ଭାବରେ ଅନାବୃତ, ଦେଖିଲାକ୍ଷଣି ବଡ଼ ଦୃଷ୍ଟିକଟୁ ମନେହେଉଛି ନୀଳମଣିଙ୍କୁ– ପରର ଦୃଷ୍ଟି ଆକର୍ଷଣ ପାଇଁ ଯେପରି ନିଜ ଶରୀରରେ ଏକ ପ୍ରଦର୍ଶନୀ ଖୋଲିଛି ବିବାହିତା ଝିଅଟି ।

ଅନ୍ୟ ଅବିବାହିତାମାନେ ସବୁ ଅଦ୍ଭୁତପ୍ରକାର ପୋଷାକ ପିନ୍ଧିଛନ୍ତି । ମଧୁଛନ୍ଦା ମଧ ମଝିରେ ମଝିରେ ଏହିପରି ପିନ୍ଧେ ।

ନାରୀ ଶରୀରର ଆକୃତିକୁ ଅତି ଅରୁଚିକର ଭାବରେ ବ୍ୟକ୍ତ କରିବା ହିଁ ଯେପରି ଆଧୁନିକ ପୋଷାକ ଗୁଡ଼ିକର ଲକ୍ଷ୍ୟ, ସେହିପରି କଟା ଯାଇଛି, ସିଲେଇ ମଧ ହୋଇଛି ସେହିପରି ।

ଅଥଚ ନୀଳମଣି ହେରିକାଙ୍କ ଯୁଗ କ'ଣ ଥିଲା ! ଛଅ ବର୍ଷ ବୟସରୁ ଆଠ ହାତି ତନ୍ତଶାଢ଼ି ପିନ୍ଧିବା ବ୍ୟବସ୍ଥା ହୋଇଯାଉଥିଲା ।

ତାହା ମଧ ଥିଲା ଅତ୍ୟନ୍ତ ଅତିରିକ୍ତ ।

ହେଲେ ଏପଟ, ନହେଲେ ସେପଟ ।

କଥାଗୁଡ଼ାକ କେତୋଟି ମୁହୂର୍ତ୍ତ ଭାବିନେଇ ଛୋଟ ନିଃଶ୍ୱାସଟିଏ ପକାଇଲେ ନୀଳମଣି ।

ସୁନୀତାର ଭାଉଜ ଅତିଶୟ ବୁଦ୍ଧିମତୀ । ଅବସର ବୁଝି ପୁଣି କଥା ଜୋଡିଦେଲା– ମଧୁଛନ୍ଦାର ବହୁତ ଇଚ୍ଛା ଅଛି, ଜେଜେମା, ସୁନନ୍ଦା ମାଉସୀଙ୍କର ବି ଅମତ ନାହିଁ, ହେଲେ ସେ ଡରୁଛନ୍ତି ଆପଣଙ୍କୁ ।

କଥା ଶୁଣି ନୀଳମଣି ସ୍ତବ୍ଧ ହୋଇଗଲେ । ଛିଃ, ଛିଃ, ଯାଭିତରେ ସୁନନ୍ଦା ଏମାନଙ୍କୁ ଧାରଣା ଦେଇପକାଇଛି ଯେ ଏ ଘରର ସମସ୍ତଙ୍କୁ ଡରାଇ ରଖିଛନ୍ତି ନୀଳମଣି । ଏମାନେ ସମସ୍ତେ କ'ଣ ଭାବୁଥିବେ ?

ପୁଣି ନିଃଶ୍ୱାସଟିଏ ପକାଇଲେ ନୀଳମଣି, ଭାବିଲେ–କାହାକୁ ପ୍ରତିରୋଧ କରିବାକୁ ତାଙ୍କର ଆଉ ଶକ୍ତି ନାହିଁ । ଯେ ଯାହାର ଯାହା କରୁ ନୀଳମଣି ଆଉ ବାଧା ଦେବେ ନାହିଁ । କେବଳ ଦ୍ରଷ୍ଟା ହୋଇ ରହିଲେ କ୍ଷତି ବା କ'ଣ ?

ଗେହ୍ଲେଇ ହୋଇ ସୁନୀତା କହିଲା–ପ୍ଲିଜ୍, ଜେଜେମା, ଆପଣ ଜମା ରାଗି ପାରିବେନି ଆମ ଉପରେ । ଏ ବର୍ଷ ଆମର କଲେଜର ଶେଷ ବର୍ଷ । ତା'ପରେ କିଏ କୁଆଡ଼େ ଯିବେ, ସାଙ୍ଗମାନେ ଏଭଳି ଏକାଠି ହୋଇ ପାରିବୁନି କେବେ । ଆପଣଙ୍କୁ ରାଜି ହେବାକୁ ହିଁ ପଡ଼ିବ ।

ଜୀବନର ଶେଷ କେତୋଟି ଦିନ ଅନ୍ତତଃ ଶାନ୍ତିରେ ଦିନ କଟାଇବାକୁ ଚାହାନ୍ତି ନୀଳମଣି । ତେଣୁ ଅଭିମାନରେ ପରାଜୟ ସ୍ୱୀକାର କରି କହିଲେ –

– ସୁନନ୍ଦାର ଯଦି ଅମତ ନାହିଁ ତା'ହେଲେ ସେଇଆ କର ମା । ମୁଁ କାହିଁକି ଆପତ୍ତି କରିବି ?

ସେ ଅଭିମାନକୁ କ'ଣ କେହି ଜାଣି ପାରିଲେ ନାହିଁ ? ଜାଣିଲେ, କିନ୍ତୁ ନଜାଣି ପାରିବାର ଅଭିନୟ କଲେ ସମସ୍ତେ । ପରମ ଭକ୍ତିରେ ପାଦଧୂଳି ନେବାର ଛଳନା ମଧ କଲେ । ଚାଲିଗଲେ ହସି ହସି ।

ନୀଳମଣି ମନକୁ ମନ କହିଲେ—ସୁନନ୍ଦା ଆଉ ମଧୁଛନ୍ଦା ଲେଖାପଢ଼ା ଜାଣିଥିବା ଝିଅ । ମୋ'ଠାରୁ ସେମାନଙ୍କର ବିଚାର କରିବା ଶକ୍ତି ଅଧିକ । ସେମାନେ ଯଦି ଚାହୁଁଛନ୍ତି, ମୁଁ ତା'ହେଲେ କାହିଁକି ବାଧା ଦେବି ?

ବେଶି ଦୂରକୁ ନଯାଇ ଲମ୍ୱା ବାରଣ୍ଡାଟାରେ ରେଲିଂକୁ ଧରି ଠିଆ ହୋଇଥିଲା ମଧୁଛନ୍ଦା । ସୁନୀତା ଦଉଡ଼ିଯାଇ ଦୁଇ ହାତରେ ତା ବେକକୁ ଛନ୍ଦି ପକାଇଲା, କହିଲା—ବାବାଃରେ ଛନ୍ଦା, ତୋ ବଡ଼ମାଙ୍କୁ ମୋର ହଜାର ସାଲ୍ୟୁଟ୍ । ଜାଣିଛୁ ନା ଚଲାକି କରି ମୁଁ କହିଲିନି—ଜନ୍, ମନୋଜ, ଶ୍ରୀକାନ୍ତ, ସଲିମ୍ ହେରିକା ମଧ ଆସିବେ ବୋଲି, ତା'ହେଲେ ତ ମୋଟେ ଛାଡ଼ିନଥାନ୍ତେ ସେ । ଯାହା ହେଉ, ବାବା ପର୍‌ମିସନ୍ ମିଳିଗଲା ।

ପର୍‌ମିସନ୍ ମିଳିଗଲା—ମଧୁଛନ୍ଦା ମଧ ଆନନ୍ଦରେ ତାଳି ମାରି ପକାଇଲା ।

ଘର ଭିତରେ ଶେଯ ଉପରେ ପଡ଼ି ନୀଳମଣିଙ୍କ ହୃଦୟ ଯେପରି କାନ୍ଦୁଛି । କାମଟା ଯେପରି ସେ ଭଲ କଲେନାହିଁ, ଠିକ୍ କଲେନାହିଁ, କ୍ଷଣକର ଅଭିମାନରେ ଗୋଟାଏ ବିରାଟ ଭୁଲ୍ ଯେପରି କରି ଦେଇଛନ୍ତି ସେ । ଏ ଘରର ମୂଳଦୁଆ କ'ଣ ଦୋହଲି ଯିବ ସେ ବଞ୍ଚି ଥାଉ ଥାଉ ? ବିଜୟ ଯେ ପରମ ବିଶ୍ୱାସରେ ତାଙ୍କ ହାତକୁ ସବୁ ଟେକିଦେଇ ଚାଲିଯାଇଛି !

କିନ୍ତୁ ନୀଳମଣି ଆଉ ପାରୁନାହାନ୍ତି । ଶରୀରର ଅସୁସ୍ଥତା ତାଙ୍କ ମନର ଜୋର୍‌କୁ ମଧ କ୍ରମଶଃ ଭାଙ୍ଗିଦେଉଛି ।

## (୧୧)

ସେ ଏକ ଇନ୍ଦ୍ରପୁରୀ କହିଲେ ଅତ୍ୟୁକ୍ତି ହୁଅନ୍ତା ନାହିଁ । ସେହି ରୂପମତୀ ନଦୀ କୂଳରେ ସଉକ୍ କରି ଗୃହ ପ୍ରାଙ୍ଗଣରୁ ନଦୀ ଭିତର ଯାଏ ପଥର ଓ ସିମେଣ୍ଟର ପାହାଚ ତିଆରି ହୋଇ ସୁଦୃଶ୍ୟ ଘାଟଟିଏ ମଧ ସ୍ଥାପିତ ହୋଇଛି । ଅବଶ୍ୟ ଘାଟଟିର ପଛପାଖ ତାହା ।

ସାମନାରେ ବିରାଟ ତୃଣଭୂମି । ମଝି ମଝିରେ ସଉଖୀନ ଫୁଲ ଗଛମାନଙ୍କର ବୁଦା, ଗଛ ଲତା । ସେ ଗଛମାନଙ୍କର ଡାଳରେ, ପତ୍ରମାନଙ୍କ ଭିତରେ, ବିଜୁଳିବତୀର ରଙ୍ଗ ବେରଙ୍ଗ ଆଲୋକମାନ ଜଳୁଛି । ପୁଣି କେଉଁଠି ଗୋଟିଏ ଗୋଟିଏ ସୁନ୍ଦର ପଦ ବା ଚିତ୍ରରୂପେ ଖଞ୍ଜାହୋଇ ନାନା ରଙ୍ଗ ସୃଷ୍ଟିକରି ବିଦ୍ୟୁତ୍ ଆଲୋକ ମୁହୂର୍ତ୍ତ ମୁହୂର୍ତ୍ତରେ ପରିବର୍ତ୍ତିତ ହୋଇ ଚାଲିଛି । ସଯତ୍ନବର୍ଦ୍ଧିତ ଲନ୍‌ର ସବୁଜ ଘାସର ଗାଲିଚା ଉପରେ ସଜ୍ଜିତ ଗାର୍ଡ଼େନ ଚେୟାର ଓ ଟେବୁଲ ସବୁ ସଜାହୋଇ ରହିଛି । ଫାଟକ ନିକଟରେ ବିରାଟ ତୋରଣ ରଙ୍ଗ ବେରଙ୍ଗର କନା ଓ ଆଲୋକରେ ଅତି ସୁନ୍ଦର ଭାବରେ ସଜାହୋଇ ବିଦ୍ୟୁତ୍‌ର ତରଙ୍ଗ ସୃଷ୍ଟିକରି ଝଲମଲ କରୁଛି । ଦୁଇ ପାଖରେ ସବୁଜ ରଙ୍ଗର ବାର୍‌ଲାଇଟ୍‌ଗୁଡ଼ିକ ଧାଡ଼ିହୋଇ ସଜ୍ଜିତ ହୋଇ ସତେ ଯେପରି କେଉଁ ସମ୍ରାଟଙ୍କ ଆଗମନକୁ ଅପେକ୍ଷା କରୁଛି । ଦେଶରେ ଯେତେ ବିଦ୍ୟୁତ୍ ସଙ୍କଟ ଦେଖାଦେଲେ ବି ଉତ୍ସବମାନଙ୍କରେ ବିଦ୍ୟୁତ୍‌ଶକ୍ତିର ମହୋତ୍ସବର ମାତ୍ରା କ୍ରମଶଃ ବଢ଼ିଚାଲିଛି ।

— ରେଡ଼ିଓଗ୍ରାମ୍‌ର ଗମ୍ଭୀର ମଧୁର ଶବ୍ଦତରଙ୍ଗରେ କେତେବେଳେ ଜାଜ୍ ସଙ୍ଗୀତର ଧ୍ୱନି, କେତେବେଳେ ଡିସ୍‌କୋ ସଙ୍ଗୀତର ଧ୍ୱନି ପରିବେଶକୁ ଆଲୋଡ଼ିତ, ମୁଖରିତ କରି ପକାଉଛି ।

ଟିକିଏ ଦୂରରେ ଗୋଟାଏ ପାଖକୁ ସେହି ଡିସ୍‌କୋ ମ୍ୟୁଜିକ୍ ସହିତ ଚାଲିଛି ସୁନୀତାର ସହପାଠୀ ଓ ପାଠିନୀଙ୍କ ନୃତ୍ୟ ।

ଡିସ୍‌କୋର ତାଳେ ତାଳେ ଛନ୍ଦାୟିତ ଦେହର ଅଙ୍ଗଭଙ୍ଗୀ । ମଝି ମଝିରେ ଭାସି ଆସୁଛି ମିଳିତ ହସର ଜୁଆର । ପିନ୍ଧାଶାଢ଼ିର କାନିକୁ ଉଡ଼ାଇ ସାଲୁଆର ପଞ୍ଜାବୀ ଉପରର ଓଢ଼ଣୀକୁ ଉଡ଼ାଇ ପ୍ରଜାପତି ପରି ଦଉଡୁଛନ୍ତି ଆଉ ଦଳେ ଝିଅ । ଆନନ୍ଦରେ, ଆବେଗରେ, ପ୍ରାଣର ଉଚ୍ଛ୍ୱଳତାରେ ସମସ୍ତେ ବିଭୋର । ଭାବଟା ହେଉଛି—ଜୀବନଟା ଗୋଟାଏ ପାଣିଫୋଟକା ମାତ୍ର । ହେଉ, କୁଛ୍ ପରବାଏ ନାହିଁ । ସେହି ମୁହୂର୍ତ୍ତକର ଜୀବନକୁ ଆମେ ଆକଣ୍ଠ ଉପଭୋଗ କରିଯିବା । ଆମେ ହସିବା, ହସାଇଯିବା ।

ଚାଲ, ଚାଲ, ଚାଲ—ରୂପମତୀ ନଦୀ ପୂର୍ଣ୍ଣିମା ଚନ୍ଦ୍ରର ଜ୍ୟୋତ୍ସ୍ନାରେ ପ୍ରଥମ ପ୍ରେମ ପରି ଉଚ୍ଛୁଳି ଉଠୁଛି । ଚାଲ, ବୋଟିଂ କରିବା । ଯିବା, ନଈ ମଝିରେ ହେଇଟି ସେ ପଠାଟା ଦିଶୁଛି । ସେଇଠିକୁ, ଚନ୍ଦ୍ର ଆଲୁଅରେ କାଶତଣ୍ଡି ଫୁଲଗୁଡ଼ିକ ଧୀର ପବନରେ ହଲି ସିନେମାର ଛବି ପରି ଦିଶୁଛି । ଚାଲ, ଚାଲ ସାଙ୍ଗରେ ଗୀଟାର, ବେଞ୍ଜୋ, ଭାଓଲିନ୍ ହେରିକା ନେଇଚାଲ । ବୋଟିଂ କରିବା, ରୋଇଂ କରିବା । ଚନ୍ଦ୍ର ଆଲୁଅରେ ଚମତ୍କାର ଲାଗିବ । ଦଉଡ଼, ଦଉଡ଼ ।

ମିଳିତ କଣ୍ଠର ଧ୍ୱନିଗୁଡ଼ିକ ।

ତା'ପରେ ଦଉଡ଼ା, ତା'ପରେ ଝପ୍, ଝପ୍, ଝପ୍ ଡେଇଁ ପଡ଼ି ବୋଟ ମାନଙ୍କରେ ବସିବାର ଶବ୍ଦ ଶୁଭିଲା ।

ଉଚ୍ଛ୍ୱସିତ ଆନନ୍ଦ, ଅଧୀର ଉତ୍ତେଜନା । ଦେହରେ ଯୌବନର ତାତିଲା ରକ୍ତ ଟକ୍‌ମକ୍ ହୋଇ ଫୁଟୁଛି । ସଙ୍ଗସୁଖର ଉନ୍ମାଦନାରେ ବେପରବାଏ କରିଦେଉଛି । କାଳର ଗତି ଅବାରିତ । କାଳ ହେଉଛି ବନ୍ୟା ସମୟର ନଦୀସ୍ରୋତ ପରି । ଉନ୍ମତ୍ତ, ଚିନ୍ତାହୀନ, ବେପଥୁ... ।

ନୀଳମଣି ! ତମେ ଘୁଞ୍ଚିଯାଅ । ପାଖେଇ ଠିଆହୁଅ, ନଚେତ୍ ଆମର ଏ ଦୁର୍ବାର ଗତି ସମ୍ମୁଖରେ ନିକ୍ଷେପିତ ହୋଇ ନିଶ୍ଚିହ୍ନ ହୋଇଯିବ । ତମେ ଗୋଟାଏ ମଲାଗଛର ଅଠାଡ଼ାଳରେ ଲାଗିଥିବା ଶେଷ ଶୁଖିଲା ପତ୍ରଟିଏ ପରି ଯେ କୌଣସି ସମୟରେ ଝରିଯିବା ଅପେକ୍ଷାରେ ରହିଛ । ସେହି ମୁହୂର୍ତ୍ତକୁ ହିଁ ଅପେକ୍ଷା କରି ରହ । ଆମର ଚଲାପଥ ବିଷୟରେ ମୁଣ୍ଡ ଘୂରାଅ ନାହିଁ ।

କାଳ କହେ । ତଥାପି ନୀଳମଣିମାନେ ଯେପରି ଆରୁଣିଙ୍କ ଭଳି ଶୋଇଛନ୍ତି ସେହି ଦୁର୍ବାର ଜଳସ୍ରୋତର ସମ୍ମୁଖରେ—ସେମାନେ ହାରିବେନି । ସେମାନଙ୍କ ମୁଣ୍ଡରେ ଲଦା ହୋଇଥିବା ଗୁରୁଦାୟିତ୍ୱର ବୋଝକୁ ମୁଣ୍ଡାଇ ସେହିପରି ଶେଷ ପର୍ଯ୍ୟନ୍ତ ଅଟଳ ହୋଇ ରହିବେ ସେମାନେ । ନିଶ୍ଚିହ୍ନ ହୋଇ ନ ଗଲା ପର୍ଯ୍ୟନ୍ତ ସେହିପରି ରହିଥିବେ !

ସେମାନଙ୍କ ଉକ୍ତି ହେଉଛି—ଆମେ ତ ଝଡ଼ି ନାହୁଁ, ଜୀବନ ବୃକ୍ଷରେ ଏ ପର୍ଯ୍ୟନ୍ତ ଲାଗି ରହିଛୁ, ଆଜି ମଧ୍ୟ ଅଛୁଁ । ଥିବାଯାଏଁ ଆମେ ଜଗିବୁ । ଆମେ ଜଗିବୁ ।

ସେଇଥିପାଇଁ ମ୍ୟୁଜିକ୍, ଡାନ୍‌ସ୍ ଓ ଡିନର୍ ପରେ ରୋଇଂ ସାରି ଯେତେବେଳେ ମଧୁଛନ୍ଦାଙ୍କ ସାଙ୍ଗ ଦଳ ଶ୍ରାନ୍ତକ୍ଲାନ୍ତ ହୋଇ ଫେରି ଆସିଲେ ଆଉ ସେତେବେଳେ ସାଙ୍ଗେ ସାଙ୍ଗେ ବାହାଦୂର ଆସି ସଲାମ ବଜାଇ ମଧୁଛନ୍ଦାକୁ କହିଲା—ଗାଡ଼ିମେ ଡକ୍ଟର ସାହେବ ଇନ୍ତଜାର୍ କର୍‌କେ ବୈଠେ ହେଁ ମାଇଜୀ—

କିଏ ? କକେଇ ! ହତବାକ୍ ହୋଇଗଲା ମଧୁଛନ୍ଦା । ଅବାକ୍ ହୋଇଗଲେ ସମସ୍ତେ ତା ସାଙ୍ଗମାନେ । ଗାଡ଼ି ଅପେକ୍ଷା କରୁଛି, ଡ୍ରାଇଭର୍ ବସିଛି, ଦେବବ୍ରତ ମଧ୍ୟ ଅପେକ୍ଷା କରି ବସି ରହିଛନ୍ତି । ବର୍ତ୍ତମାନ ଘରକୁ ଫେରିଯିବାକୁ ପଡ଼ିବ ମଧୁଛନ୍ଦାକୁ ।

ଇସ୍, କଥାର ଖିଲାପ୍ ! ଇସ୍ କି ଅଭଦ୍ରାମି ! କି ଅସୌଜନ୍ୟ ! କି ଲଜ୍ଜାକର ! ଏତେ ବଡ଼ ବିବାହ ଅନୁଷ୍ଠାନର ଏତେଗୁଡ଼ିଏ ଲୋକଙ୍କ ଆଗରେ ଏମିତି ଅପଦସ୍ଥ ହେବା !

ମଧୁଛନ୍ଦାର ଆଖିରୁ ଲୁହ ଝରିବାର ଉପକ୍ରମ କରୁଥିଲା । କ୍ରୋଧରେ ସେ ଲୁହ ଶୁଖିଗଲା ମୁହୂର୍ତ୍ତକରେ । କ୍ଷୋଭରେ ଅବରୁଦ୍ଧ ହୋଇଯାଇଥିବା କଣ୍ଠସ୍ୱରରୁ ବିଦାୟର ସମ୍ଭାଷଣ ଟିକକ ମଧ୍ୟ ସ୍ପଷ୍ଟରୂପେ ବାହାରି ପାରିଲା ନାହିଁ । ଦାନ୍ତରେ ଦାନ୍ତ ଚିପି ମଧୁଛନ୍ଦା ତୁନିହୋଇ ଯାଇ ବସିଲା ମଟରଗାଡ଼ି ଭିତରେ ।

କକେଇଙ୍କ ମୁହଁଟା ଯେପରି ଅତିମାତ୍ରାରେ ଗମ୍ଭୀର ମନେହେଲା ତା'ର । ପଦଟିଏ ହେଲେ କଥା କହି ନଥିଲେ ଦେବବ୍ରତ ।

ମଧୁଛନ୍ଦାର ଇଚ୍ଛା ହେଉଥିଲା ନିଜର କ୍ରୋଧାଗ୍ନିରେ ସମସ୍ତଙ୍କୁ ଭସ୍ମ କରିଦେଇ ପାରନ୍ତା ଯଦି । ବିଶେଷତଃ ସର୍ବପ୍ରଥମେ ସେହି ନୀଳମଣି ନାମଧାରିଣୀ ବୁଢ଼ୀଟିକୁ—ଯିଏ କି ଗୋଟାଏ ବରଗଛ ପରି ଶତାୟୁ ହୋଇ ଜୀଇଁ ରହିଛି ଆଜିଯାଏଁ । କ୍ଷୟ ହେବା ପରିବର୍ତ୍ତେ ତା ପୁରୁଣା ଡାଳରୁ ନୂଆ ଚେର ସୃଷ୍ଟି କରି ବରଗଛ ଯେପରି ଭୂମି ସଂଲଗ୍ନ କରିଦିଏ ସେ ଚେରକୁ, ପୁଣି ଭୂମି ଉପରେ ଗୋଟିଏ ନୂଆ ଗଛର ଆୟୁଷ ସଂଗ୍ରହ କରି ଶହ ଶହ ବର୍ଷ ବଞ୍ଚି ରହେ ଠିକ୍ ସେହିପରି ମରିବାର ସମ୍ଭାବନା ମଧ ଯାହାର ନାହିଁ ।

ଏହା ନିଶ୍ଚୟ ସେହି ବୁଢ଼ୀ ନୀଳମଣିଙ୍କ କାମ । ତାଙ୍କରି ବୁଦ୍ଧି, ତାଙ୍କର ଜିଦ୍ ।

କିନ୍ତୁ ମଧୁଛନ୍ଦା ଭୁଲ୍ ବୁଝିଥିଲା । ଗାଡ଼ିରୁ ଓହ୍ଲାଇ ତରବରରେ ସିଡ଼ି ଚଢ଼ି ରାଗରେ ଜଳୁ ଜଳୁ ବାରଣ୍ଡାକୁ ଅତିକ୍ରମକରି ଯିବାବେଳେ ଗୋଟିଏ ଅଗ୍ନିମୟ କଟାକ୍ଷ ନିକ୍ଷେପ କରିଥିଲା ସେ ନୀଳମଣିଙ୍କ ଘରର ଖୋଲା ଦ୍ୱାର ବାଟେ—ଚଉକିରେ ବସିଛନ୍ତି ସତ୍ୟବ୍ରତ ! ନନା ! ତାଙ୍କର ତ ଏତେ ଶୀଘ୍ର ଫେରିବା କଥା ନଥିଲା ଦିଲ୍ଲୀରୁ ! ମଧୁଛନ୍ଦାର ରାଗତକ ଯେପରି ଗଦାଏ ପାଉଁଶ ପାଲଟିଗଲା, ନ ଚାହିଁଲେ ମଧ ଥମିଗଲା ଛାତି ଭିତରଟା । ତା'ର ପିକ୍‌ନିକ୍‌ରେ ଯିବାକଥା ମଧ ବୋଧହୁଏ ବଡ଼ମା କହି ସାରିଲେଣି ନନାଙ୍କୁ ।

ସତ୍ୟବ୍ରତଙ୍କ ମୁହଁଟା ଦିଶୁଥିଲା ଅଦ୍ଭୁତ ଭାବରେ କଠିନ ।

ନିଜ ଶୟନ କକ୍ଷରେ ଗୋଟିଏ ଚଉକିରେ ବସି ଗଭୀର ଚିନ୍ତାରେ ମଗ୍ନ ହୋଇ ଭାବୁଥିଲେ ସୁନନ୍ଦା ମଧ ।

ବାବାଃ ! ଆଜି ସତ୍ୟବ୍ରତଙ୍କ ଆଖିର ସେହି ଅଗ୍ନିମୟ ଚାହାଁଣି । ସୁନନ୍ଦା ନିଜ ଜୀବନରେ ଭୁଲି ପାରିବେନି କେବେ ।

ଆନନ୍ଦ ଉତ୍ସବ ମୁଖରିତ ପରିବେଶରେ ଛନ୍ଦା ଆଜି ରାତିଟା କଟାଇ ଦେଇଥିଲେ କ'ଣ ଗୋଟାଏ ପ୍ରଳୟ ହୋଇ ଯାଇଥାନ୍ତା ? ଯଦି ସାବାଳିକା ଝିଅକୁ ଏହି ଟିକକ ସ୍ୱାଧୀନତା ଦେଇ ନ ପାରିବ, ତା'ହେଲେ ତାକୁ ଏତେ ପାଠଶାଠ ପଢ଼ାଇ ଶିକ୍ଷିତା କରିବାର ଦରକାର କ'ଣ ଥିଲା ?

ଯେତେକ ସବୁ କଟକଣା ତାଙ୍କରି ବେଳକୁ ହିଁ କରାଯାଏ । ଏ ଘରର ବୋହୂ ହୋଇ ସୁଜାତା ଯେ ପ୍ରତିଦିନ ଯାଇ ଡାକ୍ତରଖାନାରେ କାମ କରୁଛି, ସେ କଥା ଆଉ ଦୋଷାବହ ନୁହେଁ । କାହିଁ କେତେ ଦୂରରେ ଆଖିର ସମ୍ପୂର୍ଣ୍ଣ ଆଢୁଆଳରେ ତ ରହିଛି ସ୍ୱରୂପା, କିପରି ସେ ଚଳୁଛି ସେ କଥା ଦେଖୁଛି କିଏ ? ଖାଲି ମହିଳା ହଷ୍ଟେଲଟିରେ ରହି ଯାଇଛି ବୋଲି ସବୁତକ ଦୋଷ କଟିଗଲା ନା କ'ଣ ?

ନୀଳମଣିଙ୍କ ଏହି କଠୋର ଶାସନ ତଳେ ବିଚରା ଛନ୍ଦା ଅଧାମଲା ମୂଷାଟିଏ ପରି ସବୁବେଳେ ଡରିମରି ସଙ୍କୁଚିତ ହୋଇ ଚଳିଲା । ଏହିପରି ଚଳିଲେ ପିଲାଙ୍କର ବ୍ୟକ୍ତିତ୍ୱର ବିକାଶ ଘଟିବ କିପରି ? ଖାଲି ତ ବ୍ୟକ୍ତିତ୍ୱ ନୁହେଁ—ତା ସହିତ ପ୍ରତିଭାର ମଧ ।

ସୁନନ୍ଦାଙ୍କ ମତରେ ସବୁତକ ଅବିଚାର ନୀଳମଣିଙ୍କର । ସ୍ୱରୂପା ପ୍ରତି ଏହିପରି ଅନ୍ୟାୟ ପକ୍ଷପାତିତ୍ୱ କାହିଁକି ? ସ୍ୱରୂପା କ'ଣ ସତରେ ଏତେ ଉଚ୍ଚସ୍ତରର ଭଲ ଝିଅ ?

ସୁନନ୍ଦାଙ୍କର ମଧ କ'ଣ ମଝିରେ ମଝିରେ ଇଚ୍ଛା ହୁଏ ନାହିଁ ଏଇ ଏକାନ୍ନବର୍ତ୍ତୀ ପରିବାରର ବନ୍ଧନକୁ ମୁହୂର୍ତ୍ତକରେ ଛିଣ୍ଡାଇ ଦେଇ ଆଉ କେଉଁଠାକୁ ଯାଇ ଗଢ଼ନ୍ତେ ନିଜର ଛୋଟ ପରିବାରଟିଏ ! ପୁଅ ସୁପ୍ରକାଶ, ଝିଅ ମଧୁଛନ୍ଦା, ସେ ଓ ସତ୍ୟବ୍ରତ । ଆମେ ଦୁଇଜଣ ଓ-ଆମର ଦୁଇଜଣ । ଛୋଟ ପରିବାରଟିଏ ସୁଖୀ ପରିବାରଟିଏ । ସେ ପରିବାର ଡଙ୍ଗାଟିର ଆହୁଲା ସମ୍ପୂର୍ଣ୍ଣ ଭାବରେ ତାଙ୍କରି ହାତରେ ରହନ୍ତା । ନିଜ ଇଚ୍ଛା ମୁତାବକ ତାକୁ ନିୟନ୍ତ୍ରିତ କରିଥାନ୍ତେ ସେ । ଦିଲ୍ଲୀ ସ୍କୁଲ ଅଫ୍ ଡାନ୍‌ସ ଏଣ୍ଡ୍ ଡ୍ରାମାରେ ଯାଇ ମଧୁଛନ୍ଦା ଶିକ୍ଷା ଲାଭ କରିଥାନ୍ତା । ଶାନ୍ତିନିକେତନରେ ଯାଇ କିଛି ଦିନ ରହିଥାନ୍ତା, ନଚେତ୍ ପୁନେଠାରେ ଥିବା ଫିଲ୍ମ ଆଣ୍ଡ ଟେଲିଭିଜେନ୍ ଇନ୍‌ଷ୍ଟିଚ୍ୟୁସନ୍‌ରେ ମଧ ଶିକ୍ଷାଲାଭ କରିଥାନ୍ତା, ତାହାଲେ ନିଶ୍ଚୟ ଆନ୍ତର୍ଜାତିକ କ୍ଷେତ୍ରରେ ଜଣେ ସଙ୍ଗୀତ ଓ ନୃତ୍ୟ ଶିଳ୍ପୀ ରୂପେ ବିଖ୍ୟାତ ହୋଇ ପାରିଥାନ୍ତା ସେ । ନୃତ୍ୟକଳାରେ ଜିନିଅସ୍ ସେ । ପ୍ରତିଭା ବିକଶିତ ହେବାକୁ ସୁଯୋଗର ଆବଶ୍ୟକତା ଯେ ଅଛି, ଏ କଥା କିଏ ବୁଝୁଛି ?

କିନ୍ତୁ କାହାକୁ ଅବଲମ୍ବନ କରି ସୁନନ୍ଦା ତାଙ୍କର ଏ ସୁନ୍ଦର ସ୍ୱପ୍ନକୁ ସଫଳ କରନ୍ତେ ? ମୂଳ ବ୍ୟକ୍ତି ସତ୍ୟବ୍ରତ, ସେ ଯେ ଏକାବେଳକେ ନୀଳମଣିଙ୍କ ଆଦର୍ଶରେ ଗଢ଼ା—ତାଙ୍କର ଅବିକଳ ଛାଞ୍ଚଟିଏ ପରି । ଠିକ୍ ତାଙ୍କରି ପରି ରକ୍ଷଣଶୀଳ ଓ ଜିଦ୍‌ଖୋର୍—ନିହାତି ଜିଦ୍‌ଖୋର୍ । କଥା କହନ୍ତି ବହୁତ କମ୍, କିନ୍ତୁ ସେହି ପଦେ ଦି'ପଦ କଥା ଆଉ ଏପଟ ସେପଟ ହବାର ନୁହେଁ ।

ସତ୍ୟବ୍ରତଙ୍କୁ ଏହିପରି ଗଢ଼ିବା ମୂଳରେ ତ ସେହି ବୁଢ଼ୀ ନୀଳମଣି ହିଁ ବିଦ୍ୟମାନ । ବୁଢ଼ୀ ବହୁତ ବୁଦ୍ଧିମତୀ, କୌଣସି କଥାରେ ନିଜେ ଚିହ୍ନା ନ ପଡ଼ି ନୀରବରେ କାମତକ ଆଦାୟ କରିନେବାରେ ଏକାବେଳକେ ଧୁରନ୍ଧରା ।

ଆଜିର ଘଟଣାଟି ଦେଖ—ଘରେ ଆସି ପାଦ ଦେଉ ନ ଦେଉଣୁ ସାଙ୍ଗେ ସାଙ୍ଗେ କାହିଁକି ମଧୁଛନ୍ଦାକୁ ଖୋଜିଥାନ୍ତେ ସତ୍ୟବ୍ରତ ? ସର୍ବପ୍ରଥମେ ନୀଳମଣିଙ୍କ ପାଦଧୂଳି ନେବାର ଯେଉଁ ପ୍ରଚଳନ ରହିଛି, ଏମାନଙ୍କର ସେତକି ସମୟର ସୁଯୋଗରେ ନୀଳମଣି କଥାଟାକୁ ତାଙ୍କ କାନରେ ପକାଇ ଦେବାକୁ ଭୁଲି ଯାଇନାହାନ୍ତି । ଓହୋ, କେଡ଼େ ସଇତାନ ପ୍ରକୃତି ସତେ ! ବୁଢ଼ୀ ମରିବାକୁ ବସିଲେଣି, ହେଲେ ପ୍ରକୃତି ବଦଳୁନାହିଁ !

ମୁହଁହାତ ଧୋଇ ଲୁଗା ବଦଳାଇବା ପରେ ମଧ ସେହିଘରେ ଯାଇ ବସିଛନ୍ତି ସତ୍ୟବ୍ରତ, ସେଇଠି ଖିଆପିଆ ସାରିଛନ୍ତି ଆଉ ଅପେକ୍ଷା କରି ରହିଛନ୍ତି ମଧୁଛନ୍ଦାର ଫେରିବାକୁ । ତାଙ୍କରି ଅନୁରୋଧରେ ବିଚରା ଦେବବ୍ରତ କ୍ଲିନିକ୍‌ରୁ ଫେରୁ ନ ଫେରୁଣୁ ଗାଡ଼ି ଧରି ଯାଇଛନ୍ତି ତ ଯାଇଛନ୍ତି ।

ରାତି ବାରଟା ବାଜିଲା, ରାତି ଗୋଟାଏ ! ସୁନନ୍ଦାଙ୍କ ଛାତି ଭିତରଟା ଥରୁଛି ଭୟରେ । ସୁଜାତା ମୁହଁଟାକୁ ହାଣ୍ଡି ପରି କରି କେତେବେଳୁ ଯାଇ ଶୋଇଲାଣି । ମିତାର ଘରେ ଆଲୁଅ

ଜଳୁଛି, ଟେବୁଲ୍ ପାଖରେ ବସି ପଢୁଛି ସେ ଏ ପର୍ଯ୍ୟନ୍ତ । ପଢୁଛି କି ଛନ୍ଦା ଫେରିଆସିଲେ କି ନାଟକ ହେବ ତାହା ଦେଖିବାକୁ ପଢ଼ିବାର ଛଳନା କରି ବସିଛି, କିଏ ଜାଣିଛି ! ସ୍ମିତା ଚୁପ୍ ସଇତାନ ଝିଅଟିଏ ବୋଲି ସବୁବେଳେ ମନେହୁଏ ସୁନନ୍ଦାଙ୍କର ।

କ'ଣ ହେବ ସତରେ ? ସତ୍ୟବ୍ରତଙ୍କ ରାଗ ତାଙ୍କୁ ଭଲରୂପେ ଜଣା । ଭଲରୂପେ ଜଣା ମଧୁଛନ୍ଦା ବି କିପରି ରାଗୀ ଝିଅଟେ । ଏ ରାତି ଅଧରେ ଗୋଟାଏ ଯୁକ୍ତିତର୍କ ଚାଲିବ, ଅପ୍ରୀତିକର ଘଟଣା ଘଟିବ । ଓହୋ ! ସତ୍ୟବ୍ରତଙ୍କ ରୁଚି ଜାଣି ସୁଦ୍ଧା ଆଜି ସେ କାହିଁକି ମଧୁଛନ୍ଦାକୁ ମନା କଲେ ନାହିଁ ? କିନ୍ତୁ ଅନୁମତି ବି ସେ ଦେଇ ନାହାନ୍ତି । ଅନୁମତି ଦେଇଛନ୍ତି ନୀଳମଣି ନିଜେ । ହୁଏତ ଜାଣିଶୁଣି ଅନୁମତି ଦେଇଛନ୍ତି ଏହିପରି ଗୋଟାଏ ନାଟକ ଘଟାଇବା ପାଇଁ ।

ରାତି ବାରଟା ବାଜିଲା । ତା'ପରେ ରାତି ଗୋଟାଏ । ରାତି ଦୁଇଟା ଆଡ଼କୁ ଯାଉଛି ଘଡ଼ିର କଣ୍ଟାଟା । ସୁନନ୍ଦାଙ୍କ ନିଃଶ୍ୱାସ ପ୍ରଶ୍ୱାସ ସତେ ଯେପରି ରୁଦ୍ଧ ହୋଇ ଆସୁଛି ଆଶଙ୍କାରେ । ହେଇଟି ଗାଡ଼ି ଆସିଲା...ପାହାଚରେ ସେମାନଙ୍କର ପାଦଶବ୍ଦ...ଓଃ ଏଇଲେ... ।

ନା, କିଛି ହୋଇନାହିଁ । ଖାଲି ମଧୁଛନ୍ଦା ଆସି ତା' ଘରଟିରେ ପଶି ଦ୍ୱାର ବନ୍ଦ କରିଦେଲା । ଦେବବ୍ରତ ଓ ସତ୍ୟବ୍ରତଙ୍କ ପାଦଶବ୍ଦ ଆଗେଇ ଆସୁଛି ।

ତରବରରେ ସୁନନ୍ଦା ମଶାରି ଟେକି ଶୋଇପଡ଼ିବାର ଛଳନା କଲେ । ମନ ଭିତରେ ବିଦ୍ରୋହର ଲେଲିହାନ ଶିଖା ଜଳୁଥିଲେ ମଧ୍ୟ ସାମନା ସାମନି ଯୁକ୍ତିତର୍କକୁ ସବୁକାଳେ ଡର ରହିଛି ସୁନନ୍ଦାଙ୍କର । ତା'ପରେ ସତ୍ୟବ୍ରତଙ୍କ ଭଳି ମଣିଷ ! ତୁଷାର ଧବଳ ହିମଗିରି ପରି ଉତ୍ତାପହୀନ ଅଚଳ ମେରୁ ସେ । ତାଙ୍କ କଥାରେ ତାତି ନ ଥିବ ସତ; କିନ୍ତୁ ଥଣ୍ଡାଟା ମଧ୍ୟ ଯେ ହିମଶୀତଳ ସ୍ରୋତ ପରି, ତୀକ୍ଷ୍ଣ ତୁଷାରକଣା ପରି ସୂଚୀବତ୍ ବିଦ୍ଧ କରିଦିଏ । ତେଣୁ ସୁନନ୍ଦାଙ୍କର ଏହି ଡର ।

ସତ୍ୟବ୍ରତ ଘର ଭିତରକୁ ଆସିଲେ—ଥରଟିଏ ସୁନନ୍ଦା ଆଡ଼କୁ ଚାହିଁ ଟେବୁଲ ପାଖକୁ ଯାଇ ଟେବୁଲ ଲେମ୍ପଟିର ସୁଇଚ୍ ଟିପି ଆଲୁଅ ଜାଳିଲେ ସେ । ତା'ପରେ ଘରର ଆଲୁଅଟି ଲିଭାଇ ଦେଇ ବସିଗଲେ ସେହି ଟେବୁଲ ପାଖରେ ଗୋଟାଏ ବହି ହାତରେ ଧରି ।

ଦୀର୍ଘପଥ ଯାତ୍ରାର ଶ୍ରମରେ ସେ କ୍ଲାନ୍ତି ଅନୁଭବ କଲେନି କାହିଁକି ? କେତେଦିନର ବିଚ୍ଛେଦ ପରେ ମଧ୍ୟ ସ୍ତ୍ରୀଙ୍କ ସାନ୍ନିଧ୍ୟ ଖୋଜିଲେନି କାହିଁକି ? ଚୁପ୍‌ଚାପ୍ ବହିଟିଏ ଧରି ବସିଗଲେ ।

ଧନ୍ୟ ! ମୃତ୍ୟୁ-ପଥ ଯାତ୍ରିଣୀ ସେ ଶହେବର୍ଷର ବୁଢ଼ୀଟାର ପ୍ରତାପ କେତେ ବେଶୀ, ପ୍ରଭାବ କେତେ ବେଶୀ ! କୋଉଦିନ ସେ ଶୁଖିଲା ପତ୍ରଟା ଝଡ଼ିବ, ସୁନନ୍ଦା ଶାନ୍ତିରେ ନିଃଶ୍ୱାସ ପକାଇ ବଞ୍ଚିବେ, ମୁକ୍ତି ପାଇବେ । ସେଦିନ ଆଉ ସତ୍ୟବ୍ରତ ଏତେ ଦିନ ପରେ ଘରକୁ ଆସି ଏଭଳି ଚୁପ୍‌ଚାପ୍ ହୋଇ ବସିବେନି ଟେବୁଲ ପାଖରେ ।

କିନ୍ତୁ କିଏ କହିପାରିବ ନୀଳମଣିଙ୍କ ଆୟୁଃ ସୀମା କେତେଦୂର ପର୍ଯ୍ୟନ୍ତ ସମ୍ପ୍ରସାରିତ ହୋଇ ରହିଛି ? ହୁଏତ ସୁନନ୍ଦାଙ୍କ ଆଶା ଆଶାରେ ହିଁ ରହିବ । ହୁଏତ...ହୁଏତ ଏ ଶୁଖିଲା ପତ୍ରଟା ସେମିତି ଗଛଅଗରେ ଲାଗିରହିବ ଆବହମାନ କାଳ, ନିଜେ ସୁନନ୍ଦା ହିଁ ମରିବେ ଆଗ...ଓଃ ! ତେବେକେ ସେ ମଧ୍ୟ ଏକପ୍ରକାର ମୁକ୍ତି ମିଳିବ । ନରମ ତକିଆ ଉପରେ ଝରୁଛି ଆଖିଲୁହର ଧାରାଶ୍ରାବଣ ।

x x x

ଆଉ ନରମ ବିଛଣାରେ ଶୋଇ ମଧ୍ୟ ନୀଳମଣିଙ୍କର ଅଶ୍ୱସ୍ତିର ସୀମା ନାହିଁ । ଶାରୀରିକ ଯନ୍ତ୍ରଣା ତ ରହିଛି ତା ଛଡ଼ା ଆଜି ସତ୍ୟବ୍ରତର ବ୍ୟବହାରରେ ଆହତା ଓ ବିସ୍ମିତା ସେ । କ'ଣ ହୋଇଛି ସତ୍ୟର ? କାହିଁକି ସେ ଏତେ ବିଚଳିତ ?

ମଧୁଛନ୍ଦାକୁ ଯାଇ ନେଇଆସିବା ପ୍ରସ୍ତାବରେ ନୀଳମଣି ପ୍ରଥମେ ବାଧା ଦେବାକୁ ଚେଷ୍ଟା କରିଥିଲେ, କିନ୍ତୁ ହାତର ସଙ୍କେତରେ ଅସ୍ୱୀକାର କଲା ସତ୍ୟବ୍ରତ । ଯାହାକି ଆଜି ପର୍ଯ୍ୟନ୍ତ କେବେ ସେ କରିନାହିଁ । ପୁଣି ଅପେକ୍ଷା କରି ବସିବା ଭିତରେ ବାରମ୍ବାର ସେ କହିଥିଲା—ସ୍ୱରୂପା ଯଦି ରାଜି ନହୁଏ, ତେବେ ଛନ୍ଦାର ବାହାଘରଟା ଆଗ କରିଦେଲେ ବଡ଼ ମା'ଙ୍କର କ'ଣ କିଛି ଆପତ୍ତି ଅଛି ? ଖୁବ୍ ଶୀଘ୍ର ଛନ୍ଦାର ବାହାଘରଟା ସାରିଦେଇ ସେ ତା'ର ଦାୟିତ୍ୱ ସାରିଦେବାକୁ ଚାହେଁ ।

ବିସ୍ମିତା ହେଲେ ମଧ୍ୟ ନୀଳମଣି କହିଥିଲେ—ହେଇଟି ସେଦିନ ପରେ ସେ ନିଜେ ସୁଜାତାକୁ କହି ତା'ର କକେଇ ଅର୍ଥାତ୍ ଶଚୀନ୍ଦ୍ରର ବାପାଙ୍କ ପାଖକୁ ଚିଠି ଲେଖାଇଛନ୍ତି । ତାଙ୍କର ବି ଇଚ୍ଛା ମଧୁଛନ୍ଦାର ବାହାଘରଟା ଆଗ କରିଦେବାକୁ ।

ବହିଟିକୁ ଆଖି ଆଗରେ ମେଲାଇ ଧରି ସତ୍ୟବ୍ରତ ଭାବୁଥିଲେ—ଅନେକ ଦିନପରେ ନିଖିଳମୋହନଙ୍କ ସହିତ ଦେଖାହେଲା । ପ୍ରଥମେ ତ ସତ୍ୟବ୍ରତ ତାକୁ ଜମା ଚିହ୍ନିପାରି ନ ଥିଲେ । ସତୁରିବର୍ଷର ବୁଢ଼ା ଭଳି ଦେଖାଯାଉଥିଲା ସେ । ମୁଣ୍ଡର ବାଳତକ ସବୁଯାକ ଝୋଟ ପରି ଧଳା, ମୁହଁରେ ଦୁଶ୍ଚିନ୍ତାର ଅଜସ୍ର ରେଖା ବୟସକୁ କୋଡ଼ିଏ ବର୍ଷ ଆଗେଇ ଦେଇଛି ।

ରେଳରେ ଚଢ଼ିଲା ପରେ ବିଛଣାଟାକୁ ସିଟ୍ ଉପରେ ସଜାଡ଼ି ବସି ଖଣ୍ଡେ ବହି ପଢ଼ିବାର ଉପକ୍ରମ କରୁଥିଲେ ସତ୍ୟବ୍ରତ । ହଠାତ୍ ତାଙ୍କୁ ଚିହ୍ନିପାରି ଦୂରରୁ ଆଗେଇ ଆସିଲା ନିଖିଳମୋହନ । କହିଲା—ସତ୍ୟ, ମୋତେ ଚିହ୍ନିପାରୁଛୁ ?

ଚିହ୍ନି ନ ପାରି ଅବାକ୍ ହୋଇ ଚାହିଁରହିଲେ ସେ । ସ୍ୱରଭଙ୍ଗୀ ସବୁ ପରିଚିତ ପରିଚିତ ଲାଗୁଥିଲେ ମଧ୍ୟ ଚିହ୍ନି ପାରୁନାହାନ୍ତି ।

ବିଷଣ୍ଣ ହସ ହସି ନିଖିଳ କହିଥିଲା—ଆରେ, ମୁଁ ପରା ନିଖିଳ । କଲେଜରେ ପଢ଼ିଲାବେଳେ ଆମେ ହଷ୍ଟେଲରେ ଏକା ରୁମ୍‌ରେ ରହୁ ନ ଥିଲେ ? ମନେ ପକାଇଲୁ—ନୀଳୁ, ନୀଳୁ, ନୀଳୁକୁ ମନେପକା ।

ଏଁ ! ତୁ ନୀଳୁ କିନ୍ତୁ ଇମିତି–

ଭାଗ୍ୟ !

କ'ଣ ଦେହ ବେମାରି ହୋଇଥିଲା ?–ହାତରେ ଧରି ପାଖରେ ବସାଉ ବସାଉ ପଚାରିଲେ ସତ୍ୟବ୍ରତ ।

ନା ନା ଦେହ ବେମାର ନୁହେଁ–ତେବେ–

ଇସ୍ । କେତେ ବଦଳିଗଲୁ । ଏକାବେଳକେ ବୁଢ଼ା ଦିଶୁଛୁ ଯେ । କେଉଁଠି ଅଛୁ ଏଇଲେ ?

ଆସାମରେ । ମୋ ଚାକିରି ତ କେନ୍ଦ୍ରସରକାରଙ୍କ ଅଧୀନରେ–ଦୀର୍ଘପଥ ଯାତ୍ରା ପାଇଁ ସହପାଠୀ ନିଖିଳକୁ ସାଥୀ ରୂପେ ପାଇ କି ଆନନ୍ଦିତ ହୋଇନଥିଲେ ସେ ! କିନ୍ତୁ ନିଖିଳର ଜୀବନ କାହାଣୀ ତାଙ୍କୁ ଗଭୀରତର ଦୁଃଖ ଦେଇଥିଲା । ତାଙ୍କ ପିତୃପ୍ରାଣରେ ପାହାର ଦେଇ ଯେପରି ନିଜର କର୍ତ୍ତବ୍ୟ ବିଷୟରେ ତାଙ୍କୁ ସଚେତନ କରାଇଦେଲା ।

ସେ କାହାଣୀଟି ହେଉଛି ଏହିପରି ।

ଜନମ ଅବଧି ହାମ ରୂପ ନେହାରିନୁ ନୟାନନା ତିରପିତ ଭେଲ

ଲାଖ ଲାଖ ଯୁଗ ହିୟେ ହିୟା ରାଖନୁ ତବୁ ହିୟା ଜୁଡ଼ାଲୋ ନା ଗେଲ ।

ପ୍ରେମିକ-କବି ବିଦ୍ୟାପତିଙ୍କ କବିତା ଏହା–ଯୁଗ ପରେ ଯୁଗ ଯାଇଛି ସତ; କିନ୍ତୁ ସେ ପ୍ରେମର ତୃଷ୍ଣା ଲକ୍ଷ ଲକ୍ଷ ଯୁଗ ଗଲେ ମଧ ମେଣ୍ଟି ନାହିଁ । ଏ ତୃଷ୍ଣା ତ ଥିଲା ବିଦ୍ୟାପତିଙ୍କର ବହୁତ ପୂର୍ବରୁ । ଆମ ଓଡ଼ିଶାର ପ୍ରେମିକ କବି ଜୟଦେବ ମଧ ଲେଖିଥିଲେ–ଧୀର ସମୀରେ ଯମୁନା ତୀରେ...ବସତି ବନେ ବନମାଳୀ... ।

ସମଗ୍ର ଭାରତର କବି, ମହାକବି କାଳିଦାସ ମଧ ଏହି ପ୍ରେମ ବିରହ, ମିଳନକୁ ନେଇ ହିଁ ରଚନା କରିଯାଇଛନ୍ତି ତାଙ୍କର ମହାକାବ୍ୟ– ଅମର ଦୂତ-କାବ୍ୟ, ମେଘଦୂତ ।

ପ୍ରେମର ତୃଷ୍ଣା – ମହାତୃଷ୍ଣା ।

ଜୟଦେବଙ୍କ ଦ୍ୱାରା ବର୍ଣ୍ଣିତ ଶ୍ରୀରାଧା ଶ୍ରୀକୃଷ୍ଣ ହିନ୍ଦୁ ପୁରାଣର ଆଦ୍ୟ ପ୍ରେମିକା ଓ ପ୍ରେମିକ, ନାୟିକା ଓ ନାୟକ । ସେମାନଙ୍କର ପ୍ରେମର ମୃତ୍ୟୁ ହୋଇନାହିଁ କି ହେବନାହିଁ । ସେ ପ୍ରେମ ବଞ୍ଚି ରହିଛି ସଂସାରର ପ୍ରବହମାନ ସ୍ରୋତରେ କେଉଁ ଆଦିମ କାଳରୁ । ଖାଲି ଦୃଶ୍ୟପଟର ପରିବର୍ତ୍ତନ ହୋଇଛି । ଆଚାର, ବ୍ୟବହାର, ପରିବେଶ, ପରିଚ୍ଛଦର ପରିବର୍ତ୍ତନ ହୋଇଛି ସ୍ଥଳବିଶେଷରେ ।

କିନ୍ତୁ ଆକୃତି ବଦଳି ଥିଲେ ବି ପ୍ରକୃତି ବଦଳି ନାହିଁ ।

ଠିକ୍ ବୃନ୍ଦାବନ ନ ହେଲେ ବି ସୌନ୍ଦର୍ଯ୍ୟରେ ବନ୍ୟପ୍ରକୃତି କୌଣସି ଗୁଣରେ ବୃନ୍ଦାବନ ଠାରୁ ଊଣା କରି ନାହିଁ ସ୍ଥାନଟିକୁ । ଅବଶ୍ୟ କଦମ୍ବ ମୂଳ ନାହିଁ କି ଯମୁନା କୂଳ ନାହିଁ । ଯମୁନା ନଦୀ

ବହୁନି କିନ୍ତୁ ତା ପରିବର୍ତ୍ତରେ ବହୁଛି ଉଚ୍ଛ୍ୱସିତ, ବିସ୍ତୃତ ବ୍ରହ୍ମପୁତ୍ର ନଦୀ । ତା'ର ଉପଳମୟ ଶଯ୍ୟା ଉପରେ ଜଳର ପ୍ରଖର ସ୍ରୋତ ଚାଲିଛି ।

ଏଠି ସେଠି ଲାଲ୍ ରଙ୍ଗ କାବୁଲି-କଦଳୀର ଘନ ବଗିଚା ସବୁ । ଭୂମି ଠିକ୍ ସମତଳ ନ ହେଲେ ବି ସୌନ୍ଦର୍ଯ୍ୟ କିଛି ହରାଇ ନାହିଁ । ଲନ୍ ଅଛି, ପାର୍କ ଅଛି, ସିନେମା ଗୃହ ଅଛି, କଲେଜ ମଧ୍ୟ ଅଛି । ତେଣୁ ଯମୁନା କୂଳକୁ ପାଣିପାଇଁ ଯିବାର ଆବଶ୍ୟକତା ଆଉ ନ ଥିଲେ ମଧ୍ୟ ଏ ଯୁଗର ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କର ପରସ୍ପରକୁ ଭେଟିବାର ବହୁତ ବହୁତ ସୁବିଧା ସ୍ଥାନ ରହିଛି । ସହ ଶିକ୍ଷା ମଧ୍ୟ ଅଧିକ ସୁଯୋଗ ସୃଷ୍ଟି କରିଛି ଏ ଯୁଗରେ ।

ସୁବିବେକ ଆଉ ଚିତ୍ରାଙ୍ଗଦା । ପରସ୍ପରକୁ ଭଲପାଇଛନ୍ତି ସେମାନେ । ସୁବିବେକ ଏ ଦେଶର ସନ୍ତାନ ହେଲେ ମଧ୍ୟ ଖ୍ରୀଷ୍ଟଧର୍ମାବଲମ୍ବୀ, ଆଉ ଚିତ୍ରାଙ୍ଗଦା ଖାଣ୍ଟି ଓଡ଼ିଆ ବ୍ରାହ୍ମଣ ପରିବାରର ଝିଅ ।

ନିଖିଳମୋହନ ରବୀନ୍ଦ୍ର ସାହିତ୍ୟର ଜଣେ ପରମ ଭକ୍ତ ଥିଲେ । ତେଣୁ ବାଛି ବାଛି ଝିଅର ନାଁ ଦେଇଥିଲେ ଚିତ୍ରାଙ୍ଗଦା । ଚିତ୍ର ପରି ସୁନ୍ଦର ମଧ୍ୟ ସେ । ପ୍ରଥମେ ପରିଚୟ, ତା'ପରେ ବନ୍ଧୁତା । ସେହି ବନ୍ଧୁତା କ୍ରମଶଃ ଯାଇ ପରିଣତ ହୋଇଛି ପ୍ରେମରେ । ରାଧା-କୃଷ୍ଣଙ୍କ ପ୍ରେମ ତୁଳନାରେ ସେ ପ୍ରେମ କିଛି ଊଣା ନଥିଲା । ଖାଲି—

ସେ ପ୍ରତିମା ନେତ୍ରର ଏ ଜୀବନ ଜୀବର
ପଲକ ଅନ୍ତର ଜଗତ ଅନ୍ଧାର
ଦିଶୁଛି ଗୋପାଳକୃଷ୍ଣ କହି ।

ନ ହୋଇ ହୋଇଥିଲା—

With love's light wings did I
Overperch these walls;
For stony limits cannot hold
love out
And what love can do
that dares love attempt.

ପ୍ରେମର ପ୍ରତିମା ଚକ୍ଷୁର ଅନ୍ତରାଳକୁ ଗଲାମାତ୍ରେ ଜଗତ ଅନ୍ଧାର ଦିଶୁଥିଲା । ତେଣୁ କୌଣସିମତେ ସୁଯୋଗ ସୃଷ୍ଟି କରି ସେମାନେ ପରସ୍ପରକୁ ଭେଟୁଥିଲେ, କବିତା ଶୁଣାଉଥିଲେ । ରଚନା କରୁଥିଲେ କଳ୍ପନାର ସ୍ୱର୍ଗ । ଯଦିଚ ଦୁହେଁଯାକ ଜାଣିଥିଲେ ଯେ ବାସ୍ତବ କ୍ଷେତ୍ରରେ ସେହି ସ୍ୱର୍ଗ ରଚନା କରିବା ଏତେ ସହଜସାଧ୍ୟ ନୁହେଁ । କାରଣ ଆମର ଏ ଦେଶରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ

ଯୁଗଳ ମିଳନକୁ କେନ୍ଦ୍ରକରି, ସେମାନଙ୍କ ଅମର ପ୍ରେମକୁ କେନ୍ଦ୍ରକରି ଗୋଟିଏ ସମ୍ପ୍ରଦାୟ, ମହା-ସାହିତ୍ୟ ସମୃଦ୍ଧ ବିରାଟ ଗୋଟିଏ ସଂସ୍କୃତି ସୃଷ୍ଟି ଓ ଏକ ସ୍ୱତନ୍ତ୍ର ଧର୍ମ ବୈଷ୍ଣବ-ଧର୍ମ ସୃଷ୍ଟି ହୋଇ ଯାଇଥିଲେ ମଧ୍ୟ, ସୁବିବେକ ଓ ଚିତ୍ରାଙ୍ଗଦାର ପ୍ରେମକୁ ଏ ଜାତି, ଏ ସମାଜ ସହଜରେ ସ୍ୱୀକୃତି ଦେବନାହିଁ, କ୍ଷମା କରିବନାହିଁ । କାରଣ ଚିତ୍ରାଙ୍ଗଦା ବ୍ରାହ୍ମଣକନ୍ୟା ଓ ସୁବିବେକ ଖ୍ରୀଷ୍ଟିଆନ ।

ଫାଲ୍‌ଗୁନର ସ୍ନିଗ୍ଧ ସୁନ୍ଦର ପୂର୍ଣ୍ଣିମା ଅବକାଶରେ ଦୋଳଯାତ୍ରା କରି ପ୍ରେମର ପ୍ରତିମା ରାଧାକୃଷ୍ଣଙ୍କୁ ହୋରି ରଙ୍ଗରେ ରଙ୍ଗାଇ ରଙ୍ଗ ଖେଳରେ ରସାଣିତ କରି ପ୍ରେମର ରଙ୍ଗୀନ ଧାରାକୁ ଧର୍ମର ଧାରା ରୂପେ ବୁହାଇ ଦେଇପାରେ ଏ ଦେଶ । ଶ୍ରାବଣ ପୂର୍ଣ୍ଣିମାରେ ପୁଣି ଝୁଲଣ ଯାତ୍ରା କରି ଆଦି ପ୍ରେମିକ ଓ ପ୍ରେମିକାଙ୍କ ଯୁଗଳ ମୂର୍ତ୍ତିଙ୍କୁ ପ୍ରେମର ଦୋଳିରେ ବସାଇ ଝୁଲାଇ ଅପୂର୍ବ ପ୍ରେମ ଓ ମିଳନର ସ୍ମୃତିକୁ ଉଜ୍ଜୀବିତ କରି ରଖେ । ପରମ ଆରାଧ୍ୟ ଦେବତା ରୂପେ ଜନସମାଜ ପୂଜା ମଧ୍ୟ କରନ୍ତି; କିନ୍ତୁ ସୁବିବେକ ଓ ଚିତ୍ରାଙ୍ଗଦାର ଅନାବିଳ ପ୍ରେମକୁ ଏ ସମାଜ ସହଜରେ ସ୍ୱୀକାର କରିବ ନାହିଁ ।

ସୁବିବେକ ଓ ଚିତ୍ରାଙ୍ଗଦାର ବିବାହରେ ବ୍ରାହ୍ମଣ ସମାଜର ମୂଳଦୁଆ ଦୋହଲି ଉଠିବ । ସବୁଠାରୁ ବେଶି ଆଘାତ ପାଇବେ ଉଭୟ ପକ୍ଷର ବାପା ମା'ମାନେ । ଚିତ୍ରାଙ୍ଗଦାର ନନା ଓ ବୋଉ ସହଜେ ମର୍ମାନ୍ତିକ ଭାବରେ ଆହତ ହେବେ । ସୁବିବେକର ବାବା, ମା ମଧ୍ୟ ଯେ ବାଦ୍‌ପଡ଼ିବେ ନାହିଁ । କାରଣ ସେମାନ ଉଦାର—ଖ୍ରୀଷ୍ଟଧର୍ମାବଲମ୍ବୀ ସତ, କିନ୍ତୁ ସେମାନେ truly Christians in their hearts, ଅର୍ଥାତ୍ ତାଙ୍କ ହୃଦୟରେ ସେମାନେ ଯଥାର୍ଥ ଖ୍ରୀଷ୍ଟିଆନ୍ । ଚିତ୍ରାଙ୍ଗଦା ଯଦି ବିବାହ ପୂର୍ବରୁ ଖ୍ରୀଷ୍ଟଧର୍ମ ଗ୍ରହଣ କରନ୍ତା ତା'ହେଲେ ଆପତ୍ତି ନଥିଲା । କିନ୍ତୁ ସେ ପ୍ରସ୍ତାବକୁ ଅପମାନଜନକ ମନେକରିଥିଲା ସେ । ତେଣୁ ସମ୍ଭବ ଓ ଅସମ୍ଭବ ସବୁପ୍ରକାର କଳ୍ପନାଜଳ୍ପନା କରି ସେକ୍‌ସପିଅର, ଶେଲି, ବ୍ରାଉନିଂ, କିଟସ୍, ଟେନିସନ୍ ପ୍ରଭୃତି କବିମାନଙ୍କର କବିତା ଆବୃତ୍ତି ଦ୍ୱାରା ନିଜ ନିଜର ହୃଦୟର ଭାବକୁ ଆଦାନ ପ୍ରଦାନ ଚାଲିଥିଲା କେବଳ ।

ଶ୍ରୀକୃଷ୍ଣଙ୍କ ପ୍ରେମର ଆହ୍ୱାନ ସେହି ବଂଶୀଧ୍ୱନିକୁ ଶୁଣି ହିତାହିତ ଜ୍ଞାନଶୂନ୍ୟା । ରାଧିକା ପରିବାର ଓ ପରିବେଶକୁ ଭୁଲିଯାଇ ଧାଇଁ ଯାଉଥିଲେ ପ୍ରିୟ ସହିତ ମିଳିତ ହେବାକୁ ସେହି କୁଞ୍ଜବନକୁ, ଯମୁନା କୂଳକୁ କିମ୍ବା କଦମ୍ବ ମୂଳକୁ । ସେଦିନ ସେ ପ୍ରେମରେ ମଧ୍ୟ ନ ଥିଲା ହିତାହିତ ଜ୍ଞାନ, ନ ଥିଲା ଧର୍ମ, ନ ଥିଲା ଆଚରଣ ବା ସାମାଜିକତା, ନ ଥିଲା ଲଘୁ-ଗୁରୁର ସମ୍ପର୍କ ବିଷୟରେ ସଚେତନତା । ତେବେକେ ସେ ପ୍ରେମ ତ ଅମରତ୍ୱ ଲାଭ କରିଛି, ସର୍ବଜନ ପୂଜିତ ହୋଇ ଆସୁଛି ଏପର୍ଯ୍ୟନ୍ତ । କାହିଁ, କେହି ତ ତାହାକୁ ପାପ ବୋଲି କହି ନାହାନ୍ତି କେବେ !

ଅବଶ୍ୟ ପରବର୍ତ୍ତୀ କାଳମାନଙ୍କରେ ରାଧାକୃଷ୍ଣଙ୍କ ଏହି ପ୍ରେମକୁ ବିଭିନ୍ନ ଦାର୍ଶନିକମାନେ ବିଭିନ୍ନରୂପେ ବ୍ୟାଖ୍ୟା କରିଛନ୍ତି । କିଏ କହିଛନ୍ତି—ରାଧା ଏକ ନିର୍ଦ୍ଦିଷ୍ଟ ନାରୀ କିମ୍ବା ଶ୍ରୀକୃଷ୍ଣ ଏକ ନିର୍ଦ୍ଦିଷ୍ଟ ପୁରୁଷ ନ ହୋଇ ପାରିଥା'ନ୍ତି । ସମଗ୍ର ବ୍ରହ୍ମାଣ୍ଡ ପ୍ରକୃତି ଏବଂ ଭଗବାନ ପୁରୁଷ । ପ୍ରକୃତି ଓ

ପୁରୁଷଙ୍କ ମିଳନ ହିଁ ରାଧାକୃଷ୍ଣଙ୍କ ପ୍ରେମ ରୂପେ ବର୍ଣ୍ଣିତ ହୋଇ ଥାଇପାରେ । ବେଦାନ୍ତରେ ବର୍ଣ୍ଣିତ ପ୍ରକୃତି ପୁରୁଷ ହିଁ ପରବର୍ତ୍ତୀ କାଳରେ ଶ୍ରୀରାଧା ଓ ଶ୍ରୀକୃଷ୍ଣ । ସେହିପରି ରାସଲୀଳାରେ ମଧ୍ୟ ଅନ୍ୟପ୍ରକାର ଗୂଢ଼ ତାତ୍ତ୍ୱିକ ଭାବ ନିହିତ ଅଛି ବୋଲି କହନ୍ତି କେହି କେହି । କିଏ କିଏ କହନ୍ତି ତ୍ରେତୟାଯୁଗରେ ରାମଙ୍କ ପରି ସାଧୁ ଚରିତ୍ର ସୃଷ୍ଟି କରିବା ପରେ ଦ୍ୱାପରରେ ଶ୍ରୀକୃଷ୍ଣ ଚରିତ୍ର ସୃଷ୍ଟି କରିବାର ଉଦ୍ଦେଶ୍ୟ ହୁଏତ କୌଣସି ସାମାଜିକ ବିପତ୍ତି ମୂଳରେ ଥାଇପାରେ ।

କେବେ ବିଜ୍ଞାନ ହୁଏତ କହିବ ମୌଳିକ ଏକ ପରମାଣୁ ବା ଏକ ପ୍ରୋଟନ୍ ଯାହାକି ଅବିଭାଜିତ ଏବଂ ତାକୁ କେନ୍ଦ୍ରକରି ଘୂରି ବୁଲୁଥିବା ନିଉଟ୍ରନ, ସେ ଦୁହେଁ... ଅବା ପଞ୍ଚଭୂତରେ ନିହିତ ଥିବା ଗୋଟାଏ ସତ୍ତା । ସେ ସବୁ ତ ଅତି ନିଗୂଢ଼ କଥା । ସେ ସବୁକୁ ଆଲୋଚନା କରି ଲାଭ କ'ଣ ?

ହଁ, ମୂଳକଥା ହେଲା—ଧର୍ମ ପ୍ରତି ନିଖିଳମୋହନଙ୍କର ରହିଥିଲା ପ୍ରଗାଢ଼ ଅନୁରକ୍ତି । ବୈଦିକ ଧର୍ମର ସବୁ ପ୍ରକାର ନୀତିନିୟମ ତାଙ୍କ ଆଖିରେ ମହିମାମୟ । ତାଙ୍କ ମତରେ ପ୍ରତ୍ୟେକ ସଂସ୍କାରର ମୂଳରେ, ଅବଶ୍ୟ ଆଜିକାଲି ଯେଉଁଗୁଡ଼ିକୁ କୁସଂସ୍କାର ବା ଅନ୍ଧବିଶ୍ୱାସ କୁହାଯାଉଛି, ସେଗୁଡ଼ିକର ମୂଳରେ ଗୋଟିଏ ଗୋଟିଏ ହିତପ୍ରଦ ମହତ୍ ଉଦ୍ଦେଶ୍ୟ ନିହିତ । ଯାହାକୁ ଆମେ ଆଜିକାଲି ଏକ ଅତି ତୁଚ୍ଛ ବା ଲଜ୍ଜାକର ମନେ କରୁଛେ ତା'ରି ପଛରେ ହୁଏତ ସ୍ୱାସ୍ଥ୍ୟରକ୍ଷାର କିମ୍ବା ଅନ୍ୟ କିଛିର ଅପୂର୍ବ ପ୍ରଚେଷ୍ଟା ରହିଛି । ମଣିଷର ନୈତିକ ଚରିତ୍ର ଗଠନ ପାଇଁ ଏକ ନିଷ୍କଳଙ୍କ, ସୁସ୍ଥ ସବଳ ମଣିଷ ଗଢ଼ିଉଠିବା ପାଇଁ ହୁଏତ ହିନ୍ଦୁ ଧର୍ମର ଆଚାର ବିଚାର ଏତେ କଠୋର କରି ଦିଆଯାଇଛି । ନିର୍ମଳ ଚରିତ୍ର, ବଳିଷ୍ଠ ବ୍ୟକ୍ତିତ୍ୱ ଗଢ଼ିପାରିବ । ଶୁଦ୍ଧାଚାର ବଳରେ ଶରୀର ସୁସ୍ଥ ରହିବ । ଶୁଦ୍ଧ ଚରିତ୍ର ବ୍ୟକ୍ତି ଗଢ଼ିଉଠିବ । ସୁସ୍ଥ ସବଳ ଶୁଦ୍ଧ ଚରିତ୍ର ବ୍ୟକ୍ତିରୁ ସମାଜ, ସମାଜରୁ ଜାତି, ଜାତିରୁ ଦେଶ, ଦେଶରୁ ସାରା ବିଶ୍ୱ ହେବ ସୃଷ୍ଟି । ଏକ ଶୁଦ୍ଧ ପୂତ ସୃଷ୍ଟି !

ସାରା ବିଶ୍ୱ ଏକ କଳୁଷତାହୀନ ଦେବଭୂମିରେ ପରିଣତ ହୋଇଯିବ । ଏହି ପୃଥିବୀ ହିଁ ଦିନେ ହେବ ସ୍ୱର୍ଗ । ଛଳନା, ଅନାଚାର, ବିଦ୍ୱେଷ ଶୂନ୍ୟ ମନ, ଆୟୁସୀମାକୁ ବଢ଼ାଇ ଚାଲିବ । କ୍ରମଶଃ ମଣିଷ ଦୀର୍ଘାୟୁ ହେବ । ହୁଏତ ଅମର ମଧ୍ୟ ହୋଇ ଯାଇପାରେ ।

ମଣିଷର ପ୍ରକୃତ ଆୟୁ ସୀମା କୁଆଡ଼େ ହଜାରେ ବର୍ଷ । ନିଖିଳମୋହନଙ୍କ ମତରେ ଭେଜାଲ୍ ମନ, ଭେଜାଲ୍ ଚରିତ୍ର ଓ ଭେଜାଲ୍ ଖାଦ୍ୟ ପାଇଁ କ୍ରମଶଃ ଅଧୋଗତି ଆଡ଼କୁ ଖସି ଚାଲିଛି ସେ । ଅଳ୍ପାୟୁ ହେଉଛି ସେ ।

ଆଜିକାଲିର ମତରେ ନିଖିଳମୋହନଙ୍କୁ ସମସ୍ତେ ପରୋକ୍ଷରେ କହନ୍ତି—ଶୁଚିତା-ବ୍ୟାଧିଗ୍ରସ୍ତ ଲୋକ—ସଂକ୍ଷେପରେ ପାଗଳ । ତାଙ୍କ ଘର ଭିତରେ କେହି ଚଟି ପିନ୍ଧି ବୁଲନ୍ତି ନାହିଁ । ବାହାରକୁ ଗଲେ ଅବଶ୍ୟ ପିନ୍ଧନ୍ତି, କିନ୍ତୁ ବାହାର ଘରେ ସେସବୁ ଅଲଗା ରହେ । କାଳେ ବାହାରର ବୀଜାଣୁ ସଂକ୍ରମିତ ହୋଇ ଘର ଭିତରକୁ ପଶି ଆସିବ । ପ୍ରତ୍ୟେକ ବାସନ ଧୂଆ ମଜାର ସୀମା

ନାହିଁ, ଖିଆପିଆ ବାସନଠାରୁ ଆରମ୍ଭ କରି ଚାହା କପ୍ ଯାଏ, ଥରକୁ ଥର ମଜା, ଧୂଆ, ପୋଛା ହୋଇ ସଜଡ଼ା ଯାଉଥିବେ । ନିଖିଳମୋହନ ନିୟମିତ ଭାବରେ ସନ୍ଧ୍ୟା, ଆହ୍ନିକ, ପୂଜାପାଠ କରନ୍ତି । ଶ୍ରାଦ୍ଧ, ତର୍ପଣ କରନ୍ତି । ଟେବୁଲ ଉପରେ ଭାତ ବଢ଼ାଯାଏ ନାହିଁ । ତଳେ ପାଣି ଛିଞ୍ଚି ପରିଷ୍କାର କରି କମ୍ବଳ ଆସନ କିମ୍ବା ପିଢ଼ା ପଡ଼େ ! ତଳେ ବସି ହିଁ ଖାଇବାକୁ ଭଲପାଆନ୍ତି ସେ । କେନ୍ଦ୍ର ସରକାରଙ୍କ ଅଧୀନରେ ଜଣେ ପଦସ୍ଥ କର୍ମଚାରୀ ହୋଇଥିଲେ ମଧ୍ୟ ଅତି ଶୁଚିଶୁଦ୍ଧ ଭାବରେ ହିଁ ଚଳନ୍ତି ସେ । ଲୋକେ ଦେଖି ନାନା ପ୍ରକାର ବିଦ୍ରୂପ କରନ୍ତି ସତ, ଏତେ ନିୟମନିଷ୍ଠା ପାଳନ ଦେଖି ଆଶ୍ଚର୍ଯ୍ୟ ହୋଇଯା'ନ୍ତି ମଧ୍ୟ ।

ଥରେ କୁଆଡ଼େ ରୁଷିଆକୁ କୌଣସି ସରକାରୀ କାମରେ ଯାଇ ସାତ ଦିନ ରହିବାକୁ ପଡ଼ିଥିଲା ତାଙ୍କୁ । ପିତୃପକ୍ଷ ଚାଲିଥାଏ । ନିଖିଳମୋହନ ତାଙ୍କ ତର୍ପଣ ପୂଜାରୁ କ୍ଷାନ୍ତ ହୋଇ ନ ଥିଲେ କି ବାହାରେ କୋଉଠି ଖାଦ୍ୟ ମଧ୍ୟ ଖାଇନଥିଲେ । ବେଶ୍ ଆରାମରେ ସାମାନ୍ୟ ଫଳ ଓ ଦୁଧ ଖାଇ ସାତଟିଯାକ ଦିନ କଟାଇ ଦେଇଥିଲେ । ତାଙ୍କ ମତରେ ଉପବାସର ପବିତ୍ର ବହ୍ନିଶିଖା ମନରେ ଥିବା କ୍ଳେଦ ତଥା ପାପକୁ ଜାଳିପୋଡ଼ି ଭସ୍ମ କରିଦିଏ । ନିୟମନିଷ୍ଠା ପାଳିଲେ ଅଶେଷ ପ୍ରସନ୍ନତା ଓ ଆନନ୍ଦ ଭରିଯାଏ ମଣିଷ ମନରେ । ପ୍ରସନ୍ନତା ହିଁ ଦିଏ ବଳ ।

ଭଗବଦ୍‌ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି—ନିଷ୍ଠାରେ ନ ରହିଲେ ସତ୍ୟରେ ପହଞ୍ଚିବ କିପରି ? ନିୟମରେ ନ ରହିଲେ କିପରି ହେବ ନିୟମାତୀତ ? ପ୍ରଥମେ ଶାସନ ଦରକାର, ଇନ୍ଦ୍ରିୟର ଶାସନ । ଶମ, ଦମ, ସାଧନ— ଦରକାର । ତାହେଲେ ସିନା ଯାଇ ମୋକ୍ଷରେ ପହଞ୍ଚିବ ମନୁଷ୍ୟ ! ନିଖିଳମୋହନ ଗୀତାର ତତ୍ତ୍ୱ ବୁଝାନ୍ତି । ନିଖିଳମୋହନ ଗୋଟିଏ କାହାଣୀ କହନ୍ତି—ହୁଏତ କେଉଁ ଉପନିଷଦରୁ ।

ଯେତେବେଳ ସତ୍ୟଯୁଗ ଆରମ୍ଭ ହୋଇଥିଲା, ମଣିଷମାନେ ଠିକ୍ ସେତିକିବେଳେ ସୃଷ୍ଟି ହୋଇଥା'ନ୍ତି । ସମସ୍ତେ ସେତେବେଳେ ସାଧୁ, ସଚ୍ଚୋଟ । ସତ୍ୟଯୁଗ ତ ! ବଣରେ କୁଡ଼ିଆ ବାନ୍ଧି ସମସ୍ତେ ଥାଆନ୍ତି । ଫଳମୂଳରେ ଜୀବନଧାରଣ ଚଳୁଥାଏ । ସେମାନେ ଭଗବାନଙ୍କ ନାମ କୀର୍ତ୍ତନ କରୁଥାଆନ୍ତି ଆଉ ପରମାନନ୍ଦରେ ଦିନ କଟାଉଥା'ନ୍ତି । ସେତେବେଳେ ମା'-ଲକ୍ଷ୍ମୀ ଥାଆନ୍ତି ବୈକୁଣ୍ଠରେ । ଅନ୍ନପୂର୍ଣ୍ଣା-ମା' ରହୁଥା'ନ୍ତି କୈଳାସରେ । ତେଣୁ ସୁନା, ରୂପା ଏପରିକି ଅନ୍ନ ବା ଶସ୍ୟର ପ୍ରଚଳନ ସୁଦ୍ଧା ମଣିଷ ଜାଣି ନ ଥାଏ । ଏହିପରି ଏକପୁରୁଷ କଟିଗଲା । ସେତେବେଳେ ପାପ ନଥିଲା; ତେଣୁ ଅକାଳ ମୃତ୍ୟୁ ମଧ୍ୟ ନ ଥିଲା ।

କ୍ରମେ ହଜାରେ ବର୍ଷ ପରେ ଏକ ସଙ୍ଗେ ଏକ ପୁରୁଷର ମୃତ୍ୟୁ ସମୟ ଆସି ପହଞ୍ଚିଲା । ମଣିଷମାନେ ଠିକ୍ କଲେ, ଚାଲ ଆମେ ସଶରୀରରେ ସ୍ୱର୍ଗକୁ ଯିବା ।

ସ୍ୱର୍ଗକୁ ଲକ୍ଷ୍ୟ କରି ଚାଲିଲେ ସମସ୍ତେ । କାଳେ ପାପଶୂନ୍ୟ ଏହି ମଣିଷମାନେ ଆସି ସ୍ୱର୍ଗର ସିଂହାସନ ଦଖଲ କରି ବସିବେ, ଏହି ଡରରେ ଇନ୍ଦ୍ରଦେବ ଯାଇ ଶରଣାଗତ ହେଲେ

ନାରାୟଣଙ୍କର । ନାରାୟଣ ତ ସବୁବେଳେ ଶରଣାଗତଙ୍କ ରକ୍ଷକ ! ସଙ୍ଗେ ସଙ୍ଗେ ସେ ତାଙ୍କର ମାୟାର ଜାଲ ବିସ୍ତାର କରିଦେଲେ । ତାଙ୍କରି ଆଦେଶରେ ମା' ଅନ୍ନପୂର୍ଣ୍ଣା ପଥମଧ୍ୟରେ ଏକ ପ୍ରକାଣ୍ଡ ସୁରମ୍ୟ ଭୋଜନଶାଳା ନିର୍ମାଣ କରି ସୁସ୍ୱାଦୁ ଖାଦ୍ୟବସ୍ତୁ ଯାଇ ରଖିଲେ ।

ଭଗବାନଙ୍କ ମାୟା ହେତୁ ମଣିଷମାନଙ୍କ ହୃଦୟରେ ଲୋଭ ପ୍ରବେଶ କଲା । ଖାଦ୍ୟପେୟ ଆସ୍ୱାଦନ କରି କେତେକ ଆଉ ସ୍ୱର୍ଗକୁ ଯିବାକୁ ଇଚ୍ଛା କଲେ ନାହିଁ । ଯେଉଁମାନେ ଏହି ଲୋଭକୁ ଅତିକ୍ରମ କରିପାରିଥିଲେ ସେମାନେ ମା' ଲକ୍ଷ୍ମୀଙ୍କ ମାୟାରେ ଆବଦ୍ଧ ହେଲେ ସୁନା, ରୂପା, ମଣିମାଣିକ୍ୟ ରତ୍ନ ସମ୍ଭାରର ଚମତ୍କାରିତା ଦେଖି ।

ଆନନ୍ଦ ଉଦ୍‌ବେଳିତ ଚିତ୍ତରେ ଇନ୍ଦ୍ର ସ୍ୱର୍ଗର ଦ୍ୱାରକୁ ବନ୍ଦ କରି ଦେବାକୁ ଯାଉଛନ୍ତି, ନାରାୟଣ ହସିଦେଇ କହିଲେ—ଇନ୍ଦ୍ର, ଦ୍ୱାର ବନ୍ଦ କରନାହିଁ । ଦେଖ ସମସ୍ତ ଲୋଭକୁ ତୁଚ୍ଛ କରି ତଥାପି ଏକ ବ୍ୟକ୍ତି ଆସୁଛନ୍ତି, ଯାଅ ତାଙ୍କୁ ଆଦରରେ ପାଛୋଟି ଆଣ ।

ହୁଏତ କେଉଁ ପୁରାଣ କାହାଣୀ । ନିଖିଳମୋହନ କେତେଥର ପିଲାଙ୍କୁ ଏ କାହାଣୀ ଶୁଣାଇଛନ୍ତି, କହିଛନ୍ତି—ମଣିଷ ଯେଉଁ ଦିନ ଆଉଥରେ ପାପ ଶୂନ୍ୟ ହେବ, ସେହି ଦିନ ପୁଣି ଆରମ୍ଭ ହେବ ସତ୍ୟଯୁଗ !

ସତ୍ୟଯୁଗ !—ମନେ ମନେ ହସିଦିଏ ଚିତ୍ରାଙ୍ଗଦା ।

ପାପଶୂନ୍ୟ ହୋଇ ହଜାରେ ବର୍ଷ ବଞ୍ଚିବା ପରେ ସ୍ୱଦେହରେ ସ୍ୱର୍ଗକୁ ଯିବାକୁ ପସନ୍ଦ କରି ନାହାନ୍ତି ବାଇବିଲ୍‌ର ଆଦାମ ଓ ଇଭ୍ । ବାଇବିଲରେ ଅଛି ଈଶ୍ୱରଙ୍କ ଆଦିସନ୍ତାନ ସେମାନେ—ମନୁଷ୍ୟ ଜାତିର ପିତାମାତା । ଚିତ୍ରାଙ୍ଗଦା ହସିଲା । ନିଷେଧ ନ ମାନି ସେମାନେ ପାପର ଫଳକୁ ଭକ୍ଷଣ କରିଥିଲେ । କାହିଁକି ?

ଯନ୍ତ୍ରଣାହୀନ ଆନନ୍ଦ ତ ପ୍ରକୃତ ଆନନ୍ଦ ନୁହେଁ !

ଆନନ୍ଦକୁ ଆନନ୍ଦର ସଂଜ୍ଞା ଦେବାକୁ ହିଁ ଯନ୍ତ୍ରଣାର ସୃଷ୍ଟି ।

ପାପ ନ ଥିଲେ ପୁଣ୍ୟକୁ ଚିହ୍ନନ୍ତା କିଏ ?

ଅନ୍ଧକାର ହିଁ ଯେ ଆଲୋକର ମୂଲ୍ୟାୟନ କରେ !

ଯେଉଁ ପ୍ରେମ ଯୋଗୁଁ ଏହି ବିଶ୍ୱ ଚରାଚର ମୂର୍ତ୍ତି ପରିଗ୍ରହ କରିବା ସମ୍ଭବ ହୋଇଛି, ସେହି ପ୍ରେମକୁ ହିଁ ଏମାନେ ପାପ ବୋଲି ଅଭିଯୁକ୍ତ କରନ୍ତି କାହିଁକି ?

ଆଉ ପ୍ରେମ ନ ଥିବା ଜୀବନ ?

ସୂର୍ଯ୍ୟ ନ ଥିବା ପୃଥିବୀ ପରି ।

ନିଖିଳମୋହନ ପରମ ଧାର୍ମିକ । ଆଜି ସୁଦ୍ଧା ସେ ସ୍ୱପ୍ନ ଦେଖନ୍ତି—ଧର୍ମ, ଆଚାର, ନିଷ୍ଠା ବଳରେ ପାଇଥିବା ହଜାରେ ବର୍ଷର ଆୟୁଷର ।

ଚିତ୍ରାଙ୍ଗଦା ଭାବେ—

ହ-ଜା-ରେ ବ-ର୍ଷ !

ଓଃ ! ଏତେ ବର୍ଷ ବଞ୍ଚି ମଣିଷ କ'ଣ କରିବ ଯେ ?

It is not growing like a tree
In bulk, doth make Man better be;
Or standing long an Oak, three hundred years,
To fall a log at last, dry, bald and sere;
A lily of a day
Is fairer far in May,
Although it fall and die that night
It was the plant and flower of Light.
In small proportions we just beauties see
And in short measures life may perfect be.

ନା, ଚିତ୍ରାଙ୍ଗଦାର ଜୀବନକାଳ ହଜାରେ ବର୍ଷ ହେବାର ଦରକାର ନାହିଁ । ତା' ଜୀବନ ହେଉ A lily of a day । କେବଳ ଦିନକ ପାଇଁ ବିକଶିତ ହେଉଥିବା କଇଁଫୁଲଟିଏ ପରି, କିନ୍ତୁ ଆଲୋକ ଓ ଆନନ୍ଦର ପ୍ରତୀକ ହେଉ ।

ଅର୍ଥାତ୍—ସେହି ପରମ ଧାର୍ମିକ ବ୍ୟକ୍ତି ନିଖିଳମୋହନଙ୍କ ଝିଅ ଚିତ୍ରାଙ୍ଗଦା ହିଁ ଶେଷକୁ କ'ଣ କଲା ନା ଜଣେ ବିଧର୍ମୀ ଖ୍ରୀଷ୍ଟିଆନ୍ ଟୋକାକୁ ଭଲପାଇଲା ?

ନିଖିଳମୋହନ ଯେଉଁଦିନ ଏ କଥା ଜାଣିବେ ତାଙ୍କ ସାମନାରେ ସେଦିନ ବଜ୍ରପାତ ହୋଇଯିବ । ସେ ଆଘାତରେ ତାଙ୍କର ହୃଦ୍‌ଯନ୍ତ୍ର କ୍ରିୟା ମଧ୍ୟ ବନ୍ଦ ହୋଇଯିବାଟା କିଛି ଆଶ୍ଚର୍ଯ୍ୟ କଥା ନୁହେଁ ।

ତେଣୁ ନିଜର ପ୍ରେମ ସଂଘଟିତ ବ୍ୟାପାରଟାକୁ ପ୍ରାଣପଣେ ଗୋପନ କରି ରଖୁଥିଲା ଚିତ୍ରାଙ୍ଗଦା । ମନକୁ ମନ ବୁଝାଉଥିଲା—ପ୍ରେମ କରିବାଟା ପାପ ନୁହେଁ ।

ଦୁଃଖ ଓ କାମନାର ବିନାଶରେ ନିର୍ବାଣପ୍ରାପ୍ତି ବୋଲି ଯେଉଁ ବ୍ୟକ୍ତି କହିଥିଲେ, ସେ ନିଜେ ହିଁ ଉଦ୍ଭବ ହୋଇଥିଲେ ସେହି କାମନାର ପଙ୍କରୁ । ଭଗବାନଙ୍କର ପାଦାର୍ଘ୍ୟ ରୂପେ ଅର୍ପିତ ହୁଏ ଯେଉଁ ପଦ୍ମ, ତା'ର ଜନ୍ମସ୍ଥାନ ହେଉଛି ସେହି ଘୃଣ୍ୟ ପଙ୍କିଳ ଶଯ୍ୟା ।

ପଙ୍କ ନ ଥିଲେ ପଦ୍ମର ଦେଖା ମିଳନ୍ତା କୁଆଡୁ ?

ତେଣୁ ରାଧିକାଙ୍କ ଅବୈଧ-ପ୍ରଣୟ ଯେଉଁଠି ଜଗତ ବନ୍ଦିତ, ସେଠି ଚିତ୍ରାଙ୍ଗଦାର ପ୍ରେମ ବାଧାପ୍ରାପ୍ତ ହେବ କାହିଁକି ?

ନା, ଚିତ୍ରାଙ୍ଗଦା କେଉଁଥିକୁ ଭ୍ରୂକ୍ଷେପ କରିବ ନାହିଁ ।

ତାର ପ୍ରେମ ସଫଳାୟିତ ହେବାକୁ ସେ ଅପେକ୍ଷା କରିବ ସାରା ଜୀବନ ।

କିନ୍ତୁ ସୁବିବେକର ଆପତ୍ତି ସେଇଠି ।

ଖ୍ରୀଷ୍ଟଧର୍ମ ଅତି ଉଦାର ହୋଇଥିଲେ ମଧ୍ୟ ଅବୈଧ-ମିଳନକୁ ସ୍ୱୀକୃତି ଦେଇନାହିଁ ।

ତେଣୁ ନିର୍ଦ୍ଦିଷ୍ଟ ସୀମାରେଖା ଭିତରେ ଚଳିବାକୁ ପଡ଼େ ଦୁହିଁଙ୍କୁ ।

ସୁବିବେକ କହେ—ଚିତ୍ରା, ଚାଲ ରେଜିଷ୍ଟ୍ରୀ ମ୍ୟାରେଜ୍ କରିନେବା, ଚୁପ୍‌ଚାପ୍, କେହି ଜାଣିବେନି ।

ଚିତ୍ରା କିଛି ଉତ୍ତର ଦେଇପାରେ ନାହିଁ ।

—ଚିତ୍ରା, ଏହିପରି ପ୍ରତୀକ୍ଷା କରି ରହିବାଟା ନିରର୍ଥକ ।

ଚିତ୍ରା ଚୁପ୍ ହୋଇ ରହିଛି ।

ସୁବିବେକ କହିଛି—ଚିତ୍ରା, ପଳାୟମାନ ମୁହୂର୍ତ୍ତ ଗୁଡ଼ିକର ମୂଲ୍ୟ ସାଧାରଣତଃ କେହି ବୁଝିପାରନ୍ତି ନାହିଁ ବା ଉପଲବ୍ଧି କରିପାରନ୍ତି ନାହିଁ । ଯେଉଁ ମୁହୂର୍ତ୍ତ ଗୁଡ଼ିକ ଚାଲିଯାଉଛି, ସେଗୁଡ଼ିକ ଆଉ ଏ ଜୀବନରେ ଫେରି ଆସିବନି ଚିତ୍ରା ।

ସୁବିବେକର ମୁହଁର ସେ ବ୍ୟାକୁଳତାକୁ ଚିତ୍ରା ସ୍ତବ୍ଧ ହୋଇ ଚାହିଁ ରହେ କେବଳ । କ'ଣ ବା ଉତ୍ତର ଦେଇପାରି ଥା'ନ୍ତା ?

x x ତା' ପାଖରୁ ଚାଲି ଆସିଲା ପରେ ଦିନରାତି ଖାଲି ସେହି କଥା ଭାବିଛି ଚିତ୍ରା ଏବଂ ଶେଷକୁ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛି ଯେ, ଗୋପନରେ ସେ ଗୃହତ୍ୟାଗ କରିବ ଏବଂ କେଉଁ ସୁଦୂର ସ୍ଥାନକୁ ଚାଲିଯାଇ ସେମାନେ ରେଜିଷ୍ଟ୍ରୀ ମ୍ୟାରେଜ୍ ରୂପକ ବିବାହ-ସୂତ୍ରରେ ଆବଦ୍ଧ ହେବେ ।

ମୁକ୍ତା ଭଳି ଗୋଲ ଗୋଲ ସୁନ୍ଦର ଅକ୍ଷରରେ ସୁବିବେକ ପାଖକୁ ଚିଠିଟିଏ ଲେଖିଲା ଚିତ୍ରାଙ୍ଗଦା, ନିଜର ପରିକଳ୍ପନା ଜଣାଇଲା । ଆଜି କଲେଜରେ ଯେଉଁ ବହିଟି ସେ ବଢ଼ାଇ ଦେବ ସୁବିବେକ ହାତକୁ, ତା'ରି ଭିତରେ ଯତ୍ନରେ ଚିଠିଟିକୁ ଭାଙ୍ଗି ସାଇତି ରଖିଲା ମଧ୍ୟ ।

କିନ୍ତୁ ଘଟଣାଚକ୍ରରେ ପଡ଼ି ସେହି ନିର୍ଦ୍ଦିଷ୍ଟ ବହିଟିକୁ ସେ ତରବରରେ କଲେଜକୁ ଗଲାବେଳକୁ ଛାଡ଼ିଦେଇ ଗଲା ଡ୍ରଇଁରୁମ୍‌ର ଟେବୁଲ ଉପରେ । ବହିଟି ପଡ଼ିଲା ପୁଣି କାହା ହାତରେ ? ଏକାବେଳକେ ନିଖିଳବାବୁଙ୍କ ହାତରେ । ବିଭାଗୀୟ ଜଣେ କର୍ମକର୍ତ୍ତା ଆସି କିଛି ଆଲୋଚନା କରିବାର ଥିଲା । ତେଣୁ ଡ୍ରଇଁରୁମ୍‌ରେ ବସି ପ୍ରତୀକ୍ଷା କରୁଥିଲେ ସେ । ଘରର

ମଟରଗାଡ଼ି ଚିତ୍ରାକୁ ନେଇ କଲେଜକୁ ଚାଲିଗଲା ପରେ ନଜର ତାଙ୍କର ପଡ଼ିଲା ବହିଟା ଉପରେ । ଝିଅଟା ତରବରରେ ନିଶ୍ଚୟ ଦରକାରୀ ବହିଟିକୁ ଛାଡ଼ିଦେଇ ଯାଇଛି ଭାବି ଟେବୁଲ୍ ଉପରୁ ଉଠାଇ ନେଇ ସେ ପିଅନକୁ ଦେବାକୁ ଯାଉଥିଲେ—ଏ ସମୟରେ ଘରର ଗାଲିଚା ମୋଡ଼ା ଚଟାଣ ଉପରେ ଖସି ପଡ଼ିଲା ରଙ୍ଗୀନ କାଗଜର ଚିଠିଟା । ଚିଠିଟା ଗୋଟାଇ ନେଉ ନେଉ ଦୃଷ୍ଟି ଯାଇ ପଡ଼ିଲା ବାକ୍ୟଟି ଉପରେ To Subibek, with love, Chitra

ତେଣୁକରି—

ଗୋଟାଏ ସୁପ୍ତ ଆଗ୍ନେୟଗିରି ଯେପରି ହଠାତ୍ ଜାଗି ଉଠିଥିଲା, ଜୀବନ୍ତ ହୋଇ ଯାଇଥିଲା । ଖୋଲା ଚିଠିର ଧାଡ଼ି ଗୁଡ଼ିକୁ ପଥର ଆଖିରେ ଚାହିଁ ରହିଥିଲେ ନିଖିଳମୋହନ ଏବଂ କେତେ ସମୟ ପରେ ସମସ୍ତ କାର୍ଯ୍ୟକୁ ବାତିଲ କରିଦେଇ ଶଯ୍ୟାରେ ଆଶ୍ରୟ ନେଇଥିଲେ ।

ପ୍ରଳୟ ଯେତେବେଳେ ଆସେ ଏହିପରି ଆକସ୍ମିକ ଭାବରେ ହିଁ ଆସେ ।

ନିଖିଳମୋହନଙ୍କ ହୃଦ୍‌ଯନ୍ତ୍ରର କିୟା ବନ୍ଦ ହେଲାନି ସତ; କିନ୍ତୁ ଚିତ୍ରା, ସେହି ଦୁଃସାହସିନୀ ଭାବପ୍ରବଣା ଝିଅଟା ଏକ ପ୍ରକାର ନଜରବନ୍ଦୀ ହୋଇଗଲା । ସେ ଦିନଠାରୁ କଲେଜ ଯିବା ପୂରା ବନ୍ଦ । ବାହାରର କାହାରି ସଂସ୍ରବରେ ଆସିବାର ଉପାୟ ନାହିଁ । ସାଙ୍ଗରେ ସବୁବେଳେ ଛାଇ ପରି ରହିଲେ ଗର୍ଭଧାରିଣୀ ଜନନୀ । ଘୃଣାରେ ମୁହଁ ଚାହିଁ ନାହାନ୍ତି ନିଖିଳମୋହନ, ପଦେ କଥା ମଧ୍ୟ କହିନାହାନ୍ତି ।

ଚିତ୍ରାର ବୋଉ ଜଣେ ପ୍ରତାପଶାଳୀ ଜମିଦାରଙ୍କ ଝିଅ ଥିଲେ । ତେଣୁ ଶାସନ କରିବାରେ ସୁଦକ୍ଷା ଥିଲେ ସେ । ପ୍ରାୟ ତାଲା ଚାବି ଦେଇ ଘରେ ବନ୍ଦ କରି ଚିତ୍ରାକୁ ରଖିଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

କିନ୍ତୁ ଚଢ଼େଇ ପିଞ୍ଜରାରେ ଆବଦ୍ଧ ହୋଇ ରହିନାହିଁ । ବିଂଶ ଶତକର ସମ୍ପୂର୍ଣ୍ଣ ସୁଶିକ୍ଷିତା ସାହସିନୀ କନ୍ୟା ସେ, ପାଦର ଶିକୁଳିକୁ ଛିଣ୍ଡାଇ ଦେଇ ଉଡ଼ି ପଳାଇଛି । ହୁଏତ ଅନୁଚରବର୍ଗଙ୍କ ସାହାଯ୍ୟରେ କିମ୍ବା ବାହାରର କୌଣସି ବନ୍ଧୁ ବାନ୍ଧବଙ୍କ ସାହାଯ୍ୟରେ ଚିତ୍ରା କଳଙ୍କକୁ ଜୟତିଳକ ପରି ଅଙ୍କିତ କରିଛି ନିଜ କପାଳରେ । କିନ୍ତୁ ହତଭାଗ୍ୟ ଧର୍ମଭୀରୁ ପିତାଙ୍କୁ ଏକ ଚରମ ଲଜ୍ଜାକର ପରିସ୍ଥିତି ଭିତରେ, ଏକ କଳଙ୍କର ସମୁଦ୍ର ଭିତରେ ଫୋପାଡ଼ି ଦେଇ ଚାଲି ଯାଇଛି ।

ଉନ୍ମତ୍ତା ନଦୀସ୍ରୋତକୁ ବ୍ୟାରେଜ୍‌ର ବନ୍ଧନରେ ବାନ୍ଧି ସୁନିୟନ୍ତ୍ରିତ କରିବାର ଚେଷ୍ଟା କରିଥିଲେ ନିଖିଳ । କାଳର ଗତିକୁ ରୁଦ୍ଧ କରିବାକୁ ଚାହିଁଥିଲେ, ସେଥିପାଇଁ ହୁଏତ ତାଙ୍କର ଏ ପରାଜୟ ଘଟିଲା । ସେଥିପାଇଁ ସେ ମୃତପ୍ରାୟ—ଅକାଳବୃଦ୍ଧ ।

କଥାଗୁଡ଼ିକ ଭାବି ଅନ୍ତର ଭିତରେ ଶିହରି ଉଠିଲେ ସତ୍ୟବ୍ରତ । ଏ ସବୁ କଥା ସେ ନୀଳମଣିଙ୍କୁ କହିଥା'ନ୍ତେ କିପରି ?

ସୁନନ୍ଦାଙ୍କୁ କହିଥା'ନ୍ତେ, କିନ୍ତୁ ସ୍ତ୍ରୀ ଉପରେ ମନଟା ଭୀଷଣ ବିଗିଡ଼ି ଯାଇଥିଲା । ଯେତେବେଳେ ଘରେ ପାଦ ଦେଉ ଦେଉ ମଧୁଛନ୍ଦାକୁ ଖୋଜି ପାଇଲେ ନାହିଁ, ଶୁଣିଲେ ରାତିରେ ବି ସେ ଫେରିବ ନାହିଁ, ବାନ୍ଧବୀ ଘରେ କଟାଇବ ଉତ୍ସବରେ ମାତି, ହଠାତ୍ ଦେହର ସବୁତକ ରକ୍ତ ଯେପରି ଯାଇ ଠୁଳ ହୋଇ ଯାଇଥିଲା ମୁଣ୍ଡ ଭିତରେ । ତେଣୁ ସୁନନ୍ଦାଙ୍କୁ ପଦଟିଏ କଥା ନ କହି କ୍ଲିନିକ୍‌ରୁ ସେହିକ୍ଷଣି ଫେରିଥିବା କ୍ଲାନ୍ତ ଦେବବ୍ରତକୁ ପଠାଇ ଦେଲେ ସେ ଛନ୍ଦାକୁ ନେଇ ଆସିବାକୁ । ନୀଳମଣି ଆପତ୍ତି କରି ଆସୁଥିଲେ; କିନ୍ତୁ ହାତ ଠାରି ତାଙ୍କୁ ସେଥିରୁ ନିବୃତ୍ତ କରି ଦେଇଛନ୍ତି । ଜୀବନରେ ପ୍ରଥମ କରି ଅବାଧ ହୋଇଛନ୍ତି ନୀଳମଣିଙ୍କର । ତା'ପରେ ସତ୍ୟବ୍ରତ ଯେତେ ଅପେକ୍ଷା କରିବାକୁ ଲାଗିଲେ, ଆଶଙ୍କା ଯେପରି ସେତେ ଠୁଳ ହେବାକୁ ଲାଗିଲା ମନ ଭିତରେ । ଘରର ପ୍ରାପ୍ତବୟସ୍କା ଝିଅଟିଏ ଅଧରାତିଯାଏ ଫେରିନି ଘରକୁ । ତାକୁ ଏ ଅବାଧ ସ୍ୱାଧୀନତା ଦେବା ମୂଳରେ ନୀଳମଣି ଅଛନ୍ତି, ସୁନନ୍ଦା ମଧ ଅଛନ୍ତି । ଅଭିମାନ ହେଉଛି ବଡ଼ ମା'ଙ୍କ ଉପରେ । ସେ କିପରି ଏ ପ୍ରସ୍ତାବକୁ ଅନୁମୋଦନ କଲେ ?

ସେ ନିଜେ ଓ ଦେବବ୍ରତ ତ ବଡ଼ ମା'ଙ୍କର ହାତଗଢ଼ା ମଣିଷ । ସେ ଜାଣନ୍ତି ନୀଳମଣି ସ୍ନେହର ଅସରନ୍ତି ଭଣ୍ଡାର, କିନ୍ତୁ ତାଙ୍କ ଶାସନ କମ୍ କଠୋର ନୁହେଁ ! ସେମାନେ ଯେତେବେଳେ କଲେଜରେ ପଢୁଥିଲେ, ସେତେବେଳେ ମଧ ସଂଧ୍ୟା ହେଉ ହେଉ ଘରକୁ ଫେରି ଆସିବାକୁ ପଡୁଥିଲା । କଲେଜରେ କୌଣସି ଅନୁଷ୍ଠାନ ବା ସମାଲୋଚନା ସଭା ପ୍ରଭୃତିରେ ଭାଗ ନେବାର ଥିଲେ ଆଗରୁ ବଡ଼ମା'ଙ୍କୁ କହିରଖିବାକୁ ପଡୁଥିଲା । ସିନେମାଟିଏ ଦେଖିବାକୁ ଅଶେଷ ସଙ୍କୋଚବୋଧ କରୁଥିଲେ ସେ ଦୁହେଁ । ମଝିରେ ମଝିରେ କୌଣସି ଭଲ ଚଳଚିତ୍ର ଆସିଥିବା କଥା ଶୁଣିଲେ ନିଜ ଆଡୁ ପ୍ରସ୍ତାବ କରି ଦେଖିବାକୁ ପଠାଉଥିଲେ ବଡ଼ମା । କହୁଥିଲେ ଯିବାକୁ । ପାନ ସିଗାରେଟ୍ ଖାଇବାପାଇଁ କେବେ ନୀଳମଣି ମନା କରି ନାହାନ୍ତି । କିନ୍ତୁ ପିଲାଦିନୁ ଏଡ଼େ ସୁନ୍ଦର ଭାବରେ କଥାଗୁଡ଼ିକ କହିଛନ୍ତି ଯେ ଆପେ ଆପେ ସେ ଜିନିଷ ଗୁଡ଼ିକ ପ୍ରତି ଗଭୀର ବିତୃଷ୍ଣା ଜାତ ହୋଇଛି ପିଲାଙ୍କ ମନରେ । ପିଲାଙ୍କୁ ମଣିଷ କରିବାର ଧରଣ ସବୁ ନୀଳମଣିଙ୍କର ଭିନ୍ନ, ଅତି ଚମତ୍କାର । ପିଲାଦିନେ କେବେହେଲେ ଥରଟିଏ ସୁଦ୍ଧା ସେମାନଙ୍କୁ ପଢ଼ିବାକୁ ଅନୁରୋଧ କି ଖେଳିବାକୁ ମନା କରିବା ଜାଣିନାହାନ୍ତି ସତ୍ୟବ୍ରତ । ଏତିକି ଜାଣିଛନ୍ତି, ଘରକୁ ଦିଆଯାଇଥିବା ପାଠ ସେମାନେ ପଢ଼ିବାକୁ ବସିଲେ ବଡ଼ମା ସେମାନଙ୍କ ପାଖରେ ଜମିଦାରୀ ସଂକ୍ରାନ୍ତୀୟ କାଗଜପତ୍ର, ହିସାବଖାତା ସବୁ ଧରି ବସନ୍ତି ନିଜେ । ଏ ପାଠ ସରିଲେ ସତେ ନିଜେ ନ ଜାଣିଲାପରି କେତେବେଳେ କେତେବେଳେ ହିସାବ ସବୁ ମିଳାଇବାକୁ କହନ୍ତି । ତା' ଭିତରେ ମିଶାଣ, ଗୁଣନ, ହରଣ ପ୍ରଭୃତି ଅଙ୍କ କଷିବାକୁ ଦେବବ୍ରତ ଓ ତାଙ୍କ ଭିତରେ ପ୍ରତିଯୋଗିତା ଆରମ୍ଭ ହୋଇଯାଏ । ପାଠପଢ଼ାଟା ଲାଗୁଥାଏ ଗୋଟିଏ

ଖେଳପରି । ଫୁଲ ଓ ଫଳ ବଗିଚାମାନଙ୍କ ଭିତରକୁ ବୁଲାଇ ନେଇ କେତେ ପ୍ରକାର ଅଚିହ୍ନା ଗଛ ଫଳ ଓ ଫୁଲ ଚିହ୍ନାଇ ଦିଅନ୍ତି ବଡ଼ମା । ଚଢ଼େଇମାନଙ୍କ ନାଁ ସବୁ ମଧ୍ୟ କହିଦିଅନ୍ତି । ସେ ସୁଯୋଗରେ ରାଧାଗୋବିନ୍ଦଙ୍କ ମନ୍ଦିରର ପ୍ରସାଦ ବଣ୍ଟନ ଭାର ସପ୍ତାହରେ ଦିନେ ଦୁଇଦିନ ପିଲାଦୁହେଁ ନେଇଥା'ନ୍ତି । ଯେଉଁ କେତୋଟି ବର୍ଷ ତାଙ୍କର ପାଳିତ ପିତା ବଞ୍ଚିଥିଲେ, ସେତେବେଳର ଆନନ୍ଦ ତ ଅବର୍ଣ୍ଣନୀୟ । ବିଜୟ ହେଉଛନ୍ତି ତାଙ୍କର ପାଳିତ ପିତା, କିନ୍ତୁ ନିଜ ପିତାଙ୍କଠାରୁ ମଧ୍ୟ ଯେପରି ସହସ୍ର ଗୁଣରେ ଅଧିକ ସ୍ନେହଶୀଳ ଥିଲେ ।

ଆଜି ଯେପରି ସେମାନେ ପ୍ରଭାବତୀଙ୍କ ଖବର ବୁଝୁଛନ୍ତି, ସେହିପରି ବୁଝିବାକୁ ଶିଖାଇ ଦିଆଯାଇଥିଲା ସେମାନଙ୍କୁ । ରୋଗୀଣୀ ବୋଲି ତାଙ୍କୁ ଯେପରି କେହି ହତାଦର ନକରନ୍ତି ସେଥିପ୍ରତି ନୀଳମଣିଙ୍କ ତୀକ୍ଷ୍ଣ ଦୃଷ୍ଟି ଥିଲା । ମଧୁଛନ୍ଦା, ସୁପ୍ରକାଶ, ଲୀନା ପ୍ରଭୃତି ସବୁପିଲା ତ ବଡ଼ ମା'ଙ୍କ ହାତ୍‌ରେ ଗଢ଼ା । ତା'ହେଲେ ଆଜିକାଲି ସେମାନଙ୍କ ବିଷୟରେ ସେ ଏତେ ନିସ୍ପୃହ ରହୁଛନ୍ତି କାହିଁକି ? କୁଆଡ଼େ ଗଲା ତାଙ୍କର ସେ ଶାସନ ?

ରାତି ବାରଟା ପରେ ଗୋଟାଏ ଆଡ଼କୁ ଘଣ୍ଟାର କଣ୍ଟାଟି ଘୁଞ୍ଚି ଘୁଞ୍ଚି ଯାଉଥିଲା, କାହିଁ ଛନ୍ଦା ? ଓଃ ଦେବଟା କି କଷ୍ଟ ପାଇଲା ସତେ, ସେ ନିଜେ ଯାଇଥିଲେ ତ ହୋଇଥାନ୍ତା ।

ନା, ସୁଦୀର୍ଘ ପ୍ରତୀକ୍ଷା ପରେ ଅବଶେଷରେ ଛନ୍ଦା ଆସିଲା, ରାଗ ତମ ତମ ହୋଇ ଖୋଲାଦ୍ୱାର ସାମନାଦେଇ ଚାଲିଗଲା । କିଛିକ୍ଷଣ ପରେ ଘର ଭିତରକୁ ଆସି ଠିଆହେଲା ଦେବବ୍ରତ । ବଡ଼ଭାଇଙ୍କ ଚିନ୍ତାକୁଳ ମୁହଁକୁ ଚାହିଁ ହଠାତ୍ ଯେପରି କିଛି କହି ପାରିଲା ନାହିଁ । ଟିକିଏ ରହି ଆସ୍ତେ ଆସ୍ତେ କହିଲା—ପିଲାମାନେ ସମସ୍ତେ ବୋଟିଂ କରି ନଈପଠାକୁ ଚାଲି ଯାଇଥିଲେ, ଏହିକ୍ଷଣି ଫେରି ଆସିଲେ ।

ନଈପଠା ! ବୋଟିଂ ! ଏତେ ରାତିରେ ! ଠିକ୍ ସିନେମାରେ ଦେଖିଲା ପରି ଏତେ ରାତିରେ ଝିଅଗୁଡ଼ାକ ନଈପଠାକୁ ଯାଇଥିଲେ । ଅବାକ୍ ହୋଇ ଚାହିଁଲେ ନୀଳମଣି ମଧ୍ୟ ।

ବୃଥାରେ ମୁହଁ ଉପରକୁ ଟିକିଏ ହସ ଟାଣିଆସିବା ଚେଷ୍ଟା କରୁ କରୁ କହିଲେ ଦେବବ୍ରତ—ପିଲାଗୁଡ଼ାକ ଆଜିକାଲି ବଡ଼ ଦାୟିତ୍ୱହୀନ ବଡ଼ମା ! ଭାଇନା ଆସ, ଗୁଡ଼ାଏ ରାତି ହେଲାଣି, ବଡ଼ମା ତୁମେ ଶୁଅ । ଆଉ କେହି କଥା କହିନାହାନ୍ତି ।

x x x ସତ୍ୟବ୍ରତଙ୍କ ଆଖିରେ ନିଦ ନାହିଁ । ସେ ଭାବୁଛନ୍ତି, ମଧୁଛନ୍ଦା କ'ଣ ତା'ର ସଙ୍ଗୀ ବାଛିସାରିଲାଣି ଚିତ୍ରାଙ୍ଗଦା ପରି ?

ନା, ନା, ନା, ତା ହୋଇପାରେ ନା ।

ମଧୁଛନ୍ଦାକୁ ଯେକୌଣସିମତେ ଅତି ଶୀଘ୍ର ବାହା କରିଦେବେ ସେ ।

(୧୨)

ଏହି ଠାରେ ଏହି ତରୁ ମୂଳେ

ତୁମେ ଆଉ ମୁଁ କୁତୂହଳେ

ବସି ଯେ ଥିବା ସହି

ସଙ୍ଗେ ଥିବ ସୁରା ପାତ୍ର

ଥିବ ଆଉ କିଛି ଆହାର ମାତ୍ର

ରମ୍ୟ ଖଣ୍ଡିଏ କାବ୍ୟ ହାତେ ନେଇ !

'ଓମର ଖୈୟାମ୍' ପଢ଼ା ଚାଲିଛି ।

ତାରୁଣ୍ୟ ମୁକ୍ତ ବିହଙ୍ଗ ପରି ନୀଳାକାଶରେ ଆନନ୍ଦରେ ବିଚରଣ କରୁଛି । ବାଧାହୀନ ସ୍ୱାଧୀନତା, କିଏ ବା ତା ନ ଚାହେଁ ? ଦେଖିଲେ ଲାଗୁଛି କୌଣସି ଚଳଚ୍ଚିତ୍ରର ସୁଟିଂ ହେଉଛି ।

ନାୟକ ମନୋଜ ।

ନାୟିକା ମଧୁଛନ୍ଦା ।

ସାହାଯ୍ୟ କରୁଛି ସୁନୀତା । ଆଜି କ୍ଲାସ ସସ୍‌ପେଣ୍ଡେଡ୍ ହୋଇଯାଇଛି । ତେଣୁ ସେମାନେ ସମସ୍ତେ ସିଧା ଆସି ପହଞ୍ଚିଯାଇଛନ୍ତି ରୂପମତୀ ନଦୀର ଆରପାରିରେ । ଯେଉଁମାନେ ତାଙ୍କ ଭିତରେ ରକ୍ଷଣଶୀଳ, ସେମାନେ ସୁନା ପିଲା ପରି ଫେରିଯାଇଛନ୍ତି ନିଜ ନିଜ ଘରକୁ ।

ଏକା ମଧୁଛନ୍ଦା ନୁହେଁ, ଲିଟି, ମିଲି ହେରିକା ମଧ ଆସିଛନ୍ତି ସେମାନଙ୍କ ହୀରୋମାନଙ୍କୁ ଧରି । ଦୂରରୁ ଶୁଭୁଛି ଚିନ୍ମୟର ଗୀଟାର୍‌ର ସୁମଧୁର ଧ୍ୱନି । ଚିନ୍ମୟର ଘରଟା କଲେଜର ଅତି ପାଖରେ । ତେଣୁ ବହିଗୁଡ଼ାକୁ ରଖିଦେବାର ସୁଯୋଗରେ ଗୀଟାରଟିକୁ ନେଇ ଆସିଛି ସେ ।

କେଡ଼େ ଚମତ୍କାର ବଜାଉଛି ସତେ ! ଏ ବର୍ଷର ହିଟ୍ ସଙ୍ଗ୍‌ର ସୁର—

ଆପ୍ ହି ତୋ ଐସା କୋଇ

ଜୀନ୍ଦଗୀମେ ଆଏଗୀ...

ଯନ୍ତ୍ରଟି ଯେପରି ଅବିକଳ ମଣିଷ ପରି ଦରଦଭରା କଣ୍ଠରେ ଗାଇ ଚାଲିଛି । ସେଥିରେ ମୁଗ୍‌ଧହୋଇ କିଛି କ୍ଷଣପାଇଁ ଓମର୍ ଖୈୟାମ୍ ବହିକୁ ବନ୍ଦ କଲେ ସେମାନେ । ତା'ପରେ ମଧୁଛନ୍ଦା କହିଲା—ମନୋଜ, ଆମ ଜୀବନଟା ଯଦି ଠିକ୍ ଏହିପରି କଟିଯାଆନ୍ତା ନା !

ମନୋଜ ହସିଲା, କହିଲା— ହଁ ଏହିଠାରେ ଏହି ତରୁ ମୂଳେ

ତୁମେ ଆଉ ମୁଁ କୁତୂହଳେ

ବସି ଯେ ଥିବା ସହି

ସଙ୍ଗେ ଥିବ ସୁ—

ତା ମୁହଁକୁ ନିଜ ହାତରେ ଚିପିଧରି ଛନ୍ଦା କହିଲା, 'ନା, ନା, ସୁରା ନୁହେଁ, କଫିର ପାତ୍ର । ଥିବ ଆଉ କିଛି ଆହାର ମାତ୍ର ।'

ତାର ସେ କଅଁଳ ହାତ ପାପୁଲିକୁ ଗୋଟିଏ ଚୁମ୍ବନ ଦେଇ, ନିଜ ହାତରେ ଧରି କହିଲା, ମନୋଜ—ନା, ଗରମ ବରା ଓ ପିଆଜି ମାତ୍ର ।

—ଇସ୍ ! ଆବେଗମୟ ସୁନ୍ଦର ପରିବେଶଟାକୁ ନଷ୍ଟ କରି ଦେଉଛ ତମେ ମନୋଜ ! ଛି, ଛି, ବରା ଆଉ ପିଆଜି ! ସେ ବାଜେ ଜିନିଷ ଗୁଡ଼ାକ.... !

ମନୋଜ ହସି ହସି କହିଲା, ବା'ରେ ! ତମେତ ସୁରା ସ୍ଥାନରେ କଫି କହି ରୋମାଣ୍ଟିସିଜିମ୍‌କୁ ପ୍ରଥମେ ନଷ୍ଟ କଲ ଛନ୍ଦା । ମୁଁ ତେଣୁ ବରା ଓ ପିଆଜି ଯୋଡ଼ିଦେଲି ।

—ଆଚ୍ଛା-ଆଚ୍ଛା, ହେଲା ଏବେ ମୋର ଦୋଷ ହୋଇଛି ।

—ଓ । ରାଗ ହୋଇଗଲା ପରା ?

—'ରାଗ' ପଦଟି ନଥିଲେ ଅନୁରାଗ ଅଧା ରହିଯିବ ଯେ ! ଅନୁରାଗରେ ରାଗ ତ ନିଶ୍ଚୟ ରହିଛି ଓ ରହିବ । କିନ୍ତୁ ମନୋଜ, ଆମର ଭବିଷ୍ୟତର ପରିକଳ୍ପନା କ'ଣ ?

—ଭବିଷ୍ୟତର ପରିକଳ୍ପନା ? ସେ ତ ବହୁ ଦୂରର କଥା ।

—ଅର୍ଥାତ୍ ?

ଆଗ ଆମ ପାଠ ସରୁ ।

—ତା'ପରେ ?

—ତା'ପରେ ? ଯାହା ସାଧାରଣତଃ ହୁଏ । ମୁକ୍ତାକାଶର ବିହଙ୍ଗ ଓ ବିହଙ୍ଗୀ ନିଜର ନୀଡ଼ ରଚନା କରିବେ । ପ୍ରଥମେ ଚାକିରି ଗୋଟିଏ ଗୋଟିଏ କରିବା । ତାପରେ...ମନୋଜ ଟିକିଏ ଭାବିଲା, କହିଲା—ନିଶ୍ଚେ଼ଁ ରେଜିଷ୍ଟ୍ରୀ ମେରେଜ୍ ।

—ରେଜିଷ୍ଟ୍ରୀ ମେରେଜ୍ !

—ନିଶ୍ଚୟ ! କ'ଣ ହେଲା ଛନ୍ଦା ?

—ନା, ନା ! ତୁମେ ଜାଣିନାହଁ ମନୋଜ୍, ଆମ ପରିବାର କେତେ ମାତ୍ରାରେ ରକ୍ଷଣଶୀଳ ! ରେଜିଷ୍ଟ୍ରୀ ମେରେଜ୍ ଅସମ୍ଭବ ।

—ପରିବାରର ମତାମତକୁ ଜଗିଥିଲେ ତ ଆମେ ଏତେ ଦୂର ଆଗେଇ ଆସିପାରି ନଥାନ୍ତେ ଛନ୍ଦା ! ମୋ ମତରେ ଆନୁଷ୍ଠାନିକ ବିବାହ ଏକ କୁସଂସ୍କାର ମାତ୍ର ।

ମଧୁଛନ୍ଦା ଆହତ ହେଲା । କହିଲା, ତମେ ଏ କ'ଣ କହୁଛ ମନୋଜ ?

—ହଁ, କୁସଂସ୍କାର । ତମେ ରସେଲଙ୍କ ଦର୍ଶନ ପଢ଼ିନାହଁ ? ଯେଉଁଠି ହୃଦୟକୁ ସ୍ୱୀକୃତି ଦେଇଛ ସେଠାରେ ଅନୁଷ୍ଠାନର ଆବଶ୍ୟକତା କ'ଣ ଅଛି ? Even ତମେ ଯଦି ରେଜିଷ୍ଟ୍ରୀ ମେରେଜ୍‌କୁ ମଧ୍ୟ ଜୋର ନ'ଦିଅ ତା'ହେଲେ ଆମେ ସେ ଜାତୀୟ ବିବାହ ମଧ୍ୟ କରିବାନି ।

—ଆଉ ସ୍ୱାମୀ ସ୍ତ୍ରୀ ହୋଇ ଏକାଠି ରହିବା କିପରି ମନୋଜ ?

—ଏଇମିତି ରହିବା !

—କି ସାଂଘାତିକ କଥା !!

—କାହିଁକି ହୃଦୟ ଯେଉଁଠି ହୃଦୟକୁ...

—ମନୋଜ ! ସେ କଥା ଛାଡ଼ । ମଧୁଛନ୍ଦା ସତକୁ ସତ ରାଗିଗଲା । କହିଲା—ସେସବୁ କଥା କାବ୍ୟ-କବିତାରେ କୁହାଯାଇ ପାରେ । ବାସ୍ତବ କ୍ଷେତ୍ରରେ ନୁହେଁ । ବାସ୍ତବ କ୍ଷେତ୍ରରେ ଆମେ ଦୁହିଁଙ୍କୁ ବର ଓ କନ୍ୟା ସାଜି ବେଦୀ ଉପରେ ବସିବାକୁ ପଡ଼ିବ । ତା' ନହେଲେ ସମାଜ ଆମ ମିଳନକୁ ସ୍ୱୀକୃତି କେବେ ଦେବନାହିଁ ।

—ନ ଦେଉ । Who cares for the society ? ମଧୁଛନ୍ଦା ! ଆମେ ନିଜେ ରୋଜଗାର କରିବା, ଖାଇବା ଓ ରହିବା । ଏଇମିତି ଖଣ୍ଡେ ଓମର ଖୈୟାମ୍ କି ମେଘଦୂତ ନ ହେଲେ ବାଇରନ୍ ବା କିଟ୍‌ସ୍... ।

ଏଥର ଅଧିକ ରାଗିଗଲା ମଧୁଛନ୍ଦା, ବାଧାଦେଇ କହିଲା – ଥାଉ ମନୋଜ । ଯଥେଷ୍ଟ ଫାଜିଲାମି ହେଲାଣି । ତମେ ଟିକିଏ ସିରିଅସ୍ ହୁଅ ସତରେ । ହିନ୍ଦୁ ଘରେ, ବ୍ରାହ୍ମଣ ଘରେ ଯେପରି ବିବାହ ଅନୁଷ୍ଠାନ ସମ୍ପାଦିତ ହୁଏ... କି ସୁନ୍ଦର ସେ ଅନୁଷ୍ଠାନ...ମନ୍ତ୍ର ପଢ଼ିବା ଭିତରେ ଏକ ଅତି ପବିତ୍ର ପରିବେଶ ମନକୁ ମନ ସୃଷ୍ଟି ହୋଇଯାଏ । ସେହିପରି ଅନୁଷ୍ଠାନ ଅନୁଷ୍ଠିତ ହୋଇ ତମେ ମତେ ବାହା ହେବ । ମନେରଖ ।

—ମାଇ ଗଡ୍ ! କ'ଣ ଯେ କହୁଛ ମଧୁଛନ୍ଦା ! ମୁଣ୍ଡରେ ମୁକୁଟ, ପାଦରେ ଅଳତା, ଆଖିରେ କଜଳ ପିନ୍ଧି ଯାତ୍ରାପାର୍ଟିର ପାଲାଗାୟକ ଭଳି ବେଶବାନ୍ଧି ଗୋଟାଏ ପ୍ରୋସେସନରେ ମୁଁ ଯିବି ତମକୁ ବାହା ହେବାକୁ ?

—ହଁ, ତ ।

—ଛନ୍ଦା, ତମେ ପାଗଳ ହେଲ ? ସେ ସବୁ ଛାଡ଼ । ବରଂ ଆମେ ରେଜିଷ୍ଟ୍ରେସନ ଅଫିସକୁ ଯାଇ—

—ଅସମ୍ଭବ ମନୋଜ ! ତା'ହେଲେ ଆମର ସାରା ପରିବାରଟା ଦୁଃଖ ପାଇବେ । ବୈଦିକ ରୀତି ଅନୁସାରେ ହିଁ ଆମେ ବାହାହେବା । ଯାହା ସୁନ୍ଦର ଓ ରୁଚିକର, ସେ କଥାକୁ ତମେ ଆପତ୍ତି କରନାହିଁ । ପ୍ଲିଜ୍ ମନୋଜ, ପ୍ଲିଜ୍... !

ମନୋଜ ବିକ୍ଷୁବ୍ଧ କଣ୍ଠରେ କହିଲା—ମୁଁ ଯଦି ଠିକ୍ ଏକଥା କହେ—ପ୍ଲିଜ୍ ଛନ୍ଦା ! ମୋ ଆଖିରେ ଯାହା ଅସୁନ୍ଦର ଓ ମୋ ପକ୍ଷରେ ଯାହା ଅପ୍ରୀତିକର ସେଥିପାଇଁ ମତେ ଚାପ ଦିଅନାହିଁ । ତାହେଲେ ?

ମଧୁଛନ୍ଦା ଆଉକିଛି ଉତ୍ତର ଦେଇପାରି ନ ଥିଲା କାରଣ ଦୂରରୁ ମନସ୍ୱିନୀ ଡାକ ପକାଇଲା—ହାଲୋ ଛନ୍ଦା, ସନ୍ଧ୍ୟା ଯେ ଆଗତପ୍ରାୟ !

ସତରେ ତ ! କଲେଜରୁ ଘରକୁ ଫେରିବାର ବେଳ ହୋଇଗଲାଣି !

ମଧୁଛନ୍ଦାର ଜୀବନଟା ସେହିପରି ସରଳ ଭାବରେ କଟିବାର ନ ଥିଲା ବୋଧହୁଏ । ନୀଳମଣିଙ୍କ ଘରେ ଗୋଟିଏ ଉତ୍ସବ ଲାଗି ଯାଇଛି ଯେମିତି । ନୀଳମଣିଙ୍କ ଚିଠି ପାଇ କନ୍ୟାକୁ ଆଶୀର୍ବାଦ କରିବାକୁ ଭଲ ଦିନ ଦେଖି ପହଞ୍ଚିଛନ୍ତି ଶଚୀନ୍ଦ୍ରର ପିତା ମାତା, ପିତାମହୀ, ଭାଇ ଭଉଣୀ ଓ ଅନ୍ୟାନ୍ୟ ଆତ୍ମୀୟସ୍ୱଜନମାନେ । ସୁଜାତାର ପିତା ମାତା ଓ ଭାଇ ମଧ ଆସିଛନ୍ତି ତାଙ୍କ ସହିତ ।

କଥାଟା ତ ବହୁତ ଆଗରୁ ଜଣାଶୁଣା ଥିଲା । ନୀଳମଣିଙ୍କ ମତକୁ ସବୁକାଳେ ସମସ୍ତେ ଶ୍ରଦ୍ଧା ଓ ସମ୍ମାନ ଦେଉଥିଲେ । ତା'ଛଡ଼ା ମଧୁଛନ୍ଦା ତ ପାତ୍ରୀ ହିସାବରେ ଅତୁଳନୀୟା । ଶିକ୍ଷିତା, ସୁନ୍ଦରୀ, ପୂର୍ବରୁ ପରିଚିତା ।

ତେଣୁ ଏକାବେଳେ ଆଶୀର୍ବାଦ କରି ନିର୍ବନ୍ଧ ସାରିଦେବାକୁ ଆସିଛନ୍ତି ସେମାନେ । ଆସନ୍ତା ବୈଶାଖରେ ଅନେକ ବାହାଘର ତିଥି ରହିଛି । ସେଥିରୁ ଗୋଟିଏ ଠିକ୍ କରାଯିବ ।

ସେଦିନ କିପରି ଏକ କ୍ଳାନ୍ତି ମିଶ୍ରିତ ବିଷଣ୍ଣତା ସହ ନିହାତି ଅନ୍ୟମନସ୍କା ଭାବରେ ହିଁ ଉପରକୁ ଉଠିଥିବା ପାହାଚଗୁଡ଼ିକ ଅତିକ୍ରମ କରୁଥିଲା ମଧୁଛନ୍ଦା । ତେଣୁ ଘରର ଗହଳ ଚହଳଟା ଆଉ ତା ନଜରରେ ପଡ଼ିନାହିଁ । ପାଦଶବ୍ଦରୁ ହିଁ ବାରି ପାରି ନୀଳମଣି ଡାକ ପକାଇଲେ—ଛନ୍ଦା, ମୁହଁ ହାତ ଧୋଇ, ଲୁଗାପଟା ବଦଳାଇ ଟିକିଏ ମୋ ପାଖକୁ ଆସିଲୁ ମା ।

ପ୍ରଥମେ ନୀଳମଣିଙ୍କ ସ୍ୱରକୁ ଶୁଣି ଚମକି ପଡ଼ିଥିଲା ସେ । ତା'ପରେ ନିଜ କଣ୍ଠସ୍ୱରକୁ ଯଥାସମ୍ଭବ ଉତ୍‌ଫୁଲ୍ଲ କରିବାର ଚେଷ୍ଟା କରି କହିଲା—ଆସୁଛି ବଡ଼ମା ।

ମୁହଁ ହାତ ଧୋଇ, ଲୁଗାପଟା ବଦଳାଇ ଅପେକ୍ଷାକୃତ ସୁସ୍ଥ ଚିତ୍ତରେ ସେ ଆସି ଯେତେବେଳେ ଏ ଘରେ ଉପସ୍ଥିତ ହେଲା, ଘରେ ବସିଥିବା ଲୋକଙ୍କୁ ଦେଖି ତା ମୁଣ୍ଡ ଏକାବେଳେ ଘୂରିଗଲା ଯେମିତି । ଆଶଙ୍କାରେ ହୃଦୟ ଥରିବାକୁ ଲାଗିଲା । ସତ୍ୟବ୍ରତ ମଧ୍ୟ ଆଜି ଚଞ୍ଚଳ ଅଫିସରୁ ଫେରି ଆସିଛନ୍ତି !

ବିରାଟ କକ୍ଷଟିରେ ଗୋଟିଏ ପାଖକୁ କୌଣସି ଶୁଭ କର୍ମ ଅନୁଷ୍ଠିତ ହେବାପାଇଁ ଆୟୋଜନ ସୁଦ୍ଧା ସମାପ୍ତ ହୋଇ ରହିଛି । ପୂର୍ବ ଅଭ୍ୟାସ ଅନୁସାରେ ଗୁରୁଜନମାନଙ୍କୁ ପ୍ରଣାମ କଲା ମଧୁଛନ୍ଦା । କିନ୍ତୁ ମୁହଁଟି ତା'ର ଶୁଖି ଯାଇଥିଲା ଏକାବେଳେ । ନୀଳମଣିଙ୍କ ଶେଯ ପାଖକୁ ଘୁଞ୍ଚି ଆସି ଜିଜ୍ଞାସୁ ଭାବରେ ଚାହିଁଲା ସେ ତାଙ୍କ ମୁହଁକୁ ।

ନୀଳମଣି ବସିଥିଲେ । ସସ୍ନେହରେ ପାଖକୁ ଟାଣିଆଣି ତା ମୁଣ୍ଡରେ ହାତ ବୁଲାଇଦେଇ କହିଲେ, 'ମାଆକୁ ମୋର ଭୋକ କଲାଣି, ମୁହଁ ଶୁଖିଯାଇଛି । ହେଲେ ଆଜିଟା ଟିକିଏ କଷ୍ଟ ପଡ଼ିବ । ଶୁଭଦିନ ଦେଖି ସମନ୍ଧୁଣୀ ହେରିକା ଆସିଛନ୍ତି, ଆଶୀର୍ବାଦ କରି ଦେଇଯିବେ । ଶଚୀ ସହିତ ତୋର ବାହାଘରର ନିର୍ବନ୍ଧ । ଟିକିଏ ରାଧାଗୋବିନ୍ଦଙ୍କ ମନ୍ଦିରକୁ ଯିବାକୁ ପଡ଼ିବ ମା । ତା'ପରେ ଏଇଠି ଏ ଘରେ ଯାହା ଟିକିଏ ବିଧିବିଧାନ ଅଛି ସାରିଦେବେ । ବେଶୀ ବେଳ ଲାଗିବ ନାହିଁ ଯେ !'

ଭୂଇଁ ଉପରେ ଲୋଟି ପଡୁ ପଡୁ ମଧୁଛନ୍ଦା ଯେପରି ନିଜକୁ ସମ୍ଭାଳି ନେଲା । ସମ୍ଭାଳି ନେଲା ନୀଳମଣିଙ୍କ ପଲଙ୍କର ବାଡ଼ଟାକୁ ଧରି । ବହୁତ ଦିନରୁ ଏ ଜାତୀୟ ଆଶଙ୍କା ମନରେ ଦେଖା ଦେଇଥିଲେ ମଧ୍ୟ ହଠାତ୍ ଏଭଳି ଅପ୍ରତ୍ୟାଶିତ ଭାବରେ, ଏହିପରି ପରିସ୍ଥିତିରେ, ସର୍ବଜନ ସମକ୍ଷରେ ଏତେ ଶୀଘ୍ର ତା'ର ଆଶଙ୍କାଟା ଯେ ଏକାବେଳେ ସତ୍ୟରେ ପରିଣତ ହୋଇଯିବ, ଏକଥା କେଉଁଦିନ ସ୍ୱପ୍ନରେ ସୁଦ୍ଧା ଭାବିନଥିଲା ସେ ।

ତାର ଇଚ୍ଛା ହେଲା ପାଗଳୀ ପରି ଚିତ୍କାର କରିବାକୁ—ଅସମ୍ଭବ ! ଅସମ୍ଭବ ! .....ସେ ବାହାହେବ ଶଚୀନ୍ଦ୍ରକୁ ? କେବେ ନୁହେଁ, କି ଅନ୍ୟାୟ ! ନା, ନା, ନା ।

କିନ୍ତୁ ପରିସ୍ଥିତି ତା କଣ୍ଠସ୍ୱରକୁ ବଜ୍ରମୁଷ୍ଟିରେ ଚିପି ଧରିଲା । ପଥର ପ୍ରତିମାଟିଏ ପରି ତଳକୁ ମୁହଁ କରି ସେ ଚଟାଣକୁ ଚାହିଁ ରହିଲା କେବଳ ।

ସମସ୍ତେ ଭାବିଲେ—ଲାଜରେ ମଥା ନୁଆଁଇଛି ମଧୁଛନ୍ଦା । ଯନ୍ତ୍ର-ମାନବୀ ପରି ମଧୁଛନ୍ଦା ଚାଲୁଥିଲା । ରାଧାଗୋବିନ୍ଦଙ୍କ ଯୁଗଳମୂର୍ତ୍ତି ସମ୍ମୁଖରେ ଶପଥପାଠ କରି ପୁରୋହିତ ମନ୍ତ୍ରଗୁଡ଼ିକୁ ଯେତେବେଳେ ଉଚ୍ଚାରଣ କରୁଥିଲେ, ମଧୁଛନ୍ଦା ମନେ ମନେ କହୁଥିଲା—ମନୋଜ, ଏସବୁ ଅନୁଷ୍ଠାନ ତୁମ ସହିତ ମୋର ବାହାଘର ହେବାପାଇଁ ହେଉଛି ବୋଲି ମୁଁ ଭାବୁଛି । ତମେ ମତେ କ୍ଷମା କରିବ । ଉପାୟହୀନା ହୋଇ ମୁଁ ଆଜି ଏ ଅନ୍ୟାୟ କାର୍ଯ୍ୟରେ ଭାଗ ନେଲି ।

ହେ ରାଧାଗୋବିନ୍ଦ । ହେ ଅନ୍ତର୍ଯ୍ୟାମୀ । ତୁମେ ହିଁ ମୋର ପ୍ରକୃତ-ପ୍ରେମର ସାକ୍ଷୀ ହୋଇ ରହିଲ ପ୍ରଭୁ !

ମଧୁଛନ୍ଦାର ହୃଦୟ ନୀରବରେ କ୍ରନ୍ଦନ କରୁଥିଲା । ବିଳପି ଉଠୁଥିଲା ।

ମଧୁଛନ୍ଦାର ପରିଧାନରେ ଶଚୀନ୍ଦ୍ର ଘରୁ ଆସିଥିବା ଅତି ମୂଲ୍ୟବାନ ଓ ଅତି ସୁନ୍ଦର ବନାରସୀ ପାଟଶାଢ଼ି, ଚନ୍ଦନ ଓ କୁଙ୍କୁମରେ ଚର୍ଚ୍ଚିତ ଲଲାଟ, ଗଭାରେ ଗୋଲାପ ଓ ମଲ୍ଲୀ ଯୂଇର ମାଳ ।

ଶଚୀନ୍ଦ୍ରର ବାପା ଆନନ୍ଦ ଗଦ୍‌ଗଦ୍ ଚିତ୍ତରେ ଠାକୁରଙ୍କ ଚରଣରେ ସ୍ପର୍ଶ କରାଇ ମୁକ୍ତାଖଚିତ ଅତି ସୁନ୍ଦର ସ୍ୱର୍ଣ୍ଣ କଙ୍କଣ ଦୁଇଟିକୁ ପିନ୍ଧାଇଦେଲେ ମଧୁଛନ୍ଦାର ଦୁଇ ହାତରେ । ଧାନ୍ୟ, ଦୁର୍ବା, ଅକ୍ଷତ ମସ୍ତକ ଉପରେ ବିଞ୍ଚିଦେଇ ଆଶୀର୍ବାଦ କଲେ । ସତ୍ୟବ୍ରତ, ଦେବବ୍ରତ, ପୁରୋହିତ ଓ ଅନ୍ୟାନ୍ୟ ଗୁରୁଜନମାନେ ମଧ୍ୟ ଆଶୀର୍ବାଦ କଲେ ।

ପୁରୋହିତଙ୍କ ନିର୍ଦ୍ଦେଶ ଅନୁସାରେ ବିଗ୍ରହଙ୍କୁ ପ୍ରଣାମ ଜଣାଇ ଗୁରୁଜନମାନଙ୍କୁ ପ୍ରଣାମ କଲା ମଧୁଛନ୍ଦା । ତା'ର ହୃଦୟ କ୍ରନ୍ଦନ କରୁଥିଲେ ସୁଦ୍ଧା ସେହି ନବବଧୂର ବେଶପୋଷାକରେ ନବବଧୂଟିଏ ପରି ହିଁ ସୁନ୍ଦର ଦିଶୁଥିଲା ସେ । ଝିଅର ସେହି ମୂର୍ତ୍ତିକୁ ଦେଖି ସତ୍ୟବ୍ରତ ଓ ସୁନନ୍ଦାଙ୍କ ହୃଦୟ ଯେପରି ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା ।

ପୁରୋହିତ ଘୋଷଣା କଲେ–ସତ୍ୟବ୍ରତ ଓ ମଧୁସୂଦନ ଆଜିଠାରୁ ପବିତ୍ର ବୈବାହିକ ସୂତ୍ରରେ ଆବଦ୍ଧ ହେଲେ । ଆଜିଠାରୁ ଶଚୀନ୍ଦ୍ରର ବାଗ୍‌ଦତ୍ତା ରୂପରେ ପରିଗଣିତ ହେବ ମଧୁଛନ୍ଦା !

ମନ୍ଦିରରୁ ସମସ୍ତେ ଫେରିଆସିବା ପରେ ନୀଳମଣିଙ୍କ ଘରେ ବରୁଣ-ପୂଜା ଅନୁଷ୍ଠିତ ହେଲା । ନୀଳମଣି ନିଜେ ଦୁବ ଚାଉଳ ପକାଇ ଆଶୀର୍ବାଦ କଲେ ।

ଏ ସଂସାର-ରୂପୀ ନାଟ୍ୟମଞ୍ଚରେ କୌଣସି ବ୍ୟଙ୍ଗରସ ପରିବେଷଣ କରୁଥିବା ବିଦୂଷକ ପରି ନିଜକୁ ଲାଗୁଥିଲା ମଧୁଛନ୍ଦାର ।

ରାତିରେ ଶେଯରେ ଆଶ୍ରୟ ନେଇ ସେ ସାରା ଦିନଟାର ଘଟଣା ଗୁଡ଼ିକୁ ଭାବି ଚାଲିଲା । ଘଟଣା କ'ଣ ପ୍ରକୃତରେ ଘଟିଛି ନା ସେ ଦୁଃସ୍ୱପ୍ନ ଦେଖିଛି ? ଏ ସବୁ ସତ ବୋଲି ଏବେ ମଧ୍ୟ ବିଶ୍ୱାସ ହେଉନାହିଁ ତା'ର ।

ଭାବି ଚାଲିଲା ସେ–ମନୋଜ ସହିତ ହୋଇଥିବା ତା'ର ସମ୍ବନ୍ଧ କଥା ପୂର୍ବରୁ ଘରଲୋକଙ୍କୁ ଜଣାଇଦେବା ଉଚିତ ଥିଲା ତା'ର । ତା'ହେଲେ ତ ଏ ବିଭ୍ରାଟ ଘଟିନଥାନ୍ତା ଆଜି ! ବର୍ତ୍ତମାନ ଯେ ଆହୁରି ଅଧିକ ଜଟିଳ ହୋଇଗଲା ସମସ୍ୟାଟା । ମହାପ୍ରସାଦକୁ ସ୍ପର୍ଶ କରି ରାଧାଗୋବିନ୍ଦଙ୍କ ସମ୍ମୁଖରେ ସେ ବଚନବଦ୍ଧ ହୋଇଗଲା । ଶଚୀନ୍ଦ୍ରର ବାଗ୍‌ଦତ୍ତା ହେଲା ସେ । ହେ ଭଗବାନ୍, ଏ ଅବସ୍ଥାରୁ ସେ ମୁକ୍ତି ପାଇବ କିପରି ?

ଖାଲି ସେ ନିଜେ ନୁହେଁ, ଗୋଟା ପରିବାରଟା ସଂଶ୍ଲିଷ୍ଟ ହୋଇଗଲେ । ଏହି ବାକ୍ୟକୁ ବର୍ତ୍ତମାନ ଭାଙ୍ଗିବାର ଅର୍ଥ ପରିବାର ବଦ୍‌ନାମରେ ବୁଡ଼ିଯିବ ।

ସାଧାରଣତଃ କେବେ ମଧୁଛନ୍ଦା ଆଖିରୁ ଲୁହ ଝରେ ନାହିଁ । ପିଲାଦିନେ କେବେ କେମିତି ସୁନନ୍ଦାଙ୍କଠାରୁ ମାଡ଼ ଖାଇଲା ବେଳେ ସୁପ୍ରକାଶ କାନ୍ଦି କାଟି ବେଦମ ହୋଇଯାଉଥିଲା । କିନ୍ତୁ ମଧୁଛନ୍ଦା ତା'ର ଅବିଚଳିତ ଦୃଢ଼ ଭଙ୍ଗୀ ଧରି ସିଧାସଳଖ ଠିଆହୋଇ ରହୁଥିଲା ସେମିତି । ଆଖିକୁ ଚୋପାଏ ବୋଲି ଲୁହ ଆସିବାକୁ ଦେଉ ନ ଥିଲା । ପିଲାଦିନରୁ ପ୍ରକୃତି ତା'ର ଅନମନୀୟ ।

କିନ୍ତୁ ଆଜି ଅକସ୍ମାତ୍ ତା ଆଖିରୁ ଲୁହ ଝରିଯିବାକୁ ଲାଗିଲା ଝରଝର ହୋଇ । ନିସ୍ତବ୍ଧ ରାତିର ନିର୍ଜନ ପ୍ରହରରେ ନିଜର ଏକାକୀ ନିର୍ଜନ କୋଠରିରେ ନରମ ଶେଯ ଉପରେ ଶୋଇ ଅସହାୟା ଭାବରେ କାନ୍ଦିବାକୁ ଲାଗିଲା ମଧୁଛନ୍ଦା ।

ମନେ ପଡ଼ିଲା ସ୍ୱରୂପାକୁ । ପାଖରେ ଥିଲେ ସେ ଅବା କିଛି ପରାମର୍ଶ ଦେଇପାରି ଥାଆନ୍ତା । ଏ ସବୁ ଚିଠିରେ ଲେଖି ସ୍ୱରୂପାକୁ ଜଣାଇବ ?

କିନ୍ତୁ ଆଉ ଗୋଟିଏ ବଡ଼ ବାଧା ରହିଛି, ସେ ହେଉଛି ମନୋଜ—ମନୋଜର ଜିଦ୍‌ଖୋର ମନୋବୃତ୍ତି । ପାରମ୍ପରିକ ରୀତିରେ ମନୋଜ କଦାପି ବିବାହ କରିବ ନାହିଁ । ଯେତେ ଆଧୁନିକ ହେଲେ ମଧ ପୁରାତନ ରୀତି ଓ.ଅନୁଷ୍ଠାନ ପ୍ରତି ମଧୁଛନ୍ଦାର ଏକ ଅହେତୁକ ଦୁର୍ବଳତା ରହିଛି । ସେ ଯେଉଁ ପରିବେଶରେ ପିଲାଦିନୁ ବଢ଼ି ଆସିଛି, ହୁଏତ ତା'ର ଫଳ ଏ ।

କଲେଜକୁ ଆସିଲା ପରେ ଅଲଟ୍ରାମଡ଼େର୍ଣ୍ଣ ସଙ୍ଗିନୀମାନଙ୍କ ସଙ୍ଗରେ ପଡ଼ି ପୁରୁଣା ଶୃଙ୍ଖଳାକୁ ନିଜେ ହିଁ ଭାଙ୍ଗିଥିଲା ସେ । ସେ କଥା ସତ । କିନ୍ତୁ ଯାହା ହେଲେବି ବଡ଼ମାଙ୍କୁ ମୁହଁ ଖୋଲି ସେ ଯାଇ କହିବ—ବଡ଼ମା, ଆମେ ଅଫିସକୁ ଯାଇ ରେଜିଷ୍ଟ୍ରୀ ମେରେଜ୍ କରିବୁ । ସତ୍ୟବ୍ରତଙ୍କୁ କହିବ ସେ କଥା ? ଅସମ୍ଭବ । ସେ କଥା ସେ କଦାପି କାହାକୁ କହିପାରିବନି, ରେଜିଷ୍ଟ୍ରୀ ମେରେଜ ପ୍ରତି ତା ନିଜର ହିଁ ତ ଗୋଟିଏ ବିଦ୍ୱେଷ ଭାବ ରହିଛି । ନା, ଯେକୌଣସିମତେ ମନୋଜକୁ ରାଜି କରାଇବ ସେ ଆନୁଷ୍ଠାନିକ ଭାବରେ ପରମ୍ପରା ଅନୁଯାୟୀ ବିବାହ କରିବାକୁ ।

ଆଖିରୁ ଲୁହ ଝରିବା ଅବସ୍ଥାରେ କେତେବେଳେ ଯେ ତାକୁ ନିଦ ଲାଗିଯାଇଛି ସେ ଜାଣିପାରି ନାହିଁ । ହଠାତ୍ ଅଦ୍ଭୁତ ସ୍ୱପ୍ନଟିଏ ଦେଖିଲା—ନିଜେ ସେ ନବବଧୂର ବେଶରେ, ନୂତନ ସାଜସଜ୍ଜାରେ, ନୂତନ ସ୍ୱର୍ଣ୍ଣ ଅଳଙ୍କାର ଆଉ ବନାରସୀ ଶାଢ଼ିର ଦ୍ୟୁତିରେ ଝଲମଲ କରୁଛି । ଅତି ସୁନ୍ଦର କାରୁକାର୍ଯ୍ୟମଣ୍ଡିତ ବିବାହ ବେଦୀ, ଆଲୋକିତ, ସୁଶୋଭିତ ବିରାଟ ସାମିଆନା ତଳେ ସଜ୍ଜା ହୋଇ କି ସୁନ୍ଦର ଦିଶୁଛି । ଶଙ୍ଖ, ହୁଳହୁଳିର ପବିତ୍ର ଶବ୍ଦ ସହିତ ବୈଦିକ ମନ୍ତ୍ର ସମୂହର ଗମ୍ଭୀର ସୁମଧୁର ମହିମାମୟ ଧ୍ୱନିରେ ରୋମାଞ୍ଚିତ ହୋଇଯାଉଛି ତା'ର ଅନ୍ତର । ତା ଘରର ପ୍ରାୟ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଦେଖିଲା ସେ, ସମସ୍ତେ ଆନନ୍ଦ ଉଦ୍‌ବେଳିତ ଅନ୍ତରରେ ହସ ହସ ମୁହଁରେ କାର୍ଯ୍ୟବ୍ୟସ୍ତ ରହିଛନ୍ତି ।

ମଖମଲ ଗଦିବାଲା ଚଉକିଟି ଉପରେ ଧଳା ପାଟ ଥାନୀ ପିନ୍ଧି ଆଉଜି ବସିଛନ୍ତି ନୀଳମଣି । ଆନନ୍ଦରେ ଉଜ୍ଜ୍ୱଳ ହସ ହସ ମୁହଁ ତାଙ୍କର । ତାଙ୍କରି ପାଖରେ ବସିଛି ମଧୁଛନ୍ଦା । ମନୋଜ ପାଇଁ ସେ ଅପେକ୍ଷାରତା । ବରବେଶ ପ୍ରକାଇ ବ୍ୟାଣ୍ଡବାଜା ସହିତ ମନୋଜ ଆସିବ । ହେଇଟି ବୋଧହୁଏ ଆସିଲାଣି । ବାଜାର ଶବ୍ଦ ଶୁଭୁଛି । ମନୋଜକୁ ଦେଖିବାକୁ ମନପ୍ରାଣ ତା'ର ଉଦ୍‌ବେଳିତ ହୋଇ ଉଠୁଛି । ସେ ଠିଆ ହୋଇ ପଡ଼ିଛି ।

ହଠାତ୍ ଯେମିତି ଗୋଟାଏ ବିଭୀଷିକା ଦେଖିଲା ସେ ନିଜର ଆଖି ଆଗରେ । ଯନ୍ତ୍ର ଦାନବ ପରି ବିରାଟ ମେଲ୍ ଗାଡ଼ିଟା ମାଡ଼ି ଆସୁଛି ସେହି ବିବାହ-ମଣ୍ଡପ ଆଡ଼କୁ । ସବୁ ଭାଙ୍ଗି ଦେଉଛି, ଛିନ୍ନଛତ୍ର କରି ଦେଉଛି । ବିକଟ ଶବ୍ଦ ଶୁଭୁଛି—ଘଡ୍, ଘଡ୍, ଘଡ୍ । ଟ୍ରେନଟା ଧାଇଁ ଆସୁଛି ମଧୁଛନ୍ଦା ଆଡ଼କୁ । କାହିଁ କୁଆଡ଼େ ଆଉ କେହି ଦିଶୁ ନାହାନ୍ତି । ଚାରିଆଡ଼ ଅନ୍ଧାର, ସେ ପ୍ରାଣ ବିକଳରେ ଦଉଡ଼ୁଛି, ତା' ପଛେ ପଛେ ସେହି ଦାନବଟା ମଧ ମାଡ଼ି ଆସୁଛି ।

ଅସ୍ଫୁଟ ଭୟାର୍ତ୍ତ ଚିତ୍କାର ସହ ନିଦ ଭାଙ୍ଗିଗଲା ମଧୁଛନ୍ଦାର । ଭୟରେ ଥରୁଥିଲା ତା'ର ଦେହଟା । ହୃଦ୍‌ଯନ୍ତ୍ରର ଗତି ବଢ଼ିଯାଇଛି ଯଥେଷ୍ଟ ବେଶୀ । ଝାଳରେ ସାରା ଦେହ ବୁଡ଼ି ଯାଇଛି ।

ହଠାତ୍ ଏହିପରି ଭୟଙ୍କର ବିଭୀଷିକାଭରା ସ୍ୱପ୍ନ ଦେଖିବାର ଅର୍ଥ ସେ ବୁଝିପାରିଲା । ଦୂରରେ ରୂପମତୀ ନଦୀର ପୋଲ ଉପରେ ରାତି ଦୁଇଟାର ଡାକଗାଡ଼ିଟା ଧଡ୍ ଧଡ୍ ଶବ୍ଦ ସୃଷ୍ଟି କରି କରି ଚାଲିଯାଉଛି । ପୋଲ ଉପରେ ତା'ର ସେ ଶବ୍ଦ ଗୋଟାଏ ବିଶେଷ ରକମର ଗମ୍ଭୀର ଓ ଭୀତିପ୍ରଦ ଜଣାଯାଉଛି । ଗାଡ଼ିଟା ସବୁ ରାତିରେ ଯାଏ । ରାତିର ନିଃସ୍ତବ୍‌ଧତା ଭିତରେ ରେଳଗାଡ଼ିର ଦ୍ରୁତଗତିର କମ୍ପନ ଅତି ସୁସ୍ପଷ୍ଟ ଭାବରେ ଶୁଣାଯାଏ ଘରକୁ । ଅନୁଭବ କରିହୁଏ ସେ କମ୍ପନ ।

ପିଲାଦିନେ ଏଇଥିପାଇଁ ନିଦ ଭାଙ୍ଗିଗଲେ ତାକୁ ଭାରି ରାଗ ଲାଗୁଥିଲା । ରାଗ ବି ହେଉଥିଲା ସେଇ ଗାଡ଼ିଟା ଉପରେ ।

ଆଜି ମଧ ତା'ର ସେ ଅଶାନ୍ତ-ବିକ୍ଷୁବ୍‌ଧ ମାନସିକ ଅବସ୍ଥା ଭିତରେ, ଅସ୍ଥିର ନିଦ ଭିତରେ, ସେଇ ଶବ୍ଦ ତାକୁ କି ଭୀଷଣ ଭାବରେ ଡରାଇ ନ ଦେଲା ? ଆଃ, ମଣିଷର ମନସ୍ତତ୍ତ୍ୱ କେମିତି କାମ କରେ ସମୟ ସମୟରେ ? ଅଳୀକକୁ ବାସ୍ତବ ରୂପେ ଆଣି ରଖିଦିଏ । କିଛି ସମୟ ପାଇଁ ହେଉ ପଛକେ, କି ରୂଢ଼ ବାସ୍ତବ । ଅଦ୍ଭୁତ, ଅତି ଅଦ୍ଭୁତ ।

ଝାଳ ପୋଛିହେଲା ପରେ ଫ୍ୟାନ୍‌ଟାର ଗତିକୁ ଆହୁରି ଟିକିଏ ବଢ଼ାଇଦେଲା ମଧୁଛନ୍ଦା । ଭାବିଲା, ସ୍ମିତା ପାଖକୁ ଯାଇ ଟିକିଏ ଗପ କରିବ ତା' ସଙ୍ଗେ । ପରୀକ୍ଷା ପାଖ, ସ୍ମିତା ନିଶ୍ଚେ ଚେତା ଥାଇ ପାଠ ପଢୁଥିବ ।

ଠିଆହୋଇ ପୁଣି ସେ ବସିଲା ଖଟ ଉପରେ । ନା, ଥାଉ, ତାକୁ ଡିଷ୍ଟର୍ବ କରିବିନି । ସ୍ମିତା ଆଗରେ ସେ ତ ନିଜ ମନଟାକୁ ଖୋଲି ଦେଇ ପାରିବନି ! ଲାଭ କ'ଣ ?

କିନ୍ତୁ ସ୍ଥିର ଭାବରେ ବସି ନ ପାରି ଝରକା ପାଖକୁ ଉଠିଆସି ଠିଆ ହେଲା ମଧୁଛନ୍ଦା । ଚାହିଁ ରହିଲା ଦୂରରେ ଦିଶୁଥିବା ପୋଲଟା ଆଡ଼କୁ । ରାତିର ଅନ୍ଧାରରେ ଗୋଟାଏ ଚିତ୍ରକଳ୍ପ ପରି ଦିଶୁଛି ପୋଲଟା । ଗାଡ଼ିଟା କେତେବେଳୁ ଚାଲିଗଲାଣି । କିନ୍ତୁ ବାୟୁ ତରଙ୍ଗରେ ଯେପରି ଏବେ ମଧ ଗାଡ଼ି ଚକର ସେ ଗୁରୁଗମ୍ଭୀର ଧ୍ୱନି ଗୁଞ୍ଜରିତ ହେଉଛି ।

ଛାଇ ଓ ଆଲୁଅର ରହସ୍ୟମୟ ଖେଳ ଭିତରେ ବହିଯାଉଛି ନଦୀଟା—ରୂପମତୀ । ସକାଳର କଥା ସବୁ ମନେ ପଡ଼ିଲା । ମନେ ପଡ଼ିଲା ମନୋଜ । ପୁଣି ଲୁହଧାର ଝରି ଗଲା ମଧୁଛନ୍ଦାର ଆଖିରୁ । ମୂର୍ତ୍ତିଟିଏ ପରି ସେ ଠିଆହୋଇ ରହିଲା ସେମିତି ।

x x x

ସୌମ୍ୟର ପୁରୁଷ ଚକ୍ଷୁରେ ମଧ ଲୁହ ଝରିବାର ଉପକ୍ରମ କରୁଛି । ଆଜି ବି ସ୍ୱରୂପା ଠାରୁ କୌଣସି ଉତ୍ତର ଆସି ନାହିଁ । ଯାହାହେଲେ କହି କ'ଣ ଉତ୍ତର ଖଣ୍ଡିଏ ବି ଲେଖିବ ନାହିଁ ସ୍ୱରୂପା ! ତା'ହେଲେ ସ୍ୱରୂପା ଆଖିରେ କ'ଣ ସୌମ୍ୟର ପ୍ରେମ ଏତେ ନଗଣ୍ୟ ?

ସୌମ୍ୟ ଏତେ ବ୍ୟାକୁଳ ହୋଇ ପଡ଼ିଲାଣି ଯେ ଉଚିତ, ଅନୁଚିତ ସମ୍ଭବ, ଅସମ୍ଭବର ପ୍ରଭେଦ ମଧ ଭୁଲି ଯାଉଛି । ଡାକବାଲା ଆଣି ଚିଠି ବାଣ୍ଟିବା ପର୍ଯ୍ୟନ୍ତ ଅପେକ୍ଷା କରି ନ ପାରି ଦଉଡ଼ି ଯାଉଛି ପ୍ରଧାନ ଡାକଘରକୁ । କାଳେ ଚିଠି ଆସିଥିବ ସ୍ୱରୂପାର, ଏହି ଆଶାରେ ।

ଭାବୁଛି—ହୁଏତ ଡାକବାଲା ଭୁଲରେ କ'ଣ ଗୋଟାଏ ଗୋଳମାଳ କରି ଦେଇଛି । ଚିଠି ହଜି ଯିବାଟା ମଧ କିଛି ଆଶ୍ଚର୍ଯ୍ୟଜନକ କଥା ନୁହେଁ । ଗୋଟାଏ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ପ୍ରଧାନ ଚିଠି ହଜିଯାଇ ଗୋଟିଏ ଗୋଟିଏ ଜୀବନକୁ ପୂରା ଧ୍ୱଂସ କରି ଦେବାର ପ୍ରମାଣ ମଧ ରହିଛି ଏ ଜଗତରେ ।

ହୁଏତ ତା'ର ପ୍ରସ୍ତାବକୁ ଗ୍ରହଣ କରି ଉତ୍ତର ଦେଇଥିବ ସ୍ୱରୂପା । ସେ ଚିଠିଟି ହଜି ଯାଇଥିବ । ଏଣେ ଆହତ ଅଭିମାନରେ ତୁନିହୋଇ ରହିବ ସେ ସ୍ୱରୂପାକୁ ଭୁଲ ବୁଝି । ତା'ପରେ ତା' ଚିଠିର ଉତ୍ତର କିଛି ନପାଇ ସ୍ୱରୂପା ମଧ ନିଜକୁ ଅପମାନିତା ମନେକରି ଦୁଃଖିତା ହେବ ।

କ୍ରମଶଃ ସୌମ୍ୟର ଆଶଙ୍କା ତାକୁ ଏପରି ବିବ୍ରତ କରିଦେଲା ଯେ, କସ୍ମିନ୍‌କାଳେ ଯାହା ସାଧାରଣତଃ ସେ କରି ନ ଥିଲା ଆଜି ତାହା ହିଁ କଲା । ସାଙ୍ଗ ଝିଅମାନଙ୍କ ସଙ୍ଗେ ମିଶି ସ୍ମିତା କଲେଜର ଲମ୍ବା ବାରଣ୍ଡାକୁ ଅତିକ୍ରମ କରି ଯାଉଥିଲା ଯେତେବେଳେ, ହଠାତ୍ ସୌମ୍ୟ ଡାକ ପକାଇଲା—ସ୍ମିତା, ଟିକିଏ ଶୁଣିବ !

ଦଳଟିଯାକ ଝିଅ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କର ଅର୍ଥପୂର୍ଣ୍ଣ ସନ୍ଦିଗ୍ଧ ଚାହାଁଣି ଦେଖି ସ୍ମିତାର ଗୋରା ମୁହଁଟା ଲାଲ୍ ହୋଇଗଲା । ସବୁକାଳେ ସ୍ମିତା ବଡ଼ ଭୀରୁ, ଅତିମାତ୍ରାରେ ସଙ୍କୁଚିତା । ନୀଳମଣିଙ୍କର ଅଶେଷ ସ୍ନେହ ଓ ଆଦର ପାଇ ଏ ସଂସାରରେ ବଢ଼ିଥିଲେ ମଧ

ଆଶ୍ରିତାର ମନୋଭାବ କେବେ ଦୂର ହୋଇନାହିଁ ତା ମନରୁ । ହୁଏତ ସେଇଥିପାଇଁ ହିଁ ସେ ଅସ୍ୱାଭାବିକ ଭାବରେ ସଙ୍କୁଚିତା ହୋଇ ପଡ଼େ ସବୁ କଥାରେ । ସିଧାସଳଖ ଭାବରେ ସୌମ୍ୟର ଛାତ୍ରୀ ସେ । ପୁଣି ସ୍ୱରୂପା ସହିତ ସୌମ୍ୟର ବିବାହ ପ୍ରସ୍ତାବ ପଡ଼ିଥିବା କଥା ମଧ ତା'ର ଅଜ୍ଞାତ ନାହିଁ ।

ସୌମ୍ୟ ଇଂରାଜୀ ଅଧ୍ୟାପକ, ସ୍ମିତା ଇଂରାଜୀ—ଅନର୍ସର ଛାତ୍ରୀ । ସେ ତା'ର ଖାଲି ଜଣେ ପରିଚିତ ଆତ୍ମୀୟ ନୁହେଁ, ପରମାତ୍ମୀୟ ହେବ । ଏସବୁ ସତ୍ୱେ ବାହାରେ କେବେ ସେ ନିଜ ତରଫରୁ ମୁହଁ ଫିଟାଇ ପଦେ କଥା କହିନାହିଁ ସୌମ୍ୟକୁ । ଅବଶ୍ୟ ବଡ଼ମା ଓ ସ୍ୱରୂପାଙ୍କ ଅନୁରୋଧକ୍ରମେ କେତେଥର ପାଠପଢ଼ାରେ ସାହାଯ୍ୟ କରିଛି ତାକୁ ସୌମ୍ୟ ।

ମଧୁଛନ୍ଦା ସୌମ୍ୟର ଦକେଇଝିଅ ଭଉଣୀ । ସେ ମଧ ଇଂରେଜୀ ଅନର୍ସର ଛାତ୍ରୀ ଥିଲା । ଏବେ ଅବଶ୍ୟ ତା'ର ଏମ୍.ଏ. ଶେଷ ବର୍ଷ । ମଧୁଛନ୍ଦାକୁ ପଢ଼ାଇବାକୁ ମଝିରେ ମଝିରେ ଘରକୁ ଯାଏ ସୌମ୍ୟ । ସେତେବେଳେ ସ୍ମିତାକୁ ଡାକି ତା'ର ପଢ଼ା ବିଷୟରେ ତତ୍ତ୍ୱ ନିଏ ।

କେବେ ଯଦି ସୌମ୍ୟ ଯିବାକୁ ଭୁଲିଯାଏ, ସେହି କଲେଜରେ ହିଁ ମଧୁଛନ୍ଦା ଲକ୍ଷ ଅଭିଯୋଗ, ଅନୁଯୋଗ ଶୁଣାଇଦିଏ ସୌମ୍ୟକୁ । ତା'ର ସେ ଗେହ୍ଲାଳିଆ ଢଙ୍ଗରେ ବେଶ ଧାରୁଆ କଥା କହିଦେଇ ପାରେ ମଧୁଛନ୍ଦା । ସୌମ୍ୟ ତା'ର ଭାଇ, ତା ଉପରେ ରାଗିବା ଅଧିକାର ଛନ୍ଦାର ଅଛି । କିନ୍ତୁ ସ୍ମିତା ? ନୀଳମଣିଙ୍କ ପରିବାରରେ ଏକ ଆଶ୍ରିତା ମାତ୍ର । କେବଳ ଭବିଷ୍ୟତରେ ହେବାକୁ ଯାଉଥିବା ସମ୍ପର୍କକୁ ସମ୍ବଳ କରି ସେ ଜୋର ଖଟାଇ ପାରେନାହିଁ ମଧୁଛନ୍ଦା ପରି । କିନ୍ତୁ ତେବେକେ ଅନେକ ସମୟରେ କଳ୍ପନାରେ ସେ ଛବି ଆଙ୍କିଯାଏ—ସୌମ୍ୟ ତା'ର ଭଗ୍ନୀପତି ହେଲାପରେ କିପରି ତା ନିକଟରେ ଠିକ୍ ମଧୁଛନ୍ଦା ପରି ଦାବି ଓ ଅଭିଯୋଗ ଜଣାଇ ପାରିବ ସେ । ସୌମ୍ୟ ପ୍ରତି ମନରେ ତା'ର ଅଶେଷ ସ୍ନେହ ଓ ଶ୍ରଦ୍ଧା ଭରି ରହିଥିଲା ।

—ସ୍ମିତା, ଶୁଣିଯାଅ । ଜରୁରୀ କଥା ଅଛି । ପୁଣି ଡାକିଲା ସୌମ୍ୟ ।

ନ ଯିବାର ଆଉ ଉପାୟ ନାହିଁ । ତେଣୁ ଧୀର ପାଦରେ ଯାଇ ସେ ଠିଆହେଲା ସୌମ୍ୟ ପାଖରେ । ଅହେତୁକ ଆଶଙ୍କାରେ ଛାତି ଭିତରଟା ଥରି ଉଠିଲା । ତା'ର କାରଣ, ଏଥିପୂର୍ବରୁ କଲେଜରେ ସୌମ୍ୟ ତାକୁ ଏଭଳି କେବେ ଡାକି ନଥିଲା ।

ସ୍ମିତା ପାଖକୁ ଆସିଲାପରେ ଗଭୀର ଉଦ୍‌ବେଗରେ ସୌମ୍ୟ ପଚାରିଲା—ସ୍ମିତା, ସ୍ୱରୂପା କିଛି ଚିଠି ଦେଇଛନ୍ତି ? ତାଙ୍କର ଦେହ ଭଲ ଅଛି ତ ? ମୁଁ ବଡ଼ ଚିନ୍ତିତ ।

ଏ ଜାତୀୟ ପ୍ରଶ୍ନ ଶୁଣି ସ୍ମିତା ଯେପରି ବିସ୍ମୟରେ ଆକାଶରୁ ଖସି ତଳେ ପଡ଼ିଗଲା । ଉତ୍ତର ଦେବାକୁ ଯେଉଁ ଟିକକ ସମୟ ବିଳମ୍ବ ହେଲା ତାର, ସେତକ ବି ଅସହ୍ୟ ମନେହେଲା ସୌମ୍ୟର । ବିରକ୍ତିଭରା କଣ୍ଠରେ ସେ କହିଲା—କିଛି କହୁନାହଁ ଯେ, ତମ ପାଖକୁ କି ବଡ଼ମା'ଙ୍କ ପାଖକୁ କିଛି ଚିଠି ଦେଇନାହାନ୍ତି ସେ ?

ସଂକ୍ଷିପ୍ତ ଭାବରେ ସ୍ମିତା କହିଲା– ନା ତ !

ସୌମ୍ୟ ନିରାଶ ହେଲା । ଆଉ ସେତେବେଳେ ଯାଇ ସେ ଉପଲବ୍ଧି କଲା—ଏହିପରି ସ୍ମିତାକୁ ଡାକିଆଣି ଏ ପ୍ରଶ୍ନ ପଚାରିବା ତା'ର ଗୋଟାଏ ଭୁଲ୍ ହୋଇ ଯାଇଛି । ତେଣୁ ଟିକିଏ ଇତସ୍ତତଃ ହୋଇ କହିଲା—ପରୀକ୍ଷା ପାଇଁ ପ୍ରସ୍ତୁତ ହୋଇ ସାରିଲଣି ତ ? ଅସୁବିଧା କ'ଣ ଥିଲେ ବୁଝିନେବ । କାଲି ମୁଁ ଘର ଆଡ଼େ ଯିବି । ବଡ଼ମା'ଙ୍କୁ କହିଦେବ ।

ଏଥର ମଧ୍ୟ ସ୍ମିତା ଆଶ୍ଚର୍ଯ୍ୟ ହେଲା ଆଉ ତା'ର ବିସ୍ମିତ ମୁହଁଟାକୁ ଚାହିଁ ଆହୁରି ଅଧିକ ଅପ୍ରସ୍ତୁତ ହୋଇଗଲା ସୌମ୍ୟ । ସେଥିପାଇଁ ହଠାତ୍ ମୁହଁ ଫେରାଇ ଅନ୍ୟଆଡ଼କୁ ଚାଲିଗଲା ସେ ।

ସ୍ମିତା ଯେପରି ଆଶ୍ଚର୍ଯ୍ୟ ହୋଇ ଯାଇଥିଲା, ତା'ର ସଙ୍ଗିନୀମାନେ ମଧ୍ୟ ସେହିପରି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେ ପାଖକୁ ଆସିଲାକ୍ଷଣି କୌତୂହଳପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ ତା ଆଡ଼କୁ । ତାଙ୍କ ଭିତରୁ ଜଣେ ନିଜକୁ ସମ୍ଭାଳି ନପାରି ପଚାରିଦେଲା—ସାର୍ କ'ଣ କହୁଥିଲେ ସ୍ମିତା ?

—ପରୀକ୍ଷା ଆସିଲାଣି ତ । ଡିଫିକଲଟି କ'ଣ ଥିଲେ...

—ଆରେ ! ଆମେ ସବୁ କି ବୋକାମି କଲେ ! ସାର୍‌ଙ୍କୁ ତ କହିଥିଲେ ଏକ୍‌ଷ୍ଟ୍ରା କ୍ଲାସ୍ କରି ପୋଏଟ୍ରିତକ ବୁଝାଇ ଦେଇଥାନ୍ତେ । କୋର୍ସ ସରି ପାରିଲାନି, ପରୀକ୍ଷା ପାଖେଇ ଆସିଲାଣି ।

ସମସ୍ତେ ବ୍ୟସ୍ତ, ପାଠ୍ୟକ୍ରମ ପଢ଼ାଇବା ସରି ନାହିଁ । ପରୀକ୍ଷା ଦେବାକୁ ପଡ଼ିବ । ପାଠ୍ୟକ୍ରମ ସରିପାରିନି, କାରଣ ମଝିରେ ମଝିରେ ବିଭିନ୍ନ ପ୍ରକାର ଧର୍ମଘଟ ହୋଇ ଅନେକ ସମୟରେ ପଢ଼ାପଢ଼ି ବନ୍ଦ ରହୁଛି ।

ହୁଁ—ଧର୍ମଘଟ । ଅନ୍ୟାୟର ପ୍ରତିବାଦ ଜଣାଇବାକୁ ଧର୍ମର ଘଟ ବସାଇବା ହେଉଛି ଅନେକ ଦିନ ତଳର ପରମ୍ପରା । ଏହି ଅସହଯୋଗ ଅସ୍ତ୍ର ପ୍ରୟୋଗ କରାଯାଉଥିଲା କୌଣସି ପ୍ରକାର ଘୋର ଅନ୍ୟାୟ ଦେଖାଦେଲେ । ବାପୁଜୀ ତାକୁ ଆଉ ଏକ ନୂଆ ରୂପ ଦେଲେ ତାଙ୍କ ମାତୃଭୂମିର ସ୍ୱାଧୀନତାକୁ ଅହିଂସାଭାବରେ ଫେରାଇ ଆଣିବା ପାଇଁ । ଅନଶନ, ଶୋଭାଯାତ୍ରା, ଅହିଂସାମୂଳକ ପ୍ରତିବାଦ ଜଣାଇବା, ସରକାରଙ୍କ କାର୍ଯ୍ୟରେ ଅସହଯୋଗ କରିବା । କିନ୍ତୁ କାଳକ୍ରମେ ଆଜିକାଲି ତାହାର ପ୍ରୟୋଗ ଦୈନିକ ଖିଆପିଆ ପରି ନିତ୍ୟନୈମିତ୍ତିକ ହୋଇଗଲାଣି । କାରଣରେ, ଅକାରଣରେ, ନ୍ୟାୟରେ, ଅନ୍ୟାୟରେ ସବୁ କଥାରେ ଧର୍ମଘଟ କରାଯାଉଛି ।

ସମୂହଭାବରେ ଦେଶର କ୍ଷତିକୁ ଦେଖିବାକୁ ଅବସର ନାହିଁ କାହାର—ନେତାଙ୍କର ନାହିଁ କି ଜନତାଙ୍କର ନାହିଁ ।

ପ୍ରତ୍ୟେକ ନୂତନ ବିଚାର ଧାରାର ପ୍ରୟୋଗ ଏ ପୃଥିବୀର ତଥା ଜନସମାଜର ମଙ୍ଗଳ ପାଇଁ ହିଁ ଉଦ୍ଦିଷ୍ଟ । କିନ୍ତୁ କାଳକ୍ରମେ ସେହି କଲ୍ୟାଣମୟ ଓ ମଙ୍ଗଳମୟ ଉଦ୍ଦେଶ୍ୟକୁ କେତେକ

ସ୍ୱାର୍ଥପର ଲୋକ କୌଶଳ ପ୍ରୟୋଗ କରି ଏପରି ଏକ ସ୍ତରକୁ ନେଇ ଆସନ୍ତି ଯେ ତାହା ଅକଲ୍ୟାଣ ହିଁ କରେ ।

ସମାଜ ବ୍ୟବସ୍ଥାକୁ ଗଢ଼େ ଏହି ମଣିଷ ।

ପୁଣି ତାହାକୁ ଭାଙ୍ଗେ ଏହି ମଣିଷ ।

'ମୁଁ ସୃଷ୍ଟି କର୍ତ୍ତା । ପୁଣି ସେହି ମୁଁ ହେଉଛି ଧ୍ୱଂସକର୍ତ୍ତା । ମୁଁ ବିଷ୍ଣୁ—ମୁଁ ଶିବ ।'

'ଜୀବ ମାତ୍ରକେ ଯେ ଶିବ', ଏ କଥା ଯେ କେବେ ସମସ୍ତେ ଉପଲବ୍ଧି କରିବେ, ସେଥିପାଇଁ ଆହୁରି କେତେକାଳ ଲାଗିବ ?

ନୀଳମଣି ଶୋଇ ଶୋଇ ଭାବୁଥିଲେ ଆଉ ସ୍ମିତା ଘରେ ପାଦ ଦେଉ ନଦେଉଣୁ ପଚାରିଲେ—ମା ଆସିଲୁ ? ଆଜି ମଧ୍ୟ ସ୍ୱରୂପାର ଚିଠି ଆସିଲାନି । ତା କଥା ଦେଖ୍ । ଯା ମୁହଁ ହାତ ଧୋଇ, ଲୁଗା ବଦଳାଇ, ଜଳଖିଆ ଖାଇଦେଇ ଟିକିଏ ବିଶ୍ରାମ କରିବୁ । ତା' ପରେ ଆସିବୁ ମୋ ପାଖକୁ । ଖଣ୍ଡେ ଚିଠି ଲେଖିଦେବୁଟି ତା ପାଖକୁ—ଲେଖିଦେବୁ ଯେ ମୁଁ ଭାରି ରାଗିଛି ଚିଠିର ଉତ୍ତର ନ ପାଇବାରୁ ।

ସ୍ମିତା ଅବାକ୍ ହେଲା—କଲେଜରେ ସୌମ୍ୟ ସ୍ୱରୂପାର ଚିଠି କଥା ପଚାରିଥିଲା ।

ନିଜ କୋଠରି ଆଡ଼କୁ ଯାଉ ଯାଉ ସ୍ୱରୂପା ଉପରେ ମନଟା ବିରକ୍ତ ହୋଇଗଲା ତାର । ସ୍ୱରୂପା ଏଭଳି ତୁନିହୋଇ ରହିବାଦ୍ୱାରା ବହୁତ ଅନ୍ୟାୟ କରୁଛି ସତରେ ! ବଡ଼ମା'ଙ୍କୁ, ସୌମ୍ୟ ଭାଇନାଙ୍କୁ ଅଯଥା କଷ୍ଟ ଦେଉଛି । ଆଜି ସେ ନିଜେ ମଧ୍ୟ ଅଲଗା କରି ଗୋଟିଏ ଚିଠି ଲେଖିଦେବ ସ୍ୱରୂପା ପାଖକୁ । ସ୍ୱରୂପାର ଏହିପରି ଦାୟିତ୍ୱହୀନତା, ସେ ବିଶ୍ୱାସ କରି ପାରୁନି ସତରେ ।

x x x

ସୌମ୍ୟ କବିତା ଲେଖୁଥିଲା ତା ଚିଠିରେ । ସ୍ୱରୂପାର ଉତ୍ତରକୁ ସେ ଅପେକ୍ଷା କରି ପାରିନି । ସେଇ ରାତିରେ ସେ ଲେଖୁଛି ଚିଠି । ଚିଠିର ଆରମ୍ଭ କବିତାରେ ।

ନୀଳ ଚନ୍ଦ୍ରାତପ ତଳେ ସ୍ନିଗ୍ଧ ମଧୁ ଜ୍ୟୋତ୍ସ୍ନା ଧାରା
ସରଗ ସୁଷମା ଭରେ ପ୍ଲାବି ମହା ବିଶ୍ୱ ସାରା
ଲକ୍ଷହୃଦେ ଦିଏ ଯେବେ ଶତ ସୁଖ ସ୍ୱପ୍ନ ଆଶା
କବିର ଅନ୍ତର ତେବେ ପାଏ ନା ବନ୍ଦନା ଭାଷା
ଅଧୀରେ ଆବେଗେ ଗାଏ—
'ନିଷ୍ଠୁର ନୁହେଁ ସେ ମାଲିକ ଦୀନ ଦୁନିଆର ।'

ସ୍ୱରୂପା,

ଭଗବାନ କେବେ ନିଷ୍ଠୁର ନହୋଇ ପାରନ୍ତି । ମୋର ଧାରଣା ପ୍ରେମର ପ୍ରତିମା ମଧ୍ୟ କେବେ ନିଷ୍ଠୁରା ହୋଇପାରେନା । ତମଠାରୁ ମୋ ଚିଠିର ଉତ୍ତର ଏ ପର୍ଯ୍ୟନ୍ତ ନପାଇ ମୁଁ ଆହତ, ଦୁଃଖିତ । ସ୍ୱରୂପା, ହୁଏତ ତୁମେ ଚାହଁ ନାହିଁ ମତେ । ବଡ଼ମା'ଙ୍କ ଇଚ୍ଛା ଜାଣି ମୁଁ ଭାବିଥିଲି ଯେ ମୁଁ ଯେପରି ତମକୁ ଭଲ ପାଇଛି, ତମେ ମଧ୍ୟ ମତେ ସେହିପରି ଭଲ ପାଉଛ ଆଉ ସେ କଥା ବଡ଼ମା ଜାଣିଛନ୍ତି । ଏବେ ଭାବୁଛି ମୋର ଏ ଧାରଣାଟା ମୂଳରୁ ଚୂଳଯାଏ ଭୁଲ୍ ହୋଇପାରେ । ସେଇଥିପାଇଁ ବୋଧହୁଏ ତମର ମତ ଜଣାଇବାକୁ ତମେ ଦ୍ୱିଧା କରୁଛ । ଚିଠିର ଉତ୍ତର ଦେଇନାହଁ ।

ସ୍ୱରୂପା, ଦ୍ୱିଧା କରିବନି । ଯାହାହେଲେ ତମର ମତାମତ ଦୁଇ ଧାଡ଼ିରେ ଲେଖି ଚିଠି ଖଣ୍ଡେ ଶୀଘ୍ର ପଠାଇବ ।

ତମ ଚିଠି ପାଇଁ ମୁଁ ଏତେ ବ୍ୟାକୁଳ ଓ ବିଚଳିତ ହୋଇ ପଡ଼ିଛି ଯେ ଆଜି କଲେଜରେ କ'ଣ କଲି ଜାଣିଛ ? ସାଙ୍ଗଙ୍କ ମେଳରେ ସ୍ମିତା ଯାଉଥିଲାବେଳେ ହଠାତ୍ ତାକୁ ଡାକି ପକାଇଲି । କାଳେ ତାକୁ କି ବଡ଼ମା କିମ୍ବା ଅନ୍ୟ କାହା ପାଖକୁ ତମେ କିଛି ଚିଠି ଦେଇଥିବ, ସେହି କଥା ପଚାରି ବୁଝିବାକୁ ତାକୁ ଡାକିଥିଲି । ନିଜର ସେ ପାଗଳାମି କଥା ଭାବିଲେ ଏବେ ସୁଦ୍ଧା ବଡ଼ ଅପ୍ରସ୍ତୁତ ଲାଗୁଛି ।

ସ୍ୱରୂପା ! ବର୍ତ୍ତମାନ ତମେ କ'ଣ କରୁଥିବ ? ନିଶ୍ଚୟ ଗଭୀର ସୁଖ ନିଦ୍ରାରେ ଶୋଇଥିବ । ରାତି ଗୁଡ଼ାଏ ହୋଇଗଲାଣି, ଅତି ନିକଟ ହୋଇଗଲାଣି ଦୋଳପୂର୍ଣ୍ଣିମା । ଚାରିଆଡ଼େ ଜ୍ୟୋସ୍ନାର ସ୍ନିଗ୍ଧ ମଧୁଧାରା ଝରୁଛି । ସାରା ପୃଥିବୀ ଯେପରି ଅପରୂପ ସ୍ୱର୍ଗ ସୁଷମାରେ ପ୍ଲାବିତ ହୋଇ ଯାଇଛି । ସୁଖ ସ୍ୱପ୍ନରେ ବିଭୋର ହୋଇ ଲକ୍ଷ ଲକ୍ଷ ମଣିଷ ଯେତେବେଳେ ନିଦ୍ରା ଦେବୀଙ୍କର ସୁକୋମଳ କୋଳରେ ଶାୟିତ—ମୋ ଆଖିରେ ନିଦ ନାହିଁ ।

ଥୋଡ଼ାଏ ସମୟ ଶେଯରେ ପଡ଼ି ଛଟପଟ ହେଲାପରେ ଆସି ବସିଛି ଟେବୁଲ ପାଖରେ । ସାମନାରେ ମୋର ଖୋଲା ଝରକାବାଟେ ଜ୍ୟୋସ୍ନାମୟୀ ପ୍ରକୃତିର ଅପୂର୍ବ ରୂପ ମାଧୁରୀ ଦେଖି ହଠାତ୍ ମନେ ହେଲା—ଈଶ୍ୱର ନିଷ୍ଠୁର ନୁହଁନ୍ତି । ଏପରି ସୁଷମାମୟ ପ୍ରକୃତିର ସୃଜନକର୍ତ୍ତା କେବେ ନିଷ୍ଠୁର ହୋଇ ପାରିବେ ନାହିଁ—ସ୍ୱରୂପା ମଧ୍ୟ ନିଷ୍ଠୁର ହୋଇ ପାରେନା । କେବେ ନୁହେଁ ।

ମନ ଭିତରେ ମୋର ଗୁଞ୍ଜରି ଉଠିଲା କବିତାର ଯେଉଁ ଭାଷା, ତାହାକୁ ଲିପିବଦ୍ଧ କରିବାକୁ ଯାଇ ହଠାତ୍ ଲେଖି ବସିଲି ଏ ଚିଠି ତମ ପାଖକୁ । ନ ଲେଖି ରହି ପାରିଲିନି । ଯଦି ଭୁଲ ହୋଇଥାଏ ତା'ହେଲେ କ୍ଷମା କରିବ । ତମେ ତ ଜାଣିଥିବ—ସେକ୍ସପିଅର କହିଛନ୍ତି—Love is blind ଅର୍ଥାତ୍ ପ୍ରେମ ହେଉଛି ଅନ୍ଧ ।

ଆଉ ଥରେ ଅନୁରୋଧ ରହିଲା—ସ୍ପଷ୍ଟ ମତ ଜଣାଇବାକୁ ଦ୍ୱିଧା କରିବନି । ଯାହାହେଲେ ଦୁଇଧାଡ଼ି ଲେଖି ଶୀଘ୍ର ପଠାଇବ ।

ଇତି

ସୌମ୍ୟ

x x x

ବକ୍ତୃତା ଦିଆଯାଉଥିଲା ବେଦ ଓ ଉପନିଷଦ ବିଷୟରେ । ବକ୍ତା କହୁଥିଲେ—ବ୍ରହ୍ମରୂପ ପଦାର୍ଥ ହୃଦୟାକାଶରେ ପ୍ରକାଶ ପାଉଛନ୍ତି । ସେ ବିଜ୍ଞାନ ଅର୍ଥାତ୍ ଚିତ୍ ସ୍ୱରୂପ ଏବଂ ସ୍ୱଚ୍ଛ । ବାହାର ଆକାଶ ଓ ବ୍ରହ୍ମରୂପ ଆକାଶ ପୃଥକ୍ ବସ୍ତୁ । ବ୍ରହ୍ମରୂପ ଆକାଶକୁ ହୃଦୟରେ ଅନୁଭବ କରିବାକୁ ହୁଏ ଏବଂ ତାହା ଜ୍ଞାତବ୍ୟ ବସ୍ତୁ କିନ୍ତୁ ବାହ୍ୟ ଆକାଶ ଛିଦ୍ର ସ୍ୱରୂପ, କିଛିମାତ୍ର ନୁହେଁ ।

ବ୍ରହ୍ମୋପନିଷଦ୍‌ର ଭାବଧାରାକୁ ବ୍ୟାଖ୍ୟା କରୁଥିଲେ ସ୍ୱାମୀ ଚୈତନ୍ୟାନନ୍ଦ ହରିହର ।

ସ୍ୱରୂପା ଭାବିଲା—ବାହ୍ୟ ଆକାଶ ଛିଦ୍ର ସ୍ୱରୂପ, କିଛିମାତ୍ର ନୁହେଁ । ଦିଶୁଥିବା ଏହି ସୁନ୍ଦର ନୀଳ ଆକାଶ ଯେ କେବଳ ମହାଶୂନ୍ୟ, ସେ କଥା ସେହି ଉପନିଷଦ୍ ଯୁଗର ମନ୍ତ୍ର-ରଚୟିତା ଜାଣିଥିଲେ ।

ବଡ଼ମା ମଧ ଗୋଟାଏ ଚମତ୍କାର କଥା କହନ୍ତି—ଆକାଶର ବର୍ଣ୍ଣ ନୀଳ, ଆକାଶ ହେଉଛି ମହାଶୂନ୍ୟ । ଅର୍ଥାତ୍ ମହାଶୂନ୍ୟର ବର୍ଣ୍ଣ ହେଉଛି ନୀଳ । ତେଣୁ ସେ ଯୁଗର ସୁଚତୁର ଋଷିମାନେ ଭଗବାନଙ୍କ ଶରୀର ମଧ ନୀଳବର୍ଣ୍ଣ ବୋଲି କହିଛନ୍ତି ସ୍ୱରୂପା ! ଯେପରି ଆକାଶ ବୋଲି କିଛି ନାହିଁ ସେହିପରି ଈଶ୍ୱର ବୋଲି ମଧ କିଛି ନାହାନ୍ତି ।

କଥା ଗୁଡ଼ାକ ତାଙ୍କର ଅଙ୍କଶାସ୍ତ୍ରର ଅଙ୍କ ପରି ସ୍ୱତଃସିଦ୍ଧ ।

ହେଲେ ମଧ ସେ କଥା ମାନିବାକୁ ସ୍ୱରୂପା ପ୍ରସ୍ତୁତ ନୁହେଁ । ପ୍ରବଳ ଭାବରେ ଈଶ୍ୱରବିଶ୍ୱାସୀ ସେ ।

କିଛିକ୍ଷଣ ଅନ୍ୟମନସ୍କ ହେଲାପରେ ସଜାଗ ହେଲା ସେ । ସ୍ୱାମୀଜୀ କହି ଚାଲିଥିଲେ—ଯେପରି ତିଳ ଭିତରେ ତୈଳ, ଦଧି ଭିତରେ ଘୃତ, ସ୍ରୋତ ସମୂହ ମଧରେ ଜଳ ଓ ଅରଣି ମଧରେ ବହ୍ନି ରହିଥାଏ, ତଦ୍ରୂପ ଆତ୍ମା ବୁଦ୍ଧିକୁ ଆଶ୍ରୟ କରି ରହିଥାନ୍ତି । ଯେପରି ଉର୍ଣ୍ଣନାଭ କୀଟ ନିଜଠାରୁ ତନ୍ତୁଜାଲ ଉତ୍ପାଦନ କରି ପୁଣି ନିଜଠାରେ ସଂହାର କରେ, ସେହିପରି ଜୀବ ଜାଗ୍ରତ ଅବସ୍ଥାରେ ସ୍ୱକୀୟ ଇନ୍ଦ୍ରିୟାଦି ଅଙ୍ଗସମୂହ ପ୍ରସାରିତ କରି ପୁଣି ସ୍ୱପ୍ନାବସ୍ଥାରେ ନିଜଠାରେ ବା ନିଜ ଦେହରେ ହିଁ ସଂହାର କରିଥାଏ ।

...ବିଷୟ ସମୂହରୁ ଇନ୍ଦ୍ରିୟମାନଙ୍କୁ ବଳପୂର୍ବକ ପ୍ରତ୍ୟାକର୍ଷଣ କରିବାର ନାମ ହେଉଛି ପ୍ରତ୍ୟାହାର । ତା'ପରେ—ଧାରଣା, ଧ୍ୟାନ ଓ ସମାଧି । ଯୋଗର ଅଷ୍ଟାଙ୍ଗ ସାଧନା କଲେ ଅବଶ୍ୟ ମୋକ୍ଷ ପ୍ରାପ୍ତି ହୁଏ... ।

ସ୍ୱରୂପା ଉଠି ଠିଆ ହୋଇ ବିନୀତ ଭାବରେ ପଚାରିଲା, ମୋର ଗୋଟାଏ ପ୍ରଶ୍ନ ପଚାରିବାର ଅଛି ।

ସ୍ୱାମୀଜୀ ସ୍ନେହପୂର୍ଣ୍ଣ କଣ୍ଠରେ ତା ଆଡ଼କୁ ଚାହିଁ କହିଲେ—ପଚାର ମା !

—ମୋକ୍ଷ ପ୍ରାପ୍ତି ଅର୍ଥାତ୍ ମାନସିକ ଉତ୍କର୍ଷତା ଲାଭ କରିବା ଅର୍ଥ ମନକୁ ଧ୍ୟାନ ଦ୍ୱାରା ଏକ ଉତ୍କୃଷ୍ଟ ସ୍ତରକୁ ନେଇ ପୂର୍ବଜନ୍ମର ଦାରୁଣ କଷ୍ଟରୁ ନିଜକୁ ଅବ୍ୟାହତି ଦେବାର ପ୍ରକୃଷ୍ଟ ଉପାୟ । କିନ୍ତୁ ଜରା, ରୋଗ, ମୃତ୍ୟୁ ବିହୀନ ଜୀବନ ପାଇବାକୁ ଶାସ୍ତ୍ରମାନଙ୍କରେ କ'ଣ କିଛି ଉପାୟ ଅଛି ?

ସ୍ନିଗ୍ଧ କଣ୍ଠରେ ସେହି ଶୁଭ୍ରପଳିତ କେଶ ଓ ଶ୍ମଶ୍ରୁମଣ୍ଡିତ ପ୍ରାଜ୍ଞ ବୃଦ୍ଧ ଉତ୍ତର ଦେଲେ—ମା, ଜୀବନଟା ଯେ ମିଥ୍ୟା । ଏକ ମିଥ୍ୟା କ'ଣ କେବେ ଚିରସ୍ଥାୟୀ ହୋଇ ପାରିବ ? ଜଳର ବୁଦ୍‌ବୁଦ୍ ପରି ଏହା ଅତି ସୁନ୍ଦର ମନୋରମ କିନ୍ତୁ କ୍ଷଣସ୍ଥାୟୀ ମାତ୍ର ।

ସ୍ୱରୂପା କହିଲା—ସ୍ୱାମୀଜୀ ! ଆମେ ବିଜ୍ଞାନ ଯୁଗରେ ଜନ୍ମ ହୋଇଛୁ । ବିଜ୍ଞାନ ଅନେକ କଥା ଆବିଷ୍କାର କଲାଣି ଓ କରି ଚାଲିଛି । ମନୁଷ୍ୟକୁ ମୃତ୍ୟୁ—ବିହୀନ କରିବାର ଚେଷ୍ଟା ମଧ୍ୟ ତା'ର ଅବ୍ୟାହତ ରଖିଛି । ହୁଏତ ଦିନେ ସେହି ଅମୃତ ମଧ୍ୟ ଆବିଷ୍କାର କରିଦେଇ ପାରିବେ ବୈଜ୍ଞାନିକମାନେ, ଯାହା ଫଳରେ ମନୁଷ୍ୟ ହେବ ଅମର । ମୃତ ମଣିଷ ପୁଣି ବଞ୍ଚି ଉଠିବ । ଖାଲି ସେତିକି ନୁହେଁ ଏ ଅମୃତର ଏହିପରି ଅଦ୍ଭୁତ ଔଷଧିଗୁଣ ରହିଥିବ ଯେ ଯାହା ଫଳରେ ବୃଦ୍ଧର ଜରା, ରୋଗୀର ରୋଗ ଦୂର ହୋଇ ପାରିବ । ସେତେବେଳେ ଆମର ଆଜିର ଏ ଦର୍ଶନ ସମୂହର ସ୍ଥାନ ରହିବ କେଉଁଠି ?

'ମା' ! ଅତି ଶାନ୍ତ କଣ୍ଠରେ କହିଲେ ସନ୍ୟାସୀ-ବିବର୍ତ୍ତନଶୀଳ ଏ ପୃଥିବୀର ଦର୍ଶନ ତଥା ବିଚାରଧାରା ମଧ୍ୟ ଯେ ପରିବର୍ତ୍ତିତ ହେଉଛି । ସାରା ସୃଷ୍ଟିର ଧର୍ମ ହିଁ ହେଲା ପରିବର୍ତ୍ତନ । ତମରି କଥା ଅନୁସାରେ ପ୍ରକୃତରେ କେଉଁ ଦିନ ଯଦି ବିଜ୍ଞାନ ଏ ଅସମ୍ଭବକୁ ସମ୍ଭବ କରିପାରେ ତା'ହେଲେ ସେଦିନ ମନୁଷ୍ୟ ତ ନିଜେ ହିଁ ଈଶ୍ୱର ହୋଇଯିବ । ବେଦ, ବେଦାନ୍ତ, ସାଂଖ୍ୟଦର୍ଶନ ପ୍ରଭୃତି ଆଲୋଚନା କରିବା ଆଉ ଦରକାର ପଡ଼ିବ ନାହିଁ । ମଣିଷ ଆଉ ନିଜକୁ ନିଜେ ପ୍ରଶ୍ନ କରିବ ନାହିଁ, ଚିତ୍କାର କରି କହିବ ନାହିଁ ଋଗ୍‌ବେଦର ସେହି ଋଷିଙ୍କ ପରି—ହେ ବିଶ୍ୱାସ । ଆମ ମନରେ ବିଶ୍ୱାସ ଜନ୍ମାଅ ।

O Faith, endow us with belief .

ହଁ, ଋଗ୍‌ବେଦରେ ଏହା ଲିଖିତ ଅଛି । ହୁଏତ ତା ପୂର୍ବରୁ ପୃଥିବୀର ସର୍ବପ୍ରଥମ ଜିଜ୍ଞାସୁ କେଉଁ ମଣିଷ ମନରେ ମଧ୍ୟ ଏ ପ୍ରଶ୍ନ ଜାଗ୍ରତ ହୋଇଥିଲା—ଇୟଂ ବିସୃଷ୍ଟି କୁତ ଆବଭୂବ ? ଏ ସୃଷ୍ଟି କେଉଁଠାରୁ ଆସିଲା ବା କିପରି ହେଲା ?

—କିଏ ସେହି ଯେ କି ଅଜ୍ଞାତ ରୂପରେ ଏହି ବିଶ୍ୱର ଛଅଟି ସ୍ତରକୁ ଧରି ରଖିଛନ୍ତି ?

ଏହି ପ୍ରଶ୍ନର ମୀମାଂସା କରିବାକୁ ଚେଷ୍ଟା କରିଛନ୍ତି, ଜଣେ ମନୀଷୀ, ସୂକ୍ତର ରଚୟିତା କହିଛନ୍ତି—

ଆନୀଦବାତଂ ସ୍ୱଧୟା ତଦେକଂ ତସ୍ମାଦ୍ଧାନାନ୍ନ ପରଃ କିଂ ଚନାସ 'କେବଳ ସେ ଏକମାତ୍ର ବସ୍ତୁ ବାୟୁର ସହକାରିତା ବ୍ୟତିରେକ ଆତ୍ମପ୍ରକୃତିବଶତଃ ନିଃଶ୍ୱାସ ପ୍ରଶ୍ୱାସ ଯୁକ୍ତ ଥିଲେ । ତାଙ୍କ ବ୍ୟତୀତ ଆଉ କିଛି ହେଲେ ନଥିଲା ।

That one thing, breathless, breathed by its own nature; apart from it was nothing whatsoever, ତମ ଆସୀତ୍ତମସା ଗୁଢ଼ହମଗ୍ରେହପ୍ରକେତଂ... ସର୍ବପ୍ରଥମେ ଅନ୍ଧକାର ଦ୍ୱାରା ଅନ୍ଧକାର ଆବୃତ ଥିଲା... ଚତୁର୍ଦ୍ଦିଗ ଜଳମୟ ଥିଲା... ଅବିଦ୍ୟମାନ ବସ୍ତୁ ଦ୍ୱାରା ସେ ସର୍ବବ୍ୟାପୀ ଆଛନ୍ନ ଥିଲେ । ତପସ୍ୟାର ପ୍ରଭାବରେ ସେ ଏକ ବସ୍ତୁ ଜନ୍ମ ହେଲେ ।

ତପସ୍ୟାର ପ୍ରଭାବରେ ସେ ଏକ ବସ୍ତୁ ଜନ୍ମ ହେଲେ ।

ତପଃ, Warmth ! ଅର୍ଥାତ୍ ଉଷ୍ମତା ! ଉତ୍ତାପ ! ଶକ୍ତି ।

ସେହି ପରମ ମହାନ୍ ଶକ୍ତି ହିଁ ଏହି ବିଶ୍ୱର ଛଅଟି ସ୍ତରକୁ ଧରି ରଖିଛନ୍ତି ।

କି ପ୍ରକାର ସେ ଉଷ୍ମତା ? କି ପ୍ରକାର ସେ ମହିମାମୟ ଶକ୍ତି ?

କିନ୍ତୁ ଆଧାର ବିନା ଶକ୍ତିର ଉତ୍ପତ୍ତି କ'ଣ ସମ୍ଭବ ? ଆଉ ସେ ଶକ୍ତିର ଆଧାରର ସ୍ୱରୂପ କ'ଣ ?

ବୈଜ୍ଞାନିକମାନେ ଏବେ ମଧ କୌଣସି ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚି ପାରି ନାହାନ୍ତି । କହିଛନ୍ତି ପ୍ରଥମେ ସୂର୍ଯ୍ୟର ଏକ ବିଚ୍ଛିନ୍ନ ଅଂଶ ହୋଇ ଏ ପୃଥିବୀ ଜନ୍ମ ହୋଇଥିଲା । ସୂର୍ଯ୍ୟପରି ହିଁ ଏକ ଜ୍ୱଳନ୍ତ ବାଷ୍ପମୟ ପିଣ୍ଡ ଥିଲା ସେ । ତା'ପରେ କ୍ରମଶଃ ଶୀତଳତା ଲାଭ କରି ବିବର୍ତ୍ତନ ମଧ ଦେଇ ଗତି କରି ଏହିପରି ସୁନ୍ଦର ସୃଷ୍ଟିର ରୂପ ଧାରଣ କରିଛି ।

କିନ୍ତୁ ସେହି ସୂର୍ଯ୍ୟ ?

ସେହି ସୂର୍ଯ୍ୟ ପରି ଲକ୍ଷ ଲକ୍ଷ ସୂର୍ଯ୍ୟ କିପରି ସୌର ଜଗତରେ ସୃଷ୍ଟି ହେଲେ ? ସେ କଥା କ'ଣ କିଏ କହି ପାରିଛି ?

କେହି ନୁହେଁ ।

ସ୍ୱରୂପା ସବୁ ଭୁଲିଯାଇ ନିଜର ଅଦ୍ଭୁତ ଚିନ୍ତାରେ ମଗ୍ନ ହୋଇ ଯାଇଥିଲା । ତା' ମନ ଭିତରେ ଏହି ଚିନ୍ତାର ତରଙ୍ଗଗୁଡ଼ିକ ଖେଳି ଯାଉଥିଲେ ।

ତାକୁ ଏହିପରି ଧ୍ୟାନମଗ୍ନ ରହିବା ଦେଖି ସତେ ଯେପରି ତା'ମନ ଭିତରର ସେହି କଥାଗୁଡ଼ିକୁ ପଢ଼ିଦେଲା ପରି ହିଁ ସ୍ୱାମୀଜୀ କହିଲେ—ମା, ସେ ପ୍ରଶ୍ନ, ପ୍ରଶ୍ନ ହୋଇ ହିଁ ରହିଯିବ ! ସେହି ଅନନ୍ତ ରହସ୍ୟର ସନ୍ଧାନ କେହି ଏ ପର୍ଯ୍ୟନ୍ତ ପାଇ ନାହିଁ କି କେହି ଭବିଷ୍ୟତରେ ମଧ ପାଇ ପାରିବେ ନାହିଁ, ଏପରିକି ତମ କଥା ଅନୁସାରେ ମନୁଷ୍ୟ ଦିନେ ଈଶ୍ୱର ପାଲଟି ଗଲେ ମଧ ।

ଜରା, ରୋଗ, ମୃତ୍ୟୁ ଦୂର ହୋଇ ଯାଇପାରେ, ମନୁଷ୍ୟମାନେ ଅମୃତସ୍ୟ ପୁତ୍ରାଃ ହୋଇ ଯାଇପାରନ୍ତି; କିନ୍ତୁ ସୃଷ୍ଟିର ପ୍ରାକ୍ କାଳର ଏ ରହସ୍ୟମୟ ଇତିହାସ, ତାହା ଅଲିଖିତ ହୋଇ ହିଁ ରହିଯିବ । ବୃଥାରେ ସେ କଥା ଚିନ୍ତା କରି ନିଜକୁ କ୍ଳାନ୍ତ କରିବା କାହିଁକି ?

ଏ କଥା ଶୁଣି ସ୍ୱରୂପା ଚମକି ପଡ଼ିଲା । ତା' ମନ ତଳର ଭାବନାଗୁଡ଼ିକ ଏ ବୃଦ୍ଧ ଜାଣିଲେ କିପରି ?

—ମା, ତୁମେ ଯୋଗକୁ ଏକ ବିଜ୍ଞାନ ବୋଲି ଭାବ, ସାଧନ କର, ମନରେ ଅନେକ ଶାନ୍ତି ପାଇବ ।

ଭାବବିହ୍ୱଳ କଣ୍ଠରେ କହିଲା ସ୍ୱରୂପା—ମୁଁ ଆପଣଙ୍କର ଶିଷ୍ୟତ୍ୱ ଗ୍ରହଣ କରିବାକୁ ଚାହେଁ । କିନ୍ତୁ କଷ୍ଟସାଧ ନିୟମ ଗୁଡ଼ିକ ପାଳି ପାରିବି କି ନାହିଁ—

ଶାନ୍ତ ମଧୁର ହସରେ ଯେପରି ପରିବେଶକୁ ଉଜ୍ଜ୍ୱଳତର କରିଦେଲେ ସ୍ୱାମୀ ଚୈତନ୍ୟାନନ୍ଦ । କହିଲେ—କୌଣସି ପ୍ରକାର କଟକଣା ନାହିଁ କି କୌଣସି ଲିଖିତ ଦଲିଲରେ ସ୍ୱାକ୍ଷର କରିଦେବାକୁ ପଡ଼ିବନି । କାରଣ ଆମ ମନ ହେଉଛି ବାୟୁ ତୁଲ୍ୟ, ସେ ଆମ ନିଜର ଆଜ୍ଞାଧୀନ ହେବା ଅତି କଷ୍ଟକର । କ୍ରିୟାଯୋଗ ସାଧନ କର ପ୍ରଥମେ । ଏହି ଯୋଗ ଦ୍ୱାରା ଚିତ୍ତ ଏକାଗ୍ର ହୁଏ । ଯାହା ତମେ କରିବ ସେ ସବୁ ସ୍ୱାଧୀନ ଭାବରେ, ସ୍ୱଚ୍ଛନ୍ଦରେ, ସ୍ୱଚ୍ଛ ମନରେ, ହିଁ କରିବ । କଷ୍ଟକର ବା ମନ୍ଦ ମନେହେଲେ ସଙ୍ଗେ ସଙ୍ଗେ ଛାଡ଼ିଦେବ । ଏଠି ଆମ ଅନୁଷ୍ଠାନ ପକ୍ଷରୁ ଏକ ଯୋଗ-ଶିକ୍ଷା କେନ୍ଦ୍ର ଖୋଲିଛି । ସକାଳ ଆଠଟାରୁ ନଅଟାଯାଏ ଶିକ୍ଷା ଦିଆଯିବାର ବ୍ୟବସ୍ଥା ହୋଇଛି । ଯୋଗର ପ୍ରଥମ ସୋପାନ ହେଉଛି କ୍ରିୟାଯୋଗ । ଦୀକ୍ଷା ଗ୍ରହଣ ପାଇଁ ତରବର ହୁଅନି । ପ୍ରଥମେ ମନକୁ ନିଜର ଆୟତ୍ତରେ ରଖ ।

ସ୍ୱରୂପାର ମନେହେଲା—ଆହା ! କି ସୁନ୍ଦର କଥା ଗୁଡ଼ିକ, କଣ୍ଠସ୍ୱର ମଧ୍ୟ କି ଉଦାର ଓ ମହିମାମୟ ! ସନ୍ନ୍ୟାସୀଙ୍କ ଚକ୍ଷୁ ଦୁଇଟିରେ କି ଗଭୀର ପ୍ରଶାନ୍ତି ଭରି ରହିଛି !

ନିଜ ହୃଦୟରେ, ନିଜର ଶରୀରରେ ରୋମାଞ୍ଚ ଅନୁଭବ କଲା ସ୍ୱରୂପା—ଯେପରି କେତେ ନା କେତେ ଯୁଗ ଶୋଇ ରହିଥିଲା ସେ । କାହିଁ କେଉଁ ସୁଦୂର ଅତୀତ ଫୁଟି ଉଠିଛି ଆଖି ଆଗରେ । ସେ କ'ଣ ପୁରାତନ ପ୍ରସ୍ତର ଯୁଗ ନା ନୂତନ ପ୍ରସ୍ତର ଯୁଗ ? ସେ କ'ଣ ତାମ୍ର ଯୁଗ ନା ଲୌହ ଯୁଗ ? ସେ କ'ଣ ବୈଦିକ ଯୁଗ ନା ବୌଦ୍ଧ ଯୁଗ ?

ତା' ଆଖି ଆଗରେ ଭାସି ଉଠୁଛି ଏକ ଅତି ପରିଚିତ ପ୍ରାକୃତିକ ସୌନ୍ଦର୍ଯ୍ୟରେ ଉଦ୍ଭାସିତ ବନସ୍ଥଳୀ । ସେଠାରେ ରହିଛି ଗଛ, ଲତା, ପତ୍ର କୁଞ୍ଜ ଭିତରେ ସୁନ୍ଦର, ପରିଷ୍କାର, ପରିଚ୍ଛନ୍ନ ପର୍ଣ୍ଣକୁଟୀର ସବୁ—ଋଷିଙ୍କ ଆଶ୍ରମ ! ଓଃ ! ସ୍ୱରୂପା ଯେପରି ତା ମନଶ୍ଚକ୍ଷୁରେ ଅତି ସୁସ୍ପଷ୍ଟ ରୂପେ ସବୁ ଦେଖି ପାରୁଛି ! ଏହିପରି କି ଛାୟାଶୀତଳ ବନଭୂମି ଉପରେ ବିଞ୍ଚି ହୋଇ ଝରି ପଡ଼ିଥିବା ପତ୍ର ଗୁଡ଼ିକୁ ମଧ୍ୟ ସେ ଯେପରି ସ୍ପଷ୍ଟ ଦେଖି ପାରୁଛି ନିଜ ଆଖିରେ । ଗଛମାନଙ୍କର ସଜୀବ ପତ୍ରମାନଙ୍କ ଫାଙ୍କରେ ଆସି ଯେଉଁ ସ୍ୱର୍ଣ୍ଣାଭ ସୂର୍ଯ୍ୟକିରଣ ଭୂମି ଉପରର ସେ ଝରାପତ୍ର ଗୁଡ଼ିକୁ

ଏକ ସ୍ୱର୍ଣ୍ଣାଭ ଆଲୋକରେ ଆଲୋକିତ କରି ଦେଇଛି, ସେ ଦୃଶ୍ୟ ମଧ୍ୟ ଦେଖୁଛି ସେ । ପବନର ସ୍ପର୍ଶରେ ଶିହରିତ ଲତାପତ୍ର ଯୋଗୁଁ ସ୍ୱର୍ଣ୍ଣାଭ ସୂର୍ଯ୍ୟକିରଣ ଛାୟା-ଆଲୋକର ଲୁଚକାଳି ଖେଳ ଖେଳୁଛି ଦୁଷ୍ଟ ପିଲାଟିଏ ପରି । ଚାରିଆଡ଼େ ବିରାଜୁଛି ଏକ ମହିମାମୟ ପ୍ରଶାନ୍ତି ।

—ଶୁଣ ମା ! ଜରା, ରୋଗ, ବ୍ୟାଧିଠାରୁ ମୁକ୍ତି ପାଇବାକୁ ହେଲେ କ୍ରିୟାଯୋଗର ସାଧନା କରିବା ମଧ୍ୟ ନିତାନ୍ତ ଦରକାର ।

ସ୍ୱାମୀଜୀଙ୍କ କଥାରେ ସ୍ୱରୂପା ପୁଣି ଯେପରି ସ୍ୱପ୍ନରୁ ଜାଗ୍ରତ ଅବସ୍ଥାକୁ ଫେରି ଆସିଲା ।

—କ୍ରିୟାଯୋଗ କେବଳ ଶରୀରକୁ ନୀରୋଗ କରେ ନାହିଁ । ମନକୁ ମଧ୍ୟ ନୀରୋଗ କରିପାରେ । ଆଉ କ'ଣ ପଚାରିବ ?

ଅପ୍ରସ୍ତୁତ ଭାବରେ ବସି ପଡୁ ପଡୁ ସ୍ୱରୂପା କହିଲା—ନା । ଦେଖିଲା—ହଲ୍ ଭିତରେ ଆହୁରି କେତେଜଣ ପ୍ରଶ୍ନ ପଚାରିବା ପାଇଁ ଠିଆହୋଇ ରହିଛନ୍ତି ।

ଆଶ୍ଚର୍ଯ୍ୟ ! ସେ କ'ଣ କେଉଁ ମନ୍ତ୍ରଶକ୍ତି ବଳରେ ଜନ୍ମାନ୍ତରକୁ ଚାଲି ଯାଇଥିଲା ନା କ'ଣ ? ବୈଦିକ ଯୁଗର ଆର୍ଯ୍ୟଋଷିଙ୍କ ପରି ଦିଶୁଥିବା ଏହି ସାଧକଙ୍କର ସୌମ୍ୟ-ସୁଦର୍ଶନ ମୂର୍ତ୍ତିକୁ ଦେଖି ସାମାନ୍ୟ କେତେକ୍ଷଣ ପାଇଁ ଯେପରି ଗୋଟାଏ ଭ୍ରମର ସମୁଦ୍ର ଭିତରକୁ ପଶି ଯାଇଥିଲା ସେ ।

ମଣିଷର ଭାବପ୍ରବଣ ମନ ସତେ କେତେ ଯେ ଭ୍ରମ ସୃଷ୍ଟି କରିପାରେ !

ନିଜର ମୂର୍ଖତା ପାଇଁ ମନେ ମନେ ହସିଲା ସ୍ୱରୂପା, ଧ୍ୟାନ ଦେଲା ସ୍ୱାମୀଜୀଙ୍କ କଥା ଆଡ଼କୁ ।

ଏଥର ପ୍ରଶ୍ନକର୍ତ୍ତା ପଚାରିଥିଲେ ଜନ୍ମାନ୍ତର ବିଷୟରେ ।

ସ୍ୱାମୀଜୀ ଉତ୍ତରରେ କହୁଥିଲେ କିପରି ଜୀବାତ୍ମାକୁ ନିର୍ବାଣ ଲାଭ ବା ମୋକ୍ଷପ୍ରାପ୍ତି ପର୍ଯ୍ୟନ୍ତ ନିଜ କର୍ମଫଳ ଅନୁସାରେ ଜନ୍ମ-ଜନ୍ମାନ୍ତର ଦେଇ ଗତି କରିବାକୁ ପଡ଼େ, ମୃତ୍ୟୁ ସମୟରେ ଯେଉଁ ଧାରଣାର ବଶବର୍ତ୍ତୀ ହୋଇ ମଣିଷ ମରେ, ଠିକ ସେହି ଭାବ ଗ୍ରହଣ କରି ହିଁ ପୁଣି ଜନ୍ମ ଗ୍ରହଣ କରେ ।

ସ୍ୱରୂପାର ଅବାଧ ମନଟା ପୁଣି ଛନ୍ଦି ହୋଇଗଲା ସ୍ୱପ୍ନଜାଲରେ । ସଙ୍ଗେ ସଙ୍ଗେ ଏକ ପ୍ରଶ୍ନ ଜାଗ୍ରତ ହେଲା—ଜୀବାତ୍ମା ?

ବିବର୍ତ୍ତିତ ପରିସ୍ଥିତି ଓ ଉଷ୍ଣତା ସୃଷ୍ଟି କରିଛି ଜୀବକୁ ବା ଜିନ୍‌କୁ ।

ସେହି ଅଦ୍ଭୁତ ଉଷ୍ଣତା ହିଁ କ'ଣ ତା'ହେଲେ ଆତ୍ମା ?

ସେହି ଆତ୍ମାର ସ୍ୱରୂପ କ'ଣ ? ନୈସର୍ଗିକ ଜ୍ୟୋତିପୁଞ୍ଜରେ ଗଠିତ ଏକ ଆକାର ? ଯାହାକୁ ଦେଖିହୁଏ ନାହିଁ, ଛୁଇଁ ହୁଏ ନାହିଁ ! ଯେ ଅଜର ଓ ଅମର ।

ସେହି ଆତ୍ମାର ସ୍ୱରୂପ କ'ଣ ସତେ ?

ପରିବେଶକୁ ଭୁଲିଯାଇ ଆଉଥରେ ଗଭୀର ଚିନ୍ତାରେ ମଗ୍ନ ହୋଇ ଯାଇଥିଲା ସ୍ୱରୂପା ।

## ( ୧୩ )

ଗଭୀର ଚିନ୍ତାରେ ନିମଗ୍ନ ହୋଇ ଯାଇଥିଲା ମଧୁଛନ୍ଦା ମଧ । ଏ କେତେଦିନ ହେଲା ମନୋଜ ଯେପରି କ୍ରମଶଃ ଦୁର୍ଜ୍ଞେୟ ହୋଇ ପଡୁଛି ତା ନିକଟରେ । କେତେଥର ତାକୁ ସେ ଅନୁରୋଧ କଲାଣି, କହିଛି—ଚାଲ ମନୋଜ, ଆମେ ବଡ଼ମା'ଙ୍କ ପାଖକୁ ଏକାଠି ମିଶି ଯିବା, ସବୁକଥା ଖୋଲି କହିବା ତାଙ୍କୁ । ସେ ଆମ ଦୁହିଁଙ୍କର ବାହାଘରର ବ୍ୟବସ୍ଥା କରିଦେବେ । ଏ କଥା ଅତି ଚଞ୍ଚଳ ହେବା ଦରକାର ମନୋଜ, ତମେ ବୁଝିପାରୁ ନାହଁ ? ବୈଶାଖ ତ ପାଖେଇ ଆସିଲାଣି ।

କୌତୁକ ଭରା କଣ୍ଠରେ କହିଛି ମନୋଜ—ମନ୍ଦ କ'ଣ ମଧୁଛନ୍ଦା ? ଗୋଟାଏ ବେକାର ଯୁବକର ହାତ ଧରିବା ବଦଳରେ ଜଣେ ପ୍ରଶାସନିକ ଅଫିସର ଶଚୀନ୍ଦ୍ର ବାବୁଙ୍କର ହାତ ଧରିବ, ହାକିମଙ୍କ ଧର୍ମପତ୍ନୀ ହେବ, ଟୁର୍‌ରେ ତାଙ୍କ ସହିତ ବୁଲିବ, ଗାଡ଼ି, ପିଅନ୍—

ଅସହିଷ୍ଣୁ କଣ୍ଠରେ କହିଥିଲା ମଧୁଛନ୍ଦା—ସବୁବେଳେ ଫାଜିଲାମି ଭଲ ଲାଗେନି ମନୋଜ, ସବୁଥିର ଗୋଟାଏ ସୀମା ରହିଛି । ଏତେ ସିରିଅସ୍ କଥାଟାକୁ ତମେ କିଛି ଗୁରୁତ୍ୱ ଦେଉନାହଁ ? ତମ କଥା କିଛି ବୁଝି ପାରୁନି ମୁଁ ସତରେ ! ତମ ଛଡ଼ା ମୁଁ ଆଉ କାହାକୁ ବାହା ହେବିନି । ହେଇଟି, ଦେଖୁଛ ତ—

ଦୂରରେ ଦିଶୁଥିବା ରେଳ ଲାଇନ୍ ଆଡ଼କୁ ଆଙ୍ଗୁଠି ବଢ଼ାଇ ଦେଖାଇଲା । ମଧୁଛନ୍ଦା, ପୁଣି କହିଲା—ଦେଖୁଛ ତ ଏ ରେଳ ଲାଇନ୍ ? ଯାରି ଉପରେ ଶୋଇ ଚଳନ୍ତା ରେଳଗାଡ଼ି ତଳେ ଆତ୍ମହତ୍ୟା କରିବି ମୁଁ ନିଶ୍ଚୟ—ଦେଖିବ—

ଉତ୍ତେଜନାରେ ମଧୁଛନ୍ଦାର ଆରକ୍ତ ଓଠ ଦୁଇଟା ଥରୁଥିଲା । ଆଉ ରାଗ ଓ ଦୁଃଖରେ ଚକ୍ ଚକ୍ ହୋଇ ଉଠିଥିଲା ଦୁଇଟି ଆଖି ।

ତାକୁ ନିଜର ଆଲିଙ୍ଗନରେ ଆବଦ୍ଧ କରି ଦେଇ ପାଖକୁ ଟାଣି ଆଣି ଆଦର କରି ମନୋଜ କହିଥିଲା—ଛନ୍ଦା ପ୍ଲିଜ, don't be so serious, ମତେ ଟିକେ ଟାଇମ୍ ଦିଅ, ମୁଁ ଭାବି ଦେଖେଁ ।

ପୁଣି ସପ୍ତାହଟେ ଅତୀତ ହୋଇଗଲା ।

ପଢ଼ାପଢ଼ି ପ୍ରାୟ ବନ୍ଦ ହୋଇ ଗଲାଣି ବୋଲି କହିଲେ ଚଳେ । ନିଦରେ ଶୋଇଲେ ଦୁଃସ୍ୱପ୍ନର ବିଭୀଷିକା ମଧୁଚ୍ଛନ୍ଦାକୁ ଆତଙ୍କିତ କରି ଦେଉଛି । ସେହି ନିଦ ଭିତରେ ମଧ ଝାଳରେ ବୁଡ଼ି ଯାଉଛି ସେ । ଭଲ ରୂପେ ଶୋଇ ପାରୁନି ଗତ କେତେ ଦିନ ହେଲା ।

ସବୁକାଳେ ମଧୁଚ୍ଛନ୍ଦା ସାଜସଜ୍ଜାରେ ସଜ୍ଜିତ ହୋଇ ରହିବାକୁ ଭଲ ପାଉଥିଲା । ସୌନ୍ଦର୍ଯ୍ୟରେ ସେ ଥିଲା ଅପରୂପା, ଛନ୍ଦମୟୀ ଝରଣା ଯେପରି ପାହାଡ଼ର କୋଳରେ ଏ ସ୍ତରରୁ ସେ ସ୍ତରକୁ ନାଚି ନାଚି ଡେଇଁ ଡେଇଁ ଭ୍ରୂକ୍ଷେପହୀନ ଭାବରେ ଗତି କରୁଥାଏ, ପ୍ରକୃତରେ ମଧୁଚ୍ଛନ୍ଦାର ସ୍ୱଭାବ ମଧ ଥିଲା ସେହିପରି । ନୃତ୍ୟ ବିଦ୍ୟାକୁ ସେ ପ୍ରାଣ ଭରି ଭଲପାଉଥିଲା, ନିଜକୁ ହଜାଇ ଦେଉଥିଲା ତାଳ ଓ ଛନ୍ଦ ଭିତରେ । ବିସ୍ମୃତ ହୋଇ ଯାଉଥିଲା ନିଜର ଅସ୍ତିତ୍ୱ । ଗୀତ, ନାଚ, ଖେଳ ଓ ଫୂର୍ତ୍ତି ଭିତରେ ସ୍ୱଚ୍ଛନ୍ଦରେ ଜୀବନର ଧାରାକୁ ବୁହାଇ ଦେଉଥିଲା ସେ । ଭାବିଚିନ୍ତି କୌଣସି କାର୍ଯ୍ୟ କରିବା ଥିଲା ତା'ର ସ୍ୱଭାବ ବିରୁଦ୍ଧ । ନୀତି, ନିୟମ, ପରମ୍ପରାର ବିଶେଷ କୌଣସି ମୂଲ୍ୟ ନଥିଲା ତା ପାଖରେ । ସେଥିପାଇଁ ଅତି ସ୍ୱଚ୍ଛନ୍ଦରେ ସେ ଭଲ ପାଇଥିଲା ନିଜର ସହପାଠୀ ମନୋଜକୁ, ଆଉ ସେହିପରି ବେଶ୍ ନିର୍ବିକାର ଓ ନିଶ୍ଚିନ୍ତରେ ତା ସହିତ ସମ୍ପର୍କକୁ ନିବିଡ଼ କରିଥିଲା ମଧ । ପଢ଼ା ସରିଲେ ଚାକିରିଟିଏ କରି ମନୋଜକୁ ବାହା ହେବ, କୌଣସି ବାଧା ତାକୁ ତା'ର ଏ ସିଦ୍ଧାନ୍ତରୁ ଟଳାଇ ପାରିବ ନାହିଁ ବୋଲି ଭାବିଥିଲା ସେ । ଭଲ ପାଇବାରେ କୌଣସି କୃତ୍ରିମତା ନଥିଲା ତାର ।

ହଠାତ୍ ମଧୁଚ୍ଛନ୍ଦାର ସ୍ୱଭାବରେ ପରିବର୍ତ୍ତନ ଉଣା ଅଧିକରେ ସମସ୍ତଙ୍କ ଆଖିରେ ପଡ଼ିଛି । ତା'ର ନୃତ୍ୟ-ଚଞ୍ଚଳ ପାଦ ଦୁଇଟିର ଗତି ସ୍ଥିର ହୋଇ ଯାଇଛି । କଥାରେ କି ଚାହାଁଣିରେ ଆଉ ନାହିଁ ସେ ଚଞ୍ଚଳତା । ସବୁବେଳେ ଥଟ୍ଟା ତାମସା କରିବା ମଧ ବନ୍ଦ ହୋଇ ଯାଇଛି । ରେଡ଼ିଓ, ଟେଲିଭିଜନ, ଟେପ୍.ରେକର୍ଡ଼ର ପ୍ରଭୃତି ଯନ୍ତ୍ରଗୁଡ଼ିକ ପ୍ରାୟ ବନ୍ଦ ରହୁଛି ସବୁ ସମୟରେ ।

ନିଜେ ନୀଳମଣି ଅନେକ ଥର ପଚାରିଲେଣି—ମା, ତୋ ମନ ଭଲ ନାହିଁ କାହିଁକି ?

ତାଙ୍କର ସେ ପ୍ରଶ୍ନ ଶୁଣିଲାକ୍ଷଣି କାନ୍ଦ ଲାଗୁଛି ତାକୁ । ଅନେକ କଷ୍ଟରେ ଲୁହ ସମ୍ଭାଳି ସେ ପଳାଇ ଆସି ପାରିଛି ତାଙ୍କ ପାଖରୁ । କି ଅସହାୟା ସେ । ମନର ବେଦନା ବ୍ୟକ୍ତ କରି ପାରିବା ଭଳି ଜଣେ ହେଲେ କେହି ନାହାନ୍ତି । କାହାକୁ କହିବ ? କାହାଠାରୁ ପରାମର୍ଶ ନେବ ? ଘରେ କାହାକୁ ମୁହଁ ଦେଖାଇବାକୁ ବି ଆଜିକାଲି ଡର ଲାଗୁଛି । ଡର ଲାଗୁଛି କାଳେ ଧରା ପଡ଼ିଯିବ !

ମଧୁଚ୍ଛନ୍ଦାର ପଦ୍ମ-ପଳାଶ ପରି ଆଖିର କୋଳରେ କଳା ବୋଳି ଦେଲାଣି ତା ମନର ଦୁଶ୍ଚିନ୍ତା । ମନକୁ ମନ ମରିଗଲାଣି ସବୁ ବେଳେ ଉଚ୍ଛୁଳୁଥିବା ତା'ର ହସ । ଯେଉଁ ବେପରୁଆ ଭାବଟା ତା'ର ସ୍ୱଭାବସିଦ୍ଧ ଥିଲା ତାହା କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲାଣି ।

ଦିନେ ସୁନନ୍ଦା ବିବ୍ରତ ଭାବରେ ସତ୍ୟବ୍ରତଙ୍କୁ କହିଲେ, ମୁଁ ବୁଝିପାରୁନି ଛନ୍ଦା ସବୁବେଳେ ଏଭଳି ମୁହଁ ଶୁଖାଇ ରହୁଛି କାହିଁକି ?

ପିତୃ ସ୍ନେହରେ ବିଗଳିତ ହୋଇଯାଇ ସତ୍ୟବ୍ରତ କହିଲେ—ଯେତେ ହେଲେ ଆଜନ୍ମରୁ ବଢ଼ିଥିବା ଆଦରର ଘର ଛାଡ଼ିଦେଇ ଯିବା ଚିନ୍ତାଟା କମ୍ କଷ୍ଟଦାୟକ ନୁହେଁ ତ !

ଘରର ପ୍ରାୟ ସମସ୍ତଙ୍କର ଏହି ମତ ।

ଏକମାତ୍ର ନୀଳମଣିଙ୍କ ଛଡ଼ା !

ନୀଳମଣି ତାଙ୍କର ତୃତୀୟ ନେତ୍ର ଅର୍ଥାତ୍ ଜ୍ଞାନ-ନେତ୍ର ତଥା ଅଭିଜ୍ଞତାର ନେତ୍ର ଖୋଲି ଦେଖୁଥିଲେ ଓ ଜାଣୁଥିଲେ କେଉଁଠି କ'ଣ ଗୋଟାଏ ଗୋଳମାଳ ହୋଇଯାଇଛି । ତେଣୁ ସେ ମଧୁଛନ୍ଦାକୁ ବାରମ୍ବାର ପଚାରୁଥିଲେ—ମା ଛନ୍ଦା, ତୋର କ'ଣ ହୋଇଛି ମତେ କହିଲୁ ?

ଛନ୍ଦା କିନ୍ତୁ କହିପାରୁନାହିଁ ।

ଛନ୍ଦା ଖାଲି ମନୋଜକୁ କହୁଛି—ମନୋଜ, କ'ଣ କରିବା କହିଲ ?

ଚାଲ, ବାହାଘର ଅନୁଷ୍ଠାନଟା ସାରିଦେବା ।

ପ୍ରତ୍ୟେକ ଦିନ କଲେଜ ଛୁଟି ହେଲା ପରେ ଆଗରୁ ନିର୍ଦ୍ଦିଷ୍ଟ ହୋଇଥିବା ସାକ୍ଷାତ କରିବା ଜାଗାରେ ସେମାନେ ପରସ୍ପରକୁ ଭେଟୁଥିଲେ ।

ମନୋଜ କହିଲା—ତା'ପରେ ?

—ତା' ପରେ ଆଉ କ'ଣ ? ମଧୁଛନ୍ଦାର କଣ୍ଠରେ ବିସ୍ମୟ !

—ରହିବା କେଉଁଠି ?

ମାନେ ?

—ମୋର ବାପା ଆଉ ମା ଅତି କଡ଼ା ଲୋକ ଛନ୍ଦା ! ତେଣୁ ସେଠି ଆମକୁ ସ୍ଥାନ ମିଳିବନି ।

—ତମେ ପୁଅ ରୂପରେ ତମର ଅଧିକାର ସାବ୍ୟସ୍ତ କରିବ ମନୋଜ !

—ମୋର ପଢ଼ା ସରିନି ଛନ୍ଦା ! ତେଣୁ ଚାକିରି ମିଳିବାର ପ୍ରଶ୍ନ ଉଠୁନି । ମୋର ସାରା ଭବିଷ୍ୟତ୍ ସେମାନଙ୍କ ସାହାଯ୍ୟ ଉପରେ ନିର୍ଭର କରୁଛି । ତାପରେ—

ଢୋକ ଗିଳି କହିଲା ମନୋଜ—ତା'ପରେ ଏତେ ଚଞ୍ଚଳ ପଢ଼ା ନ ସରଣୁ ବାହା ହୋଇଗଲେ ସମସ୍ତଙ୍କର ହାସ୍ୟାସ୍ପଦ ହୋଇଯିବି । ବନ୍ଧୁ ମହଲରେ ଥଟ୍ଟାର ସୀମା ରହିବ ନାହିଁ ।

—କିନ୍ତୁ ବାହା ନ ହୋଇ ମୋର ଯେ ଆଉ ଉପାୟ ନାହିଁ ମନୋଜ ? ବିକଳ ଭାବରେ କହିଲା ମଧୁଛନ୍ଦା ।

—କାହିଁକି ଛନ୍ଦା ? ତମେ ତମ ଘରେ ସିଧା ସଳଖ ଭାବେ କହ ଯେ ତମେ ଶଚୀନ୍ଦ୍ରକୁ ବାହା ହେବାକୁ ଚାହୁଁନ । ପାଠ ପଢ଼ି, ଚାକିରି କରି ଅବିବାହିତା ରୂପେ ରହିବାକୁ ତମର ଇଚ୍ଛା । ତମେ revolt କର ମଧୁଛନ୍ଦା ! ଶହେ ବର୍ଷ ତଳର ଛୋଟ ଗାଉଁଲି ଝିଅ ତ ତମେ ହୋଇ ନାହଁ ଯେ, ତମକୁ ଲୁଗାରେ ଘୋଡ଼େଇ, କୋଳ କରି, ଟାଣି ନେଇ ବେଦୀ ଉପରେ ବସାଇ ଦେବେ ଆଉ ଜବରଦସ୍ତ ବାହା କରାଇ ଦେବେ । ସେ ଯୁଗ ଆଉ ନାହିଁ । ଖାଲି ଦରକାର courage, ସାହସ, ବୁଝିଲ ? Be courageous, my good girl, ହଁ, ବିଦ୍ରୋହ କର ।

—ବିଚାରଟା ତମର ଠିକ୍ ହେଲା ନାହିଁ ମନୋଜ ! ତମେ ତମର ବାପା ଓ ମା'ଙ୍କ ଆଗରେ ଠିଆ ହୋଇ ମୋ ସହିତ ତମର ଯେ କି ସମ୍ବନ୍ଧ ସେ କଥା କହିବାକୁ ସାହସ କରି ପାରୁ ନାହଁ । କିନ୍ତୁ ମତେ କହୁଛ ସାହସୀ ହେବାକୁ । ବାଃ ! ବାଃ ! ଆଚ୍ଛା, କହିଲ ମନୋଜ, କେତେ ଦିନ ଆଉ ବାହା ନହୋଇ ଏପରି ଗୁପ୍ତ ପ୍ରଣୟରେ ଲିପ୍ତ ହୋଇ ରହିବାକୁ ପଡ଼ିବ ମତେ ?

ମଧୁଛନ୍ଦାର କଥାର ଧରଣରେ ଅପ୍ରସ୍ତୁତ ହେଲା ମନୋଜ । କହିଲା—ଗୁପ୍ତ ପ୍ରଣୟ ? କିନ୍ତୁ ଆମେ—We are true lovers—ମାନେ ପ୍ରକୃତ ପ୍ରେମିକ—ପ୍ରେମିକା ।

ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲା ମଧୁଛନ୍ଦା—ହଁ, ପ୍ରକୃତ ପ୍ରେମିକ-ପ୍ରେମିକା । କିନ୍ତୁ ସ୍ୱାମୀ-ସ୍ତ୍ରୀ ନୋହୁ । ସମାଜ କଥା ଛାଡ଼ିଦିଅ । ଆମ ବିବେକକୁ ତ ଆଉ ଆମେ ପ୍ରତାରିତ କରି ପାରିବା ନାହିଁ, ନିଜକୁ ଠକି ପାରିବା ନାହିଁ ?

—ଓଃ ଛନ୍ଦା, ତମେ ବଡ଼ ସେଣ୍ଟିମେଣ୍ଟାଲ୍ । ଆଚ୍ଛା, ମତେ ଟିକିଏ ସମୟ ଦିଅ, ମୁଁ ଭାବି ଦେଖେ ।

ସେଦିନ ସେତିକି ।

ପୁଣି ଗଡ଼ିଯାଏ ଆଉ ଗୋଟାଏ ସପ୍ତାହ ।

ନୀଳମଣିଙ୍କ ଶୟନ କକ୍ଷର ଆଖ ପାଖରେ କେତେ ଥର ଘୂରି ବୁଲିଛି ମଧୁଛନ୍ଦା । ବଡ଼ ମା'ଙ୍କୁ ନିଜର ଏ ସମସ୍ୟା କଥା କହିବ ବୋଲି ଭାବିଛି । ସବୁ କଥା ତାଙ୍କୁ କହିବ, ପରାମର୍ଶ ମାଗିବ । କିନ୍ତୁ ପ୍ରତ୍ୟେକ ଥର ଦ୍ୱାର ପର୍ଯ୍ୟନ୍ତ ଗଲାପରେ ମନକୁ ମନ ଅଟକି ଯାଇଛନ୍ତି ତା'ର ପାଦ ଦୁଇଟା, ଯେପରି ସେଇଠି ପଥର ପାଲଟି ଯାଇଛନ୍ତି ଏକାବେଳେ, ଆଉ ଆଗେଇ ଯାଇ ପାରିନାହାନ୍ତି ।

—କିଏ... ? ମଧୁଛନ୍ଦା ? ... ଘର ଭିତରୁ ପଚାରନ୍ତି ନୀଳମଣି ।

ପାଦଶବ୍ଦରୁ ହିଁ ବାରି ପାରନ୍ତି ବଡ଼ମା, ଆଗନ୍ତୁକଟି କିଏ । ମଧୁଛନ୍ଦା ଆଶ୍ଚର୍ଯ୍ୟ ହୋଇଯାଏ ନୀଳମଣିଙ୍କ ଅନୁମାନ କରିବାର କ୍ଷମତା ଦେଖି ।

କେତେ ଥର ପାଦ ଚିପି ଚିପି ଅତି ସାବଧାନରେ ସେ ଯାଇଛି, କିନ୍ତୁ ସେହି ଅସ୍ପଷ୍ଟ ଶବ୍ଦରୁ ମଧ୍ୟ ବଡ଼ମା କିପରି ବାରି ଦିଅନ୍ତି, ତା ପାଦର ଚାଲିକୁ ! ସେ କ'ଣ ସତରେ କିଛି ମନ୍ତ୍ର ଜାଣିଛନ୍ତି ?

ନୀଳମଣିଙ୍କର ସେ କଣ୍ଠସ୍ୱର ଶୁଣିଲାକ୍ଷଣି ସବୁ ସଙ୍କଳ୍ପ କୁଆଡ଼େ ଉଭେଇ ଯାଏ ମଧୁଛନ୍ଦାର । ଉତ୍ତର ନ ଦେଉଣୁ ପାଦ ଚିପି ଚିପି ପଛଘୁଞ୍ଚା ଦେଇ ଫେରି ଆସେ ସେ । ନିରାପଦ ଜାଗାକୁ ଫେରି ଆସିଲା ପରେ ଯେପରି ନିଃଶ୍ୱାସ ପକାଇ ବଞ୍ଚିଛି । ମନେ ହୋଇଛି—ଇସ୍, ଆଉ ଟିକିଏ ହୋଇଥିଲେ ସେ ଗୋଟାଏ କି ବିରାଟ ଭୁଲ କରି ପକାଇଥାନ୍ତା ସତେ !

ସେହିପରି କେତେ ଥର ଯାଇ ଠିଆ ହୋଇଛି ସୁନନ୍ଦାଙ୍କ ପାଖରେ, କିନ୍ତୁ ମୁହଁ ଫିଟାଇ ପାରିନାହିଁ । ଭାବିଛି ସ୍ୱରୂପା ପାଖକୁ ଚିଠିରେ ଖୋଲାଖୋଲି ସବୁ କଥା ଲେଖି ଦେଇ ସମାଧାନ କରି ଦେବାକୁ ତାକୁ ଡକାଇବ । କିନ୍ତୁ ପ୍ରଥମେ ମନୋଜଠାରୁ ଉତ୍ତର ପାଇବା ଯେ ନିହାତି ଦରକାର ।

ତା'ପର ଦିନ ସାକ୍ଷାତ ସମୟରେ ପୁଣି ପଚାରିଲା ସେ—କ'ଣ ଭାବି ଠିକ୍ କଲ ମନୋଜ ?

ପ୍ରଶ୍ନ ଶୁଣି ମନୋଜ ଚାହିଁଲା—ମଧୁଛନ୍ଦାର ବେଶଭୂଷା ଅବହେଳିତ । ମୁଣ୍ଡର ବାଳଗୁଡ଼ିକ ଅଯତ୍ନ ହେତୁ ବିକ୍ଷିପ୍ତ ଭାବରେ ଉଡୁଛି । ସୁନ୍ଦର ସତେଜ ଫୁଟନ୍ତା ପଦ୍ମଫୁଲ ପରି ଢଳ ଢଳ ମୁହଁଟି ଯେପରି ଅଗ୍ନିର ଦାହ ପାଇ ଝାଉଁଳି ପଡ଼ିଛି । ଚକ୍ଷୁ ଦୁଇଟିର କୋଳରେ କାଳିମାର ପ୍ରଲେପ । ଆଜିକାଲି ଆଉ ଲୁଗାପିନ୍ଧାରେ ବଛାବଛି କିଛି ନାହିଁ ତା'ର, ଯେନତେନ ପ୍ରକାରେଣ କ'ଣ ଖଣ୍ଡେ ଶାଢ଼ିରେ ନିଜକୁ ପୂରା ଆବୃତ କରିଦେଉଛି ସ୍ୱରୂପା ପରି । ଖାଲି ତା'ର ଆଖି ଦୁଇଟିର ଦୃଷ୍ଟି ଯେପରି କ୍ରମଶଃ ତୀବ୍ରରୁ ତୀବ୍ରତର ହୋଇଉଠୁଛି ପିଞ୍ଜରାବଦ୍ଧ ହିଂସ୍ର ବନ୍ୟପଶୁର ଅସହାୟ କ୍ରୋଧପରିପୂର୍ଣ୍ଣ ଦୃଷ୍ଟି ପରି । ତା'ର ସେହି ତୀବ୍ର ଚାହାଁଣି ଦ୍ୱାରା ମଧୁଛନ୍ଦା ଯେପରି ପରିଷ୍କାର ରୂପେ ଦେଖିବାକୁ ଚେଷ୍ଟା କରେ ତନ୍ନ ତନ୍ନ କରି ।

ସେ ତୀବ୍ର ଚାହିଁଣିକୁ ସହି ନ ପାରି ମନୋଜ ସନ୍ତର୍ପଣରେ ନିଜର ମୁହଁକୁ ବୁଲାଇ ଆଣିଲା ।

ମଧୁଛନ୍ଦା ଆଉ ଥରେ ପଚାରିଲା—କ'ଣ ଠିକ୍ କଲ ମନୋଜ ? ତା'ର କଣ୍ଠ ସ୍ୱରରେ ଅଧୀର ଆକୁଳତା ।

—ପ୍ଲିଜ୍ ଛନ୍ଦା, ଆଉ କିଛି ସମୟ ଦିଅ ମତେ ।

—ଭାବି ଭାବି ମୁଁ କିଛି ଥଳକୂଳ ପାଉନି । ଚାଲ ଛନ୍ଦା, ସେ ଡଙ୍ଗା ବାଲାକୁ କହି ରୂପମତୀର ଆର ପାଖରେ ଥିବା ପାର୍କଟିକୁ ଯିବା । ସେ ପଟଟା ବେଶ୍ ନିଛାଟିଆ । ମନ ଖୋଲି କଥାବାର୍ତ୍ତା କରିହେବ, କବିତା ପଢ଼ିହେବ, ତା ଛଡ଼ା...

କାମନାର ବିଦ୍ୟୁତ୍-ଶିଖା ଝଲସିଗଲା ମନୋଜର ନୀଳ ନୀଳ ଦୁଇଟି ଆଖିରେ ! ମଧୁଛନ୍ଦାର ସେ ଶୀର୍ଣ୍ଣ ବିଶୀର୍ଣ୍ଣ ଝାଉଁଳି ପଡ଼ିଥିବା ମୁହଁଟି ଯେ ଆହୁରି ଅଧିକ ସୁନ୍ଦର ଦିଶୁଛି ! ଆହୁରି ଅଧିକ ଆକର୍ଷଣୀୟ ମନେ ହେଉଛି ତା'ର ଏ ସାଜସଜ୍ଜାବିହୀନ ଅଙ୍ଗଲତା, ମନରେ ଜାଗ୍ରତ କରୁଛି ଅସହ୍ୟ ଉନ୍ମାଦନା ।

ପ୍ରକୃତରେ କଲେଜରେ ଯେତେ ଝିଅ ପଢୁଛନ୍ତି, ସେମାନଙ୍କ ଭିତରେ ମଧୁଛନ୍ଦା ପରି ସୁନ୍ଦରୀ କେହି ନାହାନ୍ତି । ଛନ୍ଦାକୁ ନିଜର ପ୍ରେମିକା ରୂପେ ପାଇ ମନୋଜ ସତରେ ଧନ୍ୟ ହୋଇଛି ।

ନିବିଡ଼ ହୋଇ ଆସିଲା ମନୋଜର ହାତ ମୁଠା । ସେ କହିଲା—ଛନ୍ଦା, ଚାଲ କିଛି କ୍ଷଣ ପାଇଁ ଅନ୍ତତଃ ଆମେ ଭୁଲିଯାଇ ପାରିବା—ଆମର ଦୁଃଖ, ଆମର ସମସ୍ୟା ।

ଏଥର ଅତି ଦୁଃଖର ହସଟିଏ ହସିଲା ମଧୁଛନ୍ଦା । କହିଲା—ସଙ୍ଗେ ଥିବ କଫିର ପାତ୍ର, ଆଉ କିଛି ଆହାର ମାତ୍ର, ରମ୍ୟ ଏକ କାବ୍ୟ ହାତେ ନେଇ ? ନା-ମନୋଜ, ସେଦିନ ଆଉ ନାହିଁ । ମୁଣ୍ଡ ଉପରେ ମୋ'ର କାଳଚକ୍ର ଘୂରୁଛି, ଭବିଷ୍ୟତ୍ ମତେ ଖାଲି ଅନ୍ଧାର ଦିଶୁଛି । ଯାହାର ପ୍ରିୟା ହେଲି ତା'ର ସ୍ତ୍ରୀ ହୋଇ ପାରିବିନି ବୋଧହୁଏ ଆଉ । ଯାହାର ପ୍ରିୟା ନୁହେଁ, ତା'ରି ସ୍ତ୍ରୀ ହୋଇ ଜୀବନ କଟେଇବି । ନଚେତ୍ ଆତ୍ମହତ୍ୟା କରି ଜୀବନର ସମସ୍ତ ସ୍ୱପ୍ନକୁ ସମାଧି ଦେବି ।

ଇଚ୍ଛାକରି କଥାଟାକୁ ରୂଢ଼ କରି କହିଥିଲା ମଧୁଛନ୍ଦା ।

ମନୋଜର ନିବିଡ଼ ହୋଇ ଆସୁଥିବା ସେଇ ହାତ ମୁଠା ଶିଥିଳ ହୋଇଗଲା । ତା ହାତ ଭିତରୁ ନିଜର ହାତଟାକୁ ଖସାଇ ଆଣି ମଧୁଛନ୍ଦା କହିଲା—ମନୋଜ, ମୋର କଥା ଶୁଣ । ଚାଲ ମୋ ସଙ୍ଗେ, ପ୍ଲିଜ୍, ମତେ ତମେ ସାହାଯ୍ୟ କର, ଆମ ଘରକୁ ଚାଲ । ତମକୁ ନିକଟରେ ପାଇଲେ ମୋ ମନରେ ସାହସ ହେବ । ସବୁ ପ୍ରକାର ବାଧାବିଘ୍ନକୁ ମୁଁ ଆଡ଼େଇ ଦେଇ ପାରିବି । ଚାଲ, ମୁଁ ମୁହଁ ଖୋଲି ସମସ୍ତଙ୍କୁ ପ୍ରକୃତ କଥା କହିବି ।

ପୁଣି ପଛଘୁଞ୍ଚା ଦେଲା ମନୋଜ ।

ଛନ୍ଦା ଆଉ ଥରେ କହିଲା—ତମ ବାପା ଆଉ ମା'ଙ୍କ ଆଗରେ ଯେଉଁ କଥା ତମେ କହି ପାରିବନି, ମୁଁ ସେ କଥା କହି ପାରିବି । ମନୋଜ, ଆମର ପ୍ରେମ ତ ଅପବିତ୍ର ନୁହେଁ ! ଆମେ ଏତେ ଡରିବା କାହିଁକି ?

ତଥାପି ମନୋଜ ନୀରବ ରହିଲା । ଇତସ୍ତତଃ ହେଲା ଏବଂ ଶେଷରେ ଶୁଖିଲା କଣ୍ଠରେ କହିଲା—ମତେ ଆଉ ସପ୍ତାହଟେ ସମୟ ଦିଅ ଛନ୍ଦା । ବିଷୟଟା ଅତି ଜଟିଳ । ସାରାଜୀବନ ପାଇଁ ଗୋଟାଏ ଡିସିଜନ୍ ନେବାକୁ ପଡ଼ିବ ।

ଗଭୀର ଦୀର୍ଘ ନିଃଶ୍ୱାସଟିଏ ବାହାରି ଆସିଲା ମଧୁଛନ୍ଦାର ଅନ୍ତରତଳୁ । ଖାତା ବହି ଗୋଟାଇ ନେଇ ଯାଉ ଯାଉ ସେ କହିଲା—ଆଚ୍ଛା, ଭାବ ତା' ହେଲେ ।

ଆଶ୍ଚର୍ଯ୍ୟ ! ଆଜିକାଲି ଆଉ ତା ମନରେ ରାଗ ହେଉ ନାହିଁ, ତା ପରିବର୍ତ୍ତରେ ଏକ ଗଭୀର ଅବସାଦ ଯେପରି ଭରି ହୋଇଯାଉଛି ।

x x x ମଟର ଗାଡ଼ିରୁ ଓହ୍ଲାଇ, ମୁହଁ ତଳକୁ କରି, ଗୋଟି ଗୋଟି ପାଦ ପକାଇ ଉପର ମହଲାକୁ ଉଠିବାକୁ ଲାଗିଲା ମଧୁଛନ୍ଦା । ଭାବୁଥିଲା—ମନୋଜ ବୋଧହୁଏ ତାକୁ ବିବାହ କରିବାକୁ ରାଜି ହେବ ନାହିଁ । ଯଦି ତା ହୁଏ, ତା'ହେଲେ ମଧୁଛନ୍ଦାର ଗତି କ'ଣ ହେବ ? କ'ଣ ହେବ ତା'ର ଭବିଷ୍ୟତ୍ ?

ନୀଳମଣିଙ୍କ ଶୟନ କକ୍ଷର ପାଖାପାଖି ଆସିଲା କ୍ଷଣି ତା କାନରେ ଆସି ବାଜିଲା—ସ୍ମିତାର କଣ୍ଠସ୍ୱର, କବିତା ଆବୃତ୍ତି କରୁଛି ସେ । ପରୀକ୍ଷା ତା'ର ସରିଯାଇଛି, ଅବସର ପାଇ ବଡ଼ ମା'ଙ୍କୁ ଇଂରାଜୀ କବିତା ଆବୃତ୍ତି କରି ଶୁଣାଉଛି ସେ—

Thus let me live unseen, unknown
Thus unlamented let me die
Steal from the world and not a stone
Tell where I lie.

—ବଡ଼ମା, ମୁଁ ଓଡ଼ିଆରେ ତାକୁ ଏପରି କରିଛି । ଶୁଣ—ଏହିପରି ଅଦୃଶ୍ୟ ଓ ଅଜ୍ଞାତ ହୋଇ ବଞ୍ଚି ରହେ ମୁଁ ଯେପରି, ଏହିପରି ମୃତ୍ୟୁ ହେଉ ମୋର, ନ ଥାଉ ଗୋ କେହି ଲୁହ ଢାଳିବାକୁ, ସଂସାରରୁ ବିଦା ହୋଇଯିବି, ଆଉ ନ ଥାଉ ପ୍ରସ୍ତର ଫଳକଟିଏ ବି, ନ ରହୁ କହିବାକୁ କେଉଁଠି ମୁଁ ଶେଷ-ଶଯ୍ୟା ରଚିଅଛି ।

କବିତାଟି ଆଲେକ୍‌ଜେଣ୍ଡର ପୋପ୍‌ଙ୍କର ।

ସ୍ମିତାର ଅତି ମଧୁର କଣ୍ଠ ସ୍ୱର, ପୁଣି କି ସୁନ୍ଦର ଚମତ୍କାର ଭାବରେ ଆବୃତ୍ତି କରି ପାରୁଛି ସେ । ଶୁଣିଲେ ମୁଗ୍ଧ ହେବାକୁ ପଡ଼େ ସେ କଥା ସତ ।

କିନ୍ତୁ ପୃଥିବୀର ପରମାଶ୍ଚର୍ଯ୍ୟ ହେଉଛନ୍ତି ଏହି ବଡ଼ମା ନୀଳମଣି । ତା ସାଙ୍ଗମାନଙ୍କ ଭିତରୁ କେହି ହେଲେ ସହଜରେ ବିଶ୍ୱାସ କରି ପାରନ୍ତିନି ଯେ ନୀଳମଣି ଏ ବୟସରେ ରାମାୟଣ, ମହଭାରତ, ବା ଗୀତା ଭାଗବତ ନ ଶୁଣି ଓଡ଼ିଆ, ଇଂରାଜୀ, ବଙ୍ଗଳା କବିତା ଆବୃତ୍ତି ଶୁଣନ୍ତି !! ସଂସ୍କୃତ ଶ୍ଳୋକର ଆବୃତ୍ତି ଶୁଣନ୍ତି !!

ମଧୁଛନ୍ଦା ନିଜର ଅଜାଣତରେ ଅଟକି ଯାଇଥିଲା । ତା'ର ଚିନ୍ତାକୁ ବାଧା ଦେଇ ନୀଳମଣିଙ୍କ କଣ୍ଠସ୍ୱର ଭାସି ଆସିଲା—କିଏ ଛନ୍ଦା ମା ? କଲେଜରୁ ଫେରିବାକୁ ଆଜି ଏତେ ଡେରି ହୋଇଗଲା ଯେ ? ମିଟିଂ ଥିଲା ବୋଧହୁଏ ? ଯା ମା, ଚଞ୍ଚଳ ମୁହଁ ହାତ ଧୋଇ କ'ଣ ଟିକିଏ ଖାଇଦେଇ ଆ ।

ମଧୁଛନ୍ଦାର ଅବସନ୍ନ କଣ୍ଠରୁ ଉତ୍ତର ମିଳିଲା—ଯାଉଛି ବଡ଼ମା ! ତା'ପରେ ଲମ୍ବା ବାରଣ୍ଡାଟିକୁ ଅତିକ୍ରମ କରି ନିଜ କକ୍ଷଟିରେ ପ୍ରବେଶ କଲାଯାଏ ସେ ଖାଲି ନୀଳମଣିଙ୍କ କଥା ହିଁ ଭାବିଲା—ଏ ବଡ଼ମା ! ଷୋହଳ ବର୍ଷ ବୟସରୁ ବିଧବା । ସଂଯମ ଓ ନିଷ୍ଠାର ଜଣେ ଅବତାର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ବଞ୍ଚିତ ଜୀବନର କେଉଁ ପ୍ରତ୍ୟାଶା ତାଙ୍କ ଜୀବନକୁ ଏହିପରି ଦୀର୍ଘସ୍ଥାୟୀ କରିଛି ? କି ଆଶାରେ ଏହିପରି ସୁଦୀର୍ଘକାଳ ବଞ୍ଚି ରହିଛନ୍ତି ସେ—କି ଆଶାରେ ? ମଧୁଛନ୍ଦା ନିଜେ ହୋଇଥିଲେ ତ କେଉଁ କାଳରୁ ବିଷ ଖାଇ ମରି ସାରନ୍ତାଣି ! ପ୍ରେମହୀନ ରିକ୍ତ ଜୀବନ—ଅସହ୍ୟ !

ଏହିକଥା ଭାବିବାକୁ ଯାଇ ହଠାତ୍ ଭୀଷଣ ଭାବରେ ଚମକି ପଡ଼ିଲା ମଧୁଛନ୍ଦା, ହୁଏତ ତାକୁ ମଧ ମରିବାକୁ ହିଁ ପଡ଼ିବ । ଆଗରେ ତା'ର ଗୋଟାଏ ଶୁଖିଲା, ତାତିଲା ମରୁଭୂମି ବିସ୍ତୃତ ହୋଇ ପଡ଼ିରହିଛି !

ସେ ଘରୁ ସୁନନ୍ଦାଙ୍କ କଣ୍ଠସ୍ୱର ଶୁଣାଗଲା—ଛନ୍ଦା, ତୋର ମୁହଁ ହାତ ଧୁଆ ସରିଲା ମା ! ଖାଇବାକୁ ଆସିବୁ ନା ମୁଁ ଆଣି ଦେଇ ଦେବି ?

ଦୁଶ୍ଚିନ୍ତାର ତାଡ଼ନାରେ କ୍ଷୁଧା ମଧ କେଉଁଆଡ଼େ ଉଭେଇ ଯାଏ । ତେଣୁ ଭୋକ ନଥିଲା ତା'ର । ସେଇ ମୁହୂର୍ତ୍ତରେ ତା'ର ଇଚ୍ଛା ହେଉଥିଲା ଲୁଗା ବଦଳାଇ ନିର୍ଜୀବ ଦେହଟାକୁ ପ୍ରସ୍ତୁତ ହୋଇ ରହିଥିବା ଶେଯଟା ଉପରେ ଗଡ଼ାଇ ଦିଅନ୍ତା ଟିକିଏ । ଭବିଷ୍ୟତ୍‌ଟା ଯେ ଗୋଟାଏ ବିଭୀଷିକା ପରି ଆଁ କରି ରହିଛି !

ମନୋଜର ମତିଗତିରୁ କ'ଣ ସ୍ପଷ୍ଟ ବାରି ହୋଇଯାଇ ନାହିଁ କି, ଯେ ସେ କଦାପି ଚାହିଁବନି ବର୍ତ୍ତମାନ ବାହାହେବାକୁ ! ଭବିଷ୍ୟତ କଥା ତ ଆହୁରି ଅନିଶ୍ଚିତ ।

ପର୍ଦ୍ଦା ଆଡ଼େଇ ଜଳଖିଆ ଥାଳି ହାତରେ ଧରି ପହଞ୍ଚିଗଲା ସ୍ମିତା । କହିଲା—ଛନ୍ଦା ନାନୀ, ତମେ ଏଇଠି ଖାଇଦିଅ । ବଡ଼ମା କହିଲେ—ମୁଁ ତମ ପାଇଁ ନେଇ ଆସିଲି, ନିଜ ପାଇଁ ମଧ ଆଣିଲି । ଆସ ମିଶି ଖାଇବା ।

—ମତେ ଜଗି ବସି ଏ ପର୍ଯ୍ୟନ୍ତ ତୁ ଜଳଖିଆ ଖାଇନୁ ତ ସ୍ମିତା ?

—ଏକୁଟିଆ ଖାଇବାକୁ ମତେ ଭଲ ଲାଗେନି ଜମା । ତମେ କ'ଣ ସେ କଥା ଜାଣିନ ଛନ୍ଦା ନାନୀ ?

—ଏ ବଦ୍‌ଗୁଣ ତୋ'ର କେବେ ଗଲାନି ସ୍ମିତୁ ।

—ମଣିଷର ସ୍ୱଭାବଟା ଯେ କୁକୁର ଲାଞ୍ଜ ପରି ! ବଦଳେନି କେବେ । ହସି ହସି ସ୍ମିତା କହିଲା ।

—ଆହା । କି ତୁଳନା ! ଏଥର ହସିଦେଲା ମଧୁଛନ୍ଦା ମଧ ।

—ଆସ ନାନୀ, ତମେ ବସିଲ, ମତେ ଭାରି ଭୋକ କଲାଣି । ତମପାଇଁ ଗରମ ଦୁଧରେ ବୋର୍ଣ୍ଣଭିଟା କରି ନେଇ ଆସିଛି ।

—ହେଇ ! ଏଇଟା ନିଶ୍ଚେ ବଡ଼ମା'ଙ୍କ ଡାଇରେକ୍‌ସନ୍ ! ନୁହେଁ ?

—ହଁ ଯେ, ତମେ ନାନୀ ସତରେ ଦିନକୁ ଦିନ ଶୁଖିଯାଉଛ । ବଡ଼ମା କହୁଥିଲେ ଛନ୍ଦା ଆସି ମୋ ପାଖରେ ଟିକିଏ ବସନ୍ତା ନାହିଁ ? ଆଉ କେତେଟା ଦିନରେ ତ ବାହା ହୋଇ ଚାଲିଯିବ ।

ନ ଜାଣି ମଧୁଛନ୍ଦାର ମର୍ମସ୍ଥଳକୁ ମର୍ମାନ୍ତିକ ଭାବରେ ଆଘାତ କଲା ସ୍ମିତା ।

ମଧୁଛନ୍ଦା ଆର୍ତ୍ତନାଦ କରି ଉଠିଲା—ଓଃ ।

—କଣ ହେଲା ଛନ୍ଦାନାନୀ ?

—କିଛି ନାଇଁ । ଖାଉ ଖାଉ ଜୋର୍‌ରେ ଜିଭଟାକୁ କାମୁଡ଼ି ପକାଇଲି । ହେଲେ ତତେ କିଏ କହୁଥିଲା ଏତେଗୁଡ଼ାଏ ଜଳଖିଆ ନେଇ ଆସିବାକୁ ? ମୋର ତ ଜମା ଭୋକ ନାଇଁ !

—ମୁଁ ତମ କଥା ବୁଝି ପାରିଛି ନାନୀ ! ପ୍ରକୃତରେ ଏ ଝିଅ ଜନ୍ମଟା ଏତେ ଖରାପ, ନିଜର ସମସ୍ତଙ୍କୁ ଛାଡ଼ିଦେଇ ଦିନେ ସମ୍ପୂର୍ଣ୍ଣ ପର ଗୋଟାଏ ଘରକୁ ଚାଲିଯିବାକୁ ହେବ, ଏ ଯେଉଁ ନିୟମ, ତା'ଠାରୁ ବଳି କଷ୍ଟକର ଆଉ କ'ଣ ଅଛି କହିଲ ?

ସ୍ମିତାର ଆଖି ଦୁଇଟା ଲୁହରେ ପୂରିଗଲା । ଆଉଥରେ ସେ କହିଲା ତମେ ଚାଲିଗଲେ ଛନ୍ଦାନାନୀ, ଏ ଘରଟା ମରୁଭୂମି ହୋଇଯିବ । ଆମର ଏ କୋଠରିଟାକୁ ମୁଁ କେତେଦିନ ପର୍ଯ୍ୟନ୍ତ ଆସି ପାରିବିନି । ବଡ଼ ନାନୀ ପଢ଼ିବାକୁ ଚାଲିଗଲେ, ହେଲେ ତମେ ଥିଲ ବୋଲି ଦୁଃଖଟା ବେଶୀ ଜଣା ପଡ଼ିଲାନି । ତମେ ଚାଲିଗଲେ ମୁଁ କେମିତି ରହିବି କେଜାଣି ?

ସ୍ମିତାର ଆଖିରୁ ସତକୁ ସତ ଲୁହଧାର ଝରି ପଡ଼ିଲା ।

ନିଜ କାନିରେ ତା'ର ସେ ଲୁହକୁ ପୋଛି ଦେଉ ଦେଉ ଅଶ୍ରୁରୁଦ୍ଧ କଣ୍ଠରେ କହିଲା ଛନ୍ଦା— ପାଗଳୀଟେ ନା କ'ଣ ମ ! ମୋ ଯିବାବେଳକୁ ତୁ ଯଦି ଏମିତି କାନ୍ଦିବୁ, ତା'ହେଲେ ନିଜେ ଶାଶୂଘରକୁ ଗଲାବେଳକୁ ତ ଘରଟାକୁ...ଏକାବେଳେ ସମୁଦ୍ର କରିଦେବୁ । ବଡ଼ମା...ବଡ଼ମା ଆଉ ସମସ୍ତେ ଏକାବେଳେ ବୁଡ଼ିଯାଇ ଭାସିଯିବେ, ମାନେ—ଜଳମଗ୍ନ ହୋଇଯିବେ...

ଥଟ୍ଟାଳିଆ ଭାବରେ କଥା କହି କାନ୍ଦୁଥିବା ସ୍ମିତାକୁ ହସାଇବାକୁ ଚାହିଁଲା ସେ, କିନ୍ତୁ ପାରିଲାନି । ଛାତି ଭିତରର ନିଦାରୁଣ ଯନ୍ତ୍ରଣା ! ତା ନିଜର ଆଖି ଦୁଇଟା ଲୁହରେ ଫାଟି ପଡ଼ିବାକୁ ଚାହିଁଲା । ଦାନ୍ତରେ ଦାନ୍ତ ଚିପି ନିଜକୁ ସଂଯତ କରିବାକୁ ଚେଷ୍ଟାକଲା ମଧୁଛନ୍ଦା ।

ସୁନନ୍ଦା ଘର ଭିତରକୁ ପଶି ଆସି ନିଜ ଝିଅ ପାଖରେ ଠିଆ ହେଲେ, ପରମ ସ୍ନେହରେ ମଧୁଛନ୍ଦାର ଅସଜଡ଼ା କେଶଗୁଡ଼ିକୁ ଆଉଁଶି ଦେଇ କହିଲେ—ସବୁଦିନେ କ'ଣ ତୋ'ର ସେମିନାର,

ନ ହେଲେ ମିଟିଂ ଚାଲିଛି ମା ? ସେଇ ସକାଳୁ କ'ଣ ଦିଇଟା ଖାଇ ଦେଇ ଯାଇଥିଲୁ ଯେ ଆସି ଏତେବେଳ ହେଲାଣି ।

ବୋଉଙ୍କ ଆଦରର ସ୍ପର୍ଶ ପାଇଲା କ୍ଷଣି ପ୍ରବଳ ଶୋକୋଚ୍ଛ୍ୱାସ ଆସି ଜମା ହୋଇଗଲା ମଧୁଛନ୍ଦାର ଗଳା ପାଖରେ । ସେ ଭାଙ୍ଗି ପଡ଼ିବାକୁ ଚାହିଁଲା, ଚାହିଁଲା ବୋଉଙ୍କ ଛାତିରେ ମୁହଁ ଲୁଚାଇ ଦେଇ ଆଖି ଲୁହରେ ଭସାଇ ଦେବ ମନ ଭିତରେ ଠୁଳ ହୋଇ ରହିଥିବା ସେହି ଅସହ୍ୟ ବେଦନା ରାଶିକୁ । ତା ମନର ଅବରୁଦ୍ଧ ଯନ୍ତ୍ରଣାକୁ ଖୋଲି ଦେଇ ଅସହାୟ ଶିଶୁଟି ପରି ଆତ୍ମସମର୍ପଣ କରିଦେବ ମାତୃବକ୍ଷରେ । ଓଃ—କାହିଁ କେତେ ଯୁଗ ହେଲା ସେ ଯେପରି ସୁନନ୍ଦାଙ୍କୁ କୁଣ୍ଢାଇ ଧରିନି ! ମୁହଁ ରଖିନି ପ୍ରାଣ-ଶୀତଳକାରୀ ସେଇ ମାତୃ କୋଳରେ ।

କିନ୍ତୁ ହଠାତ୍ ମୂକ ପାଲଟିଗଲା ପରି ମଧୁଛନ୍ଦା, ନୀରବରେ ଆହାର୍ଯ୍ୟ ବସ୍ତୁ ଗୁଡ଼ିକୁ ଗିଳି ଦେବାକୁ ଲାଗିଲା, ଯିଏ ଦେଖିଲେ କହିବ—ତାକୁ ଭୀଷଣ ଭୋକ କରୁଛି !!

ଆଶ୍ଚର୍ଯ୍ୟ ! ମନର ଅବସ୍ଥା ଯୋଗୁ ସେ ସ୍ୱାଦ ମଧ ଜାଣି ପାରୁନାହିଁ !

ଆଜି ସୁନନ୍ଦା ମଧ ବେଦନାରେ ଆତୁର । କାରଣ ପାଞ୍ଜି ଦେଖି ଆଜି ବିବାହ ତିଥି ଠିକ୍ ହୋଇଯାଇଛି—ଆଗାମୀ ବୈଶାଖର ତୃତୀୟା ତିଥିରେ ବାହାଘର ହେବ । ଝିଅକୁ ବିଦାୟ ଦେବା କଥା ଭାବି ମାତୃପ୍ରାଣ ତାଙ୍କର ବିଳପି ଉଠୁଛି ସେତିକିବେଳୁ ।

ସ୍ମିତା କହିଲା ପରି ନାଚ, ଗୀତ, ହସ, ଥଟ୍ଟା, ପାଟିତୁଣ୍ଡରେ ଛନ୍ଦା ଏ ଘରଟାକୁ ମୁଖରିତ କରି ରଖିଥିଲା ଏ ପର୍ଯ୍ୟନ୍ତ । ପିଲାଟି ଦିନୁ ଉଚ୍ଛ୍ୱସିତ ପାହାଡି ଝରଣାଟିଏ ପରି ଛନ୍ଦମୟୀ, ବାକ୍‌ମୟୀ ସେ । ଅତି ଚଞ୍ଚଳ, ଅତି ଚପଳ, ଅତି ବେପରୁଆ ଓ ଅତି ମାତ୍ରାରେ ସାହସିନୀ । ଏ କେତେ ଦିନ ହେଲା, ତା'ର ବିବାହ ପ୍ରସ୍ତାବ ଠିକ୍ ହେବା ଦିନଠାରୁ ସେ ଅଦ୍ଭୁତ ଭାବରେ ନୀରବ ହୋଇ ଯାଇଛି !

ଏହି ସ୍ୱର୍ଣ୍ଣ-ପ୍ରତିମାଟିର ଛନ୍ଦମୟୀ ଲାବଣ୍ୟକୁ ଦେଖି ସତ୍ୟବ୍ରତ ଓ ସୁନନ୍ଦା ବାଛି ବାଛି ନାଁ ରଖିଥିଲେ ଛନ୍ଦା—ମଧୁଛନ୍ଦା । ତା'ର କଥାରେ, ଚାଲିରେ, ପ୍ରତ୍ୟେକଟି ଭଙ୍ଗୀରେ ଯେପରି ନୃତ୍ୟର ଛନ୍ଦ ଫୁଟି ଉଠୁଥାଏ ସେହି ପିଲାଟି ଦିନରୁ । ତେଣୁ ଜିଦ୍ କରି ବଡ଼ମା ଓ ସ୍ୱାମୀଙ୍କୁ ରାଜି କରାଇ ସୁନନ୍ଦା ନିଜେ ତା'ର ସଙ୍ଗୀତ ଶିକ୍ଷାର, ନୃତ୍ୟ ଶିକ୍ଷାର ବ୍ୟବସ୍ଥା କରିଥିଲେ । ବିଭିନ୍ନ ଅନୁଷ୍ଠାନ ମାଧ୍ୟମରେ ଶିଶୁ କନ୍ୟାଟିର ଅପୂର୍ବ ନୃତ୍ୟ, ନୃତ୍ୟ-ପ୍ରତିଭାକୁ ଲୋକ-ଚକ୍ଷୁର ସମକ୍ଷକୁ ଆଣିଥିଲେ ।

ମୁହଁରୁ ଦରୋଟି କଥା କହିବା ଆହୁରି ଯାଇ ନଥିଲା । ସେତିକିବେଳୁ ଶିଶୁ ଶିଳ୍ପୀ ଭାବରେ ମଧୁଛନ୍ଦା ଶିଶୁ-ସଙ୍ଗୀତ କାର୍ଯ୍ୟକ୍ରମ ମାନଙ୍କରେ ଭାଗ ନେଉଥିଲା, ଭାଗ ନେଉଥିଲା ଆକାଶବାଣୀରୁ ପ୍ରଚାରିତ ଶିଶୁମାନଙ୍କ ଲାଗି ଉଦ୍ଦିଷ୍ଟ କାର୍ଯ୍ୟକ୍ରମରେ, ବିଭିନ୍ନ ଅନୁଷ୍ଠାନମାନଙ୍କରୁ ପ୍ରଦର୍ଶିତ ହେଉଥିବା ନୃତ୍ୟ ପରିବେଷଣରେ !

ପିଲାଟି ଦିନରୁ ଅତିମାତ୍ରାରେ ନିର୍ଭୀକ । ସେ, ଶହ ଶହ ଦର୍ଶକଙ୍କ ଉପସ୍ଥିତି ତାକୁ କେବେ ଲଜ୍ଜିତା ବା ବିଚଳିତା କରିନାହିଁ ! ମଞ୍ଚ ଉପରକୁ ଗଲା କ୍ଷଣି ସ୍ୱଚ୍ଛନ୍ଦରେ ତା'ର ସେ ଦରୋଟି ଭାଷାରେ ଗୀତ ଆରମ୍ଭ କରିଦିଏ ଶିକ୍ଷକଙ୍କ ନିର୍ଦ୍ଦେଶ ଅନୁସାରେ । ସ୍ୱର୍ଗ ରାଜ୍ୟର ଛୋଟ ପରୀଟିଏ ପରି ନିଜର ନୃତ୍ୟକଳା ଦେଖାଇ ଚମକିତ ଓ ବିମୁଗ୍ଧ କରିଦିଏ ଦର୍ଶକ ଶ୍ରେଣୀଙ୍କୁ । ମଧୁଛନ୍ଦା ସୁନିପୁଣ ଶିଶୁ କଳାକାର ରୂପେ ସୁଖ୍ୟାତି ଲାଭ କରିପାରିଥିଲା ଅତି କମ୍ ସମୟ ଭିତରେ ।

ସେହି ଅତି ଆଦରର ପ୍ରାଣ-ପ୍ରତିମାକୁ ପରହାତକୁ ଟେକି ଦେବାକୁ ପଡ଼ିବ । ଅନେକ ଦିନ ପରେ ଆଜି ଏଭଳି ପାଖରେ ଠିଆ ହୋଇ ମଧୁଛନ୍ଦାର ପିଠିରେ ହାତ ବୁଲାଇ ଦେଉ ଦେଉ ସୁନନ୍ଦା ଏହି କଥାଗୁଡ଼ିକ ଭାବୁଥିଲେ ।

ଦୁଆରର ସେପଟେ ଥାଇ ନିଧିଆ ଡାକ ପକାଇଲା—ବୋହୂମା, ସୌମ୍ୟବାବୁ ଆସିଛନ୍ତି, ବଡ଼ ସାଆନ୍ତାଣୀ କହିଲେ ତାଙ୍କ ପାଇଁ ଜଳଖିଆ ନେଇ ସେ ଘରେ ଦେଇ ଆସିବାକୁ ।

—ଆରେ ! ସୌମ୍ୟ ଆସିଛନ୍ତି ! ତାଙ୍କ ସଙ୍ଗେ ତ ଅନେକ ଦରକାରୀ କଥା ଅଛି ! ଛନ୍ଦା, ପେଟ ପୂରାଇ ଖାଇବୁ ମା, ମୁଁ ଆସୁଛି ।

ସୁନନ୍ଦା ଘରୁ ବାହାରି ଗଲେ ।

ମଧୁଛନ୍ଦା ଯେପରି ମୁକ୍ତି ପାଇଗଲା, ଯେପରି ନିଃଶ୍ୱାସ ଛାଡ଼ି ବଞ୍ଚିଗଲା ! ଆଉ କେତୋଟି ମୁହୂର୍ତ୍ତ ଯାଇଥିଲେ ତ ସେ ନିଜକୁ ଆଉ ସମ୍ଭାଳି ପାରି ନ ଥାନ୍ତା ! ଭାଙ୍ଗି ପଡ଼ିଥାନ୍ତା, ଶୋକରେ, ଆବେଗରେ କହି ପକାଇଥାନ୍ତା ନିଜର କଳଙ୍କକୁ ।

କଳଙ୍କ ? ହଁ କଳଙ୍କ !

ଗୌରବହୀନ, ମର୍ଯ୍ୟାଦାବିହୀନ ପ୍ରେମ, କଳଙ୍କ ନୁହେଁ ତ ଆଉ କ'ଣ ? ଏ ବଂଶର ଆକାଶଚୁମ୍ବୀ ମର୍ଯ୍ୟାଦାକୁ ଧୂଳିରେ ଲୋଟାଇ ଦେଇ ସେ କହିଥାନ୍ତା ଯେ ସେ ସ୍ୱଇଚ୍ଛାରେ ନିଜର ପ୍ରେମିକକୁ ବାଛିଛି, ଖାଲି ସେତିକି ନୁହେଁ, ବିବାହ ପୂର୍ବରୁ ଶରୀର ମଧ ଦାନ କରି ଦେଇଛି ।

ସ୍ୱରୂପାର ମତରେ ଏ ଶରୀର ଦେବ ମନ୍ଦିର ସଦୃଶ ପବିତ୍ର ଯେହେତୁ ଏହା ଭିତରେ ଜୀବାତ୍ମା ବାସ କରୁଛନ୍ତି ! ଜୀବାତ୍ମା—ଅର୍ଥାତ୍ ପରମାତ୍ମାଙ୍କ ଅଂଶ ସ୍ୱରୂପ । ସ୍ୱରୂପା କହେ, ପରମାତ୍ମା ଅଗ୍ନିଖଣ୍ଡ ସ୍ୱରୂପ ହେଲେ ଜୀବାତ୍ମା ହେଉଛନ୍ତି ସେ ଅଗ୍ନିର ସ୍ଫୁଲିଙ୍ଗ । କୁଆଡ଼େ ବହୁ ଜନ୍ମର ଚକ୍ର ଭିତରେ ଅନେକ ଉତ୍ପୀଡ଼ନ, ଅନେକ ଅଶାନ୍ତି ପାଇଲା ପରେ ଘୂରିଘୂରି ନିଜର ଅଧ୍ୟବସାୟ ବଳରେ ଜୀବ ଏହି ଦୁର୍ଲଭ ମନୁଷ୍ୟ ଶରୀର ପ୍ରାପ୍ତ ହୁଏ । ତେଣୁ ମଣିଷର ଏ ଶରୀର ଅତି ମୂଲ୍ୟବାନ୍ ।

ସ୍ୱରୂପା କହେ—ଛନ୍ଦା, ଅଶେଷ ପୁଣ୍ୟ ବଳରେ ଆମେ ଏ ମଣିଷ ଦେହ ପାଇଛୁ । ଜୀବର ଜନ୍ମରହିତ ହେବାପାଇଁ ତଥା ମୋକ୍ଷପ୍ରାପ୍ତି ପାଇଁ ଏହି ମଣିଷ ଦେହ ହିଁ ହେଉଛି ଏକମାତ୍ର ଆଧାର ।

ସେତେବେଳେ ସ୍ୱରୂପାର ସେହି ସାଧୁ ସନ୍ଥଙ୍କ ପରି କଥାଗୁଡ଼ିକୁ ଶୁଣି ହସି ହସି ଲୋଟି ପଡୁଥିଲା ମଧୁଛନ୍ଦା । କହୁଥିଲା—ସ୍ୱରୂପା, ତୋ କଥାଗୁଡ଼ିକ ଶୁଣିଲେ ଲାଗୁଛି ଗତ ଜନ୍ମରେ ତୁ କେଉଁ ଆର୍ଯ୍ୟଋଷିଙ୍କ ସୁପଣ୍ଡିତା କନ୍ୟା ଥିଲୁ, ବୁଝିଲୁ ? ହୁଏତ ବୈଦିକ ଯୁଗରେ କେଉଁ ଆଶ୍ରମବାସିନୀ ହୋଇ ରହିଥିଲୁ ବଣରେ । କ'ଣ ଥିଲୁ କହିଲୁ ? ଘୋଷା ନ ମୈତ୍ରେୟୀ ? ବାକ୍ ନା ଆପଲା ?

ଅନ୍ୟ କିଏ ହୋଇଥିଲେ ମଧୁଛନ୍ଦାର ସେ ହସ ଓ ଥଟ୍ଟାରେ ନିଜକୁ ଅପମାନିତ ମନେ କରିଥାନ୍ତା । କିନ୍ତୁ ସ୍ୱରୂପା ? ପିଲାଟି ଦିନରୁ ଅତି ସହିଷ୍ଣୁ ସେ, ଥଟ୍ଟା କଲେ ହସିବ, ରାଗିଲେ ହସିବ, କିନ୍ତୁ ହାରିବନି କେବେ । ସାନ ଉତ୍ତରଟିଏ ଦେବ—ଯାହାହେଲେ ଜଣେ ହୋଇଥିବି ନିଶ୍ଚୟ । ଜନ୍ମାନ୍ତର ଯଦି ସତ ହୋଇଥାଏ ତା'ହେଲେ ନିଶ୍ଚୟ ମୁଁ ପୁନର୍ଜନ୍ମ ପାଇଥିବି ।

ମଧୁଛନ୍ଦା ଭାବିଲା—ସ୍ୱରୂପା ହେଲେ ଆଜି ଯଦି ପାଖରେ ଥାଆନ୍ତା, ହୁଏତ କିଛି ସାହାଯ୍ୟ କରି ପାରିଥାନ୍ତା । ଏବେ ମଧ ସବୁ କଥା ଜଣାଇ ଚିଠିଟିଏ ଲେଖିବ କି ତା ପାଖକୁ ? କିନ୍ତୁ କ'ଣ ଜଣାଇବ ? ମନୋଜଠାରୁ ନିଶ୍ଚିତ ଭାବରେ କିଛି ଉତ୍ତର ନ ପାଇଲା ପର୍ଯ୍ୟନ୍ତ କାହାକୁ ଜଣାଇ କିଛି ଲାଭ ନାହିଁ ।

ହେଇଟି, ସ୍ୱରୂପା ପଢ଼ିବା ପାଇଁ ଦୂରକୁ ଚାଲିଗଲା ପରଠାରୁ ତା ବିଛଣାଟା ଖାଲି ପଡ଼ିଛି । ଛୁଟିରେ ସେ ଆସିଲେ ଭାରି ମଜା ହୁଏ । ଏ ଘରର ନିୟମ ଅନୁସାରେ ଶେଯଟିକୁ ପ୍ରତିଦିନ ଝଡ଼ା ହୋଇ ଚାଦର ବଦଳାଇ ଏକାବେଳେ ଚକ୍‌ଚକ୍ କରି ରଖା ଯାଇଥାଏ ।

ସ୍ୱରୂପା ଏଥର ପୁଣି ଯେତେବେଳେ ଆସିବ, ହୁଏତ ଆଉ ମଧୁଛନ୍ଦା ନଥିବ ! ସେତେବେଳେ ମଧୁଛନ୍ଦାର ଖାଲି ବିଛଣାଟି ଆଡ଼କୁ ଚାହିଁ ସ୍ୱରୂପା କ'ଣ କରିବ ? ଛି, ପୁଣି ଘୂରି ଘୂରି ସେହି ମୃତ୍ୟୁ ଚିନ୍ତା । ଅତି କଦର୍ଯ୍ୟ !

ହୁଏତ ମନୋଜ ଯାହାହେଲେ ଗୋଟାଏ ରାସ୍ତା ଖୋଜି ବାହାର କରିବ ।

ନିଜର ଚିନ୍ତାରେ ବିଭୋର। ହୋଇ ମଧୁଛନ୍ଦା ଜାଣି ପାରିଲା ନାହିଁ—ସ୍ମିତାର ଆଖି ଦୁଇଟା କିପରି ଲୁହରେ ଢଳ ଢଳ ହେଉଛି । ଗରମ ଗରମ ସିଙ୍ଗଡ଼ା ଓ କଚୁରୀ ଗୁଡ଼ିକୁ ହାତରେ ଖେଳାଉ ଖେଳାଉ ସ୍ମିତା ଭାବୁଥିଲା ସୁନନ୍ଦାଙ୍କ ବ୍ୟବହାର କଥା ! ତାକୁ ଥରଟେ ହେଲେ ଖାଇବାକୁ ଅନୁରୋଧ କରି ନ ଥାନ୍ତେ ଖୁଡ଼ୀ ? ଆଶ୍ଚର୍ଯ୍ୟ ! ସାଧାରଣ ସୌଜନ୍ୟବୋଧ ବୋଲି ତ ପୁଣି ଅଛି !

ମଝିରେ ମଝିରେ ସୁନନ୍ଦା ଏହିପରି ବ୍ୟବହାର କରି ଯେପରି ମନେ ପକାଇ ଦେବାକୁ ଚାହାନ୍ତି ଯେ ସେମାନେ ଏ ପରିବାରର ଆଶ୍ରିତା ! କଥାଟା କଲିଜା ଭିତରେ କଣ୍ଟା ଫୋଡ଼ି ହୋଇଗଲା ପରି ଲାଗେ । ସଚେତନ କରିଦିଏ ମଧୁଛନ୍ଦା ଆଉ ତା ଭିତରେ ରହିଥିବା ଆକାଶ-ପାତାଳ ପ୍ରଭେଦକୁ ।

ପରକ୍ଷଣରେ ସତେକି ମରମରେ ମରିଯାଏ ସ୍ମିତା । ହୁଏତ ମଧୁଛନ୍ଦା ପାଇଁ ଜଳଖିଆ ନଖାଇ ଏତେବେଳ ହେଲା ଜଗି ବସିବା କଥାଟାକୁ ଖୁଡ଼ୀ ଖୋସାମତ କରିବା ବୋଲି ଭାବୁ ନାହାନ୍ତି ତ ?—ଓଃ, କି ହୀନ ଲଜ୍ଜାକର କଥା !

ସ୍ମିତାର ଅନ୍ତସ୍ଥଳରୁ ହାହାକାର ଉଠି ଆସୁଛି ନିଃଶବ୍ଦ ଶୋକର ରୂପ ଧରି । ମନେ ପଡୁଛି ନିଜ ବୋଉ କଥା । ଜଳଖିଆ ଆଉ ଗଳା ବାଟେ ଖସୁ ନାହିଁ, ତଣ୍ଟିରେ ଅଟକି ଯାଇ ଯେପରି ଶ୍ୱାସରୁଦ୍ଧ କରି ପକାଉଛି ତାକୁ । ପାଦ ଉପରେ ଲୁଗାଟାକୁ ଆହୁରି ଅଧିକ ଟାଣି ଦେବାର ଛଳନା କରି ସ୍ମିତା ଝୁଙ୍କି ପଡ଼ିଛି, ଧପ୍ ଧପ୍ ହୋଇ ଲୁହ ଝରି ପଡୁଛି ଚଟାଣରେ ।

ସ୍ୱରୂପା କଥା ମଧ ମନେ ପଡ଼ିଲା ତା'ର । ସେ ମଧ କ'ଣ ଏଭଳି ସବୁ କଥା ଶୁଣିନାହିଁ ? ନା ବୁଝିପାରି ନାହିଁ କଥା ଗୁଡ଼ିକର ମର୍ମ ? କେବେ କିପରି ନିର୍ଜନତାର ସୁଯୋଗ ମିଳିଲେ ସେ ଯେତେ କହିବାକୁ ଯାଇଛି, ଆଦରରେ ସାନ ଭଉଣୀର ପିଠି ଆଉଁସି ଦେଇ ସ୍ୱରୂପା କହିଛି— ସ୍ମିତୁ, ଏ ସଂସାରରେ କିଏ ଆପଣାର ଆଉ କିଏ ପର ? ତା'ପରେ...ତା'ପରେ କେତେଦିନ ପାଇଁ ବା ଏ ସଂସାର ? ହେଇଟି ଆମ ନନା ବୋଉଙ୍କ କଥା ଦେଖିଲୁ ତ ?

ତା'ପରେ ଆହୁରି ପାଖକୁ ଟାଣିନେଇ ନିଜର ଲୁଗା କାନିରେ ପୋଛିଦେବ ସ୍ମିତାର ଲୁହ ।

ସତରେ ଏକ ଆଶ୍ଚର୍ଯ୍ୟ ପ୍ରକାର ଝିଅ ସେ, କି ଉପାଦାନରେ ସେ ଗଢ଼ା ହୋଇଛି । ତା'ର କ'ଣ ମାନ ଅପମାନ ଦୁଃଖ ସୁଖ ବୋଲି କିଛି ଅନୁଭୂତି ନାହିଁ !

ଗଭୀର ଦୀର୍ଘ ନିଃଶ୍ୱାସଟିଏ ପକାଇ ସ୍ମିତା ଭାବିଲା—ଅତି ଭାଗ୍ୟବତୀ ଏଇ ଛନ୍ଦା ନାନୀ, ସମସ୍ତଙ୍କର ଆଦରଣୀୟା ସେ, ପୁଣି ପାଇବେ ଶଚୀନ୍ଦ୍ର ବାବୁଙ୍କ ପରି ସ୍ୱାମୀ । ସହସ୍ର ଜନ୍ମର ତପସ୍ୟା ବଳରେ ସେ ଭଳି ସ୍ୱାମୀ ମିଳନ୍ତି ।

ଗୋପନରେ ଆଖି ପୋଛି ସିଧା ହୋଇ ବସି ତା'ର ପରମ ସୌଭାଗ୍ୟବତୀ ଛନ୍ଦାନାନୀ ଆଡ଼କୁ ଚାହିଁଲା ସେ—କିନ୍ତୁ ମଧୁଛନ୍ଦାର ଆଖି କୋଣରୁ ଝରି ଆସିଥିବା ଦୁଇ ଧାର ଲୁହକୁ ହଠାତ୍ ଦେଖି ପାରି ଯେପରି ବଜ୍ରାହତା ହୋଇଥିଲା । ନିଜର ସବୁ ଦୁଃଖ, ସବୁ ଶୋଚନା ଏକ ପଲକରେ ଭୁଲିଯାଇ ବ୍ୟାକୁଳ ଭାବରେ ମଧୁଛନ୍ଦାର ହାତ ଧରିପକାଇ ଆର୍ତ୍ତ କଣ୍ଠରେ କହିଲା—ତମେ କାନ୍ଦୁଛ ଛନ୍ଦା ନାନୀ ? ଇସ୍ । କିଛି ହେଲେ ଖାଇନାହଁ ଯେ !

ମଧୁଛନ୍ଦାର ଚୈତନ୍ୟ ଫେରି ଆସିଲା । ତା ଆଖିରୁ ଲୁହ ଧାର ଝରି ଆସିଥିଲା ତା'ର ସମ୍ପୂର୍ଣ୍ଣ ଅଜ୍ଞାତରେ ! ସ୍ମିତା ନିକଟରେ ଧରା ପଡ଼ିଯାଇ ଅପ୍ରସ୍ତୁତ ହେବା ସଙ୍ଗେ ସଙ୍ଗେ ନିଜକୁ ସଂଯତ କରି ପକାଇଲା ସେ ।

ମଧୁଛନ୍ଦା ପ୍ରତ୍ୟୁତ୍ପନ୍ନମତି, ସୁଚତୁରା, ତେଣୁ ସାଙ୍ଗେ ସାଙ୍ଗେ ନିଜ ମୁହଁରେ ହସ ଫୁଟାଇ ଦେଇ କହିଲା—ବାଃରେ ! ମତେ କାନ୍ଦ ଲାଗିବନି ସ୍ମିତା ? ଜନ୍ମରୁ ରହି ଆସିଥିବା ଏ ଘର ଛାଡ଼ି ଦେଇ ଚାଲିଯିବି ତମ ସମସ୍ତଙ୍କୁ ଛାଡ଼ି ଦେଇ ଚାଲିଯିବି । ହେଇଟି ଦେଖ୍—ସ୍ୱରୂପାର ବିଛଣାଟା ଯେମିତି ଖାଲି ହୋଇ ରହିଛି, ମୋ ବିଛଣାଟା ମଧ୍ୟ ସେମିତି ଖାଲି ହେଇଯିବ, ନୁହେଁ ?

ତା' କଥା ଶୁଣି ଏଥର ସ୍ମିତାର ସୁନ୍ଦର ମୁହଁଟି ଭାସିଗଲା ଆଖି ଲୁହରେ । ନିଜର ବେଦନା ସହିତ ମଧୁଛନ୍ଦାର ଆସନ୍ନ ବିଚ୍ଛେଦ ବେଦନା ମିଶିଗଲା ।

ତାକୁ ପାଖକୁ ଟାଣି ଆଣି ଲୁହ ପୋଛି ଦେଉ ଦେଉ ମଧୁଛନ୍ଦା କହିଲା, ତୁନି ହୁଅ, ଏତେ କାନ୍ଦ କ'ଣ ? ଛିଃ, ଛିଃ !

କିନ୍ତୁ ତା ନିଜ ଆଖି କୋଣରେ ପୁଣି ଚକ୍ ଚକ୍ ହେବାକୁ ଲାଗିଲା ଦୁଇ ଟୋପା ଲୁହ ।

ଏ ପୃଥିବୀ ଛାଡ଼ି ଯଦି ସେ ଚାଲିଯିବ ତା'ହେଲେ ଏଇ ଝିଅଟା କେତେ ନ କାନ୍ଦିବ !

ଅସ୍ଫୁଟ ଭାବରେ ସେ ଉଚ୍ଚାରଣ କରିବାକୁ ଲାଗିଲା—

Thus let me live unseen, unknown
Thus unlamented let me die.
Steal from the world and not a stone
Tell where I lie.

ସ୍ମିତୁ, ଆଉଥରେ କବିତାଟି ଆବୃତ୍ତି କଲୁ ? ବଡ଼ମା'ଙ୍କ ପାଖରେ କେଡ଼େ ସୁନ୍ଦର ଆବୃତ୍ତି କରୁଥିଲୁ ସେତେବେଳେ...

ଦଉଡ଼ି ଦଉଡ଼ି ଆସିଲା ଲୀନା । କୁଆଡ଼କୁ ଚାହିଁବାକୁ ତା'ର ବେଳ ନାହିଁ । ମଧୁଛନ୍ଦାକୁ କୁଣ୍ଢାଇ ପକାଇ ଟାଣିବାକୁ ଲାଗିଲା, ନାନୀ, ଚାଲ ସେ ଗୀତ ଦୁଇଟାକୁ ଅଭ୍ୟାସ କରେଇ ଦବ, ଆମର ଫଙ୍କ୍‌ଶନ୍‌ଟା କାଲି, ତମେ ଚାଲିଲ...

ମଧୁଛନ୍ଦାକୁ ଟାଣି ଟାଣି ନେଇଗଲା ସେ ।

x x x

## (୧୪)

ସୌମ୍ୟର ପୁରୁଷ ଚକ୍ଷୁରେ ମଧ ଅଶ୍ରୁର ଆଭାସ ।

ନା, ସ୍ୱରୂପା ଚିଠି ଦେଇନାହିଁ, କୌଣସି ଅଭିମତ ଜଣାଇ ନାହିଁ । ତା'ର ପୌରୁଷର ଗର୍ବକୁ ପଦାଘାତ କରି ସେ ନୀରବ ହୋଇ ରହିଛି । ଉତ୍ତର ଖଣ୍ଡିଏ ମଧ ଲେଖିବା ଉଚିତ ମନେ କରିନାହିଁ ।

ଛୋଟ ଟେବୁଲ ଉପରେ ଜଳଖିଆ ଥାଳିଆ ଥୋଇ ସୁନନ୍ଦା କହିଲେ—ସୌମ୍ୟ, ଖାଅ । ତମ ସହିତ ବହୁତ କଥାବାର୍ତ୍ତା କରିବାକୁ ଅଛି । ଆଜି ଛନ୍ଦାର ବାହାଘରର ଦିନ ସ୍ଥିର ହୋଇଗଲା । ତମରି ଉପ୍ରରେ ସବୁ ଭାର ରହିଲା, ବୁଝିଲ ? ପ୍ରକାଶଟା ତ ଯାଇ ରହିଲା ରୁର୍କିରେ, ସେ ଆସିପାରିବ କି ନାହିଁ ସନ୍ଦେହ । ଶଚୀନ୍ଦ୍ରଙ୍କ ସୁଟ୍ ତିଆରି ପାଇଁ ମାପଟା ଦରକାର, ମୁଦି ଗୁଡ଼ିକ ପାଇଁ ମାପ ଦରକାର ।

ସୌମ୍ୟ ଜଳଖିଆ ପାଟିରେ ପୂରାଇ ଟିକିଏ ଖାଇ କହିଲା—ମୁଁ ଯାଇ ନେଇ ଆସିବି ଭାଉଜ, ତମେ କିଛି ଚିନ୍ତା କରିବା ଦରକାର ନାହିଁ ।

ହେଲେ ସୁନନ୍ଦା ଆଜି ଝିଅର ଆସନ୍ନ ବିବାହର ପରିକଳ୍ପନାରେ ଉଦ୍‌ବିଗ୍ନା, ଉଦ୍‌ବେଳିତା, ଉଚ୍ଛ୍ୱସିତା । ସବୁ ମା'ମାନଙ୍କ ପରି ସୁନନ୍ଦା ଆଜି ଉଛୁଳୁଛନ୍ତି ଆନନ୍ଦରେ ।

ଗୋପନରେ ଦୀର୍ଘ ନିଃଶ୍ୱାସଟିଏ ଛାଡ଼ିଲା ସୌମ୍ୟ ।

ସେ ଦୀର୍ଘ ନିଃଶ୍ୱାସର ଅର୍ଥ ବୁଝିପାରିଲେ ନୀଳମଣି, ବ୍ୟଥିତ ହେଲେ । ଆଜି ମଧ ସ୍ୱରୂପାଠାରୁ କିଛି ଚିଠି ଆସିନାହିଁ ।

ସୁନନ୍ଦା କହିଲେ—ଗହଣାପତ୍ର ତ ତିଆରି ହୋଇ ରହିଛି । ବାକି ଲୁଗାପଟା, ବାସନ କୁସନ ସୁଜାତା ଆଉ ମୁଁ ମିଶି କିଣାକିଣି କରିଦେବୁ । ସେଦିନ ରାୟ ବାବୁଙ୍କ ଘରକୁ ଯାଇଥିଲତ ସୌମ୍ୟ ? କେମିତି ଚମତ୍କାର ସାଜସଜ୍ଜା ହୋଇଥିଲା ଦେଖିଲ ନା ? ତାଙ୍କ ପୁଅ ବିକାଶ ପରା ତମ ଛାତ୍ର ? ସେ ସାହାଯ୍ୟ କରିବ ।

ସୁନନ୍ଦା ଆଉ ତୁନି ହୋଇ ରହିବାକୁ ଚାହୁଁ ନାହାନ୍ତି । ଅଜସ୍ର ଚିନ୍ତା ମୁଣ୍ଡରେ ଠୁଳ ହୋଇଯାଉଛି ।

ନିଜର ବେଦନାକୁ ଲୁଚାଇ ସୌମ୍ୟ ହସୁଛି ।

ହସି ହସି କହିଲା—ଖୁଡ଼ୀ, ତମେ ନିଶ୍ଚିନ୍ତ ରହିଲ । ଛନ୍ଦାର ବାହାଘରଟି ! ଏଭଳି ଜାକଜମକରେ କରିବା, ଏପର୍ଯ୍ୟନ୍ତ ଲୋକେ ଏମିତି ସାଜସଜ୍ଜା କେଉଁଠି ଦେଖି ନ ଥିବେ । ତମେ ଆଗରୁ ପ୍ରକାଶ ପାଖକୁ ଚିଠି ଖଣ୍ଡେ ଲେଖିଦିଅ ।

—ଚିନ୍ତାରେ ମତେ ଆଉ ନିଦ ହେଉନି ଜମା ସୌମ୍ୟ ।

କିଛି ସମୟ କଥାବାର୍ତ୍ତା ହେବା ପରେ ସୁନନ୍ଦା ଚାଲିଗଲେ ଅନ୍ୟ କାମରେ ।

ଦୀର୍ଘ ଶ୍ୱାସଟିଏ ପକାଇ ନୀଳମଣି କହିଲେ—ଆଜି ବି ଚିଠି ଆସିଲାନି ସ୍ୱରୂପାର । ତୋ ସହିତ ସ୍ୱରୂପାର ବାହାଘରଟା ଏକାସାଙ୍ଗରେ ଏବେ କରିଦେବାକୁ ମୋର ଇଚ୍ଛା ଥିଲା ସୌମ୍ୟ । ସେଇଟା ହେଉଛି ମୋର ଅନେକ ଦିନର ସ୍ୱପ୍ନ । ତୋ ଦେହରେ ମୋର ରକ୍ତ ବହୁଛି, ସ୍ୱରୂପା ଦେହରେ ତାଙ୍କର, ତୋର ବଡ଼ ବାପାଙ୍କର ରକ୍ତ—

ହାତର ଆଙ୍ଗୁଠି ଉଠାଇ ନୀଳମଣି ବିଶ୍ୱନାଥଙ୍କ ତୈଳଚିତ୍ରଟିକୁ ଦେଖାଇଲେ । ଟିକିଏ ରହି କହିଲେ ଆଉଥରେ, ତାଙ୍କରି ପରି ସବୁ ଗୁଣ ମଧ୍ୟ ପାଇଛନ୍ତି ସେ ଝିଅ ଦିଇଟା । ସ୍ୱରୂପା ଆଉ ସ୍ମିତା । କେତେ କମ୍ ବୟସରେ କେତେ ପରିପକ୍ୱ ବୁଦ୍ଧି ସ୍ୱରୂପାର । ତାଙ୍କରି ମୁହଁରେ ଯେମିତି ସବୁବେଳେ ହସ ଟିକକ ଲାଗି ରହୁଥିଲା, ୟା ମୁହଁରେ ମଧ୍ୟ ଠିକ୍ ସେମିତି ହସ ସବୁବେଳେ । ସ୍ୱରୂପାର ହସ, କଥାବାର୍ତ୍ତା, ଛଳନାହୀନ ମନ ସବୁ ଯେମିତି ତାଙ୍କରି । ଖାଲି ସେତିକି ନୁହଁ, ମୁଁ ଲକ୍ଷ୍ୟ କରିଛି—କଥା କହିବାର ଭଙ୍ଗୀ, ହାତ ହଲାଇବାର ଭଙ୍ଗୀ, ସବୁ ଯେପରି ଗୋଟାପଣେ ତାଙ୍କରି । ମଣ୍ଟୁଟା ତ ବଡ଼ହେଲେ ଏକାବେଳକେ ତାଙ୍କରି ପରି ଦେଖିବାକୁ ହେବ ।

ହଠାତ୍ ନୀଳମଣି ଯେପରି ହଜିଗଲେ କାହିଁ କେଉଁ ସୁଦୂର ଅତୀତର ବୁକୁ ଭିତରେ—ବର୍ତ୍ତମାନର ସତ୍ତା ପୂରାପୂରି ଭାବରେ ବିଲୁପ୍ତ ହୋଇଗଲା ।

ମାୟାମୟୀ ଜ୍ୟୋତ୍ସ୍ନାଝରା ରାତିର କୋଳରେ ନିର୍ଜନ, ନିଃଶବ୍ଦ ଛାତ ଉପରେ ଅଛନ୍ତି ସେ ଆଉ ବିଶ୍ୱନାଥ ।

—ଦେଖିଲ ମଣି, ଏ ସୃଷ୍ଟି କି ଅପୂର୍ବ ସୁନ୍ଦର ! ସାମାନ୍ୟ ଘାସ ଫୁଲଟିଏ, ତାକୁ ଦେଖ, ଗୋଟାଏ ଗୋଲାପକୁ ଦେଖ । ଗୋଲାପଟି ଅତି ସୁନ୍ଦର ହେଲେ ନାମହୀନ ଘାସଫୁଲଟି ମଧ୍ୟ କ'ଣ ଅସୁନ୍ଦର ? ନା, ତା ନିଜସ୍ୱ ସୌନ୍ଦର୍ଯ୍ୟରେ ଗର୍ବିଣୀ ସେ । କେତେ ପ୍ରକାର ଫୁଲ, କେତେ ପ୍ରକାର ଗଛ ଲତା, ପୁଣି କେତେ ପ୍ରକାର ଜୀବଜନ୍ତୁ, ଏ ସବୁ ହେଲା କିପରି ?

ବିସ୍ମୟରେ ନୀଳମଣି ମଧ୍ୟ ଭାବିଥିଲେ—କିପରି ହେଲା ?

କୁଣ୍ଠିତ ଭାବରେ ସେ କହିଥିଲେ—ପ୍ରକୃତରେ ସର୍ବପ୍ରଥମେ ଯେଉଁଦିନ ମଣିଷ ଆଖି ଖୋଲି ଏ ସୃଷ୍ଟିକୁ ଦେଖିଥିବ—

—ଦେଖିଥିବ ନୁହେଁ, ଉପଲବ୍ଧି କରିଥିବ, ସୌନ୍ଦର୍ଯ୍ୟକୁ ଉପଲବ୍ଧି କଲା ଭଳି ଜ୍ଞାନ ଅର୍ଜନ କରିଥିବ, ଅବାକ୍ ହୋଇ ଯାଇଥିବ, ବିସ୍ମୟରେ ହତବୁଦ୍ଧି ହୋଇ ବସି ରହିଥିବ ଅନେକ ସମୟ ପର୍ଯ୍ୟନ୍ତ । ବେଦର ଋକ୍‌ଗୁଡ଼ିକରେ ପ୍ରକୃତିର ଅତି ସୁନ୍ଦର ବର୍ଣ୍ଣନା ସବୁ ରହିଛି, ସେ ଉପମାଗୁଡ଼ିକ ଆଧୁନିକ ଯୁଗର କବିମାନଙ୍କ ଉପମାକୁ ବଳିଯିବ ଠାଏ ଠାଏ । ଉଷାର ବର୍ଣ୍ଣନା, ସୂର୍ଯ୍ୟର ବର୍ଣ୍ଣନା, ନଦୀର ବର୍ଣ୍ଣନା ଯେ କି ଚମତ୍କାର—

ନୀଳମଣିଙ୍କର ସେହି ସମାଧିସ୍ଥ ଅବସ୍ଥାକୁ ସ୍ତବ୍ଧ ଭାବରେ ଚାହିଁ ରହିଛି ସୌମ୍ୟ—ବଡ଼ମା ଆଉ ତାଙ୍କ ନିଜ ଭିତରେ ନାହାନ୍ତି, ହଜି ଯାଇଛନ୍ତି ନିଜର ସ୍ୱାମୀଙ୍କ ସ୍ମୃତି ଭିତରେ । ଆହା, ନିହାତି କିଶୋର ବୟସରୁ ସ୍ୱାମୀ ସୁଖରୁ ବଞ୍ଚିତା ହତଭାଗିନୀ ପ୍ରିୟତମ ସ୍ୱାମୀଙ୍କୁ ମନେପକାଉଛନ୍ତି, ଶୋଇ ଶୋଇ ବିଭୋର ହୋଇ ରହିଛନ୍ତି କେଉଁ ପ୍ରିୟ ସ୍ମୃତିର ଅତଳ ସମୁଦ୍ର ଭିତରେ । ତାଙ୍କର ସେ ଧ୍ୟାନମଗ୍ନ ଅବସ୍ଥାକୁ ଭାଙ୍ଗିଦେବାକୁ ଇଚ୍ଛା ହେଲା ନାହିଁ ସୌମ୍ୟର । ନୀରବରେ ମୁହଁ ଫେରାଇ ବିଶ୍ୱନାଥଙ୍କ ସୌମ୍ୟ ମୂର୍ତ୍ତି ଆଡ଼କୁ ଚାହିଁ ରହିଲା ସେ ମଧ୍ୟ । କି ସୁନ୍ଦର ଦେଖିବାକୁ ଥିଲେ ସେ ସତରେ—ଫଟୋ ଦେଖିଲେ ଆଜି ମଧ୍ୟ ବାରି ହୋଇଯାଉଛି । ବୁଦ୍ଧିର ଦୀପ୍ତିରେ ଦୀପ୍ତିମାନ୍ ଆଖି ଦୁଇଟି । ଅତି ରୂପବାନ୍ ଆକୃତି ।

ଆଉ ନୀଳମଣି ! ଏବେ ବି ଗୋରା ଟକ ଟକ ପାଚିଲା ଆମ୍ବ ପରି ହଳଦିଆ ଦେହର ବର୍ଣ୍ଣ । ନା, ଠିକ୍ ଆଉଟି ଦେଲା ସୁନା ପରି, ଏତେ ଟିକିଏ ବି ମଉଳି ଯାଇନି । ଖାଲି କେତୋଟି କୁଞ୍ଚନ ରେଖା ପଡ଼ିଛି ଚମ ଉପରେ । ସେଇତକ ଛଡ଼ା ବାର୍ଦ୍ଧକ୍ୟ ଯେପରି ପରାଜୟ ସ୍ୱୀକାର କରି ରହିଛି ଏ ପର୍ଯ୍ୟନ୍ତ ।

ବୟସଦିନେ କି ଅନିନ୍ଦ୍ୟ ସୁନ୍ଦରୀ ନଥିଲେ ବଡ଼ ମା' ? କ'ଣ ମଧୁଛନ୍ଦା ପରି ଥିବେ, ନା ମଧୁଛନ୍ଦାଠାରୁ ଆହୁରି ଅଧିକ ସୁନ୍ଦର ଥିବେ ନିଶ୍ଚୟ ।

ସୌମ୍ୟ ସେହିପରି ଚୁପ୍‌ଚାପ୍ ହୋଇ ବସି ରହିଲା । ନିଃଶବ୍ଦ ଘରଟା ଭିତରେ କେବଳ କାନ୍ଥ-ଘଣ୍ଟାଟିର ଟିକ୍ ଟିକ୍ ଶବ୍ଦ ଛଡ଼ା ଆଉ କୌଣସି ଶବ୍ଦ ନଥିଲା ।

ତା'ର ସ୍ୱରୂପାର ବିବାହ ଆଉଥରେ ସେହି ଦୁଇଟି ବଂଶକୁ ଏକ କରିବ, ଯହିଁରେ ଅଛି ବିଶ୍ୱନାଥଙ୍କ ସତ୍ତା ଓ ନୀଳମଣିଙ୍କ ସତ୍ତା । କିନ୍ତୁ... ସ୍ୱରୂପାର ଏହି ଦୀର୍ଘ ନୀରବତା କ'ଣ ସ୍ପଷ୍ଟରୂପେ ସୂଚାଇ ଦେଉନାହିଁ ଯେ ସେ ଆଦୌ ବିବାହ କରିବାକୁ ଚାହେଁ ନାହିଁ ?

ଇସ୍ ! ଭଲ ପାଇବାଟା ପ୍ରକୃତରେ ଅନ୍ଧ । କି ଭୁଲ ନ କରିଛି ସେ ! ନିଜର ପ୍ରେମର ଜୁଆରରେ ଭାସିଯାଇ କବିତା ସୁଦ୍ଧା ଲେଖି ପଠାଇ ଦେଇଛି ସ୍ୱରୂପା ପାଖକୁ ! ସ୍ୱରୂପା ତା'କୁ ଭଲ ପାଉଛି କି ନାହିଁ ସେ କଥା ନ ଜାଣି କି ମୂର୍ଖାମି କରି ଦେଇଛି ସେ !

ନିଶ୍ଚୟ ସେଥିପାଇଁ ସ୍ୱରୂପା ଆହୁରି ଅଧିକ ବିରକ୍ତ ହୋଇଯାଇଛି ।

ସେଥିପାଇଁ ସେ ବଡ଼ମା'ଙ୍କ ଚିଠିର ଉତ୍ତର ଦେଇନାହିଁ । ତା ଚିଠିର ଉତ୍ତର ଦେବା ତ ଦୂରର କଥା ।

ଛିଃ, ଛିଃ, ଛିଃ ଏ କ'ଣ କଲା ସେ ! ନିଜ ପ୍ରତି ଧିକ୍କାରରେ ମନଟା ତିକ୍ତ ହୋଇଗଲା ।

କିନ୍ତୁ ସ୍ୱରୂପା ଛଡ଼ା ଏ ଜୀବନରେ ସେ ତ ଅନ୍ୟ କାହାକୁ ଆଉ ଭଲପାଇ ପାରିବନି !

ଅସହାୟ ଭାବରେ ନୀଳମଣିଙ୍କ ଆଡ଼େ ଚାହିଁଲାକ୍ଷଣି ସେ ଦେଖିଲା ଜନନୀର ଆରାମଦାୟକ କୋଳରେ ଛୋଟ ଶିଶୁଟିଏ ଶୋଇ ଯାଇଥିଲା ପରି ଗଭୀର ନିଦ୍ରାରେ ଶୋଇ ଯାଇଛନ୍ତି ସେ ।

ଧୀର ପଦକ୍ଷେପରେ ତାଙ୍କ ପାଖରୁ ଉଠି ଆସି ସୁନନ୍ଦାଙ୍କୁ ବିଦାୟ ଜଣାଇ ବାହାରି ଆସିଲା ସେ ।

ଆଶ୍ଚର୍ଯ୍ୟ ! ତା ପରଦିନ ହିଁ ସୌମ୍ୟ ପାଖରେ ଆସି ପହଞ୍ଚିଲା ସ୍ୱରୂପାର ଚିଠି । ନୀଳବର୍ଣ୍ଣ ଅନ୍ତର୍ଦେଶୀୟ ପତ୍ରର ଛାତିରେ କେବଳ ଲେଖା ହୋଇଥିଲା ଗୋଟିଏ ଧାଡ଼ି !

ସୌମ୍ୟ,

ମୋତେ ଟିକିଏ ଭାବିବାକୁ ସମୟ ଦିଅ ।

ସ୍ୱରୂପା

ପତ୍ରଟାର ସେହି ବିରାଟ ଶୂନ୍ୟତା ଆଡ଼କୁ ଅନେକ ସମୟ ପର୍ଯ୍ୟନ୍ତ ସ୍ତବ୍ଧ ନେତ୍ରରେ ଚାହିଁ ରହିଲା ସୌମ୍ୟ ।

ସ୍ୱରୂପା ସମୟ ଚାହିଁଛି ଭାବିବାକୁ !

ଆଶା ଆଉ ଆଶଙ୍କା ମିଶ୍ରିତ ବ୍ୟାକୁଳ ଦୃଷ୍ଟି ମେଲି ମଧୁଛନ୍ଦା ଚାହିଁଲା ମନୋଜର ମୁହଁକୁ । ତା ହାତ ଉପରେ ହାତ ରଖି କହିଲା—ମନୋଜ, ପ୍ଲିଜ୍, ଆଉ ସମୟ ଚାହଁ ନାହିଁ ଭାବିବାକୁ । ସମୟ ଆଉ ନାହିଁ । ତିଥି ସ୍ଥିର ହୋଇ ଗଲାଣି, ତାରିଖ ଠିକ୍ ହୋଇ ଗଲାଣି । ଆସନ୍ତା ମେ ମାସର ଦୁଇ ତାରିଖ । ତେଣୁ ଆମର ଆଉ ଡେରି କରିବା ଉଚିତ ନୁହେଁ—

ଅନେକ ଦିନ ଚାଲି ଗଲାଣି ଯା ଭିତରେ, ମଧୁଛନ୍ଦାକୁ ଆଡ଼େଇ ଆଡ଼େଇ ଚାଲିଛି ମନୋଜ । ଆଜି ଏତେ ଦିନ ପରେ ତାକୁ ସାଙ୍ଗରେ ନେଇ ଏ ସ୍ଥାନକୁ ଆସିବା ସମ୍ଭବପର ହୋଇଛି ।

ମଧୁଛନ୍ଦାର ଆକୁଳ ଦୃଷ୍ଟି ଆଗରୁ ମୁହଁ ଫେରାଇ ନେଲା ମନୋଜ । କ୍ଲିଷ୍ଟ କଣ୍ଠରେ କହିଲା—କିନ୍ତୁ କି ଉପାୟ କରିବା କହ ?

—ମୁଁ କହିବି ?

—ମତେ ତ କିଛି ବୁଦ୍ଧି ବାଟ ଦିଶୁନି ଛନ୍ଦା ।

ଉତ୍‌କ୍ଷିପ୍ତ ହୋଇଯାଇ ମଧୁଛନ୍ଦା କହିଲା—ମତେ ବେଶି ରଗାଅନି କହୁଛି ମନୋଜ, ଯାହାହେଲେ ଗୋଟାଏ ଉତ୍ତର ତମକୁ ଦେବାକୁ ପଡ଼ିବ ଆଜି ।

ତାକୁ ଆଦର କରି ମନୋଜ କହିଲା—ମଧୁଛନ୍ଦା ପ୍ଲିଜ୍ ।

—ନା ମୁଁ ଶୁଣିବିନି । ତମେ ଯାହା କିଛି ଗୋଟାଏ ଉତ୍ତର ଦିଅ । ମନୋଜ ଟିକିଏ ଭାବିଲା, ତାପରେ କହିଲା—ଶୁଣ, ଆଚ୍ଛା...ମଧୁଛନ୍ଦାର ଉଦ୍‌ଗ୍ରୀବ ଚାହାଁଣିରେ ଆଶାର ଜ୍ୟୋତି ଝଲସି ଉଠିଲା । ମନୋଜର ହାତକୁ ଆଗ୍ରହରେ ମୁଠାଇ ଧରିଲା ସେ ।

ଢୋକ ଗିଳି କହିଲା ମନୋଜ—ଆଚ୍ଛା, ଚାଲ ଆମେ ଦି'ଜଣ କୁଆଡ଼େ କେଉଁ ଦୂର ଜାଗାକୁ ଚାଲିଯିବା । ପରୀକ୍ଷା ଆମର ଯାଇ ଅଗଷ୍ଟ ମାସରେ ହେବ, ତେଣୁ ସେଥିପାଇଁ କିଛି ଚିନ୍ତା ନାହିଁ । ମଧୁଛନ୍ଦା ବିସ୍ମିତ ହୋଇ ପଚାରିଲା—କୋଉ ଦୂର ଜାଗାକୁ ଚାଲିଯିବା ? କୁଆଡ଼େ ଯିବା ?

—ଧର ନେପାଳକୁ । ସୁନ୍ଦର ରମଣୀୟ ଜାଗା, ଏନ୍‌ଜୟ କରି ହେବ ।

—କିନ୍ତୁ ଆମର ପରିଚୟ କ'ଣ ହେବ ?

—ପରିଚୟ ? ପରିଚୟ କ'ଣ ? ବୁଝିପାରୁନି ମୁଁ ।

—ମାନେ ଆମେ ସ୍ୱାମୀ-ସ୍ତ୍ରୀ ବୋଲି ନିଜର ପରିଚୟ ଦେବା ତ ?

—ହାଓ ରିଡ଼ିକ୍ୟୁଲସ୍ । କାହିଁକି ? ଦରକାର କ'ଣ ? ଆମର ପରିଚୟ ହେବ—ଦୁଇ ଜଣ ବନ୍ଧୁ...ଦୁଇ ଜଣ ସହପାଠୀ...

—ଖାଲି ଦୁଇ ଜଣ ବନ୍ଧୁ ବୋଲି ପରିଚୟ ଦେଲେ ଚଳିବନି ମନୋଜ...ବାହାର ଦୁନିଆ ଦାବି କରିବ ଗୋଟାଏ ନିର୍ଦ୍ଦିଷ୍ଟ ପରିଚୟ ।

—ସେ କଥା ପରେ ଚିନ୍ତା କରାଯିବ । ତମେ ଥୋଡ଼ାଏ ଟଙ୍କା ଓ ମୁଁ ଥୋଡ଼ାଏ ଟଙ୍କା ନେଇଯିବା । ଏକାସଙ୍ଗେ ବାହାରିବା ନାହିଁ ଏ ଜାଗାରୁ । ଅଲଗା ଅଲଗା ଯାଇ ନିର୍ଦ୍ଦିଷ୍ଟ ଗୋଟାଏ କେଉଁ ପ୍ଲେସ୍‌ରେ ମିଳିତ ହେବା, ତାପରେ—

ବାଧାଦେଇ ଅସହିଷ୍ଣୁ ଭାବରେ କହିଲା ମଧୁଛନ୍ଦା—ତମେ କି ଅଜ୍ଞ ମନୋଜ ! ପିଲାଙ୍କ ପରି କଥା କହୁଛ ? ତମ ବାପା ମା' ଆଉ ମୋ ବାପା ମା' ବାହାର ଦୁନିଆକୁ ମୁହଁ ଦେଖାଇବେ କିପରି ? ସତ କଥା କେବେ ଲୁଚି ରହିବନି । ଗୃହ ତ୍ୟାଗ କରି ଯିବାର କୁତ୍ସିତ ପରାମର୍ଶ ତମେ ମତେ ଦିଅନି, ଆଇ ହେଟ୍ ଦାଟ୍ । ଅଲ୍‌ରେଡ଼ି କେଉଁ ରସାତଳକୁ ଖସିଗଲିଣି ମୁଁ ।

ହଠାତ୍ ମନୋଜର ଦୁଇ ହାତକୁ ଧରି ପକାଇଲା ମଧୁଛନ୍ଦା । ବ୍ୟାକୁଳ କଣ୍ଠରେ କହିଲା–ସିନେମାର କାହାଣୀ ଭଳି ଜୀବନଟାକୁ ମୋର ନଷ୍ଟ କରି ଦିଅନି ତମେ । ଧର୍ମପତ୍ନୀର ସମ୍ମାନ ଦିଅ...ମତେ ବାହା ହୁଅ । ବାହାର ଦୁନିଆ ଆଗରେ ମୁଁ ଗର୍ବରେ ମୁଣ୍ଡ ଟେକି ଠିଆ ହୋଇ ତମର ବିବାହିତା ସ୍ତ୍ରୀ ବୋଲି ଯେପରି ପରିଚୟ ଦେଇ ପାରିବି, ସେହି ବ୍ୟବସ୍ଥା କର ।

ଏଥର ମନୋଜ ଟିକିଏ ବିରକ୍ତ ହେଲା, ବିରକ୍ତିଭରା କଣ୍ଠରେ କହିଲା–ଏଇଟା ତମର ଗୋଟିଏ ଜିଦ୍ ଖାଲି ମଧୁଛନ୍ଦା ! ସେ କଥା ଅସମ୍ଭବ । ମୋ ବାପାଙ୍କୁ ତମେ ଜାଣିନାହଁ । He will shoot me, he will kill me, ଏମିତି ଭୀଷଣ ସେ ।

–କ'ଣ ହେଲା ? ତମେ ଏତେ ଡରୁଛ ତାଙ୍କୁ ?

–ସେ ଭାରି କଡ଼ା ଲୋକ ।

–ଆଚ୍ଛା, ତମ ବାପାଙ୍କୁ ଯଦି ତମେ ଏତେ ଡରୁଛ ତା' ହେଲେ ଚାଲ ମୋ ସହିତ ଆମ ଘରକୁ । ମୋ'ର ବିଶ୍ୱାସ ବଡ଼ମା'ଙ୍କୁ ପରିଷ୍କାର କରି ସବୁ କଥା କହିଲେ ସେ ଯାହାହେଲେ କିଛି ବ୍ୟବସ୍ଥା କରି ଆମ ବାହାଘରଟା କରାଇ ଦେଇ ପାରିବେ । ସେ ସେକାଳର ମଣିଷ ସତ, ଆମ ପରିବାର ଅତି ରକ୍ଷଣଶୀଳ, ତେବେକେ ଆମ ପରିବାରର ସମସ୍ତଙ୍କଠି ଯଥେଷ୍ଟ ଉଦାରତା ମଧ୍ୟ ରହିଛି । ବଡ଼ମା'ଙ୍କ ବିଚାର ଉପରେ ମୋର ଆସ୍ଥା ରହିଛି, ମୋ ବାପାଙ୍କୁ ବୁଝାଇବା ଦାୟିତ୍ୱ ସେ ନେବେ ।

–ସାଙ୍ଗେ ସାଙ୍ଗେ ବାହା ହେବାର ଏ ପ୍ରବଳ ନିଶା ତମକୁ କିପରି ଘାରିଲା ଛନ୍ଦା ? ଯେତେକ ସବୁ ପ୍ରିମିଟିଭ୍ ଆଇଡ଼ିଆ ମୁଣ୍ଡ ଭିତରେ ଭର୍ତ୍ତି କରି ତମେ ଦାବି କରୁଛ ତମେ ଏକାଳର ଝିଅ ? ଘର ଛାଡ଼ି ପାଦଟିଏ ସ୍ୱାଧୀନ ଭାବରେ ଚାଲିବାର ସାହସ ତମର ନାହିଁ । ଅଥଚ ତମେ ନିଜକୁ ଜଣେ ବିପ୍ଳବିଣୀ ବୋଲି ଭାବୁଥିଲ !–ପ୍ରଥମରୁ ତମର ଉଚିତ ଥିଲା ସେହିପରି ରକ୍ଷଣଶୀଳ ମନୋବୃତ୍ତି ନେଇ ସେହି ପୁରୁଣା ବାଟରେ ପାଦ ରଖିବା । ଏ ଭୁଲ କଲ କାହିଁକି ଯେ ?

ମନୋଜର କଥା ଶୁଣି ତା ହାତ ଦୁଇଟି ଛାଡ଼ିଦେଇ ଏଥର ସିଧା ସଳଖ ତା ମୁହଁକୁ ଚାହିଁଲା ମଧୁଛନ୍ଦା; ମନ ଭିତରେ କ୍ରୋଧକୁ ଆଉ ଯେପରି ଅଟକାଇ ରଖି ପାରୁନି ସେ । ତା'ପରେ ଖୋଲାଖୋଲି କହିଲା ମଧୁ–ମୋର ପ୍ରେମ ସ୍ୱେଚ୍ଛାଚାର ନୁହେଁ ମନୋଜ, ତେଣୁ ବିବାହ ରୂପକ ଗୌରବମୟ ନିରାପତ୍ତାର ଚୁକ୍ତି ଭିତରେ ହିଁ ମୁଁ ତାକୁ ସୁରକ୍ଷିତ କରି ରଖିବାକୁ ଚାହେଁ । ତମ ମନର ଦ୍ୱନ୍ଦ୍ୱ ତମ ପ୍ରତି ଥିବା ମୋର ବିଶ୍ୱାସକୁ ଦୋହଲାଇ ଦେଉଛି । କିଏ ଜାଣିଛି ଭବିଷ୍ୟତ୍‌ରେ ମଧ୍ୟ ତମେ ମତେ ବାହା ହେବାକୁ ଦ୍ୱିଧା ନ କରିବ ?

ହଠାତ୍ କହି ପକାଇଲା ମନୋଜ–ତମେ ମତେ ମୁକ୍ତି ଦିଅ ଛନ୍ଦା ! ଶଚୀନ୍ଦ୍ର ବାବୁଙ୍କୁ ବାହା ହୋଇପଡ଼, ତା'ହେଲେ ଗୋଟାଏ ସୁଖସମୃଦ୍ଧି ଭରା ନିରାପଦ ଆଶ୍ରୟ ଭିତରେ ଜୀବନଟା ମହା ଆନନ୍ଦରେ କଟାଇ ଦେଇ ପାରିବ ।

ଏଥର ଆହତ ସର୍ପିଣୀ ପରି କ୍ରୁଦ୍ଧ ଭାବରେ ଚିତ୍କାର କରି ଉଠିଲା ମଧୁଛନ୍ଦା—ଏଇୟା କ'ଣ ତେବେ ପ୍ରକୃତରେ ତମ ମନ ଭିତରର କଥା ? ନା ମତେ ଉପହାସ କରୁଛ ମନୋଜ ?

—ଉପହାସ ନୁହେଁ । କିନ୍ତୁ ବର୍ତ୍ତମାନ୍ ତମକୁ ବାହା ହେବା ମୋ ପକ୍ଷରେ ଏକାବେଳେକେ ଅସମ୍ଭବ । ଏତେ ଶୀଘ୍ର ମୁଁ ବିବାହର ଗୁରୁଦାୟିତ୍ୱ ବୋହିବାକୁ ଚାହେଁନା ।

ମଧୁଛନ୍ଦାର ଚାହାଁଣି ଉଗ୍ର ଦିଶୁଥିଲା କିନ୍ତୁ ଏବେ ଭୟଙ୍କର ଜଣାଗଲା । ସେ ଜ୍ୱାଳାଭରା କଣ୍ଠରେ କହିଲା—ଏଇଟା କ'ଣ ତା ହେଲେ ତମର ଶେଷ କଥା ?

—ମୁଁ ନିରୁପାୟ ଛନ୍ଦା, ତମେ ମତେ କ୍ଷମାକର ।

—ଆଚ୍ଛା, ବାଏ, ବାଏ, ଗୁଡ୍ ଲକ୍ ଟୁ ୟୁ ।

ଉଠିପଡ଼ି ଦ୍ରୁତ ପାଦରେ ଚାଲି ଯିବାକୁ ବସିଲା ମଧୁଛନ୍ଦା ।

ମନୋଜ ଦଉଡ଼ି ଯାଇ ତା ହାତ ଧରି ପକାଇଲା, କହିଲା—କୁଆଡ଼େ ଯାଉଛ ଛନ୍ଦା ? ସେ ବାଟେ କୁଆଡ଼େ ଯିବ ? ଆମକୁ ତ ଏପଟେ ଯାଇ ଡଙ୍ଗାରେ ପାରି ହବାକୁ ପଡ଼ିବ !

—ନାଇଁ, ମୁଁ ପାଦରେ ଚାଲି ଚାଲି ଫେରିବି !

—କ'ଣ ପୋଲ ବାଟେ ? ଗୁଡ଼ାଏ ବାଟ ପଡ଼ିଯିବ ଯେ ! ଟିକକ ପରେ ସନ୍ଧ୍ୟା ହେଇଯିବ । ପୋଲ ଉପରେ ବହୁତ ଗହଳ, ତମେ ଘରେ ଯାଇ ପହଞ୍ଚିଲା ବେଳକୁ ରାତି ସାତଟା ହୋଇଯିବ ।

—ହେଉ, ମୁଁ ତ ଆଉ ସତୀ ନାରୀଟିଏ ହେଇନି ଯେ ମତେ ଡର ଲାଗିବ ?

ଅଦ୍ଭୁତ ପ୍ରକାର ଗୋଟାଏ ହସ ହସିଲା ମଧୁଛନ୍ଦା । ସେ ହସର ଆଘାତରେ ଯେପରି ମନକୁ ମନ ଶିଥିଳ ହୋଇଗଲା ମନୋଜର ହାତ ମୁଠା । ଓଃ, କି ତୀବ୍ର ଚାହାଁଣି ସତେ ମଧୁଛନ୍ଦାର ଆଖି ଦୁଇଟାରେ ! ତା'ର ପଦ୍ମ ପଳାଶ ସଦୃଶ ସୁନ୍ଦର ସ୍ୱପ୍ନାତୁର ଆଖି ଦୁଇଟାରେ କେଉଁଠି ଲୁଚି ରହିଥିଲା ଏ ଦାବାଗ୍ନି । ଏ ଆଗ୍ନେୟ ଶିଖା ! ଆଖି ଡ଼ୋଳା ସତେ ଯେପରି ଦପ୍ ଦପ୍ ହୋଇ ଜଳୁଛି-ଝଲସୁଛି । ଶାଣିତ ତରବାରୀ ଝଲସିଲା ପରି ।

କାପୁରୁଷ ମନୋଜ ଥରେ ହେଲେ ଭାବିଲା ନାହିଁ ଯେ, ସେ ନିଆଁ ହତାଶାର ନିଆଁ, ତୀବ୍ର ଅସହାୟତାର ନିଷ୍ଫଳ ଆକ୍ରୋଶ ମାତ୍ର । ଗୋଟାଏ ଆବଦ୍ଧ ବ୍ୟାଘ୍ରୀର ଜଳନ୍ତା ଦୃଷ୍ଟି ପରି, ଚତୁର କେଳାର ଦୃଢ଼ କଠୋର ହାତ ମୁଠାରେ ନିଷ୍ପେଷିତ ଫୁତ୍କାର କରୁଥିବା ସର୍ପିଣୀ ପରି । ମନୋଜ ଭାବିଲା—ଯେଉଁ ସୁନ୍ଦର, ଅତି ସୁନ୍ଦର ଆଖି ଦୁଇଟାରେ ନିଜର ଦୃଷ୍ଟି ନିବଦ୍ଧ କରି ଘଣ୍ଟା ଘଣ୍ଟା ଚାହିଁ ରହୁଥିଲା ସେ, ଯେଉଁ ଦୁଇଟିର ରହସ୍ୟମୟ ଗଭୀରତା ଭିତରେ ଅନୁସନ୍ଧାନ କରିଥିଲା ଓମର ଖୈୟାମ୍‌ଙ୍କ 'ସାକୀ'କୁ, ଅବସ୍ଥାର ପରିପାକରେ ପଡ଼ି ଆଜି ଏ ମୁହୂର୍ତ୍ତରେ ସେ ଦୃଷ୍ଟିକୁ ତା'ର ମନେହେଲା ନାଗୁଣୀ ବା ବାଘୁଣୀର ଚାହାଁଣି ପରି—ଝିଅ ଗୁଡ଼ାକ ସତରେ ବାଘୁଣୀ ତ ! କୌଣସିମତେ ଶୀକାରକୁ ନିଜ କବଳରେ ପକାଇ ଗ୍ରାସ କରିବାର ଗୋଟାଏ ଜନ୍ମଗତ ପ୍ରବୃତ୍ତି

ଧରି ଜନ୍ମ ହୋଇଥାନ୍ତି ! ବର୍ତ୍ତମାନ ଶୀକାର ହାତରୁ ଖସି ଯାଉଛି ଦେଖି ସେହି ମନୋଜ୍ଞ ମୋହମୟୀ ମଧୁଛନ୍ଦା କିପରି ହିଂସ୍ର ହୋଇ ପଡୁଛି... ।

ତଥାପି ସେ କହିଲା—ଚାଲ ତେବେ, ମୁଁ ଯାଉଛି ତମ ସହିତ ।

ଏଥର ହୋ ହୋ ହୋଇ ହସି ଉଠିଲା ମଧୁଛନ୍ଦା । ସେହି ନିର୍ଜ୍ଜନ ଫଳ ବଗିଚାଟିକୁ ଚମକାଇ ଦେଲା । କହିଲା—ତମେ ଯିବ ମୋ ସାଙ୍ଗରେ ? ଲୋକେ ଦେଖିବେନି ? ତମର ବାପା ଜାଣିବେନି ? କିଛି ଦରକାର ନାହିଁ ମନୋଜ, ଆଜିଠୁ ମୁଁ ଏକା, ସମ୍ପୂର୍ଣ୍ଣ ଏକା—

ସତରେ ଉନ୍ମାଦିନୀ ପରି ହିଁ ସେ ଦଉଡ଼ିବାକୁ ଲାଗିଲା ।

ମନୋଜର ଇଚ୍ଛାହେଲା—ସେ ନିଜେ ଦଉଡ଼ିଯାଇ ତାକୁ ଅଟକାଇ ଦିଅନ୍ତା । ତା'ପରେ ଭାବିଲା—ଥାଉ । ଆଜିଠୁ ତ ସମ୍ପର୍କ ତୁଟିଲା ମଧୁଛନ୍ଦା ସହିତ । ସେ କେବଳ ତା'ର ଯୌବନର ଏକ ସ୍ମୃତି ହୋଇ ହିଁ ରହିବ । ଚାରିବର୍ଷ ତଳେ-ସେ ଦାର୍ଜିଲିଙ୍ଗ୍‌ରେ ଥିଲାବେଳେ ଶୁକ୍ଳା ମୁଖାର୍ଜୀ ଯେପରି ତା'ର ଗୋଟାଏ ସ୍ମୃତି ହୋଇ ଯାଇଥିଲା । ମୁଖାର୍ଜୀ କିନ୍ତୁ ମଧୁଛନ୍ଦା ପରି ଏଭଳି ସେଣ୍ଟିମେଣ୍ଟାଲ ନଥିଲା; ସମସ୍ତ ପ୍ରକାର ବିବର୍ତ୍ତନକୁ ସ୍ୱଚ୍ଛନ୍ଦ ଭାବରେ ଗ୍ରହଣ କରିନେବାର ଆଶ୍ଚର୍ଯ୍ୟ କ୍ଷମତା ଥିଲା ଝିଅଟାର ! ସେ ବି ଥିଲା ଖୁବ୍ ସୁନ୍ଦରୀ, ମନୋହାରିଣୀ, ଲୀଳାମୟୀ । ଦାର୍ଜିଲିଙ୍ଗରୁ ମନୋଜର ବନ୍ଧୁ ଅସୀତ । ଚିଠି ଦେଇଥିଲା—ଶୁକ୍ଳା ଏବେ କୁଆଡ଼େ ଷ୍ଟେଟ୍‌ରେ ଗୋଟାଏ କୋଉ ଏମ୍ବାସିରେ କାମ ପାଇ ଯାଇଛି ।

## (୧୫)

ଚାରିଟା ବାଜି ଗଲାଣି, ତଥାପି କାହିଁକି ଖରା ଆହୁରି ମଉଳି ନାହିଁ । ମଧ୍ୟାହ୍ନର ପ୍ରଖରତା କମି ଯାଇଥିଲେ ବି ବେଶ୍ କାଟୁଛି ଦେହକୁ ।

ରୂପମତୀ ନଦୀର ସେପାରିରେ ବିସ୍ତୃତ ଚାଷ ଜମି—ଚାହିଁଲେ ଆଖି ପାଉନାହିଁ । ମଝିରେ ମଝିରେ ନଦୀର କୂଳକୁ ଲାଗି ବିଭିନ୍ନ ପ୍ରକାରର ଫଳ ବଗିଚା ରହିଛି । ବଗିଚା ଭିତରେ ରହିଥିବାଯାଏ ସୂର୍ଯ୍ୟର ତାପ ଜାଣିହୁଏ ନାହିଁ, କିନ୍ତୁ କର୍ମଭୂମି ହେଉଛି ସେହି ଶୁଖିଲା ପ୍ରାନ୍ତର । ଧାନ ଗଛ କଟା ହେଲା ପରେ ମୂଳ ଗୁଡ଼ିକ ମୁଣ୍ଡା ମୁଣ୍ଡା ହୋଇ ପୋତି ହୋଇ ରହିଛି । ଅସମତଳ କ୍ଷେତ୍ରଭୂମି । ପ୍ରଚଣ୍ଡ ଖରା ଧାସରେ ହିଡ଼ ଉପରେ ଥିବା ଘାସ ଗୁଡ଼ାକ ମଧ ଶୁଖିଯାଇ ନିଜର

ଅସ୍ତିତ୍ୱ ହରାଇ ଦେଲେଣି । ଏ ବର୍ଷ ଏ ପର୍ଯ୍ୟନ୍ତ ବର୍ଷାର ଦେଖା ନାହିଁ; ତେଣୁ ହଳ ବୁଲି ପାରିନି ଜମିରେ । କେଜାଣି ଅକ୍ଷୟ ତୃତୀୟା ଆଗରୁ ବର୍ଷାଟେ ହେଲେ ଅଖିମୁଠି ପଡ଼ିବ ଟିକିଏ ସୁବିଧାରେ ।

ହଳ ବୁଲି ନାହିଁ, କର୍ଷଣ ହୋଇ ନାହିଁ । ତେଣୁ ଧାନଗଛର ରୂକ୍ଷ ମୂଳ ଗୁଡ଼ାକ ସେମିତି ବିବର୍ଣ୍ଣ ହୋଇ ରହି ଯାଇଛି, ଲେଉଟି ଯାଇ ପାରିନାହିଁ ।

ଏଣେ ବନ୍ଦୋବସ୍ତ କାମ ଚାଲିଛି, ଚକବନ୍ଦୀ ହେବ । ଏହି ସମୟଟା ପ୍ରକୃଷ୍ଟ ସମୟ ଜମି ମାପଚୁପ ପାଇଁ । କାରଣ ଫସଲ ବିହୀନ ଶୂନ୍ୟ ଜମିଗୁଡ଼ାକ ଉପରେ ସ୍ୱଚ୍ଛନ୍ଦ ଭାବରେ ଲୁହା ଶିକୁଳି ପକାଇ ମାପ କରି ହେବ, ବୁଲଚାଲ କରି ହେବ । ଖାଲି ଅସୁବିଧା କରୁଛି ଏହି ସୂର୍ଯ୍ୟ ତାପ ।

ଶଚୀନ୍ଦ୍ର ଓ ଜଣେ ଦୁଇ ଜଣଙ୍କ ଛଡ଼ା ଉଣା ଅଧିକେ ସମସ୍ତଙ୍କ ମୁଣ୍ଡ ଉପରେ ଖଣ୍ଡେ ଖଣ୍ଡେ ଓଦା ଗାମୁଛା ପଡ଼ିଛି ।

ପକେଟରୁ ରୁମାଲଟା ବାହାର କରି ଖରା ଧାସରେ ଝାଳ ସରସର ହୋଇ ନାଲି ପଡ଼ିଯାଇଥିବା ମୁହଁଟାକୁ ପୋଛି ଥିଲା ଶଚୀନ୍ଦ୍ର ।

ସାହେବୀ ପୋଷାକରେ ସେ ଜଣେ ବିଦେଶୀ ଭଳି ହିଁ ଦିଶୁଛି । ଆପେ ଆପେ ତା ଦୃଷ୍ଟି ଟାଣି ହୋଇଗଲା—ରୂପମତୀ ନଦୀର ଆର ପାରିକୁ, ହେଇଟି ଦିଶୁଛି ଜମିଦାର ଚୌଧୁରୀ ଶ୍ରୀ ନାରାୟଣ ଦାଶଙ୍କର ଆକାଶଚୁମ୍ବୀ ବିରାଟ ପ୍ରାସାଦ ।

ଶଚୀନ୍ଦ୍ରର ମୁହଁର ଅରୁଣିମା ଯେପରି ଆହୁରି ନିବିଡ଼ ହୋଇଗଲା । ସକାଳୁ ଅନେକ ଥର ସେ ଏ ଘରଟି ଆଡ଼କୁ ଚାହିଁଲାଣି ସବୁ ଥର ନ ଚାହିଁବାର ପ୍ରତିଜ୍ଞା କରିଛି, କଲେ ସୁଦ୍ଧା ଦୃଷ୍ଟି ବଶ ମାନୁନାହିଁ, ଟାଣିହୋଇଯାଉଛି ମନକୁ ମନ...ସେମାନେ ନିଶ୍ଚୟ ଜାଣି ନାହାନ୍ତି ଯେ ସେ ଆସି ଏତେ ନିକଟରେ କାମ କରୁଛି । ବଡ଼ମା ଯଦି ଜାଣିଥାନ୍ତେ ନା ତା ହେଲେ ଲୋକ ପଠାଇ ଜବରଦସ୍ତି ତାକୁ ନେଇ ଯାଇଥାନ୍ତେ ସେଠି ଖିଆପିଆ କରିବା ପାଇଁ ।

ସେ ଘରକୁ ଅନେକ ଥର ଯାଇଛି ଶଚୀନ୍ଦ୍ର । ତେବେକେ ଆଜି ଯିବା କଥା ଭାବିଲାକ୍ଷଣି ଭୀଷଣ ଭାବରେ ଲାଜ ଲାଗୁଛି ତାକୁ । ସମସ୍ତେ ଭାବିବେ କ'ଣ ? ଛି, ଛି, ଆଉ ଅଳ୍ପଦିନ ରହିଲା ବାହାଘର । ସକାଳଠୁ ସତକୁ ସତ ମନଟାକୁ ଏକାଗ୍ର ଭାବରେ କାମ ତଦାରକରେ ଲଗାଇ ପାରୁନି ସେ । ସେହି ବିରାଟ ଘରଟା ଥରକୁ ଥର ତ ମନଟାକୁ ଟାଣି ନେଇଯାଉଛି ଯେପରି କେଉଁ ଅଦ୍ଭୁତ ମନ୍ତ୍ର ବଳରେ । ଅଦ୍ଭୁତ ଅଦ୍ଭୁତ ପରିକଳ୍ପନା ସବୁ ଉଦୟ ହୋଇ ଥରକୁ ଥର ଅନ୍ତରକୁ ପୁଲକିତ କରି ପକାଉଛି...ମନେକର...ମଧୁଛନ୍ଦା ତାଙ୍କ ପ୍ରାସାଦର ଛାତ ଉପରେ ଚଢ଼ି ଆଖିରେ ଗୋଟାଏ ଦୂରବୀକ୍ଷଣ ଯନ୍ତ୍ର ଲଗାଇ ଦେଖିଥାନ୍ତା—ସାଙ୍ଗେ ସାଙ୍ଗେ ଶଚୀନ୍ଦ୍ରକୁ ଚିହ୍ନି ପକାନ୍ତା ସେ । ତା'.ହେଲେ କ'ଣ ଲାଜରେ ଲାଲ ପଡ଼ିଯାଇ ତରବର ହୋଇ ଦଉଡ଼ି ଓହ୍ଲାଇ ଯାଇଥା'ନ୍ତା ସେ ଛାତରୁ ? ଆଃ, ସେ ନିଜେ ହେଲେ ଦୂରବୀକ୍ଷଣଟାକୁ ଆଣି ନଥାନ୍ତା ? କି ମଜା ହୋଇଥାନ୍ତା ସତରେ !

—ସାର୍, ଏଥର ଏଇ ଆର ପ୍ଲଟ୍‌ଟିକୁ ଯିବା ନା ?

ଆସିଷ୍ଟାଣ୍ଟ୍‌ଙ୍କ ପ୍ରଶ୍ନରେ ଅପ୍ରସ୍ତୁତ ହୋଇଯାଇ ସେ କହିଲା, ନମ୍ବରଟା କାହିଁ ? ଆଉ ଥରେ ଟିକେ ଦେଖାଅ ତ ।

—ଆଉ ଥରେ ଦେଖିବେ ?

ପ୍ରାଣପଣ ଚେଷ୍ଟାରେ ପବନ ପରି ଉଡ଼ି ଯାଉଥିବା ମନଟାକୁ ଧରି ଆଣି କର୍ମରେ ନିଯୁକ୍ତ କଲା ଶଚୀନ୍ଦ୍ର ।

...ଆଉ ଅଳ୍ପଦିନ ରହିଲା, ବହୁତ ଅଳ୍ପଦିନ । ତେବେବି ଲାଗୁଛି ଦିନଗୁଡ଼ାକ ଯେମିତି ସରୁନି ଚଞ୍ଚଳ ।

...ମନେକର...ଦଳେ କଲେଜ ଝିଅଙ୍କ ସାଙ୍ଗରେ ରୂପମତୀର ଏ ପାରିକୁ ଚାଲି ଆସିଛି ମଧୁଛନ୍ଦା । ଏମିତି ବୁଲିବାକୁ ନହେଲେ ପିକ୍‌ନିକ୍ କରିବାକୁ ଆଉ କ'ଣ, ହେତ୍....ଏ ପ୍ରବଳ ଖରାରେ କିଏ କ'ଣ ପିକ୍‌ନିକ୍ କରିବାକୁ ଆସିବେ ? ଯେତେସବୁ ଅସମ୍ଭବ ରକମର ପରିକଳ୍ପନା । ...ମନେକର ଆସିଥାନ୍ତା... ।

ଆଉ କୌତୂହଳ ମେଣ୍ଟାଇବାକୁ ଝିଅ ଦଳଟି ସେମାନଙ୍କ କାମ ଚାଲିଥିବା ଜାଗାଟିରେ ଆସି ହଠାତ୍ ପହଞ୍ଚି ଯାଆନ୍ତେ । ମଧୁଛନ୍ଦା ଥାଆନ୍ତା ଦଳର ଅଗ୍ରଣୀ... । ସେ ଆଉ ମଧୁଛନ୍ଦା ଦୁହେଁଯାକ ହଠାତ୍ ମୁହାଁମୁହିଁ ହୋଇ ଯାଆନ୍ତେ । ତା ମୁହଁରୁ ନିଶ୍ଚୟ ବାହାରି ଯାଆନ୍ତା...ଆରେ ! ମଧୁଛନ୍ଦା ତମେ !

ମଧୁଛନ୍ଦା କ'ଣ କହନ୍ତା ? ମୁହୂର୍ତ୍ତେ ଅବାକ୍ ହୋଇଗଲା ପରେ ମୁହଁଟାକୁ ଅଳତା ପରି ନାଲି କରିଦେଇ ସେ କହି ଥାଆନ୍ତା...କ'ଣ କହିଥାନ୍ତା ? କିଛି କହିପାରି ନଥା'ନ୍ତା ବୋଧହୁଏ ! ମୁହଁ ପୋତି ଠିଆ ହୋଇ ପଡ଼ନ୍ତା । କି ଅପ୍ରସ୍ତୁତ ଅବସ୍ଥା ! ଏତେ ଲୋକଙ୍କ ସାମନାରେ ! ...କିନ୍ତୁ କି ଆନନ୍ଦ ଲାଗିଥାନ୍ତା ଶଚୀନ୍ଦ୍ରକୁ । ଆଉ ଅଳ୍ପଦିନ ପରେ ମଧୁଛନ୍ଦା ତା'ର ନବବଧୂ ହୋଇ ଆସିବ କିନ୍ତୁ ତାକୁ ସେ ପର୍ଯ୍ୟନ୍ତ ନ ଦେଖି ପ୍ରତୀକ୍ଷା କରିବାଟା ବଡ଼ କଷ୍ଟକର ମନେ ହେଉଛି ସତରେ !

—ସାର୍ !

—ଓଃ, ହଁ, ଆଉଥରେ ଚେନ୍‌ଟା ଧରିଲ ଦେଖି...

...ଅବଶ୍ୟ ସେ ପୂର୍ବରୁ କେତେଥର ମଧୁଛନ୍ଦାକୁ ଦେଖିଛି । କିନ୍ତୁ ସେ ଦେଖିବା ଆଉ ଏ ଦେଖିବା ଭିତରେ ଯେ ବହୁତ ପ୍ରଭେଦ ରହିଛି । ସେ ଥିଲା ସୁଜାତା ନାନୀଙ୍କ ଝିଆରୀ ମଧୁଛନ୍ଦା, ଆଉ ଏ ହେଉଛି ତା'ର ବାଗ୍‌ଦତ୍ତା ଭାବୀ ବଧୂ । ବିବାହ ପ୍ରସ୍ତାବଟା ହିଁ ଗୋଟାଏ ମନ୍ତ୍ର ଭଳି କାମ କରିଛି । ସେହି ଦିନଠାରୁ ମଧୁଛନ୍ଦାକୁ କେତେ ଭଲ ପାଇଛି ସେ ! ସେ ତା'ର ପ୍ରାଣର ପ୍ରତିମା ହୋଇଛି, ହୃଦୟର ଅଧିଷ୍ଠାତ୍ରୀ ମଧୁଛନ୍ଦା ହୋଇଛି ।

ମଧୁଛନ୍ଦା ସୌନ୍ଦର୍ଯ୍ୟର ରାଣୀ ! ସାଙ୍ଗସାଥୀମାନେ ଏ ପ୍ରସ୍ତାବ ଜାଣିଲା ପରେ ଶଚୀନ୍ଦ୍ରର ସୌଭାଗ୍ୟକୁ ଈର୍ଷା କରିବା ସଙ୍ଗେ ସଙ୍ଗେ ତାକୁ ଅଭିନନ୍ଦନ ଜଣାଇଛନ୍ତି ।

ମଧୁଛନ୍ଦାର କଣ୍ଠସ୍ୱର ମଧ କି ସୁନ୍ଦର, ଉତ୍ସବ ମାନଙ୍କରେ ସେ ଗାଇଲାବେଳେ ଶଚୀନ୍ଦ୍ର ଯାଇ ଶୁଣିଛି, ନାଚ ମଧ ଦେଖିଛି ।

ତା'ର ମଧୁଛନ୍ଦା ଏକାଧାରରେ ଏତେ ଗୁଡ଼ିଏ ଗୁଣର ଅଧିକାରିଣୀ ! ଆଉ ସେ ପରିବାରର ଆଭିଜାତ୍ୟ ବି କି ଗୌରବମୟ ! ସେହି ପରିବାରର ଝିଅକୁ ନିଜର ସ୍ତ୍ରୀ ରୂପେ ପାଇବା ପ୍ରକୃତରେ ଅତି ଭାଗ୍ୟର କଥା ।

ପୁଣି ସଚେତନ ହେଲା ଶଚୀନ୍ଦ୍ର, ଫେରି ଆସିଲା ନିଜର ଭାବନା ରାଜ୍ୟରୁ । କିଏ ଜଣେ କହୁଛି—ଓଃ, ଏଇ ଯୋ ଖରା, ଏଇ ଯୋ ଗରମ, ମଣିଷର ପ୍ରାଣ ଚାଲିଯିବ । ଏ ବର୍ଷ ନିଶ୍ଚୟ ମରୁଡ଼ି ଯୋଗ ଅଛି... ପାଳକ ପଡୁଛି ଶହେ ଦିନ ପରା । ଯୋଡା ଅଶିଣ, କ'ଣ ସହଜ କଥା ହେଇଛି ?

ହଁ, ଗତ ବର୍ଷ ତ ବର୍ଷା ନ ହେଇ ଖେତରେ ଗଜାମରୁଡ଼ି ହୋଇ ଯାଇଥିଲା, ବିଲ ଗୁଡ଼ାକ କେମିତି ଶୁଖି ଠୋ ଠୋ ହେଇ ରହିଛି ଦେଖୁନ ?

—ହେଇ, ଏପଟକୁ ଆସ । ବୈଶାଖ ଜ୍ୟେଷ୍ଠରେ ଆଉ ବିଲ ଶୁଖି ରହନ୍ତା ନାହିଁ ପରା ? ବଢ଼ିପାଣି ଖାଲି ଲହଡ଼ି ଭାଙ୍ଗୁଥାନ୍ତା ! ହେଇ ଚେନ୍‌ଟା ଏପଟକୁ ଆଣ ମ...ସାର୍...ଆପଣ ଏ କୋଣଟାକୁ ଆସି ଠିଆହେଲେ ସୁବିଧା ହେବ ।

ଶଚୀନ୍ଦ୍ର ମୁହଁ ଉଠାଇ ଚାହିଁଲା, ଆଉ ଠିକ୍ ସେତିକିବେଳେ...ହଁ ଠିକ୍ ସେତିକିବେଳେ ଦୂରରେ ସେ ଦେଖିଲା ମଧୁଛନ୍ଦାକୁ । କିନ୍ତୁ ଅତି ଦୂର ହୋଇଥିବାରୁ ଠିକ୍‌ରୂପେ ମଧୁଛନ୍ଦାକୁ ଚିହ୍ନି ପାରିଲା ନାହିଁ ସେ ।

ଉଦ୍‌ଭ୍ରାନ୍ତ ପରି ମଧୁଛନ୍ଦା ମାଡ଼ି ଆସୁଛି । ହିଡ଼ରେ ହିଡ଼ରେ ଆସୁନି, ବିଲ ମଝିରେ ଥିବା ପାଦଚଲା ରାସ୍ତାରେ ଆସୁନି । ଆବୁଡ଼ା ଖାବୁଡ଼ା ଅସମତଳ ଭୂମି ଉପରେ ପ୍ରତି ମୁହୂର୍ତ୍ତରେ ଝୁଣ୍ଟୁ ଝୁଣ୍ଟୁ ପାଗଳ ପରି ଚାଲି ଆସୁଛି ।

ଚାରିଟା ବେଳର ତାତିଲା ପବନରେ ଶାଢ଼ିର କାନି ଉଡୁଛି ଫର ଫର ହୋଇ । ଗୋଛାଏ ହେବ ଖୋଲା କଳା ବାଳ ଉଡ଼ି ଆସି ଆଖି ଓ ମୁହଁକୁ ଘୋଡ଼ାଇ ପକାଉଛି ଥରକୁ ଥର । କୌଣସି କଥାକୁ ତା'ର ଲକ୍ଷ୍ୟ ନାହିଁ ।

ଶଚୀନ୍ଦ୍ର ମନେ ମନେ ହସି ଭାବିଲା—ବର୍ତ୍ତମାନ ମୋର ସମଗ୍ର ଚିତ୍ତକୁ ଆଚ୍ଛନ୍ନ କରି ଦେଇଛି ମଧୁଛନ୍ଦା । ମୁଁ ଯେପରି ବିଶ୍ୱମୟ ଖାଲି ତାହାକୁ ହିଁ ଦେଖୁଛି । ଏ ସ୍ତ୍ରୀଲୋକଟାକୁ ବି ମୋର ମଧୁଛନ୍ଦା ବୋଲି ହିଁ ମନେ ହେଉଛି । କି ଲଜ୍ଜାର କଥା ।

ଅନ୍ୟ ଜଣେ ଝିଅ ଆଡ଼କୁ ଏହିପରି ଚାହିଁ ରହିବା ଅସୁନ୍ଦର ହେଉଛି ଉପଲବ୍ଧି କରି ସେ ଦୂରରୁ ଆସୁଥିବା ସେହି ଝିଅଟି ଆଡ଼ୁ ସାଙ୍ଗେ ସାଙ୍ଗେ ଦୃଷ୍ଟି ଫେରାଇ ଆଣିଲା ।

ମଧୁଛନ୍ଦା ମଧ ଯଦି ସ୍ୱାଭାବିକ ଅବସ୍ଥାରେ ଥାଆନ୍ତା, ତା'ହେଲେ ସେ ସେହି ଦୂରରୁ ହିଁ ନିଶ୍ଚୟ ଚିହ୍ନି ପାରିଥାନ୍ତା ଶଚୀନ୍ଦ୍ରକୁ । କିନ୍ତୁ ତା ମନ ସେତେବେଳକୁ ପ୍ରାୟ ଉନ୍ମାଦଗ୍ରସ୍ତ ରୋଗୀ ପରି । କ୍ରୋଧ, କ୍ରୋଧ, ପ୍ରବଳ କ୍ରୋଧରେ ଓ ଦାରୁଣ ହତାଶାରେ ଅନ୍ଧ ହୋଇ ଯାଇଛି ସେ । ବାହାର ଦୁନିଆର ପ୍ରାୟ କିଛି ଦେଖି ପାରୁ ନ ଥିଲା କହିଲେ ଚଳେ ।

ରୂକ୍ଷ ଧାନମୂଳ ଗୁଡ଼ିକର ଆଘାତରେ ତା'ର ମୂଲ୍ୟବାନ ଶାଢ଼ିର ଧଡ଼ି ଚିରି ଗଲାଣି । ସୌଖିନ୍ ଚଟି ହଳକର ଅବସ୍ଥା କରୁଣ ହୋଇ ଯାଇଛି, ଝୁଣ୍ଟି ଝୁଣ୍ଟି ଆଙ୍ଗୁଠି ଅଗ ଗୁଡ଼ିକରୁ ରକ୍ତ ବୋହୁଛି । ଆଶ୍ଚର୍ଯ୍ୟ ! ସେ କିଛିହେଲେ ଶାରୀରିକ ଯନ୍ତ୍ରଣା ଅନୁଭବ ମଧ କରି ପାରୁନାହିଁ !

ସେ ଭାବୁଛି...ମନୋଜ ତାକୁ ପ୍ରତ୍ୟାଖ୍ୟାନ କରିଛି, ଜଣେ ଅତି ଶସ୍ତା ଧରଣର ସ୍ତ୍ରୀଲୋକ ପରି ଅପମାନିତ କରିବାକୁ ସାହସ କରି ପାରିଛି । ଓଃ, ଚରମ ଦୁର୍ଗତିର ଅତଳ ତଳେ ବୁଡ଼ି ଯାଇଛି ସେ । କି କ୍ଳେଦକର, ଶୋଚନୀୟ ପରାଜୟ ଘଟିଲା ତା'ର ! ସେ ପ୍ରତିଶୋଧ ନେବ । ଏ ଅପମାନର ପ୍ରତିଶୋଧ ନେବ ନିଶ୍ଚୟ, ନିଶ୍ଚୟ, ନିଶ୍ଚୟ ।

ହଠାତ୍ ସେହି ନିଛାଟିଆ ବିଲ ମଝିରେ ଥୋଡ଼ାଏ ଲୋକଙ୍କୁ ଦୂରରୁ ଦେଖି ମୁହୂର୍ତ୍ତକ ପାଇଁ ସଚେତନ ହୋଇ ଆଶ୍ଚର୍ଯ୍ୟ ଓ ସ୍ତବ୍ଧ ଭାବରେ ଠିଆହୋଇ ପଡ଼ିଲା ମଧୁଛନ୍ଦା । ତା'ପରେ ବୁଝିପାରିଲା ସର୍ଭେ କାମ ଚାଲିଛି । ପର ମୁହୂର୍ତ୍ତରେ ବାଟ ଭାଙ୍ଗି ଅନ୍ୟ ଆଡ଼କୁ ମୁହାଁଇଲା । ସେ ଭାବିଲା—ଆରେ ! ପୋଲ ପାଖକୁ ଯିବା ରାସ୍ତାଟାକୁ ପୂରା ଛାଡ଼ିଦେଇ ଏ କୁଆଡ଼କୁ କେତେ ଦୂରକୁ ଚାଲି ଆସିଛି ସେ ! ଏତେବେଳେକୁ ଯାଇ ବୁଝିପାରିଲା ଯେମିତି ।

କିଛିକ୍ଷଣ ପରେ ମୁହଁ ଉଠାଇ ଦୂରରେ କ୍ରମବିଲୀୟମାନ ସେ ନାରୀ ମୂର୍ତ୍ତିଟିକୁ ଚାହିଁ ଶଚୀନ୍ଦ୍ର ଭାବିଲା—ଆହା, ୟେ ଯଦି ସତକୁ ସତ ମଧୁଛନ୍ଦା ହୋଇଥାନ୍ତା ନା ? କିନ୍ତୁ ଝିଅଟି କିଏ ? ଏ ନିର୍ଜନ ବିଲ ପ୍ରାନ୍ତରରେ ଏହିପରି ଅବେଳାରେ ଏକାକିନୀ ଝିଅଟି ଆସିଲା କୁଆଡ଼ୁ ? ପାଗଳିନୀଟେ ନା କ'ଣ ? ବେଶ୍ ଭଦ୍ରଘରର ଝିଅ ଭଳି ମନେ ହେଉଛି । କାନ୍ଧରେ ବେଗ୍‌ଟିଏ ଝୁଲୁଛି ।

ହେଲେ କୌଣସି ଭଦ୍ର ଝିଅ କ'ଣ ଏମିତି ଏତିକିବେଳେ ଏ ଧାନକ୍ଷେତ ଗୁଡ଼ାକ ମଝିରେ ଚାଲନ୍ତା ? ପୁଣି ନିର୍ଧୂମ୍ ଖରାଟାରେ ।

ଅତି ଆଶ୍ଚର୍ଯ୍ୟ କଥା ସତରେ !

ଆଶ୍ଚର୍ଯ୍ୟ ହୋଇ ସର୍ଭେକାରୀ ଦଳଟାଯାକ ମଧୁଛନ୍ଦାର ଗତି ପଥକୁ ଚାହିଁ ରହିଥିଲେ । ଶଚୀନ୍ଦ୍ରର ମନେ ହେଲା ଝିଅଟାର ଉଚ୍ଚତା ଓ ଗଢ଼ଣ ଟିକିଏ ମଧୁଛନ୍ଦା ପରି !

ପର ମୁହୂର୍ତ୍ତରେ ନିଜର ବୋକାମି କଥା ଭାବି ମନେ ମନେ ହସିଲା, ଭାବିଲା—କୁଆଡୁ ମଧୁଛନ୍ଦା ଆସିବ ଏଠାକୁ ? କାହିଁକି ବା ଆସିବ ? କ'ଣ ସତକୁ ସତ, ସେ ଚିନ୍ତା କଲାପରି କୋଠା ଉପରୁ ଦୂରବୀକ୍ଷଣରେ ଦେଖି ? ପୁଣି ଏମିତି ଏକୁଟିଆ ?

କି ଉଦ୍‌ଭଟ ଚିନ୍ତା !

କଥାରେ ଅଛି ଭଲ ପାଇଲେ ମଣିଷର ସାଧାରଣ ବୁଦ୍ଧିବୃତ୍ତି ନଷ୍ଟ ହୁଏ । ତା' ନିଜ ଅବସ୍ଥା ବର୍ତ୍ତମାନ ସେହିପରି ।

ଯେତେବେଳେ ମଧୁଛନ୍ଦା ବାହାଘର ପରେ ନବବଧୂ ସାଜି ଆସିବ, ଏ ଘଟଣାଟା କହିଲେ ବେଶ୍ ଆମୋଦ ଅନୁଭବ କରିବ ସେ ।

—ସାର୍, ଏ ପ୍ଲଟ୍‌ଟାର କାମ ସରିଲା, ଚାଲନ୍ତୁ ଆରଟା ଦେଖିବା ।

x x x

ଛିଣ୍ଡା ଚଟି ଓ କ୍ଷତ ବିକ୍ଷତ ରକ୍ତାକ୍ତ ପାଦରେ ଅବଶେଷରେ ମଧୁଛନ୍ଦା ଆସି ପହଞ୍ଚିଲା ବଡ଼ ସଡ଼କ ଉପରେ । ଦମ୍ ନେଲା ଟିକିଏ, ତା'ପରେ ଫେରି ଚାହିଁଲା—ନିଜେ ଅତିକ୍ରମ କରି ଆସିଥିବା ସୁଦୀର୍ଘ ପଥକୁ । ଅର୍ଥାତ୍ ସେହି ବିରାଟ କ୍ଷେତ୍ର ଭୂମିକୁ । ଅତି ଦୂରରେ ଦିଶୁଛି ସେହି ବଗିଚାଟି, ମନୋଜ ହୁଏତ ବସିଥିବ ସେଠି । ନଚେତ୍ ଯେଉଁ ଡଙ୍ଗା ଧରି ସେମାନେ ଆସିଥିଲେ, ସେହି ଡଙ୍ଗାରେ ଆରପାଖକୁ ଫେରି ଯାଇଥିବ ସେ ।

ମନୋଜ ! ସେହି ମନୋଜ ! ସେ ଏପରି ବଦଳି ଗଲା ? କେଡ଼େ ନିଷ୍ଠୁର ହୋଇଗଲା ! କେମିତି ପ୍ରତ୍ୟାଖ୍ୟାନ କଲା ! ଉପହାସ କଲା ! ଅପମାନ ଦେଲା !

ଓଃ, ଓଃ, ଆଃ—ନିଜର ଅଜ୍ଞାତରେ ମଧୁଛନ୍ଦା ଅସ୍ପଷ୍ଟ ଭାବରେ କହିବାକୁ ଲାଗିଲା ।

ମୁଣ୍ଡ ଭିତରେ ସତେ ଯେପରି ନିଆଁ ଜଳୁଛି ତା'ର । ଦାଉ ଦାଉ ହୋଇ ନିଆଁ ଜଳୁଛି ସାରା ଦେହଟା ଭିତରେ, ନିଆଁ ଜଳୁଛି ମନରେ । ଅସହ୍ୟ କ୍ରୋଧରେ ସତେ ଯେପରି ସେ ଛିନ୍ନଛତ୍ର ହୋଇ ଫାଟି ପଡ଼ିବ ।

x x x ହଠାତ୍ ସଚେତନ ହେଲା ମଧୁଛନ୍ଦା । ରାସ୍ତାରେ ଯିବା ଆସିବା କରୁଥିବା ବାଟୋଇମାନେ କୌତୂହଳ ସହକାରେ ଚାହୁଁଛନ୍ତି ତା'କୁ, ତା'ର ଗୋଡ଼ ଠାରୁ ମୁଣ୍ଡ ପର୍ଯ୍ୟନ୍ତ ।

ଏତେବେଳକୁ ଯାଇ ତା'ର ନଜର ପଡ଼ିଲା—ଟାଆଁଶା ଧାନମୂଳ ବାଜି ଶାଢ଼ି ଚିରିଛି, ଶାଢ଼ିରେ ଭର୍ତ୍ତି ହୋଇ ଯାଇଛି ଗୁଗୁଛି । ଚଟିର ଅଧା ଧଡ଼ି ଛିଣ୍ଡିଛି, ଆଉ ଧୂଳିବୋଳା ଆଙ୍ଗୁଠି ଅଗ ଗୁଡ଼ାକରେ ରକ୍ତ ଆଉ ଧୂଳି ମିଶି ଶୁଖିଯାଇ ସୃଷ୍ଟି କରିଛି ଏକ ବିଚିତ୍ରତା ।

ସେହି ମଧୁଛନ୍ଦା ଏ ? ଏ ପାଦ ଯୋଡ଼ିକ ତା'ର ? ପିଲାଟି ଦିନରୁ ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ, ଆନନ୍ଦ ଓ ଆରାମର ପ୍ରାଚୁର୍ଯ୍ୟ ଭିତରେ ଏକ ଛନ୍ଦମୟୀ ପାହାଡ଼ର ଝରଣା ଭଳି ଜୀବନ କଟାଇଥିଲା

ଯିଏ ? ଯାହାର ରୂପର ଖ୍ୟାତି ଚାରିଆଡ଼େ ବ୍ୟାପିଯାଇ ତାକୁ ପିଲାଟି ଦିନରୁ ଗରବିଣୀ କରି ତୋଳିଥିଲା ? ସେହି ମଧୁଛନ୍ଦା କ'ଣ ଏ ? ବସିବା ଘରର ମହାର୍ଘ ସୁଦୃଶ୍ୟ ଗାଲିଚା ଉପରେ ଟେଲିଭିଜନ ସାମନାରେ ଯିଏ ପ୍ରତିଦିନ ନୃତ୍ୟ ଅଭ୍ୟାସ କରୁଥିଲା ? ଘରର ଚଟାଣ ଉପରେ ସାଧାରଣ ସମୟରେ ଚାଲିଲା ବେଳେ ମଧ ଯେପରି ତା'ର ଅତି ସୁନ୍ଦର ଅଭ୍ୟସ୍ତ ପାଦ ଦୁଇଟି ନୃତ୍ୟର ଛନ୍ଦ ହିଁ ସୃଷ୍ଟି କରୁଥିଲା । କଳ-କଣ୍ଠରେ ତା'ର ସବୁବେଳେ ଉଠୁଥିଲା ସଙ୍ଗୀତର ଅପୂର୍ବ ଧ୍ୱନି-ତରଙ୍ଗ । ନାଲି ନାଲି ସୁବଙ୍କିମ ଓଠ ଦୁଇଟିରେ ଖୁସିଭରା ମୃଦୁ ମୃଦୁ ହସ । ଦିନଟିଏ ସୁଦ୍ଧା ସେ ଜାଣି ନ ଥିଲା ଦୁଃଖ କ'ଣ, କି ବସ୍ତୁ ସେ ।

ନିଜ ପାଇଁ ସବୁବେଳେ ଗର୍ବିତା ଥିଲା ସେ, ହେବାଟା ତ ସ୍ୱାଭାବିକ । କୃତୀ ଶିଶୁଶିଳ୍ପୀ ହିସାବରେ ପୁରସ୍କାର ପାଇଥିବା ସ୍ୱର୍ଣ୍ଣ ପଦକ, ରୌପ୍ୟ ପଦକ, କପ୍ ପ୍ରଭୃତି ଆଜି ମଧ ସୁନନ୍ଦା କାଚ ଆଲମାରିରେ ସଜାଇ ରଖିଛନ୍ତି ତା' କୋଠରିରେ । ବଡ଼ ହେଲା ପରେ ମଧ କମ୍ ପୁରସ୍କାର ପାଇନାହିଁ ସେ ! ପ୍ରଶଂସାପତ୍ର ଗୁଡ଼ିକ କାଚ ଦେଇ ବନ୍ଧେଇ କରି ଟଙ୍ଗା ହୋଇଛି କାନ୍ଥରେ । ପୁରସ୍କାର ପ୍ରାପ୍ତି ସମୟର ବିଭିନ୍ନ ବୟସର ଫଟୋଗୁଡ଼ିକ ମଧ କାନ୍ଥରେ ଝୁଲି ରହିଛି ।

କଲେଜର ସେ ଥିଲା ବ୍ୟୁଟି-କୁଇନ୍ । ତା'ର ସେ ସୌନ୍ଦର୍ଯ୍ୟ ନିକଟରେ ମଥା ନୁଆଇଁ ଦେଇଥିଲେ ସମସ୍ତେ ।

ମନୋଜ ମଧ ମଥା ନୁଆଁଇଥିଲା । ସଙ୍ଗୀତପ୍ରିୟତା ଓ ଏକା ପ୍ରକାର କଳାର ଅଭିରୁଚି ସେମାନଙ୍କୁ ପରସ୍ପରର ନିକଟତମ କରାଇଥିଲା ।

କଲେଜ ଡ୍ରାମାରେ ସେ ହିରୋଇନ୍ ଓ ମନୋଜ ହିରୋ ହୋଇଛନ୍ତି ବରାବର । ମନୋଜ ଗୀଟାର୍ ବଜାଇବାରେ ସିଦ୍ଧହସ୍ତ, ଚମତ୍କାର ବଂଶୀ ବଜାଏ, ଆଉ ମଧ ଦୁଇଟା ଯନ୍ତ୍ରସଂଗୀତ ବି ଶିଖିଛି । ବାପା ତା'ର ଦେଶରକ୍ଷା ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀ, ତେଣୁ ବେଶ୍ ସ୍ୱଚ୍ଛଳ ଅବସ୍ଥା ।

ଦେଖିବାକୁ ମନୋଜ ବି ସୁନ୍ଦର, ସେଥିରେ ସନ୍ଦେହ ନାହିଁ । କିନ୍ତୁ ତା'ର ନୀଳ ନୀଳ ସେହି ଆଖି ଦୁଇଟି—ମଧୁଛନ୍ଦା ଯେପରି ତା'ର ସେହି ନୀଳ ଆଖିର ମାୟାରେ ହିଁ ଛନ୍ଦି ହୋଇ ପଡ଼ିଲା ତାକୁ ଦେଖିଲା ଦିନଠାରୁ ।

ଜାତିର ବାଧା ଦେଖାଦେବା ଆଶଙ୍କା ନ ଥିଲା, କାରଣ ସେ ସ୍ୱଜାତି । ଏକମାତ୍ର ଦୁଃଖ—ମନୋଜ ଜଣେ କୃତବିଦ୍ୟ ଛାତ୍ର ନୁହେଁ, ଯଦିଚ ପିଲାଟି ଦିନରୁ ନାମଜାଦା କେନ୍ଦ୍ରୀୟ ବିଦ୍ୟାଳୟ ମାନଙ୍କରେ ପଢ଼ିଛି । ଯେଉଁ ବିଦ୍ୟାର ପାହାଚକୁ ଅତିକ୍ରମ କରିବାକୁ ମଧୁଛନ୍ଦାକୁ ଲାଗିଲା ଦୁଇବର୍ଷ, ମନୋଜ ନେଇଥିଲା ଚାରିବର୍ଷ ! ସେଥିପାଇଁ ବୟସରେ ଅଧିକ ହେଲେ ମଧ ମନୋଜ ତା'ର ସହପାଠୀ ।

ଶ୍ରାବଣର ମେଘାଚ୍ଛନ୍ନ ଆକାଶକୁ ଦେଖି ବନ୍ୟାଭରା ନଦୀ ଉଚ୍ଛୁଳି ଉଠିଲା ପରି ମନୋଜର ପ୍ରେମ ତା' ହୃଦୟର ଆନନ୍ଦ ଉଚ୍ଛ୍ୱାସକୁ ଶତଗୁଣ ବଢ଼ାଇ ଦେଇଥିଲା । ଆଉ ବନ୍ୟାର ପରିସ୍ଫୀତ ଜଳରାଶି ଯେପରି ପ୍ରଳୟଙ୍କରୀ ବେଶରେ ଆବର୍ତ୍ତ ସୃଷ୍ଟିକରି କୌଣସି ପ୍ରକାର ବାଧାବନ୍ଧନ ନ ମାନି ସର୍ବଗ୍ରାସିନୀ ହୋଇ ଧାଏଁ, ସେ ବି ଧାଇଁଥିଲା ସେହିପରି ଗୋଟାଏ ଅନ୍ଧ-ଉନ୍ମାଦନାର ବଶବର୍ତ୍ତିନୀ ହୋଇ ।

ସେହି ମଧୁଛନ୍ଦା କ'ଣ ଇଏ ?

ସେହି ମଧୁଛନ୍ଦା—ଖୋଦ୍ ନୀଳମଣିଙ୍କ ପବିତ୍ର ରକ୍ତର ଧାର ଯେ ବହୁଛି ତା'ର ପ୍ରତ୍ୟେକ ଶିରା-ପ୍ରଶିରାରେ । ସତ୍ୟବ୍ରତ ପୋଷ୍ୟପୁତ୍ର ହୋଇ ଆସିଛନ୍ତି ନୀଳମଣିଙ୍କ ପିତୃ ବଂଶରୁ । ନୀଳମଣି ଦିନେ ନିଜର ରୂପର ଆଲୋକରେ ଆଲୋକିତ କରି ଆସିଥିଲେ ଏ ବଂଶକୁ ।

ନୀଳମଣି ମାତ୍ର ଷୋହଳ ବର୍ଷ ବୟସରୁ ନିଜର ଇଚ୍ଛାଶକ୍ତି ବଳରେ ସମସ୍ତ କାମନା ବାସନାକୁ ଭସ୍ମ କରିଦେଇ ଆଜି ପର୍ଯ୍ୟନ୍ତ ଶୁଦ୍ଧ-ପବିତ୍ର ବ୍ରହ୍ମଚାରିଣୀର ବ୍ରତ ପାଳନ କରିଛନ୍ତି, ତାଙ୍କରି ରକ୍ତରେ ଗଢ଼ା ହୋଇ ମଧୁଛନ୍ଦା ଦୈହିକ-କାମନାର ଏକ ନୀଚ-ଶିକାର ରୂପେ ଆଜି ଧ୍ୱସ୍ତବିଧ୍ୱସ୍ତ ମନ ନେଇ ଆସି ଠିଆ ହୋଇଛି ଖୋଲା ସଡ଼କଟା ଉପରେ । ଚାହିଁ ରହିଛି ନିଜର ପାଦ ଦୁଇଟାକୁ !

ରକ୍ତ ଓ ଧୂଳିବୋଳା ଏ ପାଦ ଦୁଇଟା ତା'ର ଯେତେବେଳେ ଅଳତା ରଞ୍ଜିତ ହୋଇ, ନୂପୁର ବିମଣ୍ଡିତ ହୋଇ, ନୃତ୍ୟର ତାଳେ ତାଳେ ଛନ୍ଦ ସୃଷ୍ଟି କରୁଥିଲା, କି ସୁନ୍ଦର ଦିଶୁଥିଲା ସେ ଦୁଇଟି । ତା'ର ଶିରାରେ ପ୍ରଶିରାରେ, ରକ୍ତର ପ୍ରତ୍ୟେକଟି କଣିକାରେ ଯେପରି ସେମାନେ ସଙ୍ଗୀତ ସୃଷ୍ଟି କରି ଦେଉଥିଲେ ।

ଏହି ସେ ପାଦ ଦୁଇଟା !

—ଆଜ୍ଞା, ରିକ୍ସା ଦରକାର ?

ଚମକି ପଡ଼ିଲା ମଧୁଛନ୍ଦା । ରିକ୍ସାବାଲାଟିଏ ରିକ୍ସାଟିକୁ ରଖି ଅଦ୍ଭୁତ ଭାବରେ ତା' ଆଡ଼କୁ ଚାହିଁ ପଚାରୁଛି—ଆଜ୍ଞା, ରିକ୍ସା ଦରକାର ?

ହଁ, ରିକ୍ସାରେ ବସି ଘରକୁ ଯିବ ସେ ।

ହେଲେ ଘରକୁ ଯାଇ କ'ଣ କହିବ ?

ହଠାତ୍ ରୂପଦେଈପୁର ଷ୍ଟେସନ୍ ନିକଟରୁ ଭାସିଆସିଲା ରେଳଗାଡ଼ିର ସୁତୀବ୍ର ଶବ୍ଦ, ଡିଜେଲ ଇଞ୍ଜିନ୍‌ର ହର୍ଣ୍ଣ, ଏକ ବିଚିତ୍ର ପ୍ରକାର ଧ୍ୱନି ।

ସେ ଧ୍ୱନି ଯାଇ ମଧୁଛନ୍ଦାର ମସ୍ତିଷ୍କ ଭିତରେ ଯେପରି ଏକ ଭୟଙ୍କର ଉନ୍ମାଦଗ୍ରସ୍ତ ଆନନ୍ଦ ସୃଷ୍ଟିକଲା । ଆରେ ! ଏକ୍ସପ୍ରେସ୍‌ଟା ତ ଏଇଲେ ଛାଡ଼ିବ ! ହଁ, ଏଇଟା ହିଁ ତ ଉପଯୁକ୍ତ ସମୟ, ଗୋଟାଏ ପରମ ସୁଯୋଗ, ଗୋଟାଏ ପ୍ରକୃଷ୍ଟ ପନ୍ଥା !

ନିୟତି କ'ଣ ବିଭିନ୍ନ ପ୍ରକାର ଘଟଣା ମାଧ୍ୟମରେ ଓ ବିଭିନ୍ନ ପ୍ରକାର ଧ୍ୱନି ମାଧ୍ୟମରେ ଏହିପରି ଏକ ପରିସ୍ଥିତି ସୃଷ୍ଟି କରି ମନୁଷ୍ୟକୁ ତା'ର ସେହି ମହା—ଆହ୍ୱାନ ଜଣାଇ ଦିଏ ?

ଅଦୃଶ୍ୟ ଏକ ମହାସଙ୍ଗୀତ ସେ ।

ସେ ହେଉଛି ମୃତ୍ୟୁର ସଙ୍ଗୀତ ।

ସେ ହେଉଛି ମୃତ୍ୟୁର ଇଙ୍ଗିତ ।

ସେହି ମହାମନ୍ତ୍ର ଭରା ଆହ୍ୱାନ ଜୀବର ମନ ଭିତରେ ସୃଷ୍ଟିକରେ ଏକ ଅପୂର୍ବ—ଏକ ଅତି ଅପୂର୍ବ ମୋହ ।

ସେହି ମୋହରେ ଆଚ୍ଛନ୍ନ ହୋଇଯାଏ ମନୁଷ୍ୟ, ଚୈତନ୍ୟ ପାଏ ବିଲୁପ୍ତି । ଭଲ, ମନ୍ଦ, ଅତୀତ, ବର୍ତ୍ତମାନ, ଭବିଷ୍ୟତ୍ ଓ ଦୁଃଖଶୋକ ଯେପରି କିଛି ହେଲେ ସ୍ପର୍ଶ କରିପାରେ ନାହିଁ ତାକୁ ସେହି କରାଳ ମୁହୂର୍ତ୍ତରେ ।

ସବୁ ଭୁଲେ ସେ—ସବୁ ଭୁଲିଯାଏ ।

କ୍ରୋଧ ହେଉ ବା ଅଭିମାନ ହେଉ, ଅଗ୍ନିର ଲେଲିହାନ ଶିଖା ପରି ଏକ ତୀବ୍ର ହାହାକାରୀ ଅନୁଭୂତି ମସ୍ତିଷ୍କ ଭିତରେ ଜଳି ଉଠି ମନୁଷ୍ୟକୁ ଏକାବେଳକେ କାଣ୍ଡଜ୍ଞାନ ବିହୀନ କରି ପକାଏ । ଯାହାକୁ ପ୍ରତ୍ୟାଖ୍ୟାନ କରିବାର ଶକ୍ତି ମଣିଷର ନାହିଁ, ମଧୁଛନ୍ଦାର ମସ୍ତିଷ୍କର ତନ୍ତ୍ରୀରେ ଯାଇ ସେହି ଆହ୍ୱାନ ଶୁଭିଲା ।

ଦିନେ—ବହୁତ ଦୂରରୁ ଏହି ରେଲଲାଇନ୍ ଆଡ଼କୁ ହାତ ବଢ଼ାଇ ଦେଖାଇ ଉତ୍ତେଜିତ ହୋଇ ସେ କହିଥିଲା ମନୋଜକୁ—ଦେଖୁଛ ତ ଏ ରେଳ ଲାଇନ, ଯା'ରି ଉପରେ ଯାଇ ଶୋଇ ଚଳନ୍ତା ରେଳଗାଡ଼ି ତଳେ ଆତ୍ମହତ୍ୟା କରିବି ମୁଁ—ନିଶ୍ଚୟ, ଦେଖିବ ।

ସେହି କଥା ମନେ ପଡ଼ିଲା ତା'ର ।

ତରତରରେ ରିକ୍ସାବାଲାକୁ କହିଲା—ରିକ୍ସା ଦରକାର ନାଇଁ, ମୁଁ ଚାଲି ଚାଲି ଯିବି ।

ଡାହାଣ ପଟକୁ ଯାଇ ବନ୍ଧ ଉପରେ ଚଢ଼ିଥିଲେ ସେ ଘରକୁ ଯାଇଥାନ୍ତା । କିନ୍ତୁ ବାଁ ପଟକୁ ଚାଲିଲା ସେ, କାରଣ ସେ ଜାଣିଛି ଏ ରାସ୍ତାରେ ଅଳ୍ପଦୂର ଗଲା ପରେ ଲେଭଲକ୍ରସିଂ ପଡ଼ିବ । ସେଇ ଜାଗାଟି ସୁବିଧା ହେବ, ହଁ ସେହି ଜାଗାଟି ବେଶ୍ ସୁବିଧା ହେବ ମରିବା ପାଇଁ ।

ସେତେବେଳକୁ ସୂର୍ଯ୍ୟାଲୋକ ଆହୁରି ସମ୍ପୂର୍ଣ୍ଣ ଲିଭି ଯାଇନି । ଯଦିଚ ରୂପମତୀର ଫିକା ନୀଳ ବୁକୁ ଉପରେ ଦୁଇ ପାଖରେ ଥିବା ଗଛ ଲତା, ବୁଦା ଜଙ୍ଗଲ ଗୁଡ଼ିକର ଛାୟା ଘନ ହୋଇ ଆସିଲାଣି । ସୂର୍ଯ୍ୟ ବୁଡ଼ିଯିବାକୁ ପ୍ରସ୍ତୁତ ହେଉଛନ୍ତି, ଠିକ୍ ଜମିଦାର ଚୌଧୁରୀ ନାରାୟଣ ଚନ୍ଦ୍ର ଦାସଙ୍କ ପ୍ରାସାଦୋପମ ଅଟ୍ଟାଳିକାର ଆଢୁଆଳରେ, ଅନ୍ତତଃ ଏଠାରୁ ଦେଖିଲେ ଠିକ୍ ସେହିପରି ଜଣା ପଡୁଛି ।

ଆକାଶର ଲଲାଟରେ ଯେପରି ରକ୍ତର ତ୍ରିପୁଣ୍ଡ୍ରକ ରେଖା ଅଙ୍କିତ ହୋଇଛି । ଯେପରି ଆକାଶ ଆଜି ସାଜିଛି ଏକ ମହାତାନ୍ତ୍ରିକ ବେଶ । ସମ୍ମୁଖରେ ତା'ର ଯଜ୍ଞର ହୋମକୁଣ୍ଡ ପ୍ରଜ୍ୱଳିତ ହୋଇଛି । ବର୍ତ୍ତମାନ ପ୍ରୟୋଜନ କେବଳ ବଳିର ପଶୁ ।

ସୁଉଚ୍ଚ ନଡ଼ିଆ ଓ ତାଳ ଗଛର ଛାୟାଚିତ୍ରିତ ପଟଭୂମିରେ ଚୌଧୁରୀ ଅଟ୍ଟାଳିକାଟି ଏକ କାଳିମାମୟ ଆସନ୍ନ ସନ୍ଧ୍ୟାକୁ ଅପେକ୍ଷା କରି ଠିଆ ହୋଇଛି । ହେଇଟି ଦିଶୁଛି ସେ ଚିଲ କୋଠାଟି ଠିକ ଆକାଶକୁ ଛୁଇଁଲା ପରି ।

ଆଉ ଆକାଶ ? ସତରେ ପଶ୍ଚିମ ଆକାଶରେ ଆଜି ଯେପରି ଅବିରର ହୋରିଖେଳ ଚାଲିନାହିଁ, ତାଜା ରକ୍ତର ହୋରି ଖେଳ ଚାଲିଛି । ଆକାଶର ଏ କି ମହାତାନ୍ତ୍ରିକ ବେଶ !

ମନେ ମନେ ଜଣେ ଦେଶପ୍ରେମୀ ବୀର ସୈନିକ ପରି ଅଭିବାଦନ ଜଣାଇଲା ମଧୁଛନ୍ଦା, କହିଲା—ପ୍ରସ୍ତୁତ ହୁଅ ମହାତାନ୍ତ୍ରିକ ! ମୁଁ ଆଜି ଏକ ନିର୍ଭୀକ ବଳି ପଶୁ ତମ ସମ୍ମୁଖରେ, ମୁଁ ଭୟ କରେନା ତମ ଯଜ୍ଞକୁଣ୍ଡକୁ ।

—ମୃତ୍ୟୁକୁ ମୁଁ ଉପହାସ କରେ ।

—ପୁନର୍ଜନ୍ମ ମୁଁ ଚାହେଁ ନାହିଁ ।

ତା'ପରେ ଆଖି ବନ୍ଦ କରି ପ୍ରାର୍ଥନା କଲା ସେ—ହେ ମୋ'ର ପୂର୍ବ ପୁରୁଷଗଣ, ମତେ କ୍ଷମାକର ।

—ହେ ମୋ'ର ଉତ୍ତର ପୁରୁଷଗଣ, ମତେ କ୍ଷମାକର ।

—ହେ ପୃଥିବୀ, ମତେ ବିଦାୟ ଦିଅ ।

ଦୃଷ୍ଟି ଫେରାଇ ବାଁ ପଟ ରାସ୍ତା ଧରି କ୍ଷିପ୍ର ଗତିରେ ଚାଲିଯିବାକୁ ଲାଗିଲା ସେ ।

## (୧୬)

ଆନନ୍ଦରେ ସୁନନ୍ଦାଙ୍କ ଗୋଡ଼ ସତେକି ତଳେ ଲାଗୁ ନ ଥିଲା । ନୀଳମଣିଙ୍କ ଶୋଇବା ଘରଟାରେ ହିଁ ମେଳା ବସିଛି, ସମସ୍ତେ ଠୁଳ ଘରର ଭିତରେ, ବାହାରେ ।

ଘରର ଚଟାଣ ଉପରେ, ଟେବୁଲଟା ଉପରେ ନାନା ପ୍ରକାର ନୂଆ ନୂଆ ଦ୍ରବ୍ୟସମ୍ଭାର ରଖା ଯାଇଛି । ଶଚୀନ୍ଦ୍ରଙ୍କ ଘରୁ ଶଙ୍ଖୁଳା ବୋଝ ଆସି ପହଞ୍ଚିଛି । ମଲ୍ଲୀ, ଯୁଇ, ଗୋଲାପର ବାସ୍ନା ସହିତ ଦାମିକା ଅତରର ବାସ୍ନା ମିଶି ଚାରିଆଡ଼ ମହକାଇ ଦେଉଛି । ବନାରସୀ ଶାଢ଼ିଟିକୁ ଖୋଲି ସୁଜାତା ତା ଧଡ଼ିର ଏବଂ କାନିର ଶୋଭା ଦେଖାଉଛି ନୀଳମଣିଙ୍କୁ । ସୁନନ୍ଦା ଗହଣା ଗୁଡ଼ିକର ସୁଦୃଶ୍ୟ ବାକ୍ସ ସବୁ ହାତରେ ଧରି ଖୋଲି ଗହଣାର ଚମତ୍କାର ଗଢ଼ଣ ସବୁକୁ ଦେଖାଉଛନ୍ତି ନୀଳମଣିଙ୍କୁ । ଲୀନା ଆଉ ସୁଭ୍ରୁ ତଳେ ବସି ଜିନିଷ ଘାଣ୍ଟିବାରେ ବ୍ୟସ୍ତ, ଟିକିଏ ଦୂରରେ ନୀଳମଣିଙ୍କ ପାଦ ପାଖରେ ପଲଙ୍କର ବାଡ଼ ଧରି ଠିଆ ହୋଇ ଦେଖୁଛି ସ୍ମିତା ।

ବାରଣ୍ଡାରେ ରାମବୋଉ, ପଦିଆ ମା, ନିଧିଆ, ସୁଦାମ ଠିଆ ହୋଇଛନ୍ତି । ସୁଜାତାର ସାନଭାଇ ଆସିଛନ୍ତି ଶଚୀନ୍ଦ୍ରର ଭାଇଙ୍କ ସହିତ । ଚଉକିରେ ବସିଛନ୍ତି ସେମାନେ । ଦେବବ୍ରତ ମଧ ବସିଛି ସେମାନଙ୍କ ପାଖରେ ।

ଅଫିସରୁ ଫେରି ନାହାନ୍ତି ସତ୍ୟବ୍ରତ, ତେଣୁ ସେ ଅନୁପସ୍ଥିତ । ଘରର ଚଟାଣରେ ବେଭାର ଜିନିଷ ଭରି ରହିଛି । ପୁରୁଷମାନେ ନିଜ ଭିତରେ କଥାବାର୍ତ୍ତାରେ ନିମଗ୍ନ, ଅବଶ୍ୟ ନିଜ କଥା, ମାନେ ସେହି ବାହାଘର କଥା । କେତେବେଳେ ବରଯାତ୍ରୀ ବାହାରିବେ, କେଉଁ ରାସ୍ତା ଦେଇ ଆସିବେ, କିଏ କିଏ ଆସିବେ, ରହିବାର ବ୍ୟବସ୍ଥା କେଉଁଠି କରାଯାଉଛି....ଏହି ପ୍ରକାର ସବୁ ଛୋଟ ଛୋଟ କଥା ।

ଶାଢ଼ି ଦେଖାଉ ଦେଖାଉ ସେ ଆଲୋଚନାରେ ସୁଜାତା ମଧ ପଦେ ଅଧେ ମତାମତ ବ୍ୟକ୍ତ କରି ଭାଗ ନେଉଥାଏ । ଦୁଇପଟର ଲୋକ ସେ । ମଧୁଛନ୍ଦାର ଶାଶୁଘର ତା'ର ବାପଘର, ତେଣୁ ଏ ଉତ୍ସବରେ ତା'ର ଦାବୀ ବେଶୀ ।

ଅସ୍ତାଗାମୀ ସୂର୍ଯ୍ୟଙ୍କ ସୁନେଲି କିରଣ ଝରକା ବାଟେ ଆସି ସୁନେଲି ଜରି ଦିଆ ଲୁଗା ଧଡ଼ି ଉପରେ ପଡ଼ି ସହସ୍ର ରଶ୍ମି ବିଚ୍ଛୁରିତ କରି ଦେଉଛି । ଚକ୍ ଚକ୍, ଝକ୍ ଝକ୍‌ରେ ଆଖି ଝଲସି ଯାଉଛି ।

—ହେଇଟି ଆଉ ଖଣ୍ଡିଏ କାଞ୍ଜିବରମ୍ ପାଟ ବଡ଼ମା', ସିନ୍ଥେଟିକ୍ ଖଣ୍ଡେ, ଗହଣାରେ ସାଦା ସେଟ୍‌ଟି ଦେଇଛନ୍ତି । ମୁକ୍ତା ସେଟ୍‌ଟି ଦେବେ ଚଉଠି ଭାରରେ । ବରହମପୁରୀ ପାଟ ଆଉ ସମ୍ବଲପୁରୀ ପାଟ ଆଉ ଖଣ୍ଡେ ବନାରସୀ ସେତିକିବେଳେ ଆସିବ ।

ଅନର୍ଗଳ କହି ଚାଲିଛି ସୁଜାତା ।

ସୁନନ୍ଦା ପ୍ରଶଂସାପୂର୍ଣ୍ଣ ନେତ୍ରରେ କଣ୍ଠ ହାରଟିକୁ ଦେଖି ମଧୁଛନ୍ଦାର ବେକରେ କିପରି ମାନିବ ସେ କଥା ଭାବୁଛନ୍ତି ।

ଶଙ୍ଖୁଳା ଭାର ନେଇ ଆସିଥିବା କୁଟୁମ୍ବଙ୍କର ଚର୍ଚ୍ଚା କରିବା ଶେଷ ହେଲାଣି । ଏଥର ସମସ୍ତେ ଅପେକ୍ଷା କରିବେ ସତ୍ୟବ୍ରତଙ୍କ ଫେରିବାକୁ । ମଧୁଛନ୍ଦା ମଧ ଫେରିବ କଲେଜରୁ ।

ନୀଳମଣି କହିଲେ—ସୁନନ୍ଦା, ଡ୍ରାଇଭରକୁ କହ ଗାଡ଼ି ନେଇ ଚାଲିଯିବ ଛନ୍ଦାକୁ ନେଇ ଆସିବ । ସେଥିସଙ୍ଗେ ସୌମ୍ୟଟାକୁ ବି ଖବର ଟିକିଏ ଦେଇଦେବ ଆସିବାକୁ ।

ସୁନନ୍ଦା କହିଲେ—କେତେବେଳୁ ମୁଁ ଗାଡ଼ି ପଠାଇ ସାରିଲିଣି ବଡ଼ମା' । ସୌମ୍ୟ ଆଉ ଛନ୍ଦାକୁ ନେଇ ଆସିବାକୁ ମଧ କହି ଦେଇଛି । ଦିହେଁ ମିଶି ଚାଲି ଆସିବେ ।

ସୁଜାତା ହସି ହସି କହିଲା—ଛନ୍ଦାର ତ ସବୁବେଳେ ମିଟିଂ ଥିବ, ସେହେତୁ ଡେରି ହେଉଥିବ । ନାନୀ, ଗହଣା ସେଟ୍‌ଟା ଚମତ୍କାର ହୋଇଛି, ନୁହେଁ ? ଛନ୍ଦାର ମନକୁ ପାଇବ । ହାରଟା ସୁନ୍ଦର ମାନିବ ତା ବେକକୁ—

ନୀଳମଣି ଟିକିଏ ଅସ୍ଥିରତା ଅନୁଭବ କରୁଛନ୍ତି ଯେମିତି, ଅସହିଷ୍ଣୁ କଣ୍ଠରେ କହିଲେ—କେତେବେଳ ହେଲା ଗାଡ଼ି ଗଲାଣି ସୁନନ୍ଦା ?

—ଅଧଘଣ୍ଟାଏ ହେଇଯିବ ।

—ହୁଁ । ଆଚ୍ଛା, ସ୍ମିତା, ଯାଆ ତ ମା, ସଂଧ୍ୟା ବସାଇଦେବୁ । ଧୁଆଧୋଇ ହୋଇ ସିଲ୍‌କ ଶାଢ଼ିଟା ପିନ୍ଧି ପକାଇବୁ ।

ସୁଜାତା ନୀଳମଣିଙ୍କ କଥା ଶୁଣି କହିଲା—ସ୍ମିତା ଥାଉ, ମୁଁ ଯାଉଛି, ହେଲେ ସଂଧ୍ୟା ହେବାକୁ ଅନେକ ବେଳ ଅଛି ବଡ଼ମା ।

ଯୋଗାଡ଼ କରୁ କରୁ ହେଇଯିବ । ତମେ ଦିହେଁ ରହିଥାଅ, ସ୍ମିତା ଯାଉ । ଯା ତ ମା ।

ସ୍ମିତା ବାହାରି ଗଲା ।

କ୍ରମଶଃ ବେଶୀ ବେଶୀ ଅସ୍ୱସ୍ତି ଅନୁଭବ କରୁଛନ୍ତି ନୀଳମଣି । ଗାଡ଼ି ଆସୁ ନାହିଁ । ସୌମ୍ୟ ଆଉ ଛନ୍ଦା ଆସୁ ନାହାନ୍ତି ।

ଏ କେତେଦିନ ଝିଅଟାକୁ କଲେଜକୁ ନ ପଠାଇଲେ କ'ଣ ଚଳନ୍ତା ନାହିଁ ସୁନନ୍ଦା ? ପରୀକ୍ଷା ହେବାକୁ ତ ଡେରି ଅଛି ।

ସୁଜାତା କହିଲା—ଲେକ୍‌ଚର୍ ସଟ୍ ହୋଇ ଯିବନି ବଡ଼ମା' ? ଘରେ ବସି ରହିଲେ ତାକୁ ବିରକ୍ତ ଲାଗିବ ।

ଗୋଟାଏ ବଡ଼ ଦୀର୍ଘ ନିଃଶ୍ୱାସ ପକାଇ ନୀଳମଣି କହିଲେ—ପର ଘରକୁ ତ ଚାଲିଯିବ ଝିଅଟା । ଆଉ ଘରେ ରହିବ କେତେବେଳେ ? ବେଦୀରେ ବସିଲା ପର୍ଯ୍ୟନ୍ତ କ'ଣ କଲେଜକୁ ଯାଉଥିବ ? ଆଚ୍ଛା ଦେବ, ସତ୍ୟବ୍ରତକୁ ଫୋନ କରି ଡକାଇ ଆଣିଲେ ହୁଅନ୍ତାନି ?

ଶଚୀନ୍ଦ୍ରର ଭାଇ କହିଲେ—ବଡ଼ମା, କାମ ମଝିରେ ତାଙ୍କୁ ଡିଷ୍ଟର୍ବ କରିବାଟା ଉଚିତ ହେବନି । ଆମେ ଅପେକ୍ଷା କରିବୁ, ତମେ ବ୍ୟସ୍ତ ହୁଅନି ।

ତେବେବେ ନୀଳମଣି କାହିଁକି ନିଜ ମନକୁ ଶାନ୍ତ କରିପାରୁ ନାହାନ୍ତି ?

ଠାକୁର ଘରେ ସନ୍ଧ୍ୟା ଆଳତିର ବ୍ୟବସ୍ଥା କରୁ କରୁ ଝରକା ବାଟେ ବାହାରକୁ ଚାହିଁଲା ସ୍ମିତା—ଇସ୍, ଆକାଶଟା ଆଜି ଏତେ ଲାଲ୍ ଦିଶୁଛି କାହିଁକି ? ଠିକ୍ ରକ୍ତ ବୋଳା ହେଲାପରି !

ଏତେ ଲାଲ୍ ରଙ୍ଗ ଜମା ଭଲ ଲାଗିଲାନି ସ୍ମିତାକୁ । କିପରି ଗୋଟାଏ ବିଷଣ୍ଣତା ମନ ଭିତରେ ଯେପରି ବିଳପି ଉଠୁଛି । ହୁଏତ ନିଃସଙ୍ଗତା ପାଇଁ । ହୁଏତ ମଧୁଛନ୍ଦା ନାନୀଙ୍କର ଆସନ୍ନ ବିଦାୟ ପାଇଁ । ବଡ଼ ନାନୀ ଗଲେ ଦୂରକୁ, ଛନ୍ଦା ନାନୀ ଯିବେ ଶାଶୂ ଘରକୁ । ସେ ପୂରା ଏକାକିନୀ ହୋଇଯିବ । ଲୀନାଟା ତ ପିଲାଟେ । ମଣ୍ଟୁ ବି ଯାଇ ବୁର୍ଲାରେ ପଢୁଛି । ମଣ୍ଟୁଟା ପାଖରେ ଥିଲେ ଅନେକ ସାନ୍ତ୍ୱନା ମିଳିଥା'ନ୍ତା ତାକୁ ।

ଝରକା ପାଖରେ ଯାଇ ଠିଆହେଲା ସେ—ଦୂରରେ ଦିଶୁଛି ରୂପମତୀ ନଦୀ । ସନ୍ଧ୍ୟାର ଛାୟା କ୍ରମଶଃ ଘନାଇ ଆସୁଛି ନଦୀ ଉପରକୁ । ରୂପମତୀର ନୀଳ ଜଳ ଉପରେ ନିଶ୍ଚିହ୍ନ ହୋଇ ଆସୁଥିବା ଅପରାହ୍ନ ଯେପରି ରଚନା କରିଛି ଏକ ବିଷଣ୍ଣତା । ଖାଲି ନଦୀ ଉପରେ ନୁହେଁ, ନଦୀ ଆରପଟେ ବିସ୍ତୃତ ହୋଇ ରହିଥିବା ସେଇ ଚାଷ ଜମି ଉପରେ ମଧ୍ୟ ।

ଦିନଟା ଠିକ୍ ଗୋଟାଏ ଜୀବନ ପରି—ଭାବିଲା ସ୍ମିତା । ଜନ୍ମ, ବିବାହ, ମୃତ୍ୟୁ ।

ସକାଳର ସୂର୍ଯ୍ୟ ଦିଶେ ଏକ ନବଜାତକ ଶିଶୁ ପରି, ସତେଜ, ସୁନ୍ଦର, କମନୀୟ ।

ମଧ୍ୟାହ୍ନ ଯୌବନ ପରି ଦୀପ୍ତିମାନ ।

ଆଉ ସୂର୍ଯ୍ୟାସ୍ତ ବେଳେ ଗୋଧୂଳିର ରକ୍ତାଭ ଆଲୁଅ ଟିକକ ମଧ୍ୟ ଯେତେବେଳେ ଲିଭି ଲିଭି ଆସେ, ଯେତେବେଳେ ଦିଗନ୍ତରେ ସୃଷ୍ଟି କରେ ଏକ ବେଦନାଦାୟକ ଏକାକୀତ୍ୱ, ମନେହୁଏ ସତେ ଯେପରି ଦିବସର ଅନ୍ତିମ ଶଯ୍ୟା ସେ, ଯେ କୌଣସି ଜୀବର ଅନ୍ତିମ ଶଯ୍ୟା ପରି କରୁଣତମ !

ସୂର୍ଯ୍ୟାଲୋକ ପ୍ରାୟ ବିଲୀୟମାନ କିନ୍ତୁ ପବନରୁ ଉଷ୍ଣତା ଆହୁରି ଦୂର ହୋଇ ନାହିଁ । ବେଶ୍ ଉଷୁମ ପବନ ବହୁଛି ଏବେ ମଧ୍ୟ ।

ହେଇଟି, ଦୂରରେ ଦିଶୁଛି ରୂପମତୀ ନଦୀ ଉପରେ ବନ୍ଧା ଯାଇଥିବା ରେଳ ପୋଲଟି । ପୋଲ ଉପରେ ଏକ୍ସପ୍ରେସ୍ ଗାଡ଼ିଟା ଯାଉଛି । ଶବ୍ଦଟା ଶୁଭୁଛି । ପୋଲ ଉପରେ ରେଳଗାଡ଼ି ଗଲାବେଳେ କିପରି ଭିନ୍ନ ଜଣାପଡ଼େ । କିପରି ଗୁରୁ ଗମ୍ଭୀର ଶୁଭେ । ଏକ ଅଶ୍ୱସ୍ତି ଜାଗ୍ରତ କରାଏ ।

ଆଉ ପୋଲ ଉପରେ ଗାଡ଼ିଟା ଦ୍ରୁତ ଗତିରେ ଚାଲିଗଲା ବେଳକୁ ସମଗ୍ର ଭୂଖଣ୍ଡରେ ଗୋଟାଏ କମ୍ପନ ସୃଷ୍ଟି କରିଦିଏ । ଆଜି ମଧ୍ୟ ସୃଷ୍ଟି କରିଛି, ଘର ଚଟାଣରେ କମ୍ପନ ଅନୁଭୂତ ହେଉଛି । ପାଦ ଦୁଇଟିରେ ସେ କମ୍ପନର ସ୍ପର୍ଶ ଲାଗୁଛି । ରାତିରେ କେତେ ଥର ନିଦ ଭାଙ୍ଗି ଯାଇଛି ତା'ର, ପାଠ ପଢ଼ିଲା ବେଳକୁ ଅନ୍ୟମନସ୍କ ହେବାକୁ ପଡ଼ିଛି ।

ଶବ୍ଦଟା ଅସହ୍ୟ ମନେ ହୋଇଛି ସବୁବେଳେ, ମନେ ହୋଇଛି ଅଶୁଭ । ଏକ ଦୀର୍ଘ ନିଶ୍ୱାସ ବାହାରି ଆସିଲା ସ୍ମିତାର ଛାତି ତଳୁ । ଝରକା ପାଖରୁ ଘୁଞ୍ଚି ଆସି ଧୂପକାଠି ଗୁଡ଼ିକୁ ସଜାଇବାକୁ ଲାଗିଲା ସେ ।

x x x

ସରକାରଙ୍କ ତରଫରୁ ଆରମ୍ଭ କରାଯାଇଛି ଏକ ନୂତନ ଯୋଜନା । ଫାଇନାନ୍ସ ବିଭାଗର ମତାମତ ଲୋଡ଼ା ଯାଇଛି—ଷ୍ଟାଟିଷ୍ଟିକ୍ସ ଉପସ୍ଥାପିତ କରି ମତାମତ ଜଣାଇବାକୁ ପଡ଼ିବ । ହାତରେ ଆଉ ଅଳ୍ପ କେତେଟା ଦିନ ବାକି ଅଛି । ମଧୁଛନ୍ଦାର ବାହାଘର ପାଇଁ ସାତ ଦିନ ଛୁଟି ନେଉଛନ୍ତି ସତ୍ୟବ୍ରତ, ତା' ପୂର୍ବରୁ କାମଟା ଯେକୌଣସିମତେ ସାରି ଦେବାକୁ ପଡ଼ିବ ।

ଥରେ ଘଣ୍ଟା ଉପରେ ଆଖି ବୁଲାଇ ଆଣି ପୁଣି ମନକୁ କର୍ମରେ ନିୟୋଜିତ କଲେ ସତ୍ୟବ୍ରତ ।

x x x

ଡ୍ରାଇଭର୍ ଆସି ଖବର ଦେଲା ପରେ ମଧୁଛନ୍ଦାକୁ କଲେଜରେ ଖୋଜୁଛି ସୌମ୍ୟ । ଚାଳକକୁ କହିଛି ଗାଡ଼ି ଭିତରେ ବସି ଅପେକ୍ଷା କରିବା ପାଇଁ । ଖବର ନେଇ ଜାଣିଛି ଯେ ମଧୁଛନ୍ଦା ଆଜି ଗୋଟାଏ ବି କ୍ଲାସରେ ଯୋଗ ଦେଇ ନାହିଁ । ସେ ଗଲା କୁଆଡ଼େ ଯେ ?

x x x

ସ୍ୱରୂପା କମ୍ବଳର ଆସନ ବିଛାଇ ଶୁଦ୍ଧପୂତ ହୋଇ ବସିଛି ତା'ର ପ୍ରତିଦିନର ଅଭ୍ୟାସ ଅନୁସାରେ । ମନେ ମନେ ବୈଦିକ ମନ୍ତ୍ର ସବୁ ପଢୁଛି—

ପଶ୍ୟେମ ଶରଦଃ ଶତମ୍, ଜୀବେମ ଶରଦଃ ଶତମ୍...

ଶହେଟି ଶରତ୍ ଋତୁ ଆମେ ଯେପରି ଦେଖୁ

ଶହେଟି ଶରତ ଋତୁ ଆମେ ଯେପରି ବଞ୍ଚି ରହୁ...

ସର୍ବଜ୍ୟୋତିରବୃକଂ ନଶୀମହି ତଦ୍ଦେବାନାମବୋ ଅଦ୍ୟା ବୃଣୀମହେ ।

ଆମେ ଯେପରି ସର୍ବ ପ୍ରକାର ଅବିନାଶୀ ଜ୍ୟୋତି ଲାଭ କରୁ...

ଇମଂ ଜୀବେଭ୍ୟଃ ପରିଧିଂ ଦଧାମି ମୈଷାଂ ନୁ ଗାଦୈପରୋ ଅର୍ଥମେତମ୍...

ଶତଂ ଜୀବନ୍ତୁ ଶରଦଃ ପୂରୂଚୀରନ୍ତର୍ମୃତ୍ୟୁଂ ଦଧତାଂ ପର୍ବତେନ ।

ହେ ପ୍ରଭୁ !... ଏମାନଙ୍କ ଭିତରୁ ଆଉ କେହି ଯେପରି ମୃତ୍ୟୁ ପ୍ରାପ୍ତ ନ ହୁଅନ୍ତୁ...

ଏମାନେ ଶତବର୍ଷ ଜୀବିତ ରହନ୍ତୁ...

ମୃତ୍ୟୁ ଯେପରି ଏ ପର୍ବତ ଦ୍ୱାରା ରୁଦ୍ଧ ହୋଇ ନିକଟକୁ ଆସି ନ ପାରେ...

ସବିତା ପଶ୍ଚାତାତ୍ ସବିତା ପୁରସ୍ତାତ୍ ସବିତୋତ୍ତରାତ୍ତାତ୍ ସବିତା—ଧରାତ୍ତାତ୍...
ସବିତା ନଃ ସୁବତୁ ସର୍ବତାତିଂ ସବିତା ନୋ ରାସତାଂ ଦୀର୍ଘମାୟୁଃ...
...ପଶ୍ଚିମ, ପୂର୍ବ, ଉତ୍ତର, ଦକ୍ଷିଣ ସବୁ ଦିଗରେ ସୂର୍ଯ୍ୟଦେବ ଆମର ଶ୍ରୀବୃଦ୍ଧି କରନ୍ତୁ,
ଆମକୁ ଦୀର୍ଘ ପରମାୟୁ ପ୍ରଦାନ କରନ୍ତୁ
ଶତଂ ଜୀବନ୍ତୁ ଶରଦଃ...ଶତଂ ଜୀବନ୍ତୁ ଶରଦଃ...
ହେ ପ୍ରଭୁ ସମସ୍ତେ ଶତ ବର୍ଷ ଜୀବିତ ରହନ୍ତୁ...

x x x

ମଧୁଛନ୍ଦା ଶୋଇଛି ! ଅତି ଅପୂର୍ବ ଦିଶୁଛି ସେ ! ଭ୍ରମର-କୃଷ୍ଣ ଉନ୍ମୁକ୍ତ କେଶରାଜି ଭିତରେ ଫୁଟନ୍ତା ପଦ୍ମଟି ପରି ତା'ର ମୁହଁଟା କି ସୁନ୍ଦର ଦିଶୁଛି ସତରେ ! ଯେପରି ତାକୁ ଗଢ଼ିଲା ବେଳକୁ ସମସ୍ତ ସୌନ୍ଦର୍ଯ୍ୟର ନିର୍ଯ୍ୟାସକୁ ଏକତ୍ର କରି ବହୁତ ଭାବି ଚିନ୍ତି ବହୁତ କଷ୍ଟ ସ୍ୱୀକାର କରିଥିଲେ ବିଧାତା । ହୁଏତ ନିଜର ସୃଜନ ଦେଖି ଆନନ୍ଦରେ ଆତ୍ମହରା ହୋଇ ଯାଇଥିବେ ସେ'ଦିନ କାରଣ ସୌନ୍ଦର୍ଯ୍ୟ ନିଜେ ଯେପରି ମୂର୍ତ୍ତିମନ୍ତ ହୋଇ ଯାଇଥିଲା ତା' ଦେହରେ ।

ଆଜି ମଧୁଛନ୍ଦା ଯେତେବେଳେ ଜାଣିଶୁଣି ସେହି ବିଧାତାଙ୍କର ଏତେ ଶ୍ରମ ଓ ସାଧନାର ସର୍ଜ୍ଜନାଟିକୁ ମୃତ୍ୟୁର କୋଳରେ ସମର୍ପି ଦେଲା, ସେହି ଶେଷ ମୁହୂର୍ତ୍ତରେ ମଧ ସେ ବୋଧହୁଏ ତାକୁ ରକ୍ଷା କରିବାକୁ ଚାହିଁଥିଲେ ।

ସୌନ୍ଦର୍ଯ୍ୟ ତା'ର ଅକ୍ଷତ ହିଁ ରହିଥିଲା । ଚଳନ୍ତା ଗାଡ଼ିର ସାମନାର କୌଣସି ଅଂଶରେ ଧକ୍‌କା ଖାଇ ସେ ଛିଟିକି ପଡ଼ିଥିଲା ବାହାରକୁ, ପଡ଼ିଥିଲା ଯାଇ ରେଳ ଧାରଣା କଡ଼ରେ ଥିବା ଗୋଟାଏ ଲତାବୁଦା ଉପରେ । ହୃଦ୍‌ଯନ୍ତ୍ରର କ୍ରିୟା ରହିଯାଇଛି, କିନ୍ତୁ ରକ୍ତାକ୍ତ କି କ୍ଷତବିକ୍ଷତ କି ବିକୃତ ହୋଇ ନାହିଁ ସେ, ଛିନ୍ନ ବିଚ୍ଛିନ୍ନ ହୋଇ ନାହିଁ ତା'ର ସେ ଛନ୍ଦାୟିତ କମନୀୟ ତନୁରେଖା ।

ମଧୁଛନ୍ଦାର ମଥାଟିକୁ ନିଜ କୋଳ ଉପରେ ରଖି ଏକ ନିର୍ଜୀବ ମୂକ ପ୍ରସ୍ତର ପ୍ରତିମା ପରି ଭୂମିଶଯ୍ୟାରେ ବସି ରହି ତା ମୁହଁଟିକୁ ଅପଲକ ନେତ୍ରରେ ଚାହିଁ ରହିଛି ଶଚୀନ୍ଦ୍ର ।

ସେ ଦିନ ପାଇଁ ସର୍ଭେ କାମ ସାରି ରାସ୍ତା ଉପରେ ଅପେକ୍ଷାରତ ଥିବା ଜିପ୍‌ଟି ପାଖକୁ ଫେରି ଆସିଲା ପରେ ଶଚୀନ୍ଦ୍ର ଦେଖିଲା—ଅସ୍ୱାଭାବିକ ଭାବରେ ଲେଭଲ୍‌କ୍ରସିଂ ନିକଟରେ ରେଳଗାଡ଼ିଟି ଅଟକିଛି । ଲୋକେ ଜମାହୋଇ ଯାଇଛନ୍ତି । ଚାଳକ, ଗାର୍ଡ଼, ଯାତ୍ରୀ ସମସ୍ତେ ବ୍ୟତିବ୍ୟସ୍ତ ।

ବୋଧହୁଏ କୌଣସି ଦୁର୍ଘଟଣା ଘଟିଛି, ଗାଈ କିମ୍ବା ଅନ୍ୟ କୌଣସି ଜୀବ ଜନ୍ତୁ କଟି ଯାଇଛନ୍ତି, ନ ହେଲେ ମଣିଷ କିଏ ଖସି ପଡ଼ିଛି ଚଳନ୍ତା ଟ୍ରେନରୁ, ଭାବୁଥିଲା ସେ । ତା ଜିପ୍

ଗାଡ଼ିର ଡ୍ରାଇଭରଟି ଦୁର୍ଘଟଣା ସ୍ଥଳରୁ ଦ୍ରୁତ ପାଦରେ ଫେରି ଆସିଲା । ପ୍ରଶ୍ନ ନ ପଚାରୁଣୁ କହିଲା– ସାର୍, ଜଣେ ଭଦ୍ରମହିଳା ଆତ୍ମହତ୍ୟା କରିଛନ୍ତି–ବିଦ୍ୟୁତ୍ ସ୍ପର୍ଶ ପାଇଲା ପରି ଚମକି ପଡ଼ିଲା ଶଚୀନ୍ଦ୍ର–ଭଦ୍ରମହିଳା !

ବିଲ ମଝିରେ ଦୂରରୁ ଦେଖିଥିବା ସେହି ଦୀର୍ଘାଙ୍ଗୀ ଝିଅଟି ନୁହେଁ ତ ?

ସେ କ'ଣ ସେହି ? ପାଗଳୀଟା ନା କ'ଣ ? ନା କୌଣସି ପ୍ରକାର ଦୁଃଖରେ ଅଧୀର ହୋଇଯାଇ ଚଳନ୍ତା ଗାଡ଼ି ତଳେ ଆତ୍ମହତ୍ୟା କଲା ସେ ? ଇସ୍ ! କି ଦୁଃଖଦ କଥା !

ଶଚୀନ୍ଦ୍ରର ଅନୁମତି ନେଇ ତା' ସାଙ୍ଗରେ ଥିବା ଅଧୀନସ୍ଥ କର୍ମଚାରୀମାନେ ଘଟଣା ଦେଖିବାକୁ ଅଦୃଶ୍ୟ ହୋଇଗଲେଣି ସେତେବେଳକୁ ।

ଡ୍ରାଇଭରଟା ଆଉ ଥରେ କହିଲା–ଆଜ୍ଞା, ବେଗ୍‌ଟେ ପଡ଼ିଛି, ଖାତା ଖଣ୍ଡେ ପଡ଼ିଛି । ଖାତାଟାରେ ନା ଲେଖା ହୋଇଛି ମଧୁଛନ୍ଦା ଦାସ । କୋଉ କଲେଜର ଝିଅ ବୋଧହୁଏ–

–ଓଃ !!!

ତା'ପରେ–ସେ କିପରି ଘଟଣାସ୍ଥଳକୁ ଆସିଛି, ମଧୁଛନ୍ଦାର ମଥାକୁ ନିଜ କୋଳ ଉପରକୁ ଉଠାଇ ନେଇ ଭୂଇଁ ଉପରଟାରେ ତଳେ ବସିପଡ଼ିଛି ସେ ସବୁ କଥା କିଛି ମନେ ନାହିଁ ତା'ର । ଅସଂଖ୍ୟ ଲୋକଙ୍କ ଅସଂଖ୍ୟ ପ୍ରଶ୍ନ ଭିତରେ ସେ କେବଳ ଥରଟିଏ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ପାରିଥିଲା ଅତି କଷ୍ଟରେ, ଅତି କ୍ଲିଷ୍ଟ କଣ୍ଠରେ କହିଥିଲା–ମୁଁ ଚିହ୍ନେ, ମୋର ଆତ୍ମୀୟ ।

ତା' ପରଠାରୁ ବାକ୍ୟ ରୁଦ୍ଧ ହୋଇ ଯାଇଛି ତା'ର । କେତେ ମୂହୂର୍ତ୍ତ ପାଇଁ ସମସ୍ତ ପୃଥିବୀ ଅନ୍ଧକାର ହୋଇଯାଇଥିଲେ ମଧ ବୋଧହୁଏ ତା'ର ଚେତନା ହରାଇଥିଲା ସେ, ଠିକ୍ କହି ହେବନି ।

ଡାକ୍ତର ଆସି ମୃତ୍ୟୁ ଘୋଷଣା କରି ଅପେକ୍ଷା କରୁଛନ୍ତି ।

ଥାନାକୁ ଖବର ଦିଆଯାଇଛି ।

ଶଚୀନ୍ଦ୍ରର କପାଳରୁ ଝର ଝର ହୋଇ ଝରି ଆସୁଥିବା ଝାଳକୁ ଦେଖି ତା'ର ଅଧୀନସ୍ଥ କର୍ମଚାରୀମାନେ କିଏ ସଯତ୍ନରେ ପୋଛି ଦେଉଛନ୍ତି ତ କିଏ ବିଞ୍ଚି ଦେଉଛନ୍ତି । ସେମାନେ ମଧ ଯେପରି ମୂକ ପାଲଟି ଯାଇଛନ୍ତି ଏ ଅଭାବିତ ଘଟଣା ଦେଖି !

କେତୋଟି ଧୂଳିକଣା ଲାଗିଯାଇଥିଲା ମଧୁଛନ୍ଦାର ଘନ କୃଷ୍ଣ କୁଞ୍ଚିତ କେଶ ଗୁଡ଼ିକରେ, ଠିକ୍ କପାଳ ଉପରେ ଲାଗିଥିଲା କେତେଟା ଖୁବ୍ ଛୋଟ ଛୋଟ ଶୁଖିଲା ପତ୍ର, ବୋଧହୁଏ ସେହି ବୁଦାର । ପରମ ଆଦରରେ, ପରମ ଯତ୍ନରେ ଗୋଟି ଗୋଟି କରି ସେଗୁଡ଼ିକୁ କାଢ଼ି ଆଣୁଥିଲା ଶଚୀନ୍ଦ୍ର; ବାଳ ଗୁଡ଼ିକରୁ ଧୂଳି ଝାଡ଼ି ଦେଉଥିଲା !

ଏ ଶରୀରଟାରେ ଯେ ଆଉ କୌଣସି ମୂଲ୍ୟ ନାହିଁ କି ପ୍ରୟୋଜନ ନାହିଁ ସେ କଥା ଖିଆଲ ହେଉନାହିଁ ତା'ର । ମଧୁଛନ୍ଦାର ନିଷ୍ପନ୍ଦ ଶରୀରଟାକୁ ସେ ଜୀବିତର ସମ୍ମାନ ଦେଉଛି !

ସେ ଭାବିନାହିଁ—ମଧୁଛନ୍ଦା ହଠାତ୍ ଏପରି ଆତ୍ମହତ୍ୟା କଲା କାହିଁକି ? କେଉଁ କାରଣରୁ ?

ସେ ଭାବି ନାହିଁ—ଆଉ ଟିକିଏ ମାତ୍ର ସତର୍କ ହୋଇଥିଲେ, ଆଉ ଟିକିଏ ପାଖକୁ ଯାଇଥିଲେ ସେତେବେଳେ ମଧୁଛନ୍ଦାକୁ ସେ ନିଶ୍ଚୟ ଚିହ୍ନିପାରି ଅଟକାଇ ରଖିଦେଇ ପାରିଥା'ନ୍ତା । ତାକୁ'ତ କେବେ ଏହିପରି ଚାଲି ଚାଲି ଫେରିବାକୁ ଦେଇ ନ ଥାନ୍ତା ସେ । ଚଳଚ୍ଚିତ୍ରରେ ଘଟିଲା ଭଳି ଏକ ଅଦ୍ଭୁତ ଯୋଗାଯୋଗ ବିଚାରି ଆନନ୍ଦ ଉଚ୍ଛ୍ୱସିତ ମନରେ, କମ୍ପିତ ହୃଦୟରେ ସ୍ୱାଗତ କରିଥାନ୍ତା ମଧୁଛନ୍ଦାକୁ । ପାଖରେ ବସାଇ ଜିପ୍‌ରେ ନେଇ ଛାଡ଼ି ଆସିଥାନ୍ତା ଘରଠାରେ ।

ତା'ରି ଆଖି ସାମନାରେ ପରା ମଧୁଛନ୍ଦା ଚାଲି ଚାଲି ଆସିଲା ଏ ମରିବା ସ୍ଥାନକୁ ହେଇ ଟିକିଏ ଆଗରୁ !

ଆଉ ଶଚୀନ୍ଦ୍ର ଅନେକ ସମୟ ପର୍ଯ୍ୟନ୍ତ ମଧୁଛନ୍ଦାର ସେହି ଅପସୃୟମାନ ମୂର୍ତ୍ତିକୁ ଦେଖିଥିଲା ।

ହଁ, ଶୂନ୍ୟ ପ୍ରାନ୍ତର ମଝିରେ ଅସମୟରେ ଏକାକିନୀ ଏକ ଝିଅକୁ ଦେଖି ସମସ୍ତଙ୍କୁ ଅସ୍ୱାଭାବିକ ଜଣାପଡୁଥିଲା, ତାକୁ ମଧ୍ୟ ସେଇୟା ଜଣାପଡ଼ିଛି, ଆଉ ଟିକିଏ ଆଗେଇ ଯାଇ କିମ୍ବା ଅନ୍ୟ କାହାକୁ ପଠାଇ ସେ ଟିକିଏ ଅନୁସନ୍ଧାନ କରି ପାରିଥାନ୍ତା ଯଦି ! ସେ କଥା ସେ କଲାନାହିଁ କାହିଁକି ?

ଏ ସବୁ କିଛି ଭାବିଲା ନାହିଁ ଶଚୀନ୍ଦ୍ର ଅର୍ଥାତ୍ ଭାବି ପାରିଲା ନାହିଁ, ଭାବନା ଶକ୍ତି ତା'ର ବିଲୋପ ହୋଇ ଯାଇଥିଲା ଏକାବେଳକେ । ଭାଗ୍ୟ ତା'ର ତା ସହିତ ଏପରି ଗୋଟାଏ ନିଷ୍ଠୁର ଲୁଚକାଳି ଖେଳ ଖେଳିଲା ଯେ ତା'ର ଭାବନା ଶକ୍ତି ମଧ୍ୟ ଅଥର୍ବ ହୋଇଗଲା ।

କିଛି ଭାବିଲା ନାହିଁ ସେ, ଖାଲି ହୃଦୟର ନିର୍ମଳ, ପବିତ୍ର, ଗଭୀର ପ୍ରେମ ଓ ଅସରନ୍ତି ମମତା ଦେଇ ତା ହୃଦୟ ରାଜ୍ୟର ଅଧୀଶ୍ୱରୀ ମଧୁଛନ୍ଦାର ପ୍ରାଣହୀନ ଦେହଟାକୁ ଧରି କୌତୂହଳୀ ଦର୍ଶକମଣ୍ଡଳୀ ଭିତରେ ସ୍ଥାଣୁ ପରି ବସି ରହିଲା ସେ ମଧୁଛନ୍ଦାର ମୁହଁ ଆଡ଼କୁ ଚାହିଁ ।

ମଧୁଛନ୍ଦାର ସୁନ୍ଦର ବଙ୍କିମ ପାତଳ ଓଠ ଦୁଇଟିର କୋଣରେ ଲାଗି ରହିଛି ବିଜେତ୍ରୀର ହସ ଧାରଟିଏ !!

ଅନ୍ୟ ସମସ୍ତେ ମଧ୍ୟ ଆଶ୍ଚର୍ଯ୍ୟ ହୋଇ ଚାହିଁ ଦେଖୁଛନ୍ତି ସେ ହସକୁ । ଏ ନିଷ୍ଠୁର ମୃତ୍ୟୁର ଦ୍ୱାରଦେଶରେ, ଏହିପରି ବିଜୟ ଗର୍ବରେ ଗର୍ବିତ ହସ ଟିକକ ମଧୁଛନ୍ଦା ପାଇଲା କିପରି ? ରହସ୍ୟମୟ ସେ ଭୟଙ୍କର ଅନ୍ଧକାରର ନିଷ୍ଠୁର ଗ୍ରାସ ଭିତରେ କେଉଁଠାରୁ ତାକୁ ମିଳିଲା ଏହି ଉଜ୍ଜ୍ୱଳ ଅମୃତମୟ ଜ୍ୟୋତି ଟିକକ ?

ସତରେ କ'ଣ ମୃତ୍ୟୁର ଦ୍ୱାର ଦେଶରେ ମନୁଷ୍ୟ ଦର୍ଶନ କରେ ସେହି ଅମୃତଙ୍କୁ ? ସେହି ଅନାଦିଙ୍କୁ ? ସେହି ଅଲିଭା ଜ୍ୟୋତିଙ୍କୁ ? ସେହି ପରମେଶ୍ୱର ପରମାତ୍ମାଙ୍କୁ ?

ତା' ନହେଲେ ଯନ୍ତ୍ରଣାର ମହାସାଗର ଭିତରେ ଭାସୁ ଭାସୁ ମଣିଷ କିପରି ପାଏ ଏହି ଆନନ୍ଦର ହସ ଟିକକ ?

ସତରେ କ'ଣ ତେବେ ଈଶ୍ୱର ନିଜର ଦୁଇ ହାତରେ ଟୋକି ନେଇ ଫେରାଇ ଘେନି ଯାଆନ୍ତି ନିଜ ବକ୍ଷ ଉପରକୁ ନିଜର ସେ ମୂଢ଼ ସନ୍ତାନକୁ ? ଆଉ ସେହି ମହା-ସ୍ପର୍ଶରେ ଏ ଜଗତର ସମସ୍ତ ମାୟା ମମତାକୁ, ସମସ୍ତ ଦୁଃଖ ଯନ୍ତ୍ରଣାକୁ ମାତ୍ର ଗୋଟିଏ ନିମିଷରେ ଭୁଲି ହୋଇଯାଏ ?

ସତରେ କ'ଣ ଆନନ୍ଦର ଉଦ୍ୱେଳିତ ସମୁଦ୍ର ଭିତରେ ପରମ ଶାନ୍ତିରେ ଶୋଇପଡ଼େ ଜୀବାତ୍ମା ?

କିଏ ଏ ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବ ?

କିନ୍ତୁ ପ୍ରକୃତରେ ବିଜୟିନୀର ହସ ହିଁ ହସିଥିଲା ମଧୁଛନ୍ଦା । ତା' ଘରର ସମସ୍ତେ ମଧ ଦେଖିଥିଲେ ସେ ହସ ।

ତା' ଜୀବନର ସର୍ବଶେଷ ମୁହୂର୍ତ୍ତରେ ହୁଏତ ସେ ଭାବିଥିବ—ମୋର ପ୍ରଣୟକୁ ମୁଁ ପଙ୍କିଳ ହେବାକୁ ଦେଇ ନାହିଁ, କେବଳ ଜଣକୁ ହିଁ ମୁଁ ମୋର ଶରୀର ଓ ମନ ସମର୍ପଣ କରିଛି ।

ଦ୍ୱିଚାରଣ କରି ନାହିଁ ।

ଡଙ୍ଗା ଧରି ଏକାକୀ ହିଁ ଫେରୁଥିଲା ମନୋଜ । ସେତେବେଳକୁ ରୂପମତୀର ପାଣି ଗୁଡ଼ିକ ଦିଶୁଥିଲା କଜ୍ୱଳ—କଳା ।

ତା' ପରେ ?

ଏକା ସଙ୍ଗେ ଝଣ ଝଣ ହୋଇ ବାଜି ଉଠିଲା ସତ୍ୟବ୍ରତ ଅଫିସର ଫୋନ୍, ଆଉ ଚୌଧୁରୀ ଘର ଫୋନ୍ ।

ଠିକ୍ ତା ପୂର୍ବରୁ ଘରର ଗାଡ଼ି ଫେରି ଆସିଥିଲା ମଧୁଛନ୍ଦାର କୌଣସି ଖବର ନପାଇ, ଚିନ୍ତାରେ କଣ୍ଟକିତ ହେଲେ ସମସ୍ତେ । ଅନେକ ଜାଗାରେ ଖୋଜି ମଧ ସୌମ୍ୟ ତାକୁ ପାଇନାହିଁ ।

ଜଣ ଜଣ କରି ମଧୁଛନ୍ଦାର ସାଙ୍ଗମାନଙ୍କ ଘରକୁ ଫୋନ କରୁଛନ୍ତି ସୁନନ୍ଦା, ଅନ୍ଧାର ହୋଇଗଲା ପରେ ଆହୁରି ଅଧିକ ବ୍ୟସ୍ତ ହେଉଛନ୍ତି ସମସ୍ତେ ।

ନୀଳମଣି ନିସ୍ତେଜ ହୋଇ ଶେଯରେ ପଡ଼ି ରହିଛନ୍ତି, ସତେ ଯେପରି ଦେହରୁ ତାଙ୍କର ସମସ୍ତ ପ୍ରାଣ ଶକ୍ତିକୁ କିଏ ଅପହରଣ କରି ନେଇଛି ।

ସତ୍ୟବ୍ରତ ଫୋନ୍ ଉଠାଇଲେ ଅଫିସ୍‌ରେ ।

ଦେବବ୍ରତ ଫୋନ୍ ଉଠାଇଲେ ଘରେ ।

ସନ୍ଧ୍ୟା ଆରତିର ଘଣ୍ଟା ଶୁଭୁଛି ରାଧାଗୋବିନ୍ଦଙ୍କ ମନ୍ଦିରରୁ । ଘର ଠାକୁରଙ୍କ ଆଗରେ ବାଜୁଥିବା ଘଣ୍ଟି ବି ଶୁଭୁଛି । ସନ୍ଧ୍ୟା ଦୀପ ବସାଇ ଦେଇ ଶଙ୍ଖ ବଜାଉଅଛି ସ୍ମିତା ।

ଶଙ୍ଖ ଅଧେ ବାଜି ଅଟକି ଯାଇଛି ।

ତା' ପରେ ?

କ୍ରନ୍ଦନର ଉଚ୍ଛ୍ୱସିତ ଧ୍ୱନି ଶୁଭୁଛି ପ୍ରାସାଦର କୋଣରୁ କୋଣରୁ, ପାଗଳିନୀ ସୁନନ୍ଦାଙ୍କୁ କୁଣ୍ଢାଇ ଧରିଛି ସୁଜାତା । ମୂର୍ଚ୍ଛା ହୋଇ ଯାଇଛି ସ୍ମିତା ।

ବିନା ସହାୟତାରେ ଶେଯରୁ ଉଠିପଡ଼ି ପ୍ରେତ ପରି ଘରର ଦୁଆର ମୁହଁକୁ ଚାଲି ଆସି କବାଟ ଧରି ଠିଆ ହୋଇଛନ୍ତି ନୀଳମଣି, ଶଙ୍ଖୁଳା ଭାରର ଜିନିଷ ଗୁଡ଼ାକୁ ପାଦରେ ମାଡ଼ି ମକଚି ଚାଲି ଆସିଛନ୍ତି ସେ ।

କିଏ କାହାକୁ ସମ୍ଭାଳିବ ?

ସୌମ୍ୟ ଦଉଡୁଛି ଏପଟରୁ ସେପଟକୁ ।

ଭୟଭୀତ ପିଲାଙ୍କର କାନ୍ଦ ମଧ୍ୟ ମିଶିଯାଇଛି ।

ଅଫିସ୍‌ର ସହକର୍ମୀମାନେ ଅଚେତନ ସତ୍ୟବ୍ରତଙ୍କୁ ଧରାଧରି କରି ନେଇ ଆସିଛନ୍ତି ଘରକୁ ।

ସେ ଏକ ମର୍ମାନ୍ତିକ ଦୃଶ୍ୟ । ଅତି ମର୍ମାନ୍ତିକ ।

ମଧୁଛନ୍ଦାର ଶରୀରଟାକୁ ପୋଷ୍ଟମର୍ଟମ କରିବାକୁ ଦିଆଯାଇ ନାହିଁ । ଦେବବ୍ରତଙ୍କ ସଙ୍ଗୀମାନେ ସାହାଯ୍ୟ କରିଛନ୍ତି । ଦେବବ୍ରତ କହିଛନ୍ତି—କେତେଦିନ ହେଲା ମଧୁଛନ୍ଦାର ମସ୍ତିଷ୍କ ବିକୃତି ଘଟିଥିଲା । ସତ୍ୟନିଷ୍ଠ ଦେବବ୍ରତଙ୍କ ଆଗରେ କେବଳ ଏକମାତ୍ର ପଥ ଖୋଲା ରହିଥିଲା—ତାହା ହେଉଛି ମିଥ୍ୟାର ପଥ । ଯେକୌଣସି ମୂଲ୍ୟଦେଇ ଘରର ସମ୍ମାନ ଓ ମର୍ଯ୍ୟାଦା ବଞ୍ଚାଇ ରଖିବା କଥା ।

ତା'ପରେ ?

ଶବ ଶୋଭାଯାତ୍ରାରେ ସାଙ୍ଗ ସାଥୀ, ଆତ୍ମୀୟ ସ୍ୱଜନ, ଅଧ୍ୟକ୍ଷ, ଅଧ୍ୟାପକ, ତା' ନାଚ ଗୀତର ଗୁଣମୁଗ୍ଧ ପ୍ରଶଂସକମାନେ ଯାଇଥିଲେ । ଗୋଟିଏ ଗୋଟିଏ ପୁଷ୍ପ ସ୍ତବକ ରଖିଥିଲେ ମୃତ ଶରୀର ଉପରେ ।

ସମସ୍ତଙ୍କ ସହିତ ମିଶି ମନୋଜ ମଧ୍ୟ ରଖିଥିଲା ସୁନ୍ଦର ସ୍ତବକଟିଏ ।

Not a flower not a flower sweet
On my black coffin let there be strewn;

Not a friend, not a friend greet
My poor corpse, where my bones shall be thrown;
A thousand thousand sighs to save,
Lay me, O where
Sad true lover never find my grave,
To weep there.

## (୧୭)

ସମସ୍ତେ ରହିଛନ୍ତି, କେବଳ ମଧୁଛନ୍ଦା ବ୍ୟତୀତ । କିନ୍ତୁ ଘରଟି ମନେହେଉଛି ଏକ ପରିତ୍ୟକ୍ତ ଶ୍ମଶାନ ଭୂମି !

ଛୋଟ ଛୋଟ ପିଲା ଦୁଇଟା ସୁଦ୍ଧା କିପରି ସ୍ତବ୍ଧ ହୋଇ ଯାଇଛନ୍ତି । ସୁଜାତା ଦୀର୍ଘଦିନ ପାଇଁ ଛୁଟି ନେଇଛି । ଦେବବ୍ରତ ମଧ ରହିଛି ଛୁଟିରେ । ଥରକୁ ଥର ନିଦ ଔଷଧ ପ୍ରୟୋଗ କରି କୌଣସିମତେ ସମ୍ଭାଳିବାକୁ ପଡୁଛି ସତ୍ୟବ୍ରତଙ୍କୁ, ସୁନନ୍ଦାଙ୍କୁ । ସୌମ୍ୟ ରହି ସାହାଯ୍ୟ କରୁଛି । ଆତ୍ମୀୟ ସ୍ୱଜନଙ୍କର ଯିବାଆସିବା ଲାଗି ରହିଛି, ସମସ୍ତେ ଆସି ସମବେଦନା ଜଣାଉଛନ୍ତି । କିଏ ସନ୍ତର୍ପଣରେ ପଚାରୁଛି, ଯେଉଁମାନେ ପଚାରି ପାରୁନାହାନ୍ତି ସେମାନଙ୍କ ଆଖିରେ ସେହି ଏକା ପ୍ରଶ୍ନ ଫୁଟି ଉଠୁଛି—କେଉଁଥିପାଇଁ ମଧୁଛନ୍ଦା ଆତ୍ମହତ୍ୟା କଲା ? କାରଣ କ'ଣ ?

ପୁଣି ଏକ ଶୁଦ୍ଧିକ୍ରିୟା ସମ୍ପାଦନ କରିବାପାଇଁ ଦାୟିତ୍ୱ ନେଇଛନ୍ତି ନୀଳମଣି ! ଜନ୍ମ, ମୃତ୍ୟୁ, ବିବାହ । ଜୀବନର ଏ ତିନୋଟିଯାକ ପର୍ବ ସଙ୍ଘଟିତ ହେବାକୁ କମ୍ ଆୟୋଜନ ଦରକାର ହୁଏ ନାହିଁ ମଣିଷର !

ମାହେଶ୍ୱରୀ ଓ ଚନ୍ଦ୍ରଶେଖରଙ୍କ ଶୁଦ୍ଧିକ୍ରିୟା ପରେ ବିଜୟର କ୍ରିୟା କରାଇଛନ୍ତି ସେ । ଜୀବନର ଶେଷ ପାହାଚରେ ଠିଆ ହୋଇ ଆଜି ମଧୁଛନ୍ଦାର ଶୁଦ୍ଧି କ୍ରିୟା ମଧ କରାଉଛନ୍ତି । ପିଲାଙ୍କ ପାଖକୁ ଖବର ଦିଆଯାଇଛି, ସୁପ୍ରକାଶ ଆସିଲେ ସେ ହିଁ କ୍ରିୟା ଧରିବ । ମଣ୍ଟୁ ଆସି ପହଞ୍ଚି ଗଲାଣି । ସ୍ୱରୂପା ଆସିନାହିଁ ।

ଥୁଣ୍ଟା ଗଛଟାର ସେହି ଶୁଖିଲା ଅଗପତ୍ରଟା ଆଉ ଝଡ଼ିବନି ନା କ'ଣ ? ଆଡୁଆଳରେ ଥାଇ ନିଜ ଭିତରେ ଠରାଠରି ହୋଇ ଲୋକମାନେ କୁହାକୁହି ହେଉଥାନ୍ତି—ବୁଢ଼ୀ ନୀଳମଣି

ମରିଗଲେ ନାହିଁ, ରୁଗ୍‌ଣା ଶଯ୍ୟାଶାୟିନୀ ପ୍ରଭାବତୀ ମରିଗଲେ ନାହିଁ । ମରିଗଲା କ'ଣ ନା ମଧୁଚ୍ଛନ୍ଦା ? କାଲିର ଛୁଆଟା ! ଏ ଘରର ଚାକରବାକରଙ୍କ କୋଳରେ ରହି ସେଇଟି ପରା ମଣିଷ ହେଇଥିଲା ! ସୁଦାମ, ନିଧିଆ, ରାମବୋଉ, ପଦବୋଉ, ମାଳତୀ ପ୍ରଭୃତି ଥରକୁ ଥର ଆଖି ପୋଛୁଛନ୍ତି, ପୁଣି ସମ୍ଭବ ଅସମ୍ଭବ ସମସ୍ତ ପ୍ରକାର କଳ୍ପନା ଜଳ୍ପନା ମଧ ଚଳାଇଛନ୍ତି । —ହଠାତ୍ ଏହିପରି ଆତ୍ମହତ୍ୟା କାହିଁକି କଲା ମଧୁଚ୍ଛନ୍ଦା ? କାରଣ କ'ଣ ?

ସତରେ ତ !

ସୁତୀକ୍ଷ୍‌ଣ ଶରଶଯ୍ୟା ଉପରେ ଯନ୍ତ୍ରଣା କାତର ଭାବରେ କଡ଼ ଲେଉଟାଇ ନୀଳମଣି ମଧ ଭାବନ୍ତି—ସେ କଥା !

ଜନ୍ମ ଦେଇଥିଲେ ସୁନନ୍ଦା—ସେ କଥା ସତ । କିନ୍ତୁ ତାକୁ ଏଡ଼ିକି ଟିକିଏରୁ ଏଡୁଟିଏ ତ କରିଥିଲେ ନୀଳମଣି ନିଜେ !

କାହାରିକୁ ସେ ଜନ୍ମ ଦେଇ ନାହାନ୍ତି କିନ୍ତୁ ପାଳିଛନ୍ତି ସମସ୍ତଙ୍କୁ, ମଣିଷ କରିଛନ୍ତି । ବିଜୟକୁ, ସତ୍ୟବ୍ରତକୁ, ଦେବବ୍ରତକୁ ପୁଣି ମଧୁଚ୍ଛନ୍ଦା, ସୁପ୍ରକାଶ, ଲୀନା, ମଣ୍ଟୁ, ସ୍ୱରୂପା, ସ୍ମିତା, ଏହିପରିକି ସେ ଛୋଟ ସାନୁ, ସୁଭୁଙ୍କୁ ମଧ । ତାଙ୍କ ଦେହ ଖରାପ ଆରମ୍ଭ ହେବା ପର୍ଯ୍ୟନ୍ତ କେବେ କ'ଣ ସୁନନ୍ଦାକୁ ଭାବିବାକୁ ପଡ଼ିଛି ନା ସୁଜାତାକୁ ଭାବିବାକୁ ପଡ଼ିଛି ସେମାନଙ୍କ ପିଲାମାନଙ୍କ କଥା ?

ବାରରାତ୍ର ପରଠାରୁ ଖୁଆଇବା ଛଡ଼ା ଆଉ ବାକି ସବୁ ଦାୟିତ୍ୱ ତ ନୀଳମଣିଙ୍କର; ତାଙ୍କରି ତତ୍ତ୍ୱାବଧାନରେ ପିଲାଏ ଠିକ୍ ସମୟରେ ତେଲ ମାଲିସ୍ ହେବେ, ହଳଦୀ ଲଗାଇବେ, ଗାଧୋଇବେ ।

ରାତି ମଝିରେ ଦୁଇ ତିନି ଥର ଉଠି ପିଲାଙ୍କ ଶୋଇବାକୁ ତଦାରଖ ନ କଲେ ଚଳୁ ନ ଥିଲା ତାଙ୍କର । କାହାର ଦେହପା ହେଲେ ପାଖରେ ବସିଥିବେ, ନିଜର ଖିଆପିଆ ମନେ ପଡ଼ିବନି ।

ପକ୍ଷୀ ଯେପରି ଅନ୍ୟ ସବୁ କଥା ଭୁଲିଯାଇ ନିଜ ଶରୀରର ଉଷ୍ମତା ଦେଇ ଡିମ୍ୱଟିକୁ ଫୁଟାଇ ଛୁଆରେ ପରିଣତ କରେ, ସେହିପରି ଏ ପିଲାଗୁଡ଼ିକୁ ନୀଳମଣି ବଢ଼ାଇ ନଥିଲେ କି ?

ଆଜି କ'ଣ ଅତି ନିଃଶବ୍ଦରେ ସମସ୍ତଙ୍କ ଅଲକ୍ଷ୍ୟରେ ତାଙ୍କ ଅନ୍ତଃସ୍ଥଳରୁ ରକ୍ତକ୍ଷରଣ ହେଉନାହିଁ ?

ତାଙ୍କର ଯେଉଁ ଦାମ୍ଭିକତା ଥିଲା, ଆତ୍ମବିଶ୍ୱାସ ଥିଲା, ଏତେ ଦିନ ପରେ ମନେହେଉଛି ସେ ସମସ୍ତ ବ୍ୟର୍ଥ ହୋଇ ଯାଇଛି । ନିଜ ସାଧନାର ଉଷ୍ମତାରେ ସମସ୍ତ ଅନ୍ତର ଢାଳିଦେଇ ଯେଉଁ ଝିଅଟିକୁ ସେ ମଣିଷ କରିଥିଲେ—ତା'ର ମନ ବେଦନାର ବିନ୍ଦୁଏ ହେଲେ ସୁଦ୍ଧା ଆଭାସ ପାଇ ପାରିଲେ ନାହିଁ । ତା'ର ହୃଦୟର ଯନ୍ତ୍ରଣାକୁ ଜାଣି ପାରିଲେ ନାହିଁ ।

ଜଳନ୍ତା ଯଜ୍ଞକୁଣ୍ଡ ଭିତରେ ବଳିର ଆହୁତିକୁ ସମର୍ପଣ କରିଦେଲା ପରି ମଧୁଛନ୍ଦାକୁ ସମର୍ପି ଦେଲେ ମୃତ୍ୟୁର କରାଳତା ଭିତରକୁ ।

କାହାରିକୁ ଆଉ ଅବିଦିତ ହୋଇ ରହିଲା ନାହିଁ ଯେ ମଧୁଛନ୍ଦା ଶଚୀନ୍ଦ୍ରକୁ ବିବାହ କରିବାକୁ ଚାହିଁ ନ ଥିଲା ।

କିନ୍ତୁ, କିନ୍ତୁ ସେ କଥା ସେ ମୁହଁ ଖୋଲି କହିଲା ନାହିଁ କାହିଁକି ? ନିଜର ଅନିଚ୍ଛା ଜଣାଇଲା ନାହିଁ କାହିଁକି ?

ସତ୍ୟକୁ ପ୍ରକାଶ କରିବାର ସାହସ ଏ ପରିବାରରେ ସମସ୍ତଙ୍କର ରହିଛି । ଆଉ ସମସ୍ତଙ୍କଠାରୁ ଅଧିକ ସାହସିନୀ ତ ଥିଲା ନିଜେ ମଧୁଛନ୍ଦା !

ନୀଳମଣି ତ କାହିଁ କେବେହେଲେ ପିଲାଙ୍କର ସ୍ୱାଧୀନତାରେ ହସ୍ତକ୍ଷେପ କରି ନାହାନ୍ତି !

ହେଇଟି—ସ୍ୱରୂପା ତ ପୁଣି ତା'ର ଅନିଚ୍ଛା ଜଣାଇଲା, ସମୟ ମାଗିଲା । ନୀଳମଣି କ'ଣ ତାକୁ ବାଧ କଲେ ? ନିଜ ଅନ୍ତରରେ ଯେତେ ଦୁଃଖିତା ହେଲେ ମଧ କାହାରିକୁ ଦୁଃଖ ଦେବାଟା ତାଙ୍କ ପ୍ରକୃତି ବିରୋଧୀ । ସେ କଥା ସେ କେବେ କରି ନାହାନ୍ତି ।

ଓଃ...କେତେ ଦିନ ହେଲା ମଧୁଛନ୍ଦାର ଚାଲିଚଳନରୁ ତାଙ୍କର ଅନୁମାନ କରିବା ଉଚିତ ଥିଲା ।

ତା' ପାଦ ଧ୍ୱନିରୁ ତାକୁ ଚିହ୍ନିପକାନ୍ତି ସେ । ମଧୁଛନ୍ଦା କ'ଣ ଏଥି ଭିତରେ କେତେ ଥର ତାଙ୍କ ଶୋଇବା ଘରର ଦ୍ୱାର ମୁହଁକୁ ଆସିଲେ ମଧ ଫେରିଯାଇ ନାହିଁ ? ହୁଏତ ତା' ମନର ବେଦନାକୁ ଜଣାଇବାକୁ ଆସିଛି କିନ୍ତୁ କହିପାରି ନାହିଁ । ଡାକି ପଠାଇଲେ ମଧ ଆସିନାହିଁ ।

ଏ ସବୁ କଥାରୁ କ'ଣ ତାଙ୍କର ସତର୍କ ହେବା ଉଚିତ ନ ଥିଲା ? ସେ ସତର୍କ ହୋଇ ନାହାନ୍ତି ।

ବଞ୍ଚି ରହିବାର ଗ୍ଲାନି ବଢ଼ି ଯାଇଛି ଶହେ ଗୁଣରେ । ଦୀର୍ଘ ଜୀବନ ଯେପରି ମନେ ହେଉଛି ଅତି ଲଜ୍ଜାକର, ଅତି ଘୃଣିତ, ଅନ୍ତହୀନ ଅଭିଶାପ । ପରିଚର୍ଯ୍ୟା କରୁଥିବା ପଦବୋଉ, ରାମବୋଉଙ୍କ ମୁହଁ ଆଉ ଚାହାଁଣି ସମ୍ମୁଖରେ ତାଙ୍କ ହୃଦୟ ଯେପରି ଅପରାଧବୋଧର ଅସୀମ ଗ୍ଲାନିରେ ଶାମୁକା ଭିତରର ପୋକ ପରି ସଙ୍କୁଚିତ ହୋଇ ଯାଉଛି । ବିଜୟର ମୃତ୍ୟୁ ପରେ ସେ ଯାହା ଅନୁଭବ କରୁଥିଲେ ଆଉ ଥରେ ଆଜି ମଧ ସେଇୟା ଅନୁଭବ କରୁଛନ୍ତି ସେ ।

ତାଙ୍କ ଆଖି ଆଗରୁ ମଧୁଛନ୍ଦା ଚାଲିଗଲା !

ସେ ପୁଣି ତା'ର ଶୁଦ୍ଧିକ୍ରିୟା କରିବେ ।

ଓଃ...ଓଃ ! ପୃଥିବୀରେ ମୃତ୍ୟୁହୀନ ଜୀବନ କି ତୀବ୍ର ଯନ୍ତ୍ରଣାଦାୟକ ସତେ ! ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ମୃତ୍ୟୁର ଯନ୍ତ୍ରଣା ଅନୁଭବ କରିବାକୁ ପଡ଼େ ବଞ୍ଚିରହି ! ଶତଧିକ୍ ଏ ଜୀବନକୁ !

ଶତ ଧିକ୍ ଏ ଜୀବନକୁ ।

ଓଃ ସେ ଚାହାଁଣି କି ତୀବ୍ର ସତେ ! କି ଅସୀମ ଘୃଣାପୂର୍ଣ୍ଣ !

ନିର୍ଜ୍ଜନରେ ଛାତର ଗୋଟାଏ କୋଣରେ ଠିଆହୋଇ ଭାବୁଥିଲା ଜ୍ୟୋତିସ୍ମିତା । ତା'ର ଆଖି ଦୁଇଟିରୁ ଧାର ଧାର ଲୁହ ଝରି ପଡୁଛି ବାଧାହୀନ ଭାବରେ ।

ହଠାତ୍ ଉର୍ଦ୍ଧ୍ୱମୁଖୀ ହୋଇ ସେହି ଅନନ୍ତ ଆକାଶରେ କେଉଁ ଅନନ୍ତ, ଅସୀମ, ଅଦୃଶ୍ୟ ମହାରୂପଙ୍କୁ ଲକ୍ଷ୍ୟ କରି ସେ ଆର୍ତ୍ତକଣ୍ଠରେ କହି ଉଠିଲା—ହେ ଈଶ୍ୱର, ତୁମେ ମତେ ନେଇଗଲ ନାହିଁ କାହିଁକି ? ଯଦି ଏ ଘରୁ ଏକ ଜୀବନ ନେବାର ପ୍ରୟୋଜନ ହେଲା ତା ହେଲେ ମତେ ନ ନେଇ ତମେ ଛନ୍ଦା ନାନୀକୁ ନେଲ କାହିଁକି ?

ପର ମୁହୂର୍ତ୍ତରେ ଉଚ୍ଛୁଳା କୋହର ଆବେଗରେ ସେ ସେହି ଭୂଇଁ ଉପରେ ମୁହଁମାଡ଼ି ଶୋଇ ମନ ଖୋଲି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ଘଟଣାଟି ଅତି କଷ୍ଟ ଦେଇଥିଲା ତାକୁ—

ସୁଜାତାର ନିର୍ଦ୍ଦେଶରେ ଉଷୁମ ଦୁଧ ଗିଲାସେ ନେଇ ପହଞ୍ଚିଥିଲା ସେ ସୁନନ୍ଦାଙ୍କ ପାଖରେ ।

ହଠାତ୍ ନିଜର ଆରକ୍ତ ଆଖି ଦୁଇଟାରେ ଯେମିତି ଘୃଣାର ଅଗ୍ନିଶିଖା ଜାଳିଦେଇ ତା'ର ହାତଟାକୁ ଠେଲିଦେଲେ ସୁନନ୍ଦା, ଉତ୍କ୍ଷିପ୍ତ କଣ୍ଠରେ କହିଲେ—ସ୍ମିତା, ତୁ ମୋ ଆଖି ସାମନାକୁ ଆଉ ଆସିବୁନି କେବେ । ତତେ ଦେଖିଲେ—ତତେ ଦେଖିଲେ—

କ୍ରୋଧ ଆଉ ଶୋକରେ ଗୋଟାଏ ବିକୃତ ଶବ୍ଦ ଖାଲି ବାହାରିଗଲା ତାଙ୍କ କଣ୍ଠରୁ ।

ଗିଲାସଟା ହାତରୁ ଛିଟିକି ଯାଇ ପଡ଼ିଥିଲା ତଳେ, ସବୁତକ ଦୁଧ ଅଜାଡ଼ି ହୋଇଗଲା ।

ଘଟଣାଟା ଏତେ ଅପ୍ରତ୍ୟାଶିତ ଯେ ଉପସ୍ଥିତ ସମସ୍ତେ ବିସ୍ମୟରେ ହତବାକ୍ ହୋଇ ଯାଇଥିଲେ ।

ସୁନନ୍ଦା ନିଜେ ଜାଣି ନ ଥିଲେ ମଧ୍ୟ ଅନ୍ୟମାନେ ଜାଣିଥିଲେ ଦୁଇଦିନ ହେଲା ଅଚୈତନ୍ୟ ଥିବା ସୁନନ୍ଦାଙ୍କ ପାଦ ଦୁଇଟିକୁ ନିଜ କୋଳ ଉପରେ ରଖି ଶୋକାତୁରା ସ୍ମିତା ତାଙ୍କ ମୁହଁକୁ ଚାହିଁ ବସି ରହିଥିଲା ସେହି ଏକା ଠାଆରେ ।

ଆଜି ସକାଳୁ ଦେବବ୍ରତ ଜୋର କରି ତାକୁ ଉଠାଇ ଯାହା ହେଲେ କିଛି ଖାଇବାକୁ ବାଧ କରିଥିଲେ । ତେଣୁ ଉଠି ଯାଇଥିଲା ସେ ।

ବେଦନାରେ ନୀଳବର୍ଣ୍ଣ ଦିଶୁଥିବା ସ୍ମିତାର ମୁହଁକୁ ଚାହିଁ ସୁଜାତା ଆସି କୁଣ୍ଢାଇ ପକାଇଥିଲା, କାନରେ କହିଥିଲା—କଡ଼ା ଔଷଧ ଖାଇବା ଯୋଗୁଁ ବଡ଼ ଖୁଡ଼ୀଙ୍କ ମୁଣ୍ଡ ସ୍ଥିର ନାହିଁ ସ୍ମିତୁ, କଥାଟାକୁ ଧରିବୁନି ।

କିନ୍ତୁ ପର ମୁହୂର୍ତ୍ତରେ ଗର୍ଜି ଉଠିଲେ ସୁନନ୍ଦା—ସୁଜାତା, ତାକୁ ଛାଡ଼ି ଦେ, ସେ ଚାଲିଯାଉ ମୋ ମୁହଁ ସାମନାରୁ ! ଚାଲିଯାଉ, ଓଃ, ଏଇମାନଙ୍କ ପାଇଁ ହିଁ ମୋ ଘର ଧ୍ୱଂସ ହୋଇଗଲା—ମୃତ୍ୟୁର ବୀଜକୁ ଧରି ଚାଲି ଆସିଲେ ଏମାନେ । ଆତ୍ମହତ୍ୟାର ପାପ ଆଣି ପୋତିଦେଲେ ମୋ ଘରେ । ଶେଷକୁ ମୋର ଏ ସର୍ବନାଶ କଲେ । ନ ହେଲେ ଛନ୍ଦା ମନରେ ଆତ୍ମହତ୍ୟା କରିବା ଚିନ୍ତା କୁଆଡୁ ପଶିଥାନ୍ତା...

ଉନ୍ମତ୍ତ କଣ୍ଠରେ ପ୍ରଳାପ କରୁଥାନ୍ତି ସୁନନ୍ଦା ।

ଦଶ ବର୍ଷ ହେଲା ଧୀରେ ଧୀରେ ଶୁଖି ଆସୁଥିବା ହୃଦୟର କ୍ଷତ ସ୍ଥାନଟିକୁ ଯେପରି ସୁନନ୍ଦା ଆଜି ଆଉଥରେ ନୂଆକରି ଦାନ୍ତୁଆ ଛୁରୀରେ ଉଖାରି ଦେଇଛନ୍ତି । ବୋଉର ମୃତ୍ୟୁଶୋକ ସହି ନପାରି ନନା ତୋର ବେକରେ ଦଉଡ଼ା ଲଗାଇ ଆତ୍ମହତ୍ୟା କରି ଦେଇଥିଲେ—ସେହି କଥାଟାକୁ ଯେପରି ନୂଆକରି ସ୍ମରଣ କରାଇ ଦେଲେ ସୁନନ୍ଦା ।

ଖାଲି ସେତିକି ନୁହେଁ । ଆପଣା ମନ ଭିତରେ ଗୋପନରେ ଜମି ରହିଥିବା ବିଷ ଗୁଡ଼ିକ ଯେପରି ଉଗାଳି ପକାଉଛନ୍ତି ସୁନନ୍ଦା । ନିଜର ଆୟତ୍ତରେ ସେ ଆଉ ନାହାନ୍ତି—

କହି ଚାଲିଥାନ୍ତି—ସୁଜାତା, ଭଗବାନଙ୍କ ବିଚାର ଦେଖୁଛୁ ତ, ଶହେ ବର୍ଷର ବୁଢ଼ୀ ଯେଉଁଠି ବଞ୍ଚି ରହିଛି, ଯୋଉ ଘରେ ବର୍ଷ ବର୍ଷର ପକ୍ଷାଘାତ ରୋଗୀ ମରୁନାହିଁ, ଖାଇପିଇ ବଞ୍ଚି ରହିଛି...ମୋ ମଧୁଛନ୍ଦା କାଲିର ପିଲାଟେ...ଜମା ଏକୋଇଶି ବର୍ଷର ଝିଅ...ସେ ଆତ୍ମହତ୍ୟା କରି ମରିଗଲା ? ଓହୋ, ଏ ଘରେ କ'ଣ ଆଉ କେହି ମରିବାକୁ ନଥିଲେ ସୁଜାତା ?

ଅବଚେତନ ମନର ହଳାହଳ ଗୁଡ଼ିକ ବାହାରି ଆସୁଛି ଏହିପରି ।

ଘରର ଆଉ ଗୋଟିଏ ପାଖକୁ ପଡ଼ିଥିବା ଖଟଟି ଉପରେ ଅଧ ଆଉଜା ଭାବରେ ବସି ରହି କରୁଣ-ସ୍ତବ୍ଧ ଆଖିରେ ଚାହିଁ ରହିଛନ୍ତି ସତ୍ୟବ୍ରତ । ଦେଖୁଥାନ୍ତି ହତଭାଗିନୀ ସୁନନ୍ଦାର ଉନ୍ମାଦ ଅବସ୍ଥା । ଦୁଇଦିନ ହେଲା ସେ ମୂକ ପାଲଟି ଯାଇଛନ୍ତି ଯେପରି ।

ସୁଜାତାଙ୍କ ବାହୁ ବନ୍ଧନରୁ ନିଜକୁ ମୁକ୍ତ କରି ଦେଇ ଏ ଛାତ ଉପରକୁ ଦଉଡ଼ି ଆସିଥିଲା ସ୍ମିତା ।

ତା'ର ମନେପଡ଼ିଲା କିପରି ସେ ଦିନ ମଧୁଛନ୍ଦା ଅସ୍ଫୁଟ ଭାବରେ ସେହି କବିତାଟି ଆବୃତ୍ତି କରୁଥିଲା–

ଏହିପରି ମୃତ୍ୟୁ ହେଉ ମୋର
ନ ରହୁ ଗୋ କେହି ଲୁହ ଢାଳିବାକୁ,
କେଉଁଠି ମୁଁ ଶେଷଶଯ୍ୟା ରଚି ଅଛି
ପ୍ରସ୍ତରର ଫଳକଟିଏ ବି
ନ ଥାଉ ଗୋ ତାହା କହିବାକୁ... ।

ତା' ହେଲେ... ତା'ହେଲେ ସେହି ଦିନରୁ ଆତ୍ମହତ୍ୟାର ଚିନ୍ତା ଖେଳିଲାଣି ମଧୁଛନ୍ଦା ମନରେ ।

ଓଃ, ତା'ର ବି ମରିବାକୁ ଇଚ୍ଛା ହେଉଛି, ଆତ୍ମହତ୍ୟା କରି ଦେବାକୁ ଇଚ୍ଛା ହେଉଛି ଛନ୍ଦାନାନୀ ପରି । ଜଗତରେ ବଞ୍ଚି ରହିବାର କୌଣସି ଆବଶ୍ୟକତା ଦେଖି ପାରୁନି ସେ ।

କେତେବେଳେ କେତେବେଳେ ଯେଉଁ ମୁହୂର୍ତ୍ତରେ ମଣିଷ ମରିବାକୁ ଇଚ୍ଛା କରେ, ପୁଣି ସେହି ମୁହୂର୍ତ୍ତରେ ଏହି ସୁନ୍ଦର ପୃଥିବୀକୁ ଛାଡ଼ି ଚାଲିଯିବାର କଳ୍ପନା ତାକୁ ଅଧିକ ଶୋକରେ ଅଧୀର କରି ପକାଏ । ସ୍ମିତା ଶୋକରେ ଉଦ୍‌ବେଳିତ ହୋଇ ମନ ଖୋଲି କାନ୍ଦିଲା ।

କେତେ ସମୟ ପରେ ଅନୁଭବ କଲା ମୁଣ୍ଡ ଉପରେ କାହାର ହାତର ସ୍ପର୍ଶ । ଚମକି ପଡ଼ି ସେହି କ୍ରନ୍ଦନ ଅଧୀର ଅଶ୍ରୁଧୌତ ମୁହଁଟିକୁ ହିଁ ଟୋକି ଚାହିଁଲା–ଦେଖିଲା ସୌମ୍ୟ ତାକୁ ସାନ୍ତ୍ୱନା ଦେଉଛି । ଖାଲି ସେ ଏକା ନୁହେଁ, ତା' ସହିତ ମଣ୍ଟୁ ଓ ଲୀନା ମଧ ଆସି ଠିଆ ହୋଇଛନ୍ତି । ସେ ଦୁହିଁଙ୍କ ଆଖିରୁ ମଧ ଝରି ପଡୁଛି ଲୁହ ଧାର ।

ସେମାନଙ୍କର ସେହି ଅସହାୟ ଶୋକାତୁର ମୁହଁ ଦୁଇଟିକୁ ଚାହିଁ ବ୍ୟସ୍ତହୋଇ ଉଠି ଠିଆ ହୋଇଗଲା ସେ ଏବଂ ଟାଣି ଆଣିଲା ନିଜ ପାଖକୁ । ନିଜ ଆଖି ପୋଛୁ ପୋଛୁ ବ୍ୟାକୁଳ ଭାବରେ ସୌମ୍ୟକୁ ପଚାରିଲା–ଛନ୍ଦା ନାନୀ ଏକଥା କାହିଁକି କଲେ ସୌମ୍ୟ ଭାଇନା ?

ନିର୍ନିମେଷ ନେତ୍ରରେ ତା'ର ଶୋକବିହ୍ୱଳ ମୂର୍ତ୍ତି ଆଡ଼କୁ ଚାହିଁ ନୀରବରେ ଠିଆହୋଇ ରହିଲା ସୌମ୍ୟ । ସେ ମଧ ଭାବିଲା–ଏ କଥା କାହିଁକି କଲା ଛନ୍ଦା, କାହିଁକି ?

ଏ ପ୍ରଶ୍ନ ଏ ଦୁଇଦିନ ଭିତରେ ନିଜକୁ ଅନେକ ଥର ପଚାରିଲାଣି ସୌମ୍ୟ; କିନ୍ତୁ ଉତ୍ତର ଦେବ କିଏ ?

ଯେ ଉତ୍ତର ଦେଇ ପାରିଥା'ନ୍ତା–ସେ ହେଉଛି ମଧୁଛନ୍ଦା ନିଜେ ।

କେବଳ ମଧୁଛନ୍ଦା ନିଜେ ହିଁ ଏ କଥାର ଉତ୍ତର ଦେଇ ପାରିଥା'ନ୍ତା । ଅବଶ୍ୟ ଆଉ ଜଣେ ଥିଲା ଏ କଥାର ଉତ୍ତର ଦେବାକୁ—ସେ ହେଉଛି ମନୋଜ । କିନ୍ତୁ ସେ ତ ରହିଗଲା ନେପଥ୍ୟରେ, ଅନ୍ତରାଳର ଅଭିନେତା ହୋଇ । ସୌମ୍ୟ ସେ କଥା ଜାଣିନାହିଁ ।

ସବୁଥର ଆସିଲାବେଳକୁ ଆଗରୁ ଖବର ଦେଇ ଆସେ ସ୍ୱରୂପା କିନ୍ତୁ ଏଥର ଆଉ ଖବର ଦେବାକୁ ସମୟ ନାହିଁ । ଟେଲିଗ୍ରାମ୍ ପାଇଲାକ୍ଷଣି ସଙ୍ଗେ ସଙ୍ଗେ ବାହାରି ପଡ଼ିଛି ।

ତେବେକେ ଷ୍ଟେସନ୍‌ରେ ସେ ଦେଖିଲା—ମଣ୍ଟୁକୁ ସାଙ୍ଗରେ ଧରି ସୌମ୍ୟ ନିଜେ ଘରର ଗାଡ଼ି ନେଇ ଆସିଛି ।

ଦୁହେଁ ଦୁହିଁଙ୍କ ଆଡ଼କୁ ସଜଳ ଚକ୍ଷୁରେ ଚାହିଁଲେ । ନିଜ ନିଜ ବିଷୟରେ ଭାବପ୍ରବଣ ହେବାର ଅବସର ନାହିଁ, ସମସ୍ତ ଘଟଣା ଉପରେ ମଧୁଛନ୍ଦାର ମୃତ୍ୟୁଶୋକ ଗାଢ଼ କୃଷ୍ଣବର୍ଣ୍ଣର ପର୍ଦ୍ଦାଟିଏ ପରି ଢାଙ୍କିହୋଇ ଯାଇଛି ।

ସୌମ୍ୟ ନୀରବରେ ତା' ହାତରୁ ବେଗ୍‌ଟି ଓ ସୁଟ୍‌କେସ୍‌ଟି ଧରି ନେଲା । ଲୁହ ଢଳ ଢଳ ଆଖିରେ ସ୍ୱରୂପାର ହାତକୁ ମୁଠାଇ ଧରିଥିଲା ମଣ୍ଟୁ । ସେହିପରି ତା' ହାତଧରି ସୌମ୍ୟ ପଛେ ପଛେ ଯାଇ ମଟରଗାଡ଼ିରେ ବସିଲା ସ୍ୱରୂପା ।

ତା'ର ଇଚ୍ଛାହେଲା ପଚାରନ୍ତା—ମଧୁଛନ୍ଦାର ଆତ୍ମହତ୍ୟାର କାରଣ କ'ଣ ?

କିନ୍ତୁ ସୌମ୍ୟର ଶୁଖିଲା ମୁହଁକୁ ଚାହିଁ ପଦଟେ ସୁଦ୍ଧା କିଛି କହି ପାରିଲା ନାହିଁ ।

ଉପର ମହଲାର ବାରଣ୍ଡାରେ ଚଉକିରେ ଦର ଆଉଜାହୋଇ ବସି ବ୍ରାହ୍ମଣ ଭୋଜନର ତାଲିକା ପ୍ରସ୍ତୁତ କରାଉଥାନ୍ତି ନୀଳମଣି ! ସୁଦାମ କାଗଜ କଲମ ଧରି ଲେଖୁଛି । ମଧୁଛନ୍ଦାର ଆନନ୍ଦପୂର୍ଣ୍ଣ ବିବାହର ମହୋତ୍ସବ ପାଇଁ ତାଲିକା ପ୍ରସ୍ତୁତ ହୋଇଥାନ୍ତା କିନ୍ତୁ ଆଜି ତା'ର ଶୁଦ୍ଧିକ୍ରିୟା ପାଇଁ ଆବଶ୍ୟକ ହେଉଥିବା ସମସ୍ତ ଟିକିନିଖି ଦ୍ରବ୍ୟର ତାଲିକା କରୁଛନ୍ତି ବଡ଼ମା !

ତାଙ୍କର ସେ ନିର୍ବିକଳ୍ପ ମୂର୍ତ୍ତି ଦେଖିଲେ ଅନ୍ୟ କାହାର କ'ଣ ମନେ ହେଉଥିବ, ସ୍ୱରୂପାର ମନେ ହେଲା ଯେପରି ସ୍ୱୟଂ ଭଗବାନ ନିର୍ବିକାର ଚିତ୍ତରେ ନିଜର ସୃଷ୍ଟିର ଶୋଚନୀୟ ପରିଣତି ଦେଖି ମଧ୍ୟ ଅବିଚଳିତ ହୋଇ ରହିଛନ୍ତି ।

ସ୍ୱରୂପାକୁ ଦେଖି ପାରମ୍ପରିକ ରୀତିରେ ନୀଳମଣି ତ କାନ୍ଦି ପକାଇଲେ ନାହିଁ । ବରଂ ସ୍ୱରୂପା ନିଜେ ସମ୍ଭାଳି ପାରିଲା ନାହିଁ ନିଜକୁ । ପାହାଚରେ ପାଦଦେଲା ବେଳକୁ ତା'ର ମନେ ହେଉଥିଲା—ଘରଟା ଘର ନୁହେଁ, ଗୋଟାଏ ହାହାକାରପୂର୍ଣ୍ଣ ଶ୍ମଶାନ ଭୂମି । ତା'ରି ଭିତରେ ପୁଣି ଶୁଦ୍ଧିକ୍ରିୟାର ସେହି ପ୍ରସ୍ତୁତି ସ୍ୱରୂପାକୁ ଯେପରି ଉଦ୍‌ବେଳିତ କରିପକାଇଲା । ପିଲାଙ୍କ ପରି ଦଉଡ଼ିଯାଇ ବଡ଼ମା'ଙ୍କ ପାଦପାଖରେ ବସିପଡ଼ି ତାଙ୍କ କୋଳରେ ମୁହଁ ଲୁଚାଇ

ଦେଲା ସେ, କ୍ରନ୍ଦନରେ ଉଚ୍ଛ୍ୱସିତ ହୋଇ ଅଶ୍ରୁବିକୃତ କଣ୍ଠରେ କହିଲା—ବଡ଼ମା, ଛନ୍ଦା କାହିଁକି ଇମିତି ଚାଲିଗଲା ?

ଏତିକି କହି ଛୋଟ ପିଲାଟିଏ ପରି ଧକେଇ ହୋଇ କାନ୍ଦିବାକୁ ଲାଗିଲା ସେ । ଉପସ୍ଥିତ ସମସ୍ତେ ନିଜ ନିଜର ଆଖି ପୋଛୁଥିଲେ, ଏଥର ସ୍ୱରୂପାର ବିକଳ କାନ୍ଦଣା ଦେଖି କାନ୍ଦି ଉଠିଲେ ଜୋର୍‌ରେ ।

ସ୍ୱରୂପାର ମୁଣ୍ଡଟିକୁ ଆଦରରେ ଆଉଁଶି ଦେଇ ସଂକ୍ଷିପ୍ତ ଭାବରେ ନୀଳମଣି କହିଲେ—ଶାନ୍ତ ହୁଅ ମା ।

ଅବାକ୍ ବିସ୍ମୟରେ ଚାହିଁ ରହିଛନ୍ତି ସମସ୍ତେ—ନୀଳମଣିଙ୍କ ଆଖିରେ ଟୋପାଏ ହେଲେ ଲୁହ ଝରୁନାହିଁ ! ଅଥଚ ସ୍ୱରୂପା ଆକୁଳ ହୋଇ ଯାଉଛି । ଘର ଭିତରୁ ଦେବବ୍ରତ ଓ ସୁଜାତା ବାହାରି ଆସି ସେ ଦୃଶ୍ୟ ଦେଖି ନିଜର ଆଖି ପୋଛୁଛନ୍ତି । ଘର ଭିତରେ ସତ୍ୟବ୍ରତ ଦୁଇ ହାତରେ ନିଜର ମୁହଁକୁ ଘୋଡ଼ାଇ ପକାଇ ନିଜକୁ ସଂଯତ ରଖିବାର ଚେଷ୍ଟା କରୁଥାନ୍ତି ।

ତାଙ୍କ ପାଦ ଦୁଇଟିକୁ ଆଉଁଶି ଦେଉ ଦେଉ ନୀରବରେ ଅଶ୍ରୁଧାର ବୋହି ଯାଉଥାଏ ସ୍ମିତାର ଆଖିରୁ । ତାକୁ ଲାଗି ଛଳ ଛଳ ଆଖିରେ ବସିଥାଏ ଲୀନା ।

ଘରର ଅନ୍ୟ ପ୍ରାନ୍ତରେ ଥିବା ଭିନ୍ନ ଶଯ୍ୟା ଉପରେ ଔଷଧର ପ୍ରଭାବରେ ସୁନନ୍ଦା ନିଦ୍ରିତା, କିନ୍ତୁ ସେ ଗଭୀର ନିଶାଗ୍ରସ୍ତ ଅବସ୍ଥାରେ ମଧ୍ୟ ଅସ୍ଥିର ଭାବରେ କଡ଼ ଲେଉଟାଇଛନ୍ତି ସେ !

ନିଜ ଘର ଭିତରୁ ଅସ୍ପଷ୍ଟ ବିକୃତ କଣ୍ଠରେ କାହାକୁ ଅଭିଶାପ ଦେଇ ଚାଲିଛନ୍ତି ଶଯ୍ୟାଶାୟିନୀ ପ୍ରଭାବତୀ । ଏହା ତାଙ୍କର ପ୍ରାୟ ସବୁଦିନର ଅଭ୍ୟାସ ।

ନୀଳମଣିଙ୍କ ଶୁଖିଲା ଆଖି ଦୁଇଟାକୁ ହିଂସ୍ର ଭାବରେ ଚାହିଁରହିଛି ରାମବୋଉ । ମନରେ ଭାବୁଛି—ବୁଢ଼ୀମା'ଙ୍କୁ ଟିକିଏ ଲାଜ ସରମ ନାହିଁ । ଅନ୍ତତଃ ବାହାରକୁ ଦେଖାଇବାକୁ ତ ହେଲେ କାନିଟା ଟିପି ଧରିଥା'ନ୍ତେ ସେ ଶୁଖିଲା ଆଖି ଦୁଇଟା ଉପରେ । ଓହୋ ! କି ପାଷାଣ ହିଆ ! ମଣିଷ ନା ନିଦା ପଥରଟେ !

ପୁଣି ଭାବୁଛି...କାହିଁକି ନ ହେବ ? ଏମାନେ ସମସ୍ତେ ତାଙ୍କର କିଏ କି ? କାହାକୁ କ'ଣ ସେ ଅନ୍ତଫାଡ଼ି ଜନମ ଦେଇଛନ୍ତି ? ଯେତେହେଲେ ପୋଷିତ ! ଭଗବାନଙ୍କ କଥା ଦେଖ—ଶହେ ବର୍ଷର ବୁଢ଼ୀ ବସିଛନ୍ତି, ଆଉ ବାଇଶ ବର୍ଷର ଝିଅ ଚାଲିଗଲେ ? ଦିନ ଦିଇଟା ଯାଇଥିଲେ ବାହାଘର ହୋଇଥା'ନ୍ତା । ଖିରି, ପିଠା, ମାଛ, ମାଉଁସର ସୁଅ ଛୁଟିଥା'ନ୍ତା । —ସେମାନେ ସମସ୍ତେ ଦାମିକା ନୂଆ ଲୁଗା ପିନ୍ଧିଥା'ନ୍ତେ । ବିଧିର କି ବିଧାନ !

ସ୍ୱରୂପାର କାନ୍ଦ ବନ୍ଦ ହେଉନାହିଁ, ହୋଇ ପାରୁନାହିଁ । ଏ ଶୋକ ଭିତରେ ତା'ର ହତଭାଗ୍ୟ ନନା ବୋଉଙ୍କ ପାଇଁ ଅବରୁଦ୍ଧ ହୋଇ ରହିଥିବା ତୀବ୍ର ଶୋକ ଦୁଃଖ ପୁଣି ଉଛୁଳି ଉଠିଛି । କେତେ ମୁହୂର୍ତ୍ତ ପାଇଁ ମନର ଭାରସାମ୍ୟ ହରାଇ ସେ କହିଲା—ବଡ଼ମା' ସେଦିନ

ସନ୍ଧ୍ୟାରେ ପ୍ରାର୍ଥନାରେ ବସି ମୁଁ ଯେ ସମସ୍ତଙ୍କ ପାଇଁ ଶତାୟୁ କାମନା କରୁଥିଲି, ଅଥଚ ଏଠି ମଧୁଛନ୍ଦା...

—ବଡ଼ମା', ଭଗବାନ୍ ମଣିଷକୁ ଜନ୍ମ ଦେଲେ କାହିଁକି ଯେ ? ଯଦି ଜନ୍ମ ଦେଲେ ତା'ହେଲେ ମୃତ୍ୟୁହୀନ ଜୀବନ ଦେଲେ ନାହିଁ କାହିଁକି ?

ହାୟରେ !

ସାବଧାନରେ ନିଃଶ୍ୱାସଟିଏ ପକାଇଲେ ନୀଳମଣି । କାହିଁ କେତେ ଦୀର୍ଘ ବର୍ଷ ବିତିଗଲାଣି । ପ୍ରଥମେ ପ୍ରଥମେ ଏଭଳି କେତେ ଅସୁମାରୀ ପ୍ରଶ୍ନ ଉଠିଛି ତାଙ୍କ ମନ ଭିତରେ । ଉତ୍ତର କ'ଣ ପାଇଛନ୍ତି ?

ମାତ୍ର ଷୋହଳ ବର୍ଷ ବୟସରେ ସ୍ୱାମୀଙ୍କୁ ହରାଇଦେଇ ଏ ଜଗତର ସମସ୍ତ କିଛି ଅର୍ଥହୀନ ହୋଇଯାଇଛି, ସତେ ଯେମିତି ନିର୍ଜୀବ ପଥର ହୋଇଯାଇଛି ମନଟା ।

ନା, ମନଟା ନିର୍ଜୀବ ପଥର ହୋଇପାରି ନାହିଁ । ଅଦ୍ୟାପି ହୋଇନାହିଁ ।

ଆଖିରୁ ଲୁହ ଝରି ନାହିଁ ସତ, କିନ୍ତୁ କଳିଜାରୁ ବୁନ୍ଦାଏ ବୁନ୍ଦାଏ ରକ୍ତ ଝରୁଛି, ଯେପରି ହୃଦୟ ଭିତରେ ଝରୁଥିବା ସେ ରକ୍ତବିନ୍ଦୁର ଶବ୍ଦକୁ ସେ ଶୁଣି ପାରୁଛନ୍ତି ନିଜର କାନରେ । ରକ୍ତ ଝରୁଛି ! ହୃଦ୍‌ଯନ୍ତ୍ରଟା ଥରୁଛି ।

ଏ ରକ୍ତକ୍ଷରଣ ଘଟିଥିଲା ବିଶ୍ୱନାଥଙ୍କ ମୃତ୍ୟୁ ସମୟରେ ।

ଘଟିଥିଲା ବିଜୟର ମୃତ୍ୟୁ ସମୟରେ ।

ଆଜି ମଧୁଛନ୍ଦାର ବିୟୋଗରେ ମଧ୍ୟ ସେହି କ୍ଷରଣ ଚାଲିଛି । ନୀରବରେ, ଅତି ନିଃଶବ୍ଦରେ ।

ଆଶ୍ଚର୍ଯ୍ୟ ! ଏତେ ରକ୍ତକ୍ଷରଣ ସତ୍ତ୍ୱେ ସେହି ବଳିଷ୍ଠ ହୃଦ୍‌ଯନ୍ତ୍ରଟା କ'ଣ ଏବେ ମଧ୍ୟ ଟିକିଏ ହେଲେ ଦୁର୍ବଳ ହୋଇନାହିଁ ? ସତରେ କ'ଣ ନୀଳମଣି ଅମର ଫଳ ଖାଇ ଜନ୍ମ ହୋଇଛନ୍ତି ?

ଜନ୍ମ ହୋଇଛନ୍ତି ଦୀର୍ଘଜୀବନ ଲାଭ କରି ଗୁଡ଼ାଏ ଦୁଃଖ ଦୁର୍ଦ୍ଦଶା ଦେଖିବାକୁ ? ସମସ୍ତଙ୍କଠାରୁ ସେବା ନେଇ ସମସ୍ତଙ୍କୁ କଷ୍ଟ ଦେବାକୁ ? ତାଙ୍କର ଏ ଦୀର୍ଘଜୀବନ ଯେ ଉଣାଅଧିକେ ଏ ଘରର ସମସ୍ତଙ୍କୁ ଅତିଷ୍ଠ କରି ପକାଇଲାଣି, ଆଖି ଦୁଇଟାର ଦୃଷ୍ଟି ଟିକିଏ ନିଷ୍ପ୍ରଭ ହୋଇ ଯାଇଥିଲେ ସୁଦ୍ଧା କ'ଣ ଏକଥା ଲକ୍ଷ୍ୟ କରିପାରୁ ନାହାନ୍ତି ସେ ?

ସେମାନେ ସମସ୍ତେ ନ କହିଲେ ବି କହୁଛନ୍ତି, ପଚାରୁଛନ୍ତି—ତମେ କେବେ ମରିବ କହ ? କେବେ ମରିବ ତମେ ? ଆହୁରି କେତେଦିନ ସମୟ ନେବ ମରିବାପାଇଁ ?

ଛି, ଛି, ସମସ୍ତଙ୍କ ପାଇଁ ଶତାୟୁ କାମନା କରୁଥିଲା ସ୍ୱରୂପା ?

ଅତି ଦୁଃଖରେ ମଧ ହସର ସ୍ମିତ ରେଖାଟିଏ ଫୁଟି ଉଠିଲା ନୀଳମଣିଙ୍କ ମୁହଁରେ ? ମୂର୍ଖ–ସ୍ୱରୂପା, ଅତି ବୁଦ୍ଧିମତୀ ହୋଇ ମଧ ତୁ ମୂର୍ଖଟିଏ ସତରେ ।

ମଣିଷ ଶହେ ବର୍ଷ ବଞ୍ଚି କ'ଣ କରିବ ? ଖାଲି ଅନ୍ୟମାନଙ୍କୁ ଦୁଃଖ ଦେବ ସିନା ?

ଖାଲି ନିଜେ ଗୁଡ଼ାଏ ଦୁଃଖ ପାଇବ, ଅନ୍ୟ ମାନଙ୍କର ଦୁଃଖ ଦେଖିବ ? ସେ ନିଷ୍ପାପ ସତ୍ୟଯୁଗ ଚାଲି ଗଲାଣି କେବେଠାରୁ । ବେଦର ଯୁଗ ସୁଦ୍ଧା ଭରି ରହିଥିଲା ଖାଲି ହିଂସା, ବିଦ୍ୱେଷ, ଭୟ ଆଉ ଈର୍ଷାରେ ।

ଯଦିଚ ମନ୍ତ୍ରମାନଙ୍କରେ ଯଜ୍ଞ କରୁ କରୁ ଋଷିମାନେ ପଢୁଥିଲେ–

ସମାନୋ ମନ୍ତ୍ରଃ ସମିତିଃ ସମାନୀ...

x x x

ସମାନୀ ବ ଆକୂତିଃ ସମାନା ହୃଦୟାନି ବଃ

ସମାନମସ୍ତୁ ବୋ ମନୋ ଯଥା ବଃ ସୁସହାସତି ।

ତୁମ୍ଭ ମାନଙ୍କର ସମସ୍ତଙ୍କର ମନ, ଚିତ୍ତ, ସବୁ ଏକପ୍ରକାର ହେଉ...ସମ୍ପୂର୍ଣ୍ଣ ଏକମତ ହୁଅ ।

ସେହି ଆର୍ଯ୍ୟମାନେ ହିଁ ତାଙ୍କର ପୂର୍ବବର୍ତ୍ତୀ ଅଧିବାସୀମାନଙ୍କ ନଗର, ଗୃହ ନିଆଁରେ ଜାଳିଦେଇ ଧ୍ୱଂସ କରି ଦେଇଥିଲେ । ସେମାନଙ୍କୁ ଲୁଣ୍ଠନ କରିଥିଲେ ।

ମଣିଷ ସବୁବେଳେ ଅନ୍ୟର ଅନିଷ୍ଟ କାମନା କରେ । ଜଣକର ସୁଖ ଦେଖିଲେ ହିଂସା କରେ । ମଣିଷ ନିରୁଦ୍‌ବେଗ ଭାବରେ ହତ୍ୟା କରିଦିଏ ମଣିଷକୁ । ତେଣୁ ଏ ଯୁଗରେ ଦୀର୍ଘ ଜୀବନ ଖାଲି ବେଶୀ ଦୁଃଖଦାୟକ ସିନା !

ବିଷର ତୀବ୍ର ଜ୍ୱାଳାରେ ପରିପୂର୍ଣ୍ଣ ଅମୃତ କୁମ୍ଭ ପରି ଯେ ଏ ଦୀର୍ଘ ଜୀବନ । ସ୍ୱରୂପା ଶତାୟୁ କାମନା କରୁଛି ?

କିଛି ନ କହି ନିଜର କୋଳ ଉପରେ ରହିଥିବା ସ୍ୱରୂପାର ମଥାଟିକୁ ଆଉଁଶି ଦେଉଥିଲେ ସେ ।

x x x

ଦିନ କାହାକୁ ଅପେକ୍ଷା କରେ ନାହିଁ ।

ମଧୁଛନ୍ଦାର ଶୁଦ୍ଧିକ୍ରିୟା ସରିବାର କେତେଦିନ ପରେ ।

ବଡ଼ମା'ଙ୍କୁ କହି ସୌମ୍ୟ ସହିତ ମଧୁଛନ୍ଦାର ଆଶ୍ରୟ ସ୍ଥାନଟିକୁ ଦେଖିବାକୁ ଆସିଥିଲା ସ୍ୱରୂପା । ରୂପମତୀ ନଦୀକୂଳରେ ଥିବା ଜମିଦାର ଚୌଧୁରୀ ନାରାୟଣ ଦାଶଙ୍କ ପରିବାରର ସ୍ୱତନ୍ତ୍ର ଶ୍ମଶାନ ଭୂମି ଏହା, ଯେଉଁଠି ଦିନେ ପଥ ଭୁଲିଯାଇ ବିଭ୍ରାନ୍ତ ହୋଇ ପଡ଼ିଥିଲେ

ବିଶ୍ୱନାଥ, ଭୟରେ ମୂର୍ଚ୍ଛିତ ହୋଇ ଯାଇଥିଲେ ଏବଂ ତାହା ହିଁ ତାଙ୍କର ମୃତ୍ୟୁର କାରଣ ହୋଇଥିଲା ।

ଅବଶ୍ୟ ସେହି ଶିମିଳି ଗଛ ଆଉ ନାହିଁ, ଆହୁରି କେତେ ଗଛ ନ ଥିବ, ତେବେ ପୁଣି କେତେ ନୂଆ ଗଛ ଲତା ମଧ ମୁଣ୍ଡ ଟେକି ଉଠିଥିବେ ଯାରି ଭିତରେ ।

ଭୋର ନ ହେଉଣୁ ସେମାନେ ଯାଇ ପହଞ୍ଚିଥିଲେ । ଶୁଦ୍ଧ ପୂତ ଭାବରେ ସ୍ନାନ ପୂଜା ସାରି ଦେବଦର୍ଶନ ପାଇଁ ମନ୍ଦିରକୁ ଯିବା ପରି ହିଁ ପ୍ରସ୍ତୁତ ହୋଇ ଆସିଥିଲା ସ୍ୱରୂପା । ହାତରେ ମଧୁଛନ୍ଦାର ଅତି ପ୍ରିୟ ଫୁଲଗୁଡ଼ିକ ଓ ପତ୍ରର ସୁନ୍ଦର ଗୁଚ୍ଛଟିଏ ତିଆରି କରି ଆଣିଥିଲା ।

ଖଣ୍ଡିଏ କାଗଜରେ ଲେଖିଥିଲା ଦୁଇଧାଡ଼ି ଶ୍ଳୋକ—

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ

ନ ଚୈନଂ କ୍ଳେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ...

ଆତ୍ମା ଅବିନଶ୍ୱର, ତା'ର ମୃତ୍ୟୁ ନାହିଁ, ଅଗ୍ନି ତାକୁ ଦହନ କରିପାରେ ନାହିଁ କି ଅସ୍ତ୍ରଶସ୍ତ୍ର ଛେଦନ କରିପାରେ ନାହିଁ, ଜଳ ଏହାକୁ ଆର୍ଦ୍ର କରିପାରେ ନାହିଁ ଓ ପବନ ମଧ ଏହାକୁ ଶୁଖାଇ ପାରେ ନାହିଁ ।

କାଗଜଟିକୁ ଦୁଇ ଟୋପା ଲୁହରେ ସିକ୍ତ କରି ଅତି ଯତ୍ନରେ ରଖି ଦେଇଥିଲା ଫୁଲତୋଡ଼ା ଭିତରେ ।

ଶ୍ମଶାନ ଫାଟକ ପାଖରେ ପହଞ୍ଚିଲାକ୍ଷଣି ମୁହାଁମୁହିଁ ହୋଇଗଲା ଶଚୀନ୍ଦ୍ର ସହିତ । ଶଚୀନ୍ଦ୍ର ଭିତରୁ ବାହାରି ଆସୁଥିଲା । ତା'ର ଅଶ୍ରୁସିକ୍ତ ଆଖି କୋଣକୁ ଚାହିଁ ବିସ୍ମୟରେ ସ୍ତବ୍ଧ ହୋଇଗଲା ସ୍ୱରୂପା । ବିସ୍ମୟରେ ସ୍ତବ୍ଧ ହେଲା ସୌମ୍ୟ ମଧ । ଏହିପରି ଜାଗାରେ, ଏହିପରି ସମୟରେ ଶଚୀନ୍ଦ୍ରକୁ ଦେଖିବେ ବୋଲି କିଏ ଭାବିଥିଲା ?

ସ୍ୱରୂପା ଭୁଲିଗଲା ନମସ୍କାର ଜଣାଇବାକୁ ।

ଶଚୀନ୍ଦ୍ର ମଧ ଭୀଷଣ ଅପ୍ରସ୍ତୁତ ହୋଇ ପଡ଼ିଛି, ଯେପରି କିଛି ଦୋଷାବହ କାମ କରି ଧରାପଡ଼ି ଯାଇଛି । ପ୍ରକୃତରେ ଏ ଶ୍ମଶାନ ଭୂମିକୁ ସେ ଆସିଥିଲା ଅତି ଗୋପନରେ, ସମସ୍ତଙ୍କ ଅଲକ୍ଷ୍ୟରେ ।

ବେଦନାରେ ବ୍ୟଥିତ ସୌମ୍ୟ ଶଚୀନ୍ଦ୍ରର ହାତ ଦୁଇଟିକୁ ମୁଠାଇ ଧରିଲା ଆବେଗରେ । ମୁହଁରୁ ଭାଷା ସ୍ଫୁରି ନଥିଲା କିଛି ।

ଅପ୍ରସ୍ତୁତ ଭାବଟାକୁ କଟାଇ ପ୍ରଥମେ ଶଚୀନ୍ଦ୍ର ହିଁ କଥା କହିଲା, କହିଲା—ସୌମ୍ୟ, ମୁଁ ତାକୁ ଅତି ଆପଣାର ବୋଲି ଭାବି ନେଇଥିଲି, ଭଲ ପାଇଥିଲି । ଟିକିଏ ରହି ପୁଣି କ୍ଳିଷ୍ଟ ଭାବରେ

ହସିବାକୁ ଚେଷ୍ଟାକରି ସେ କହିଲା—ହେଲେ ମୁଁ ନିଜେ ହିଁ ତା'ର ଆତ୍ମହତ୍ୟାର କାରଣ ହୋଇଗଲି...ନୁହେଁ ?

ଆଉ ଥରେ ସେ କହିଲା—ମୋ ସଙ୍ଗେ ବିବାହ ପ୍ରସ୍ତାବ ଠିକ୍ ହୋଇନଥିଲେ ମଧୁଛନ୍ଦା ଆତ୍ମହତ୍ୟା କରି ନ ଥାନ୍ତା ।

ପୁଣି ଅଟକିଗଲା ସେ । ଏଥର ମଧ ସୌମ୍ୟ କି ସ୍ୱରୂପା କିଛି କହି ପାରିଲେ ନାହିଁ ।

ଗୋଟିଏ ପ୍ରଶ୍ନ ପଚାରିବାକୁ ଶଚୀନ୍ଦ୍ରର ମନ ଉଦ୍‌ବେଳିତ ହୋଇ ପଡୁଛି—ପଚାରନ୍ତା, ମଧୁଛନ୍ଦା କ'ଣ ଆଉ କାହାକୁ ଭଲପାଉଥିଲା ? ଆଉ କାହାକୁ ବାହା ହେବାକୁ ଚାହୁଁଥିଲା ? ତା'ର ଧାରଣା, ଏକା କଲେଜରେ ସୌମ୍ୟ ପାଠ ପଢ଼ାଉଛି, ଏ କଥା ସେ ନିଶ୍ଚୟ ଜାଣିଥିବ ।

ତାର ସେ ପ୍ରଶ୍ନକୁ କ'ଣ ବୁଝିପାରିଲା ନାହିଁ ସୌମ୍ୟ ?

ବୁଝିପାରିଲା ବୋଲି ତ ଦୃଷ୍ଟି ଫେରାଇ ନେଲା । ମୁହଁ ତଳକୁ କରିଦେଲା । ଭାବିଲା—ତା' ନିଜର ସନ୍ଦେହ ମଧ ସେଇୟା । ବନ୍ଧୁ ବାନ୍ଧବୀମାନଙ୍କ ସହିତ ମିଳାମିଶା କରିବା ଦେଖିଛି ସୌମ୍ୟ, କିନ୍ତୁ ମନୋଜ ସହିତ ମଧୁଛନ୍ଦାର ବନ୍ଧୁତା କଥା ଜାଣିପାରି ନାହିଁ କେବେ ।

ଏ କେଇ ଦିନରେ ଶଚୀନ୍ଦ୍ର କେତେ ଶୁଖି ଯାଇଛି । ଆଉ କେତେ ଅଳ୍ପଦିନ ଭିତରେ ସେ କି ନିବିଡ଼ ଭାବରେ ଭଲପାଇ ନ ଥିଲା ମଧୁଛନ୍ଦାକୁ ! ଆଶ୍ଚର୍ଯ୍ୟ ଏ ଭଲପାଇବା ।

ସୌମ୍ୟ ଇତସ୍ତତଃ ହେବାକୁ ଲାଗିଲା । କ'ଣ ଗୋଟାଏ ଉତ୍ତର ଦେବାକୁ ପଡ଼ିବ ଶଚୀନ୍ଦ୍ରକୁ, ସାନ୍ତ୍ୱନା କିଛି ଦେବାକୁ ପଡ଼ିବ, କିନ୍ତୁ କ'ଣ କହି ସାନ୍ତ୍ୱନା ଦେବ ସେ ?

ସୌମ୍ୟକୁ ସେହି ବିପଦରୁ ଉଦ୍ଧାର କରି ହଠାତ୍ ସ୍ୱରୂପା କହି ପକାଇଲା, ଶଚୀ ଭାଇନା, ତମେ ମିଛରେ ନିଜକୁ ଦୋଷୀ ମନେ କରୁଛ । ଛନ୍ଦା ଯେମିତି ଝିଅ, ସେ ଇଚ୍ଛା କରିଥିଲେ ବାହା ହେବାକୁ ସ୍ୱଚ୍ଛନ୍ଦରେ ମନା କରିଦେଇ ପାରିଥା'ନ୍ତା । ଆତ୍ମହତ୍ୟା କରିବାଯାଏ କଥା ଯାଇଥା'ନ୍ତା କାହିଁକି ଯେ ? ଦେବ କକେଇ କହିଲା ପରି ହୁଏତ ସତକୁ ସତ ତା'ର ମସ୍ତିଷ୍କ ବିକୃତି ରୋଗ ହିଁ ହୋଇଥିଲା ।

ବ୍ୟାକୁଳ ଭାବରେ ଶଚୀନ୍ଦ୍ର ପଚାରିଲା—ତମେ ସେଇୟା ଭାବୁଛ ତ ସ୍ୱରୂପା ?

—ଖାଲି ଭାବୁଛି ନୁହେଁ । ଏକାବେଳକେ ଏ କଥା ଠିକ ବୋଲି ମନେ ହେଉଛି ମୋର ।

ଟିକିଏ ରହିଗଲା ସ୍ୱରୂପା । କଥାଗୁଡ଼ିକ ସଜାଡ଼ି କହିବାକୁ ସମୟ ଲାଗିଲା ତାକୁ । ପୁ'ଣି କହିଲା—

ହବନି ? ନାଚ, ଗୀତ, ଡ୍ରାମା, ଅଭିନୟ, ତର୍କସଭା, ପାଠପଢ଼ା, ସବୁଥିରେ ଯୋଗ ଦେବାକୁ ଯିବାରୁ ତା'ର ମୁଣ୍ଡ ଆଉ ଏସବୁ ଭାର ସମ୍ଭାଳି ପାରିଲା ନାହିଁ । ମୁଁ ତ ଏଠି ନଥିଲି, ତେବେ ଯାହା ଶୁଣିଲି ଅନେକ ଦିନ ହେଲା ସେ କେମିତି ବଡ଼ ଚୁପ୍ ଚାପ ହୋଇ ରହୁଥିଲା ଘରେ ।

କିନ୍ତୁ ଶଚୀନ୍ଦ୍ରକୁ ଯେପରି ଠିକ୍ ଉତ୍ତର ମିଳିଲା ନାହିଁ । ସେହିପରି ବ୍ୟାକୁଳ ହୋଇ ଆଉଥରେ ସୌମ୍ୟକୁ ପଚାରିଲା ସେ—ତମର ବି କ'ଣ ସେଇ ମତ ସୌମ୍ୟ ? ତମେ ତାକୁ କଲେଜରେ ସବୁବେଳେ ଦେଖୁଥିଲ, କ୍ଲାସ ନେଉଥିଲ । ଆଗରୁ କିଛି ଅସ୍ୱାଭାବିକତା ଲକ୍ଷ୍ୟ କରିପାରି ନାହଁ ?

ଦୀର୍ଘ ନିଃଶ୍ୱାସଟିଏ ପକାଇ କହିଲା ସୌମ୍ୟ—ଆଦୌ ନୁହେଁ । ମୁଁ କିଛି ଜାଣି ପାରିନି ଶଚୀ ।

—ଭଗବାନ କରନ୍ତୁ, ତା' ଆତ୍ମହତ୍ୟାର କାରଣ ଯେମିତି ମୁଁ ନ ହୋଇଥାଏ ।

—ନା, ନା ଶଚୀନ୍ଦ୍ର, ତମେ ସେମିତି ଆଦୌ ଭାବନି । ଆସ, ସମସ୍ତେ ମିଶି ଆଉ ଥରେ ଯିବା । ସ୍ୱରୂପା ତ ଦେଖି ନଥିଲେ ।

ସ୍ୱରୂପା କହିଲା—ହଁ ଶଚୀ ଭାଇନା, ଚାଲ ସମସ୍ତେ ମିଶିଯାଇ ଟିକିଏ ତା' ପାଖରେ ବସିବା ।

ସ୍ୱରୂପାର ଆଖିରେ ଲୁହ ଭର୍ତ୍ତି ହୋଇଗଲା । 'ତା ସମାଧି ପାଖରେ' ନ କହି ତା'ପାଖରେ କହିଲା ସ୍ୱରୂପା ! 'ସମାଧି ପାଖରେ' କଥାଟା ଉଚ୍ଚାରଣ କରି ପାରିଲା ନାହିଁ ।

ବର୍ତ୍ତମାନଟା କେତେ ଚଞ୍ଚଳ ଅତୀତରେ ପରିଣତ ହୋଇଯାଏ ଆଉ ଜୀବିତ ପରିଣତ ହୁଏ ମୃତରେ । ହେଇଟି ସେ ଥିଲା, ଆଜି ଆଉ ନାହିଁ, ଅତୀତ ହୋଇଯାଇଛି । ସ୍ୱରୂପାର ମର୍ମ-ବେଦନା ଅସହନୀୟ ହୋଇପଡୁଛି ।

ଶଚୀନ୍ଦ୍ର ଫେରିଲା ନାହିଁ ଆଉ । ଅଶ୍ରୁସିକ୍ତ ନୟନରେ ବିଦାୟ ନେଲା ସେମାନଙ୍କଠାରୁ ।

ସୌମ୍ୟ ଓ ସ୍ୱରୂପା ଯାଇ ନୀରବରେ ବସିଲେ ସଯତ୍ନ-ବର୍ଦ୍ଧିତ ତୃଣଶଯ୍ୟା ଉପରେ । ତା' ପୂର୍ବରୁ ଆଦରରେ ଫୁଲଗୁଚ୍ଛଟିକୁ ଥୋଇଦେଲା ସ୍ୱରୂପା ମଧୁଛନ୍ଦାର ଶେଷ ବିଶ୍ରାମସ୍ଥଳଟି ଉପରେ । ତୁନି ତୁନି ଡାକିଲା—ଛନ୍ଦା, ମଧୁଛନ୍ଦା—

ଲୁହରେ ଭର୍ତ୍ତି ହୋଇଥିବା ଆଖିରୁ ତା'ର ଝରି ପଡ଼ିଲା କେତେ ଟୋପା ଲୁହ ସେହି ସଦ୍ୟ ନିର୍ମିତ ମାର୍ବଲ ପଥରର ବେଦୀ ଉପରେ । ମଧୁଛନ୍ଦାର ନାଁ ଲେଖା ଯାଇଛି, ଜନ୍ମ ଓ ମୃତ୍ୟୁର ତାରିଖ ଲେଖା ଯାଇଛି । ତା'ରି ପାଖରେ ବସିପଡ଼ି କେତେ କଥା ତୁନି ତୁନି କରି ପଚାରିବାକୁ ଇଚ୍ଛା ହେଉଥିଲା ସ୍ୱରୂପାର—କି ବିପଦରେ ତୁ ପଡ଼ିଲୁ ଛନ୍ଦା ? ମତେ କହି ନଥାନ୍ତୁ ? ମୋ ପାଖକୁ ଚିଠିରେ ଲେଖି ନଥାନ୍ତୁ, ମୋର ପରାମର୍ଶ ମାଗି ନଥାନ୍ତୁ ?— ପିଲାଟି ଦିନରୁ ପରା ଆମେ ଏକାଠି ପଢ଼ିଥାଇଁ ? ଏକା ଶେଯରେ ଶୋଇଛେ, ଏକା ଥାଳିରେ ଖାଇଛେ । ତୋ'ର ଜର ହେଲେ କେବେ ତତେ ଛାଡ଼ି ମୁଁ ଏକୁଟିଆ ଯାଇନି ସ୍କୁଲକୁ । ତୁ ମୋ'ର ସ୍ମିତାଠାରୁ ଆହୁରି ଅଧିକ ଆଦରର...

ଏ ସମୟରେ ସେହି ମାର୍ବଲ ବେଦୀ ଉପରେ ରଖା ଯାଇଥିବା ଗୋଟିଏ ସଜଫୁଟା ଗୋଲାପର ସୁନ୍ଦର ତୋଡ଼ାକୁ ଆଙ୍ଗୁଠିରେ ଦେଖାଇ ସୌମ୍ୟ କହିଲା—ଦେଖ ସ୍ୱରୂପା, ତମ ଆଗରୁ ଶଚୀନ୍ଦ୍ର ଫୁଲ ଥୋଇଦେଇ ଯାଇଛନ୍ତି ।

ଦେଖିବା ସ୍ୱାଭାବିକ ଥିଲେ ମଧ୍ୟ ଲୁହଭରା ଆଖି ଯୋଗୁଁ ହେଉ ନଚେତ୍ ଶୋକରେ ଅଧୀରତା ହେତୁ ସେ ସେହି ଫୁଲ ତୋଡ଼ାଟିକୁ ଦେଖିପାରି ନଥିଲା । ବର୍ତ୍ତମାନ ଆଖି ଦୁଇଟିକୁ ଲୁଗା କାନିରେ ଭଲରୂପେ ପୋଛି ଚାହିଁଲା ସ୍ୱରୂପା ।

...ପ୍ରସ୍ଫୁଟିତ ଧଳା ଗୋଲାପର ଗୁଚ୍ଛଟିଏ, ପତ୍ର ସହିତ ବନ୍ଧା ହୋଇଛି ଅତି ଯତ୍ନରେ ।

ସୌମ୍ୟ କହିଲା—ମଧୁଛନ୍ଦାର ଜୀବନ ସାର୍ଥକ ହୋଇ ଯାଇଛି ସ୍ୱରୂପା, ଏଭଳି ଅମର ପ୍ରେମ କେତେଜଣଙ୍କୁ ମିଳେ ଏ ସଂସାରରେ ?

ହଁ, ମଧୁଛନ୍ଦା ଏକ ଅମୂଲ୍ୟ ସମ୍ପଦରୁ ନିଜକୁ ବଞ୍ଚିତା କରିଦେଲା । ସ୍ୱରୂପା କହିଲା—ଜାଣିଛ ସୌମ୍ୟ ? ଏକା କଲେଜ ତ, ସ୍ମିତା ଟିକିଏ ଟିକିଏ କ'ଣ ଶୁଣିଛି ସେଇ ମଧୁଛନ୍ଦାର ସାଙ୍ଗମାନଙ୍କଠାରୁ । ଘଟଣାଟା ଠିକ୍ କ'ଣ ଅବଶ୍ୟ ସେମାନେ ଜାଣି ନାହାନ୍ତି, ତେବେ କିଏ ଜଣେ ସହପାଠୀକୁ କୁଆଡ଼େ ଛନ୍ଦା ପସନ୍ଦ କରିଥିଲା । ବୋଧହୁଏ ତାକୁ ବାହା ନ ହୋଇ ପାରିବାରୁ...

ବିସ୍ମିତ ହୋଇଯାଇ ସୌମ୍ୟ କହିଲା—ତା'ହେଲେ ତ ଶଚୀନ୍ଦ୍ରଙ୍କ ଅନୁମାନ ଠିକ୍ । କିନ୍ତୁ ତମେ ତାଙ୍କୁ କହିଲ...

—କ'ଣ ଆଉ କରିଥା'ନ୍ତି ସୌମ୍ୟ ? ଶଚୀନ୍ଦ୍ର ଭାଇନା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ । ସେ କାହିଁକି ଅଧିକ କଷ୍ଟ ପାଇବେ କହିଲ ?

—ଭଲ କରିଛ । ହେଲେ କଥାଟାକୁ ମୁଁ ଜମା ବିଶ୍ୱାସ କରି ପାରୁନି ସ୍ୱରୂପା ! ମଧୁଛନ୍ଦା ତ ତା'ର ସବୁ ସହପାଠୀଙ୍କ ସହିତ ସମାନ ମିଳାମିଶା କରୁଥିଲା । ଯଦି ବା ଭଲପାଇଲା, ପସନ୍ଦ କଲା କାହାକୁ, ତା'ହେଲେ ସେ କଥା ଆମ ଭିତରୁ କାହାକୁ କହିଲାନି କାହିଁକି ?

—ହଁ, ତା ଅବଶ୍ୟ ସତ ।

ଟିକିଏ ନୀରବ ରହି ସୌମ୍ୟ କହିଲା—ଥାଉ, ଆଉ ସେ କଥା ଆଲୋଚନା କରି ଲାଭ ବା କ'ଣ ହେବ ? ସେ ନିଜେ ହିଁ ଏ କଥାର ଉତ୍ତର ଦେଇ ପାରିଥା'ନ୍ତା, ଆଉ କେହି ନୁହେଁ ।

ସ୍ୱରୂପା ଭାବିଲା, ହଁ, ମଧୁଛନ୍ଦା ହିଁ ଏ କଥାର ଉତ୍ତର ଦେଇ ପାରିଥା'ନ୍ତା । କିନ୍ତୁ ଆଜି, ସେ କାହିଁ କେଉଁଠି ? ଧୂଳିକଣାରେ ମିଶିଯାଇଛି ସେ । ପଞ୍ଚଭୂତରେ ମିଶିଯାଇଛି ।

ବିଭିନ୍ନ ପକ୍ଷୀଙ୍କର ବିଭିନ୍ନ ପ୍ରକାର ସଙ୍ଗୀତ ଧ୍ୱନିରେ ସୁରକ୍ଷିତ ଶ୍ମଶାନଟି ଅଧିକ ଅଧିକ ମୁଖରିତ ହୋଇ ଉଠୁଥିଲା । ଆଲୋକିତ ହୋଇ ଆସିବା ସଙ୍ଗେ ସଙ୍ଗେ ଝଲକାଏ ସୂର୍ଯ୍ୟକିରଣ ପତ୍ରର ଫାଙ୍କ ବାଟେ ଆସି ସ୍ପର୍ଶ କଲା ମଧୁଛନ୍ଦାର ସମାଧିକୁ, ନିଥର ନିଷ୍ପନ୍ଦ ପଥର ବେଦୀକୁ ହିଁ

ପ୍ରଥମ ଚୁମ୍ବନ ଦେଲା ପ୍ରଭାତ, ଯେପରି ପରମପିତା ତାଙ୍କର ଦୁଃଖିନୀ ସନ୍ତାନଟିକୁ ଆଦର ଜଣାଇଲେ, ସାନ୍ତ୍ୱନା ଦେବାକୁ ଚାହିଁଲେ ।

ସ୍ୱରୂପା ଭାବିଲା—ମଣିଷ ଜୀବନ କି କ୍ଷଣସ୍ଥାୟୀ ସତେ ! ଅସମାପ୍ତ ବାକ୍ୟରେ ହଠାତ୍ ପୂର୍ଣ୍ଣଛେଦ ଦେଇଦେଲା ପରି ଜୀବନର ସମସ୍ତ ଘଟଣା ହଠାତ୍ ସ୍ତବ୍ଧ ହୋଇଯାଏ ।

ସକାଳୁଆ ପବନର ଶୀତଳ ସ୍ପର୍ଶ, ବିଭିନ୍ନ ପ୍ରକାର ଫୁଟନ୍ତା ଫୁଲର ସୌରଭ, ପକ୍ଷୀମାନଙ୍କର କାକଳୀ ଯେପରି ଆଶ୍ୱାସନା ଦେବାର ବୃଥା ଚେଷ୍ଟା କରୁଛନ୍ତି । ନିବିଡ଼ ବେଦନାର ଲହରୀ ମନକୁ ବ୍ୟାକୁଳ କରି ପକାଉଛି ରହି ରହି ।

ସ୍ୱରୂପା ଭାବୁଥିଲା—ଯଦି ଜନ୍ମାନ୍ତର ଥିବ, ତା'ହେଲେ ମଧୁଛନ୍ଦା ଏତେବେଳକୁ ପୁ'ଣି ନବଜାତକ ରୂପେ ଜନ୍ମ ହୋଇ ସାରିବଣି ଆଉ ଏକ ନାଟ୍ୟ ମଞ୍ଚରେ । ଆଉ ଏକ ନୂଆ ନାଟକରେ ଆଉ ଏକ ନୂଆ ଅଭିନୟ କରିବାକୁ ପ୍ରସ୍ତୁତ ହେଉଥିବ ସେ ।

ଓଃ, ଏ ଜୀବନ ବଡ଼ କଷ୍ଟକର, ପ୍ରକୃତରେ ବଡ଼ କଷ୍ଟକର ।

ସୌମ୍ୟ ପଚାରିଲା—କ'ଣ ଭାବୁଛ ସ୍ୱରୂପା ?

ଲୁହଭରା ଆଖିରେ ତା' ଆଡ଼କୁ ସେ ଚାହିଁଲା ଖାଲି ।

ସୌମ୍ୟ ଆଉଥରେ ପଚାରିଲା—ଭାବୁଛ ଜୀବନଟା ଅର୍ଥହୀନ ?

—'ଅର୍ଥହୀନ ଓ ଯନ୍ତ୍ରଣାପୂର୍ଣ୍ଣ ଦୁଇଟାଯାକ' କହିଲା ସ୍ୱରୂପା ବେଦନା ବିଜଡ଼ିତ କଣ୍ଠରେ । —ଥରେ ମୁଁ ଥିଓସଫିକାଲ ମିଟିଂରେ ଯୋଗ ଦେଇଥିଲି । ପ୍ରଶ୍ନ ପଚାରିଥିଲି ସ୍ୱାମୀ ଚୈତନ୍ୟାନନ୍ଦ ହରିହରଙ୍କୁ—ଯେ, ମୃତ୍ୟୁହୀନ, ଜରାରୋଗବିହୀନ, ସଦା ସତେଜ ଜୀବନ କ'ଣ ମଣିଷ ଚେଷ୍ଟାକଲେ ପାଇ ପାରିବନି ?

ସୌମ୍ୟ ଜାଣିଛ ? ମୁଁ ଯଦି ଜୀବ-ବିଜ୍ଞାନ ଅନୁଧାନ କରିଥା'ନ୍ତି ନା, ତା'ହେଲେ ମୋର ସାରା ଜୀବନ ତଥା ମୋର ସବୁତକ ବିଦ୍ୟା, ବୁଦ୍ଧି, ଶକ୍ତି ଉତ୍ସର୍ଗ କରିଦେଇ ମୁଁ ଖାଲି ଲାଗିଥା'ନ୍ତି ସେହି ଅମୃତ ଆବିଷ୍କାର କରିବା କାର୍ଯ୍ୟରେ, ଯାହାର ପ୍ରୟୋଗରେ ମଣିଷକୁ ଏହିପରି ନିଷ୍ଠୁରତାର ମୁହାଁମୁହିଁ ହେବାକୁ ପଡ଼ନ୍ତା ନାହିଁ । ମଣିଷ ବିଜ୍ଞାନର ଉନ୍ନତି ସାଧନ ବଳରେ ଚନ୍ଦ୍ରଲୋକରେ ପହଞ୍ଚିଲାଣି, ଆଉ ମଙ୍ଗଳ ଓ ବୃହସ୍ପତିରେ ପହଞ୍ଚିବାକୁ ଚେଷ୍ଟା ଚାଲିଛି, କିନ୍ତୁ ଏ ପର୍ଯ୍ୟନ୍ତ ପ୍ରକୃତିର ନିଷ୍ଠୁର ହାତମୁଠାରେ ଏକ ଅସହାୟ କ୍ଷୁଦ୍ରକୀଟ ପରି ନିଷ୍ପେଷିତ ହୋଇଯାଉଛି ।

ବିଷଣ୍ଣ ଭାବରେ ହସିଲା ଟିକିଏ ସୌମ୍ୟ, ତା'ପରେ କହିଲା—ଲୁହ ପୋଛିଦିଅ ସ୍ୱରୂପା ! ତମେ ଜାଣିଛ ଆବହମାନ କାଳରୁ କେତେ ମୁନି, କେତେ ଋଷି, କେତେ ସିଦ୍ଧ ପୁରୁଷ, କେତେ ସାଧକ ଏ କଥା ଭାବି ବ୍ୟାକୁଳ ହୋଇ ଯାଇଛନ୍ତି । କେତେ ମହାନ୍ ବ୍ୟକ୍ତି ନିଜର ମହାର୍ଘ ଜୀବନର ଦୀର୍ଘ ସମୟତକ ସେହି ଚିନ୍ତାରେ ନିଃଶେଷ କରି ଦେଇଛନ୍ତି । କିଏ ଈଶ୍ୱରଙ୍କୁ ଖୋଜିଛନ୍ତି ତ କିଏ

ଅମୃତକୁ ଖୋଜୁଛନ୍ତି । ହେଲେ ଏହି ଅଳୀକ କଥା ଦୁଇଟାକୁ କେହି ପାଇ ନାହାନ୍ତି ଆଜି ପର୍ଯ୍ୟନ୍ତ । ମୋ ବିଚାରରେ ଏହି ଦୁଇଟାଯାକ କଥା ଅବାସ୍ତବ ।

କାତର ଭାବରେ ବାଧାଦେଲା ସ୍ୱରୂପା—ସୌମ୍ୟ, ତମେ ସେ କଥା କହନାହିଁ । ଜ୍ଞାନୀ ପଣ୍ଡିତମାନେ ଚିନ୍ତା କରି କରି ଜନ୍ମାନ୍ତର, ଈଶ୍ୱର, ଏହିସବୁ ବିଷୟରେ ଯେଉଁ ତଥ୍ୟ ଏ ପର୍ଯ୍ୟନ୍ତ ପ୍ରକାଶ କରିଛନ୍ତି—

—ସେ କଥା କେତେଦୂର ସତ୍ୟ କିଏ କ'ଣ ନିର୍ଦ୍ଦିଷ୍ଟ ଭାବରେ ଜାଣିଛନ୍ତି ?

—ସୌମ୍ୟ ! ସତ୍ୟ ହେଉ କି ନିର୍ଜଳ ମିଥ୍ୟା ହେଉ, ମୃତ୍ୟୁପଥ ଯାତ୍ରୀ ମନୁଷ୍ୟର ସେହି ଟିକକ ହିଁ ଯେ ଏକମାତ୍ର ସମ୍ବଳ । ତାହା କଳ୍ପିତ ହେଉ ବା ସତ୍ୟ ହେଉ ସେହି କୁଟା ଖିଅକୁ ହାତ ମୁଠାରେ ଧରି ମୃତ୍ୟୁର ଘୋର ତମସାଛନ୍ନ ମହାର୍ଣ୍ଣବକୁ ପାର ହେବାର ସାହସ ସେ ପାଏ ତା'ର ଶେଷ ମୁହୂର୍ତ୍ତରେ, ସେହି ଶେଷ ମୁହୂର୍ତ୍ତର ଏକାନ୍ତ ଅସହାୟତା ଭିତରେ ।

—ସେ କଥାଟା ଅବଶ୍ୟ ସତ କିନ୍ତୁ ତା' ନହେଲେ, ସାମାନ୍ୟ ହସିଲା ସୌମ୍ୟ, କହିଲା—ସ୍ୱରୂପା, ବୈଦିକ ଯୁଗରୁ ଏପର୍ଯ୍ୟନ୍ତ ଯେଉଁ ଲିଖିତ ଇତିହାସ ରହିଛି, କେଉଁଠି ତୁମେ କେବେ ପଢ଼ିଛ କି ଜଣେ ସାଧକ ସ୍ୱଚକ୍ଷୁରେ, ସଜାଗ ଅବସ୍ଥାରେ ଦେଖିଛନ୍ତି ଈଶ୍ୱରଙ୍କୁ ? ନା, ଜଣେ ହେଲେ କେହି କିଛି ନିର୍ଦ୍ଦିଷ୍ଟ ଆକାର ଦେଇ ପାରିଛନ୍ତି ତାଙ୍କ ସ୍ୱରୂପକୁ ? କେହି କହିଛନ୍ତି ତ ସାକାର, କେହି କହିଛନ୍ତି ନିରାକାର । କେହି କହିଛନ୍ତି ଭଗବାନଙ୍କ ବର୍ଣ୍ଣ ନୀଳ, କେହି ଜ୍ୟୋତିର୍ମୟ ତ କେହି ଶ୍ୟାମଳ ଦୁର୍ବାଦଳ ପରି କହିଛନ୍ତି ।

ଅର୍ଜ୍ଜୁନଙ୍କୁ ବି ଦରକାର ହୋଇଛି ଦିବ୍ୟଚକ୍ଷୁ ।

ତମେ କ'ଣ କହିବ ବୁଦ୍ଧଦେବଙ୍କ ପରି ବ୍ୟକ୍ତି ମଧ ଯୋଗ ବଳରେ ଅତିମାନସ ସ୍ତରକୁ ଯାଇପାରି ନଥିଲେ ? କାହିଁ କାହାକୁ ଦେଖା ଦେଇଛନ୍ତି ତମ ଈଶ୍ୱର ? ସ୍ୱରୂପା, ଈଶ୍ୱରଙ୍କର କିଛି ନିର୍ଦ୍ଦିଷ୍ଟ ରୂପ କେହି କେବେ ଦେଖି ନାହାଁନ୍ତି । ଖାଲି ସେହି ସନ୍ଧାନରେ କେହି ପାଗଳ, କେହି ଅର୍ଦ୍ଧପାଗଳ ହୋଇଛନ୍ତି । ନିଜ ଶରୀରକୁ ଉତ୍ପୀଡ଼ିତ କରିଛନ୍ତି । ଅଶେଷ ଯନ୍ତ୍ରଣା ଭୋଗ କରିଛନ୍ତି । ନିରାହାର, ସ୍ୱଳ୍ପାହାର କରି ଗଭୀର ଅରଣ୍ୟ ମାନଙ୍କରେ, ପର୍ବତ କନ୍ଦରମାନଙ୍କରେ କଠୋର ତପସ୍ୟା କରିଛନ୍ତି । ଖୋଜି ବୁଲୁଛନ୍ତି ସେହି ଈଶ୍ୱରଙ୍କୁ, କିନ୍ତୁ କାହାନ୍ତି ସେ ଈଶ୍ୱର ?

—ସୌମ୍ୟ, ମନୁଷ୍ୟର ବିଶ୍ୱାସ ହିଁ ତା'ର ଈଶ୍ୱର !

—ସ୍ୱରୂପା, ମୁଁ କହିବି ଜୀବନ ହିଁ ଈଶ୍ୱର ! ମୁଁ ଜାଣେ ତମେ କହିବ, ଜୀବନ କ୍ଷଣଭଙ୍ଗୁର ମାତ୍ର ! ମାତ୍ର କ୍ଷଣକ ପାଇଁ ତା'ର ସ୍ଥାୟିତ୍ୱ ! ଜୀବନର ପରିସୀମା ଅତି କ୍ଷୁଦ୍ର । କେବଳ କ୍ଷଣଟିଏ । ହେଲେ ସ୍ୱରୂପା, ତମେ ଭାବୁନ କାହିଁକି ? ସେହି କ୍ଷଣଟି ହିଁ ଆମର ଈଶ୍ୱର । ସେହି କ୍ଷଣଟିଏ ଭିତରେ ହିଁ ଭର୍ତ୍ତି ହୋଇ ରହିଛି ଆମର ଅମୃତ !

ସୂର୍ଯ୍ୟ ଉଦୟ ହେବ, ଅସ୍ତ ହେବ ।

ସକାଳୁ ଫୁଲଟି ଫୁଟିବ, ସନ୍ଧ୍ୟାକୁ ଝରିବ ।

ତେଣୁ କିଛି ହେଲେ ଏ ପୃଥିବୀରେ ଅବିନଶ୍ୱର୍ ନୁହେଁ ବୋଲି ପଣ୍ଡିତମାନେ କହନ୍ତି । ହେଲେ ମୁଁ କହିବି—ଶାଶ୍ୱତ ସତ୍ୟ କହ, ଅକ୍ଷର ବ୍ରହ୍ମ କହ, ଯାହା କହ, ତାହା ହେଉଛି ଦିନକର ଏ ସୂର୍ଯ୍ୟାଲୋକ, କ୍ଷଣକର ଏ ଫୁଲର ସୌରଭ !

ଜୀବନ ନିଜେ ସଞ୍ଚାରିତ ହୋଇଛି ।

ବିଜ୍ଞାନ ଆମକୁ ପ୍ରମାଣ ଦେଖାଇଛି ଯେ ସୂର୍ଯ୍ୟାଲୋକ କେବଳ ଦିନକ ପାଇଁ ନୁହେଁ । ଏକ ସ୍ଥାନରେ ଅଦୃଶ୍ୟ ହେଲେ ଅନ୍ୟ ସ୍ଥାନରେ ଦୃଶ୍ୟମାନ । ଆଲୋକର ଅମର ସତ୍ତା ପ୍ରବହମାନ ଶାଶ୍ୱତ କାଳ, କାରଣ ଗୋଟିଏ ସୂର୍ଯ୍ୟର ମୃତ୍ୟୁ ହେଲେ କୋଟିଏ ସୂର୍ଯ୍ୟ ରହିଛନ୍ତି ଏ ସୌରଜଗତରେ ।

ଫୁଲଟିକୁ ଦେଖ—ତା'ର ଆୟୁଷ କେତେ କ୍ଷଣସ୍ଥାୟୀ ହେଲେ ମଧ ସେ କ୍ଷଣଟି ଭିତରେ ସେ ଆବଦ୍ଧ କରି ରଖିଦେଇଯାଏ ଆଉ ଏକ ବୃକ୍ଷର ସତ୍ତାକୁ । ଆଧାର ପରିବର୍ତ୍ତିତ ହେଲେ ମଧ ଜୀବନ ସତ୍ତାର ପରିବର୍ତ୍ତନ ହୁଏ ନାହିଁ ସ୍ୱରୂପା, ସୁତରାଂ ତମର ଏହି କ୍ଷଣଭଙ୍ଗୁର କ୍ଷଣଟିକୁ ହିଁ ମୁଁ ଜୀବନ ବୋଲି କହିବି; ଅନାଦି, ଅନନ୍ତ ବୋଲି କହିବି; ଈଶ୍ୱର ବୋଲି ମଧ କହିବି । କାରଣ ଏହି ଜୀବନ ନିଜେ ହିଁ ନିଜର ସୃଜନ କର୍ତ୍ତା । ତା'ର ଆଦି ଅନ୍ତ ନାହିଁ ।

ଜୀବନ ନିଜେ ନିଜେ ସଞ୍ଚାରିତ ହୋଇଛି । ଏକ ବିଷାଦମୟ ସଙ୍ଗୀତର ମୂର୍ଚ୍ଛନା ପରି ଶୁଭୁଥିଲା ସୌମ୍ୟର କଥାଗୁଡ଼ିକ । ଟିକିଏ ନୀରବ ରହିଲା ପରେ ସ୍ୱରୂପା କହିଲା—ସୌମ୍ୟ, ତମ କଥାଗୁଡ଼ାକ ଠିକ୍ ବଡ଼ମା'ଙ୍କ କଥାପରି !

—ନ ହେବ କିପରି ? ମୋ ଦେହରେ ଯେ ତାଙ୍କରି ରକ୍ତ ବହୁଛି । ଚାଲ ସ୍ୱରୂପା, ଉଠ ଏଥର ଟିକିଏ ବୁଲି ବୁଲି ଦେଖିବା ଏ ବଂଶର ପୂର୍ବପୁରୁଷ ମାନଙ୍କର ସ୍ମୃତି ଚିହ୍ନଗୁଡ଼ିକୁ ।

ବଡ଼ମା'ଙ୍କର ପରିକଳ୍ପନା, ତାଙ୍କରି ପରିଚାଳନାରେ ଜମିଦାର ବଂଶର ଏ ଶ୍ମଶାନ ଭୂମିଟା ସ୍ୱର୍ଗର ନନ୍ଦନ କାନନ ପରି ଦିଶୁଛି, ନୁହେଁ ? ଯାକୁ ସୁନ୍ଦର ପାର୍କଟିଏ ବୋଲି ନ କହି କିଏ ମଶାଣି ଭୂଇଁ କହି ପାରିବ ? ମଧୁଛନ୍ଦାର ଶେଷ କୃତ୍ୟ କରିବା ଦିନ ଆମେ ସମସ୍ତେ ଯେତେବେଳେ ଆସିଥିଲୁ, ବହୁତ ସମୟ ପର୍ଯ୍ୟନ୍ତ ବୁଲାବୁଲି କରି ଦେଖିଥିଲି ମୁଁ । ଏଇଲେ ଚାଲ ପ୍ରଥମେ ଯିବା ବଡ଼ମା'ଙ୍କର ସେହି ଅତି ପ୍ରିୟ ସ୍ଥାନଟିକୁ, ଯେଉଁଠି ବିଶ୍ରାମ ନେଇଛନ୍ତି ଆମର ବଡ଼ବାପା ।

ବ୍ୟଥିତ ଚିତ୍ତରେ ମନେ ମନେ ମଧୁଛନ୍ଦାଠାରୁ ବିଦାୟ ନେଇ ଉଠି ଠିଆ ହେଲା ସ୍ୱରୂପା ।

ଶ୍ମଶାନର ସେହି ସ୍ଥାନଟିରେ ରହିଛି ଅନେକ ବିଶେଷତ୍ୱ । ଅତି ପାଖରେ ତଳେ ରୂପମତୀର ଧାର ବହି ଯାଉଛି ଅସ୍ପଷ୍ଟ ସଙ୍ଗୀତ ଗାଇ ଗାଇ । ଗ୍ରୀଷ୍ମ ଋତୁର ସୂର୍ଯ୍ୟ କିରଣ ଓ ଉତ୍ତାପକୁ ପରିହାସ

କରି ବିସ୍ତୃତ ହୋଇ ରହିଛି ଏକ ନୟନାଭିରାମ ଶ୍ୟାମଳ ଦୁର୍ବାଦଳର ସୁକୋମଳ ଶଯ୍ୟା, ସୁପରିକଳ୍ପିତ ଓ ସଯତ୍ନ ବର୍ଦ୍ଧିତ । ବର୍ଣ୍ଣମାନଙ୍କର ଅତି ଚମତ୍କାର ସଂଯୋଗ ସ୍ଥାପନ କରି ଅତି ସୁନ୍ଦର ଛୋଟ ଛୋଟ ପ୍ରସ୍ଫୁଟିତ ଫୁଲଗଛ ସବୁ ରୋପିତ କରାଯାଇ ବିଶ୍ୱନାଥଙ୍କ ପୂରା ନାମକୁ ସୂଚିତ କରୁଛି ।

ନାନା ରଙ୍ଗର ଉଚ୍ଚ ଜାତିର ଗୋଲାପ ଗଛ ଗୁଡ଼ିକରେ ଗୋଲାପ ଫୁଲ ଫୁଟିଛି, ଭର୍ତ୍ତି ହୋଇଛି । ଫୁଟନ୍ତା ମଲ୍ଲୀ ଓ ରଜନୀଗନ୍ଧାର ସୌରଭରେ ଗୋଲାପର ସୌରଭ ମିଶି ମହକି ଉଠୁଛି । ନୟନାଭିରାମ ସେହି ତୃଣଶଯ୍ୟା ଉପରେ ପାଦ ରଖିବାକୁ କୁଣ୍ଠିତ ଲାଗୁଛି ନିଜକୁ । ସତେ ଯେପରି ସେଗୁଡ଼ିକ ଆଘାତ ପାଇଲେ ଆର୍ତ୍ତନାଦ କରିବେ । ପ୍ରକୃତି ଅତି ଜୀବନ୍ତ ରୂପ ଧରିଛି । ତା'ରି ଭିତରେ ବିଶ୍ୱନାଥଙ୍କ ସମାଧି ! ମୂଲ୍ୟବାନ ଶୁଭ୍ର ମର୍ମର ପ୍ରସ୍ତରରେ ଭାରି ସୁନ୍ଦର ଭାବରେ ନିର୍ମିତ ।

ସୌମ୍ୟ କହିଲା—ସ୍ୱରୂପା, ଏହିପରି ଗୋଟିଏ ସ୍ୱର୍ଗର ପାରିଜାତଭରା ନନ୍ଦନ କାନନ ଭିତରେ ଗଛର ସୁଶୀତଳ ଛାଇରେ ମତେ ଯଦି କୁହାଯାଆନ୍ତା ସାରା ଜୀବନ ଶୋଇ ରହ... ।

ଚମକି ପଡ଼ି ସୌମ୍ୟ ପାଟି ଉପରେ ନିଜ କଅଁଳ ହାତଟିକୁ ରଖି ବାଧା ଦେଲା ସ୍ୱରୂପା—ସେ କଥା କହନି ସୌମ୍ୟ । ତମେ ଜାଣିଛ, ମଣିଷର ଏ ଶୋଇବାଟା କି ନିରର୍ଥକ ଆଉ କି ବେଦନାଦାୟକ ! ଦୀର୍ଘକାଳ ବଞ୍ଚି ରହିଥିବା ବଡ଼ମା'ଙ୍କର ସାରା ଜୀବନର ଯନ୍ତ୍ରଣା ଓ ଦୀର୍ଘଶ୍ୱାସ ମିଶି ରହିଛି ଏ ସମାଧିର ଛାତିରେ ।

ଟିକିଏ ବିସ୍ମୟରେ, ଟିକିଏ ପୁଲକରେ ସ୍ତବ୍ଧ ହୋଇ ରହିଗଲା ସୌମ୍ୟ, ତା'ପରେ ଅତି ଆଦରରେ ସ୍ୱରୂପାର ସେହି ହାତଟିକୁ ଧରି ନିଜ ମୁହଁ ଉପରୁ କାଢ଼ି ଆଣୁ ଆଣୁ କହିଲା ସ୍ନେହସିକ୍ତ କଣ୍ଠରେ—ତମେ ଖାଲି ଯନ୍ତ୍ରଣା ଓ ଦୀର୍ଘଶ୍ୱାସ ଦେଖିଲ ସ୍ୱରୂପା ! ଭଲ ପାଇବାର ସ୍ୱର୍ଗୀୟ ମହିମାକୁ ଦେଖିପାରୁ ନାହଁ ? ବଡ଼ମା'ଙ୍କର ନିବିଡ଼, ଏକନିଷ୍ଠ, ପବିତ୍ର ପ୍ରେମ ଶତରୂପ ପରିଗ୍ରହ କରି ଦେଖ ଫୁଟି ଉଠିଛି ପ୍ରତ୍ୟେକଟି ଫୁଲରେ, ଗଛପତ୍ରରେ, ଦୁର୍ବାଦଳରେ । ବାପାଙ୍କ ସମାଧି ପାଖରେ ଥିବା ସେହି ଖାଲି ଭୂମିଖଣ୍ଡଟିକୁ ଦେଖୁଛ ? ଯେଉଁଠି ଗୋଟିଏ ବୋଲି ଘାସର ଚିହ୍ନ ନାହିଁ ? ବଡ଼ମା' ସେ ଜାଗାଟିକୁ ନିଜର ଚିରବିଶ୍ରାମର ଜାଗା ରୂପେ ସେହି ପ୍ରଥମରୁ ହିଁ ସୁରକ୍ଷିତ କରି ରଖିଛନ୍ତି ଆଜି ପର୍ଯ୍ୟନ୍ତ ।

—ସତେ ? ଆହା ବଞ୍ଚିଥିବା ବେଳେ ଯେଉଁ ସୁଖରୁ ସେ ବଞ୍ଚିତା ହେଲେ, ହୁଏତ ମୃତ୍ୟୁ ପରେ ସେହି ସୁଖ ଲାଭ କରିବେ । ଯଦି ମୃତ୍ୟୁ ପରେ ଜୀବନ ରହିଥିବ, ତାହାଲେ ଆଉ ଥରେ ପରସ୍ପର ସହିତ ମିଳିତ ହେବେ ସେହି ପରଲୋକରେ ।

ସ୍ୱରୂପାର ହାତରେ ଆଉ ଫୁଲ ନଥିଲା । କେଜାଣି କାହିଁକି ଏତେ ଫୁଲ ଫୁଟି ରହିଥିବା ସତ୍ତ୍ୱେ ତା'ର ଇଚ୍ଛା ହେଲା ନାହିଁ ସେହି ଗଛମାନଙ୍କରୁ କେତୋଟି ଫୁଲ ଛିଣ୍ଡାଇ ସେ ସମାଧି

ଉପରେ ରଖିବାକୁ । କେବଳ ଗଭୀର ଶ୍ରଦ୍ଧାରେ; ଗଭୀର ଭକ୍ତିରେ ଆଣ୍ଠୋଇପଡ଼ି ସେ ଭୂମି ତଳେ ମୁଣ୍ଡ ଲଗାଇ ପ୍ରଣାମ କଲା ।

ଆଶ୍ଚର୍ଯ୍ୟ ! ଏତିକିବେଳେ ଠିକ୍ ପାଖରେ ଥିବା ବଡ଼ ସୁଗନ୍ଧରାଜ ଫୁଲ ଗଛର ଫୁଲ କେତୋଟି ସକାଳର ଖରା ହେଉ ବା ପବନର ପରଶରେ ହେଉ ଉଡ଼ି ଆସି ଝରି ପଡ଼ିଲା ତା' ମଥା ଉପରେ, ଝରି ପଡ଼ିଲା ବିଶ୍ୱନାଥଙ୍କ ସମାଧି ଉପରେ । ସେ ଫୁଲ ଗୁଡ଼ିକର ସ୍ପର୍ଶରେ ଯେପରି ରୋମାଞ୍ଚିତ ହୋଇଗଲା ସ୍ୱରୂପାର ଦେହ । ତାକୁ ଲାଗିଲା—ଅଶରୀରୀ ଆତ୍ମା ଯେପରି ତା'ର ମନର ଇଚ୍ଛାକୁ ଜାଣିପାରି ଆଶୀର୍ବାଦ କରି ଫୁଲ ଝରାଇ ଦେଲେ ।

ସୌମ୍ୟ ଡାକିଲା—ଚାଲ ଏଥର ସ୍ୱରୂପା, ଚୌଧୁରୀ ନାରାୟଣ ଦାଶଙ୍କ ସମାଧି ଦେଖିବା । ହେମଲତା ମା', ସ୍ୱର୍ଣ୍ଣ ମାଉସୀ ମା', ବିଜୟ—

ଝରିଥିବା ଫୁଲରୁ ଗୋଟାଇ ନିଜ ମଥାରେ ଛୁଆଁଇ ଥିଲା ସ୍ୱରୂପା । କହିଲା—ଟିକିଏ କେଉଁଠି ବସିବା ସୌମ୍ୟ । ମଧୁଛନ୍ଦାର ଇମିତି ହଠାତ୍ ଚାଲି ଯିବାଟା ମୋ'ର ସବୁ ପରିକଳ୍ପନାକୁ ଓଲଟ ପାଲଟ କରିଦେଲା । ଚାଲ, ଏ ବଉଳ ଗଛର ଚାନ୍ଦିନୀଟା ଉପରେ ବସିବା । ଦୁଃଖ, ଶୋକ ଆଉ ଚିନ୍ତା ମିଶି ମୋତେ ବଡ଼ କ୍ଳାନ୍ତ କରିପକାଇଛନ୍ତି । ଆସିଲା ଦିନଠୁ ଗୋଟିଏ ହେଲେ ରାତି ମୁଁ ଶୋଇ ପାରିନି । ଆସ, ବସ ଏଇଠି, କେତେଟା କଥା ତମକୁ କହିବାର ଅଛି ।

ସୌମ୍ୟର ହୃଦ୍‌ଯନ୍ତ୍ରଟା ଯେପରି ସ୍ପନ୍ଦିତ ହୋଇ ଉଠିଲା । ବିଷଣ୍ଣ ମୁହଁ ତା'ର ଆହୁରି ଶୁଖିଗଲା । ଆଖି ଦୁଇଟିର ଚାହାଁଣି ଛାୟା-ଘନ ପୁଷ୍କରିଣୀ ଜଳ ପରି ନିବିଡ଼ ହୋଇ ଆସିଲା ବେଦନାରେ ।

ସ୍ୱରୂପା କ'ଣ କହିବାକୁ ଚାହେଁ, ସେକଥା ସୌମ୍ୟ ଜାଣିଛି । ସ୍ୱରୂପାର ବିଷାଦମୟୀ ତପସ୍ୱିନୀ ପରି ସେ ମୁଖମଣ୍ଡଳରେ ଆଶାର କିଛିମାତ୍ର ଚିହ୍ନ ନାହିଁ ।

ଯେଉଁ ପ୍ରଶ୍ନ ଦିନେ ଚିଠିରେ ଲେଖି ସୌମ୍ୟ ପଚାରିଥିଲା, ତାହାର ନିଦାନ ଉତ୍ତର ଆଜି ଦେବାକୁ ଚାହେଁ ସ୍ୱରୂପା । ଅବଶ୍ୟ ସେ ଉତ୍ତର ଆଜି ଦେବା ଉଚିତ ମଧ, କାରଣ ଦି'ଚାରିଦିନ ପରେ ସ୍ୱରୂପା ତା'ର କର୍ମସ୍ଥଳୀକୁ ଫେରିଯିବ ।

କିନ୍ତୁ... ଆଜିର ଏ ମୁହୂର୍ତ୍ତରେ କାହିଁକି କୌଣସି ଉତ୍ତର ଶୁଣିବାକୁ ଇଚ୍ଛା ନାହିଁ ସୌମ୍ୟର । ଇଚ୍ଛା ହେଉନାହିଁ ଶୁଣିବାକୁ । ଶ୍ମଶାନର କାରୁଣ୍ୟମୟ ବାତାବରଣ ହେଉ କିମ୍ବା ମଧୁଛନ୍ଦାର ଆକସ୍ମିକ ମୃତ୍ୟୁର ଶୋକାତୁର ପରିବେଶ ହେଉ, ସ୍ୱରୂପା ପ୍ରତି ଥିବା ତା'ର ଆବେଗକୁ ଯେପରି ସ୍ତବ୍ଧ କରି ଦେଇଛି । ସମସ୍ତ ଅନୁଭୂତିର ଅତୀତ ହୋଇ ଯାଇଛି ମନଟା ।

ସ୍ୱଭାବ ସୁଲଭ ହସ ଟିକିଏ ହସିଦେଇ ସୌମ୍ୟ କହିଲା—ଥାଉ, ଆଜି ଆଉ କହନି ସ୍ୱରୂପା । ତୁମେ ନ କହିଲେ ବି ମୁଁ ତୁମ ଉତ୍ତର ଜାଣିଛି । ତେଣୁ ସେ କଥା ଆଉ ତମରି ମୁହଁରୁ ଶୁଣିବାକୁ ଇଚ୍ଛା ନାହିଁ ।

ତା'ର ସେ ବ୍ୟଥିତ କଣ୍ଠସ୍ୱର ଶୁଣି ସ୍ୱରୂପା ମୁହଁ ତଳକୁ କରିଦେଲା । କିଛି ସମୟ କଟିଗଲା ନୀରବରେ । ଉପରୁ ବଉଳ ଫୁଲଗୁଡ଼ିକ ଝରି ପଡୁଥିଲା ଟୁପ୍ ଟାପ୍ ହୋଇ ।

ସ୍ୱରୂପା ଗଭୀର ଚିନ୍ତାରେ ବୁଡ଼ିଗଲା । ସେ ଯାହା ଭାବିଛି, ସୌମ୍ୟକୁ ସେ କଥା କହିବା ଠିକ୍ ହେବ ତ ? ଆଉ ଯେ ବେଳ ନାହିଁ, ଯାହା ହେଲେ କିଛି ଗୋଟାଏ ନିଷ୍ପତ୍ତି ନେବାକୁ ପଡ଼ିବ ।

ଗତ କେତେଦିନର ଘଟଣା ଗୁଡ଼ିକ ମନେ ପଡୁଛି ତା'ର ଗୋଟି ଗୋଟି ହୋଇ । ଏଠାକୁ ଆସିବା ପରଠାରୁ ସ୍ମିତାର ଦୂରବସ୍ଥା ଯେପରି ତାକୁ ଶ୍ୱାସରୁଦ୍ଧ କରିଦେବାକୁ ଚାହୁଁଛି । ପ୍ରକୃତରେ ତାକୁ ଆଉ ସ୍ମିତାକୁ ଶୁଣାଇ ଶୁଣାଇ ଯେଉଁ କଥାଗୁଡ଼ିକ ସୁନନ୍ଦା କହୁଛନ୍ତି, ତାହାର ଜ୍ୱାଳାରେ ଦାହ୍ୟ ବସ୍ତୁ ହୋଇଥିଲେ ଏତେବେଳକୁ ଜଳି ଭସ୍ମ ହୋଇ ଯାଆନ୍ତେଣି ସେମାନେ ।

ସେ କଥାଗୁଡ଼ିକ ଶୁଣି ସତ୍ୟବ୍ରତ, ସୁପ୍ରକାଶ ଯେପରି ଲାଜରେ ମାଟିରେ ମିଶିଗଲା ପରି ଅନୁଭବ କରନ୍ତି । ସୌମ୍ୟ ଉପସ୍ଥିତ ଥିଲାବେଳେ ଶାନ୍ତ କଣ୍ଠରେ ପ୍ରତିବାଦ କରେ, ଦେବବ୍ରତ ମଧ୍ୟ ଆପତ୍ତି କରି ସୁନନ୍ଦାଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି । ସୁଜାତା ଦାନ୍ତରେ ଦାନ୍ତ କାମୁଡ଼ି ନୀରବ ହୋଇ ରହେ । ଆଉ ସ୍ୱରୂପା ? ସ୍ୱରୂପା ଏକ ଜଡ଼ବସ୍ତୁ ପରି ନ ଶୁଣିଥିବାର ଅଭିନୟ କରେ ।

ପ୍ରତିଦିନ ରାତିରେ କାନ୍ଦେ ସ୍ମିତା । ଦୁଇ ଭଉଣୀ ଯେତେବେଳେ ଶୋଇବାକୁ ଆସନ୍ତି ଘର ଭିତରକୁ, ନିଜକୁ ଆଉ ସମ୍ଭାଳି ରଖିପାରେ ନାହିଁ ସେ । କହେ—ନାନୀ, ଚାକିରିଟିଏ ଯୋଗାଡ଼ କରି ମତେ ତୋ ପାଖକୁ ନେଇ ଚାଲ । ପରେ ତୋ'ର ଗବେଷଣା ଶେଷ କରିବୁ । ଖୁଡ଼ୀମା'ଙ୍କ କଥା ଗୁଡ଼ାକ ଆଉ ସହି ହେଉନାହିଁ ।

କେଉଁଦିନ କହେ—ତୁ ଆଉ ମଣ୍ଟୁ ତୁମେ ଦୁଇଜଣଯାକ ଯେ ଯାହାର ପଢ଼ିବା ପାଇଁ ଚାଲିଯିବ । ମୋ ପ୍ରତି ତୋ'ର କ'ଣ କିଛି କର୍ତ୍ତବ୍ୟ ନାହିଁ ? ମୁଁ ଏ କଟୁ କଥା ସହି କେତେ ଦିନ ଆଉ ରହିବି ?

ସ୍ୱରୂପା ତାକୁ ବୁଝାଇବାକୁ ଚେଷ୍ଟା କରେ—ବଡ଼ମା'ଙ୍କ ସହିତ କଥାବାର୍ତ୍ତା କଲା ପରେ ଯାହାହେଲେ କରିବି ସ୍ମିତା !

—ଖୁଡ଼ୀମା' ତ ବଡ଼ମା'ଙ୍କୁ ମଧ୍ୟ ଯାହା ତାହା କହୁଛନ୍ତି । ଏ ପରିସ୍ଥିତିରେ ବଡ଼ମା' ବା କରିବେ କ'ଣ ଯେ ? ଖୁଡ଼ୀମା' ପାଗଳ ପରି ହୋଇ ଯାଇଛନ୍ତି ନାନୀ ! ତାଙ୍କର ବା ଦୋଷ କ'ଣ, ଛନ୍ଦା ନାନୀ ଯାହା କଲା—

ଏ କେତେ ଦିନ ଭିତରେ ସ୍ମିତା ଯେପରି ବଦଳି ଯାଇ ବଡ଼ ମଣିଷଟିଏ ହୋଇ ଯାଇଛି । କଥା କହୁଛି ବଡ଼ ମଣିଷ ପରି ।

ଦିନେ ତ କହିଲା—ନାନୀ ! ତୁ ଭୁଲ୍ କରୁଛୁ । ସୌମ୍ୟ ଭାଇନାଙ୍କ ପରି ମଣିଷକୁ ପ୍ରତ୍ୟାଖ୍ୟାନ କରିବା ଉଚିତ ହେବ ନାହିଁ । ତୁ ଭଲରୂପେ ଭାବିଚିନ୍ତି ଦେଖ୍ । ବଡ଼ମା'ଙ୍କର ବହୁତ ଇଚ୍ଛାଥିଲା ।

ତା'ର ସେ ଦିନର ସେ କଥା ଶୁଣି ହଠାତ୍ ଯେପରି ଆଲୋକର ସନ୍ଧାନ ପାଇଲା ସ୍ୱରୂପା । ଶେଯ ଉପରେ ଉଠିପଡ଼ି ବସି ଆଗ୍ରହରେ ପଚାରିଲା—ସ୍ମିତା, ସୌମ୍ୟଙ୍କୁ ତୋ'ର ଭାରି ପସନ୍ଦ ହେଉଛି ?

ସଙ୍ଗେ ସଙ୍ଗେ ସ୍ମିତା ଉଠି ବସିଲା । ଆଗ୍ରହରେ କହିଲା—ଏ ସଂସାରରେ ସେଭଳି ମଣିଷ କେତେ ଜଣ ପାଇବୁ ତୁ ? ପ୍ରଶାସନିକ ପରୀକ୍ଷା ଦେଇଛନ୍ତି, ନିଶ୍ଚୟ ଆଇ. ଏ. ଏସ୍. ପାଇଯିବେ । ରୂପ, ଗୁଣ, ସ୍ୱଭାବ, ଚାକିରି, ସବୁଥିରେ ଯୋଗ୍ୟତମ ଲୋକ । ତାଙ୍କୁ ବାହାହେଲେ ତୁ ସୁନାର ସଂସାର ଗଢ଼ି ପାରିବୁ ନାନୀ !

କେତେବେଳ ପରେ ନିଦରେ ଶୋଇପଡ଼ିଲା ସ୍ମିତା । ସାନ ଭଉଣୀର ସେହି ନିଦ୍ରିତ ମୁହଁଟିକୁ ଚାହିଁ ରହି କେତେ କଥା କଳ୍ପନା କରିଗଲା ସ୍ୱରୂପା । ତାକୁ ଲାଗିଲା—ଏକ ବିରାଟ ସମସ୍ୟାର ସମାଧାନ ଯେପରି ଖୋଜି ପାଇଛି ସେ । ହେଲେ—ସୌମ୍ୟର ମତ ନେବାର ଆବଶ୍ୟକତା ରହିଛି । ସଫଳ ହେଲେ ତା'ପରେ ଯାଇ ବଡ଼ମା'ଙ୍କୁ କହିବ ସେ ।

ସେଥିପାଇଁ ଆଜି ଏ ନିର୍ଜନ ସ୍ଥାନକୁ ତା'ର ଏ ଅଭିଯାନ । ସୌମ୍ୟଙ୍କୁ ଆଣିଛି ସାଙ୍ଗରେ ।

ନା, ଆଉ ଡେରିକଲେ ଚଳିବନି । ସ୍ୱରୂପା ଅତ୍ୟନ୍ତ କୁଣ୍ଠାର ସହିତ କଥାଟା ଆରମ୍ଭ କଲା—ସ୍ମିତା ପାଇଁ ମୁଁ ବଡ଼ ଚିନ୍ତିତ ହୋଇ ପଡ଼ିଛି ସୌମ୍ୟ ! ଖୁଡ଼ୀଙ୍କ ମାନସିକ ଅବସ୍ଥା ଯାହା—

ସୌମ୍ୟ କହିଲା—ମୁଁ ଜାଣୁଛି, ପ୍ରକୃତରେ ସ୍ମିତା ଯା'ପରେ ଚଳିବ କିପରି ? ଭାବି ହେଉନାହିଁ ।

—ସବୁଦିନ ରାତିରେ ସେ କାନ୍ଦୁଛି ।

ମଣ୍ଟୁଟା ବି ଡରରେ ଘର ଭିତରେ ପଶୁନାହିଁ । ତମେ ଲକ୍ଷ୍ୟ କରିଥିବ ଏ କେତେ ଦିନ ହେଲା ଭିତର ଘରକୁ ଶୋଇବାକୁ ଆସୁନାହିଁ । ଅଧିକାଂଶ ସମୟ ସେ ରହୁଛି ବାହାର ଖଞ୍ଜାରେ ।

ସେ ତ ଆଉ ଏଠି ରହିବନି ସବୁଦିନ । ପୁଣି ଚାଲି ଯିବ ପଢ଼ିବା ପାଇଁ । ମୁଁ ମଧ ଚାଲି ଯିବି । ବଡ଼ମା'ଙ୍କ ଅବସ୍ଥା ତ ଦେଖୁଛ ? ମୋ ମୁଣ୍ଡରେ ପର୍ବତ ଲଦି ହୋଇଗଲା ପରି ଲାଗୁଛି ମତେ ।

—ଗୋଟାଏ କାମ କର ସ୍ୱରୂପା ! ଅବଶ୍ୟ ତା'ର ପଢ଼ାର କ୍ଷତି ହୋଇଯିବ କିଛି ଦିନ ପାଇଁ, ତମ ସାଙ୍ଗରେ ନେଇଯାଅ ସ୍ମିତାକୁ ।

ଟିକିଏ ସ୍ତବ୍ଧ ହୋଇ ରହିଲା ସ୍ୱରୂପା । ତା'ପରେ ହଠାତ୍ ଯେପରି କଥାଟା କହି ପକାଇଲା—ସୌମ୍ୟ, ସ୍ମିତାର ଭାର ତମେ ନିଅ !

ଆଶ୍ଚର୍ଯ୍ୟ ହୋଇଯାଇ ସୌମ୍ୟ କହିଲା—ମୁଁ ନେବି !! ବୁଝି ପାରିଲିନି ସ୍ୱରୂପା !

—ସ୍ମିତାକୁ ତମେ ବାହା ହୁଅ ସୌମ୍ୟ !

—କ'ଣ କହିଲ ?

ହଁ, ସ୍ମିତାକୁ ତମେ ବାହା ହୁଅ । ମତେ ବାହା ହେଲେ ତମେ ସୁଖର ସଂସାର ଗଢ଼ି ପାରିବନି । ସେହି ମହା ବୁଦ୍ଧଙ୍କ ପରି ମୋ ମନ ସବୁବେଳେ ଅସ୍ଥିର । ଯାହା ଅବାସ୍ତବ ମୁଁ ପାଗଳୀ ପରି ତାହା ହିଁ ଖୋଜି ବୁଲୁଛି । ମୋ ନନା ବୋଉଙ୍କ ମୃତ୍ୟୁ ଘଟଣା ମତେ ପିଲାଦିନଠୁ ଅଲଗା ମଣିଷ କରି ଦେଇଛି ସୌମ୍ୟ ! ମୋ ଭଳି ସ୍ତ୍ରୀ ପାଇଲେ ତମେ ଦୁଃଖୀ ହୋଇଯିବ ।

ବରଂ ସ୍ମିତାଟି ମୋର ସର୍ବସୁଲକ୍ଷଣୀ । ବିଦ୍ୟା ବୁଦ୍ଧିରେ, କାବ୍ୟ କବିତାରେ, ଘରକରଣାରେ ତା' ସମାନ ଝିଅ ସହଜରେ ମିଳିବେ ନାହିଁ । ସୌମ୍ୟ, ତମେ ମୋ ପ୍ରସ୍ତାବରେ ରାଜି ହୋଇଯାଅ । ଆଉ ସବୁ ଚିନ୍ତାରୁ ମୁକ୍ତ କରିଦିଅ ମତେ !

ସ୍ୱରୂପାର ସଜଳ ଆଖି ଦୁଇଟିରେ କି ଆକୁତି ଫୁଟି ଉଠିଛି ! ସମସ୍ତ ପ୍ରକାର କୁଣ୍ଠାକୁ ଆଡ଼େଇ ଦେଇ ହଠାତ୍ ଯେପରି ନିଜର ମନଟାକୁ ଅଜାଡ଼ି ପକାଇଛି ସେ ! ଆଉ ସୌମ୍ୟର ?

ତା'ର ହୃଦ୍‌ଯନ୍ତ୍ରରେ ସେ ଯେପରି ଅନୁଭବ କରିଛି ଶତ ବୃଶ୍ଚିକର ଦଂଶନ ! ମନଟା ଆର୍ତ୍ତନାଦ କରି କହୁଛି—ଆହା, ସ୍ୱରୂପା କ'ଣ କଲ ତମେ ? ତମକୁ ମନା କରିବା ସତ୍ତ୍ୱେ ଆଜିର ଏ ସକାଳଟାକୁ ମୋର ତମେ ଏମିତି ବିନଷ୍ଟ କରିଦେଲ କାହିଁକି ? ଆଜି ଏକାନ୍ତ ନିକଟରେ ମୁଁ ତମକୁ ପାଇଥିଲି । ଯେମିତି ପାଇ ପାରିଥିଲି ଏକାନ୍ତ ନିଜର କରି । ...ତମେ ହୁଏତ କିଛି ନ ଭାବି ସେତେବେଳେ ମୋ ମୁହଁର କଥାକୁ ବନ୍ଦ କରିଦେଲ ତମର କଅଁଳ ହାତ ପାପୁଲିଟାରେ । ମୋ ଦେହରେ ମୁଁ ଅନୁଭବ କଲି ଅସଂଖ୍ୟ ବୈଦ୍ୟୁତିକ ଶିହରଣ, ଯାହା କେବଳ ପ୍ରେମିକ ହିଁ ଅନୁଭବ କରିପାରେ ତା ପ୍ରିୟାର ପରମ ପ୍ରିୟ କର ସ୍ପର୍ଶରେ । ...ମହାର୍ଘ, ସ୍ୱର୍ଗ-ସମ୍ପଦ ପାଇଲା ପରି ମନେହେଲା ମୋର, ମନେହେଲା—ଅନନ୍ତ କାଳ ବହିଯାଉ, ତମ ହାତଟାକୁ ମୋ ହାତ ଭିତରେ ରଖି ତମର ଏହି ସୁନ୍ଦର ସୁଷମା ନିରୀକ୍ଷଣ କରୁ କରୁ ମୁଁ ଏହିପରି ଠିଆ ହୋଇଥାଏଁ । ...ମୁଁ ଜାଣେ ଭଲ ପାଇବାର ଅନୁଭୂତି ତମ ହୃଦୟକୁ ସ୍ପର୍ଶ କରିନାହିଁ ଏ ପର୍ଯ୍ୟନ୍ତ । ମଣିଷ ସମାଜର ଦୁଃଖରେ, ପୃଥିବୀର ଦୁଃଖରେ ଅଭିଭୂତ ତମେ ମୋ ଦୁଃଖକୁ ଉପଲବ୍ଧି କରି ପାରିବ ନାହିଁ । ଯେପରି ତଥାଗତ ବୁଦ୍ଧ ଉପଲବ୍ଧି କରିପାରି ନଥିଲେ ଗୋପାଳଙ୍କ ଦୁଃଖକୁ । ଶ୍ରୀ ଚୈତନ୍ୟ ଉପଲବ୍ଧି କରିପାରି ନଥିଲେ ବିଷ୍ଣୁପ୍ରିୟାଙ୍କ ଦୁଃଖକୁ ।

ସୂର୍ଯ୍ୟଙ୍କ ଆଲୋକ ଯେଉଁଠି ଉଦ୍‌ଭାସିତ, ସେଠି କ୍ଷୁଦ୍ର ନକ୍ଷତ୍ରକୁ କେହି ଦେଖି ପାରନ୍ତି ନାହିଁ ।

ସୌମ୍ୟକୁ ଏହିପରି ନୀରବ ହୋଇ ରହିଯିବା ଦେଖି ସ୍ୱରୂପାର ଆଶା ଯେପରି ଉଜ୍ଜ୍ୱଳ ହୋଇଗଲା । ଆଗ୍ରହଭରା କଣ୍ଠରେ ଆଉ ଥରେ ସେ କହିଲା—ସୌମ୍ୟ, କହ ତମେ ମୋ ପ୍ରସ୍ତାବରେ ରାଜି ଅଛ ? ମୋର ଅଶେଷ ଉପକାର କରିବ ତମେ ସୌମ୍ୟ !

ଜାଣିଛ ? ଏଥର ମୋ ନାଁ ବଛାଯାଇଛି ଷ୍ଟେଟ୍‌ସ୍‌କୁ ଯାଇ ବିଜ୍ଞାନ–କଂଗ୍ରେସରେ ଯୋଗ ଦେବାପାଇଁ । ଡକ୍ଟରେଟ୍ କମ୍ପ୍ଲିଟ୍ କଲା ପରେ ଆମେରିକାର ପ୍ରସିଦ୍ଧ Space Science ଗବେଷଣାଗାରରେ ଗବେଷଣା କରିବା ପାଇଁ ଗୋଟିଏ ଫେଲୋସିପ୍ ମିଳି ଯିବାର ନିଶ୍ଚିତ ସମ୍ଭାବନା ଅଛି ବୋଲି ଡକ୍ଟର ହେନ୍‌ରୀକ୍ ଲେଖିଛନ୍ତି । ମୋର ସନ୍ଦର୍ଭଟି କୁଆଡ଼େ ଉଚ୍ଚ ପ୍ରଶଂସିତ ହୋଇଛି ।

କିନ୍ତୁ ଏ ସବୁ ଶୁଭ ସମ୍ବାଦ ମୁଁ କାହାକୁ କହି ପାରିନି । ଠିକ୍ ସେତିକିବେଳେ ଟେଲିଗ୍ରାମ୍ ପାଇଲି...ମଧୁଛନ୍ଦା... ।

ଫଁ କିନା ଦୀର୍ଘ ନିଃଶ୍ୱାସଟିଏ ପକାଇଲା ସ୍ୱରୂପା । ଆଉ ସୌମ୍ୟର ଦୀର୍ଘ ନିଃଶ୍ୱାସ ବି ତା ନିଃଶ୍ୱାସ ସହିତ ମିଳିତ ହୋଇ ମିଶିଗଲା ଶୂନ୍ୟରେ ।

—ତମର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ସ୍ୱରୂପା, ସ୍ୱପ୍ନ ତମର ସଫଳ ହେଉ । ...ବାସ୍ତବିକ୍ ଖୁବ୍ ଆନନ୍ଦର କଥା ।

—ତମେ ସ୍ମିତାର ଦାୟିତ୍ୱ ନେଲେ ଯାଇ ମୋର ଏ ସ୍ୱପ୍ନ ସଫଳ ହେବ ସୌମ୍ୟ !

ଏଥର ହସିଲା ସୌମ୍ୟ, କହିଲା—ନିଜର ସ୍ୱପ୍ନରେ ବିଭୋର ହୋଇ ତମେ ମତେ କେତେ କଷ୍ଟ ଯେ ଦେଇ ଚାଲିଛ ! ତମ ଭଳି ବୁଦ୍ଧିମତୀ ଝିଅ ନିକଟରୁ ମୁଁ ଏ କଥା ଆଶା କରି ନ ଥିଲି । ତମେ ମତେ ବାହା ନ ହେବ, ଠିକ୍ ଅଛି, କିନ୍ତୁ ଭଲ ପାଇବା ଜିନିଷଟା ହାଟର ସଉଦା ହୋଇନାହିଁ ଯେ ଗୋଟାଏ ଦୋକାନରୁ ଇଚ୍ଛା ନ ହେଲେ ଆଉ ଗୋଟିଏ ଦୋକାନରୁ କିଣିଦେଲେ ଚଳିବ । ବରଂ ବଡ଼ମା'ଙ୍କୁ ପଚାର, ମୁଁ ଚେଷ୍ଟା କରିବି, ସ୍ମିତା ପାଇଁ ସୁପାତ୍ରଟିଏ ଖୋଜିଦେବି ।

ସୌମ୍ୟର କଥାଗୁଡ଼ିକର ରୂଢ଼ତା ଏଥର ସ୍ୱରୂପାକୁ ଯେପରି ଆଘାତ ଦେଇ ସଚେତନ କଲା । ତା'ର ସେହି ବେଦନାର୍ତ୍ତ ମୁହଁର ବିବର୍ଣ୍ଣତା ଲକ୍ଷ୍ୟ କରି ସ୍ତବ୍ଧ ହୋଇଗଲା ସେ । ସଙ୍ଗେ ସଙ୍ଗେ ନିଜର ସ୍ୱାର୍ଥପରତା ଓ କ୍ଷୁଦ୍ରତା କଥା ଭାବି ସଙ୍କୋଚରେ ଯେପରି ମାଟିରେ ମିଶିଯିବାକୁ ଇଚ୍ଛା ହେଲା ତା'ର । ଥରଟିଏ ସୌମ୍ୟର ମୁହଁକୁ ଚାହିଁ ଦେଇ ମୁହଁ ତଳକୁ କରିଦେଲା ସେ ଅପରାଧୀ ପରି ।

କଥା ସରିଯାଇଛି । ନିଜ ବିଷୟରେ କିଛି ନ କହି ମଧ ସ୍ୱରୂପା ଉତ୍ତର ଦେଇଛି ସୌମ୍ୟର ଚିଠିରେ ଲେଖିଥିବା ପ୍ରଶ୍ନର । ସୌମ୍ୟର ଆକୁଳ ପ୍ରତୀକ୍ଷାରେ ଟଣା ହୋଇଯାଇଛି ଗୋଟାଏ ଆକସ୍ମିକ ପୂର୍ଣ୍ଣଛେଦ ।

ଆଉ ପଚାରିବାର କିଛି ନାହିଁ ।

ମୁହୂର୍ତ୍ତ ଗୁଡ଼ିକ ବିତି ଯାଉଛି ନୀରବରେ ।

ଆହୁରି କେତେ ସମୟ ଏମିତି ଚୁପ୍‌ଚାପ୍ ହୋଇ ସେମାନେ ବସିଥା'ନ୍ତେ କେଜାଣି, ଶ୍ମଶାନ ଭୂମିର ରକ୍ଷକ ତଥା ମାଳୀ ଦୁଇଜଣ ବାସୁଦେବ ଓ ଜଗନ୍ନାଥ ଆସି ପହଞ୍ଚି ସେମାନଙ୍କୁ ଚିହ୍ନି ନମସ୍କାର କଲେ ।

ଏକ ଅସ୍ୱସ୍ତିକର ପରିସ୍ଥିତିରୁ ଯେପରି ଉଦ୍ଧାର ପାଇଗଲେ ସୌମ୍ୟ ଆଉ ସ୍ୱରୂପା ।

ଏଥର ବେଶ୍ ସହଜ ଭାବରେ ହିଁ ସୌମ୍ୟ କହିଲା—ସ୍ୱରୂପା ଆସ, ବାକିତକ ବୁଲି ଦେଖିବା । ତା'ପରେ ଘରକୁ ଫେରିଯିବା ।

## (୧୮)

'ଏ ପୃଥିବୀଟା ଗୋଟିଏ ମାୟାପୁରୀ । ଆମ ଚାରିଆଡ଼େ ଯାହା ଦେଖୁଛେଁ ସେସବୁ ଖାଲି ସ୍ୱପ୍ନ ଜଗତର ଦୃଶ୍ୟ, ମୋହରେ ଆଚ୍ଛନ୍ନ ହୋଇ ଆମେ ଭାବୁଛେ ଏହା ନିତ୍ୟ ! ହେ ଅନ୍ଧ ମନୁଷ୍ୟ, ଏ ଅସତ୍ୟ ପ୍ରତି ସତର୍କ ରହ, ମିଛରେ ଏହାର ବନ୍ଧନରେ ପଡ଼ି ପରକାଳ ନଷ୍ଟ କରନାହିଁ ।'

ଧର୍ମଶାସ୍ତ୍ରର ସତର୍କବାଣୀ ସତ୍ତ୍ୱେ ଯେତେବେଳେ ମନକୁ ଆସେ ଏ ମାୟାପୁରୀ ନନ୍ଦନକାନନକୁ ଦିନେ ନା ଦିନେ ଅବଶ୍ୟ ଛାଡ଼ିଦେଇ ଯିବାକୁ ପଡ଼ିବ ଚିରଦିନ ପାଇଁ, ସେତେବେଳେ ଆପେ ଆପେ କଣ୍ଠଦେଶରେ ଅସରନ୍ତି କୋହ ଆସି ଜମା ହୋଇଯାଏ ମଣିଷର । ଆପେ ଆପେ ଲୁହ ଜମିଯାଏ ଆଖି ଦୁଇଟିରେ ଏ ପୃଥିବୀ ସହିତ ବିଚ୍ଛେଦ ହୋଇଯିବା ବ୍ୟଥାର ଅବଶ୍ୟମ୍ଭାବୀ ସମ୍ଭାବନାରେ ।

ମାୟା ଜଗତର ଏ ଅପରୂପ ରୂପମାଧୁରୀ ଯେ ସହସ୍ର ଗ୍ରନ୍ଥିରେ ବାନ୍ଧି ଦେଇଛି ମଣିଷକୁ । ଅତି ତୁଚ୍ଛ ତୃଣଦଳର ସୁଶ୍ୟାମଳ ଶୋଭା ସମ୍ପଦଠାରୁ ଆରମ୍ଭ କରି ପରିବ୍ୟାପ୍ତ ମହାକାଶର ମନୋମୁଗ୍ଧକାରୀ ସେହି ଅପରୂପ ନୀଳିମା ପର୍ଯ୍ୟନ୍ତ ସମସ୍ତ ଦୃଶ୍ୟମାନ ବସ୍ତୁ କି ଅପୂର୍ବ ସୁନ୍ଦର । ଏଠାର ଗଛ, ଲତା, ଫୁଲ, ଫଳ, ପଶୁପକ୍ଷୀ, କୀଟପତଙ୍ଗ ପ୍ରଭୃତିଠାରୁ କ'ଣ ଅଧିକ ସୁନ୍ଦର ସେହି ତଥାକଥିତ ସ୍ୱର୍ଗ ?

ନା, ମୋ ସ୍ୱର୍ଗ ହେଉଛି ଏଇଟା ।

ଜ୍ଞାନ ଲାଭ ହେଲାଦିନୁ ମୁଁ କେବଳ ଯାରି ରୂପସୁଷମା ହିଁ ଦେଖିଛି, ଯାରି ପାଣି ପବନ ଆଲୁଅରେ ବଢ଼ିଛି, ପ୍ରତି ମୁହୂର୍ତ୍ତରେ ଏହାରିଠାରୁ ଅମୃତର ଆସ୍ୱାଦନ ଲାଭ କରିଛି । ମୋ ଦେହର ପ୍ରତିଟି ଅଣୁରେ, ପ୍ରତିଟି ରକ୍ତକଣାରେ ତ ଭରି ରହିଛି ଏ ମାଟି ମାଆର

ନିର୍ଯ୍ୟାସ, ଅମୃତମୟ ନିର୍ଯ୍ୟାସ । ବର୍ଣ୍ଣାଳୀ ଭରା ଫୁଲବଗିଚା ଭିତରେ ପିଲାଦିନେ ମୁଁ ପ୍ରଜାପତିର ରଙ୍ଗ, ଫୁଲର ରଙ୍ଗରେ ବିମୋହିତ ହୋଇ ଦଉଡ଼ି ଦଉଡ଼ି ପ୍ରଜାପତି ଗୁଡ଼ିକୁ ଧରିବାକୁ ଚେଷ୍ଟା କରୁଥିଲି । କେତେବେଳେ କେତେବେଳେ ଧରି ସେମାନଙ୍କ ପର ଗୁଡ଼ିକର ବିଭିନ୍ନ ରଙ୍ଗର ଚିତ୍ରଗୁଡ଼ିକୁ ଦେଖି ମୁଗ୍ଧ ହେଉଥିଲି, ଆଶ୍ଚର୍ଯ୍ୟ ହେଉଥିଲି । କେହି ଜଣେ କହିଲେ ପ୍ରଜାପତି ଧରିଲେ କୁଆଡ଼େ ମା'ର ଅନିଷ୍ଟ ହୁଏ, ତେଣୁ ସାଙ୍ଗେ ସାଙ୍ଗେ ଛାଡ଼ି ଦେଇଥିଲି ସେ ଅଭ୍ୟାସ । କିନ୍ତୁ ଆଜି ସୁଦ୍ଧା ମନେ ଅଛି କଅଁଳ ଘାସ ପଡ଼ିଆ ଉପରେ ବୁଲୁଥିବା ନାଲି ମଖମଲି ସାଧବବୋହୂ ଗୁଡ଼ିକୁ ହାତରେ ଧରି କେମିତି ଶିଶିରେ ପୂରାଇଥିଲି ଦିନେ ! ବଗିଚା ଭିତରେ ସେ ଦୋଳି ଖେଳ, ଦୋଳି ଗୀତ, ଡାଳରେ ବସି ବୋବାଉ ଥିବା କୋଇଲିମାନଙ୍କର କୁହୂତାନ ସହିତ ଆମ ପିଲାମାନଙ୍କର କୋଇଲି ଗୀତ । ସେ ଥିଲା ଏକ ସ୍ୱପ୍ନମୟ ଜଗତ—ଆଉ ମୁଁ ତା' ଭିତରେ ସ୍ୱପ୍ନମୟୀ ଝିଅଟିଏ । ଘର ଭିତରେ ବସିବାକୁ ମତେ ଭଲ ଲାଗୁ ନ ଥିଲା । ଅଗଣାରେ ବସି ରାତିର ଆକାଶରେ ତାରା ଗଣିବା ମଧ୍ୟ ଭଲ ଲାଗୁଥିଲା ମତେ । ତା' ପରେ ଶାଶୂଘରେ ସ୍ୱାମୀଙ୍କ ସହିତ ସେ କେତୋଟି ଦିନ...

ଏ ପୃଥିବୀ ହିଁ ହେଉଛି ମୋର ସ୍ୱର୍ଗ, ମୋର ଦେବଭୂମି, ଯାକୁ ମାୟାପୁରୀ ବୋଲି ଭାବିବି କେମିତି ? ଯା ବିଷୟରେ ନିରାସକ୍ତ ହେବି କେମିତି ?

ଆଖି ବୁଜିଲେ ଏବେ ମଧ୍ୟ ସେ ଦୃଶ୍ୟ ଗୁଡ଼ିକ ଦେଖି ପାରନ୍ତି ନୀଳମଣି । ଭାବନ୍ତି । ପୁଣି ଆସକ୍ତିରେ ବୁଡ଼ି ମନେ ମନେ ଗୋଟାଏ ଅତି ସୁନ୍ଦର ସ୍ୱପ୍ନର ଜାଲ ବୁଣି ଚାଲନ୍ତି ନିଜର ଅଜ୍ଞାତସାରରେ । କାରଣ ତାଙ୍କର ସ୍ୱର୍ଗ ହେଉଛି ଏ ପୃଥିବୀ ।

ଛନ୍ଦା ବାହା ହେବ ଶଚୀନ୍ଦ୍ରକୁ । ସ୍ୱରୂପାକୁ ବାହା କରାଇବେ ସୌମ୍ୟ ସହିତ । ଭଲ ପାତ୍ରଟିଏ ଦେଖି ସ୍ମିତାର ହାତକୁ ଦି'ହାତ କରିଦେବେ । ସୁପ୍ରକାଶ ଇଞ୍ଜିନିଅର ହୋଇଆସିବ, ତା' ପଛକୁ ରହିଛି ମଣ୍ଟୁ । ସୁପ୍ରକାଶ କଥା ସୁନନ୍ଦା ବୁଝିବ । ସ୍ୱରୂପା ଦାୟିତ୍ୱ ନେବ ମଣ୍ଟୁର । ଲୀନାଟା ବଡ଼ ହେବାକୁ ଆହୁରି ବହୁତ ଦିନ ଅଛି । ବର୍ତ୍ତମାନ ଏ ତିନୋଟି ଝିଅଙ୍କ ଦାୟିତ୍ୱ ସମ୍ପୂର୍ଣ୍ଣ ନୀଳମଣିଙ୍କର ।

ତେଣୁ ସେମାନଙ୍କ ପାଇଁ ଗୋଟିଏ ଅତି ସୁନ୍ଦର ସ୍ୱପ୍ନର ଜାଲ ବୁଣି ଚାଲିଥିଲେ ସେ ।

ସେହି ମନୋରମ ଜାଲଟିର ଗୋଟାଏ ଦିଗକୁ ଅକସ୍ମାତ ଛିଣ୍ଡାଇ ପକାଇଲା ମଧୁଛନ୍ଦା । ଆଉ ଗୋଟିଏ ଦିଗକୁ ନିଜେ ସ୍ୱରୂପା ! ହଁ, ସେଦିନ ଶ୍ମଶାନ ଭୂମିରୁ ଫେରିଲା ପରେ ସିଧା ସଳଖ ସ୍ୱରୂପା ଆସିଥିଲା ତାଙ୍କରି ପାଖକୁ । ମନ ଦୁଃଖରେ ବଡ଼ମା'ଙ୍କ ସଙ୍ଗେ ଦେଖା ନ କରି ତାଙ୍କଠାରୁ ବିଦାୟ ନ ନେଇ ବାହାରୁ ବାହାରୁ ଚାଲି ଯାଇଥିଲା ସୌମ୍ୟ !

ସ୍ୱରୂପା ସୌମ୍ୟକୁ ଯାହା ଜଣାଇ ଥିଲା ସେ କଥା ଜଣାଇଲା ତା'ର ବଡ଼ମା'ଙ୍କୁ । ସେ ଆମେରିକାକୁ ଯିବ ଉଚ୍ଚଶିକ୍ଷା ପାଇଁ, ବାହା ହେବନି । ତା'ର ଲକ୍ଷ୍ୟ ଭିନ୍ନ ।

ମନର ଅବରୁଦ୍ଧ ସ୍ରୋତକୁ ଖୋଲିଥିଲା ସ୍ୱରୂପା । ନୀଳମଣି ସ୍ତବ୍ଧ ଭାବରେ ଶୁଣୁଥାନ୍ତି, ଅନୁଭବ କରୁଥାନ୍ତି ନିଜର କଳ୍ପନାର ସୁନେଲି ଜାଲ ଖଣ୍ଡକ କିପରି ଟିକି ଟିକି ହୋଇ ଛିଣ୍ଡି ଯାଉଛି ।

ସ୍ୱରୂପାର ସେ ଦିଗରେ ଲକ୍ଷ୍ୟ ନାହିଁ । ସେ କହି ଚାଲିଛି—ବର୍ତ୍ତମାନ ସ୍ମିତାକୁ ସେ ନିଜ ସହିତ ଧାନବାଦକୁ ନେଇଯିବ । ବର୍ଷଟିଏ ତା' ପଢ଼ାରେ କ୍ଷତି ହେବ ଯଦି ହେଉ । ଧାନବାଦରେ ପୁଣି ବର୍ଷଟିଏ ପଢ଼ିବ ସ୍ମିତା । ସୁନନ୍ଦାଙ୍କର ଏଭଳି ମାନସିକ ଅବସ୍ଥାରେ ସ୍ମିତା ଯେ ଆଉ ଏ ଘରେ ଚଳି ପାରିବନି । ସୌମ୍ୟକୁ ସେ କହିଛି ସ୍ମିତା ପାଇଁ ଉପଯୁକ୍ତ ବରପାତ୍ରଟିଏ ଦେଖିବାକୁ । ସ୍ମିତାର ବାହାଘର ପରେ ସେ ଯିବ ଆମେରିକା । ଅବଶ୍ୟ ବଡ଼ମା'ଙ୍କ ଅନୁମତି ବିନା ଏସବୁ କିଛି ସମ୍ଭବ ନୁହେଁ ।

ଟିକିଏ ନୀରବ ରହିଲା ପରେ ନୀଳମଣି ପଚାରିଲେ—ସୌମ୍ୟକୁ ତୁ ଏକଥା ଜଣାଇଲୁ ?

ମୁହଁ ତଳକୁ କରି ସମ୍ମତିସୂଚକ ଭାବରେ ମୁଣ୍ଡ ହଲାଇଲା ସ୍ୱରୂପା ।

—ସୌମ୍ୟ ଭଳି ସୁପାତ୍ରକୁ ତୁ ଅସ୍ୱୀକାର କଲୁ ସ୍ୱରୂପା ?

ଠିକ୍ ସେମିତି ମୁହଁ ତଳକୁ କରି ସ୍ୱରୂପା କହିଲା—ଠିକ୍ ତା' ନୁହେଁ ବଡ଼ମା । ପୃଥିବୀରେ ମାୟା ମମତାର ବନ୍ଧନ ବଡ଼ ଦୁଃଖର ବନ୍ଧନ ବଡ଼ମା । ବାହା ହେବା, ଘରଦ୍ୱାର କରିବା, ପିଲାଛୁଆଙ୍କୁ ମଣିଷ କରିବା, ଏସବୁ ମଣିଷକୁ ଆହୁରି ଅଧିକ ଦୁଃଖ ଭିତରକୁ ଠେଲି ଦେବ । ଅଶାନ୍ତିରେ କୁହୁଳିଲେ ଜୀବନର ମୁକ୍ତି କାହିଁ ବଡ଼ମା ? ପୁଣ୍ୟ ବା ପାପର ଫଳ ଭୋଗ କରିବା ପାଇଁ ବାରମ୍ବାର ସ୍ଥୂଳ ଶରୀର ଧାରଣ କରିବାକୁ ପଡ଼ିବ । ବଡ଼ମା, ଜୀବନର ଏ ଜନ୍ମ ମୃତ୍ୟୁର ପରିଭ୍ରମଣର ନାମ ହେଉଛି ସଂସାର... ।

ତା'ତ ଜାଣିଛି ସ୍ୱରୂପା, ହେଲେ ପ୍ରତ୍ୟେକ ଲୋକ ଯଦି ଯୋଗୀ ହେବେ ତା'ହେଲେ ପୃଥିବୀଟା ଚଳିବ କେମିତି ? ଏହା ଏକ ପଳାତକର ମନୋବୃତ୍ତି ମଧ୍ୟ ହୋଇପାରେ ।

ଜାଣି ଜାଣି ବୋଧହୁଏ ସ୍ୱରୂପାର ମନରେ ଆଘାତ ଦେଲେ ନୀଳମଣି ।

ଆହତ କଣ୍ଠରେ ସ୍ୱରୂପା କହିଲା, ଗୌତମ ବୁଦ୍ଧଙ୍କୁ ତମେ ପଳାତକ ବୋଲି କହୁଛ ବଡ଼ମା ?

ନୀଳମଣି ହସିଲେ; କହିଲେ—ସମସ୍ତ ଗୃହତ୍ୟାଗୀ ସନ୍ନ୍ୟାସୀଙ୍କୁ ମୁଁ ପଳାୟନପନ୍ଥୀ ବୋଲି କହିବି । ତୋ'ର ଏ ମହାଯୋଗୀମାନେ ସଂସାରର ଦୁଃଖ ଦୁର୍ଦ୍ଦଶାର ମୁହାଁମୁହିଁ ହୋଇ ଠିଆ ହେବାର ଶକ୍ତି ଅର୍ଜ୍ଜନ କରିପାରି ନାହାନ୍ତି । ନିଜର ବଞ୍ଚିବାଟାକୁ ହିଁ ସେମାନେ ବଡ଼ କରି ଦେଖିଚନ୍ତି, ଅର୍ଥାତ୍ ନିଜର ମୁକ୍ତିର ବାଟ ହିଁ ଖୋଜିଛନ୍ତି ।

ସ୍ୱରୂପା ସ୍ତମ୍ଭିତ ହେଲା, କଥା ଖୋଜି ପାଇଲା ନାହିଁ ।

'ସ୍ୱରୂପା, ଗୃହୀ ପକ୍ଷରେ କର୍ତ୍ତବ୍ୟ ହେଉଛି ସାଧନା । ଗୋପା, ବିଷ୍ଣୁପ୍ରିୟା, ସେହିପରି ନାରୀମାନେ ସଂସାର ଭିତରେ ରହି ମଧ୍ୟ ସିଦ୍ଧ । ସଂସାର ବନ୍ଧନ ଭିତରେ ରହି ନିଃସ୍ୱାର୍ଥପର ଭାବରେ ସମସ୍ତ ଦାୟିତ୍ୱ ତୁଲାଇବା ଅଧିକ କଷ୍ଟକର । କହିଲୁ ମୁଁ କାହିଁକି ତମମାନଙ୍କୁ ମଣିଷ କରି ଅଧିକ ଜଞ୍ଜାଳରେ ନିଜକୁ ବାନ୍ଧିଲି ?'

ସ୍ୱରୂପା ନୀରବ ।

କାନ୍ଥରେ ଟଙ୍ଗା ହୋଇଥିବା ବିଶ୍ୱନାଥଙ୍କ ଫଟୋଟାକୁ ଆଙ୍ଗୁଠି ଦେଖାଇଲେ ନୀଳମଣି, ଦୀର୍ଘ ନିଃଶ୍ୱାସଟିଏ ପକାଇ କହିଲେ—ସେ ପିଲାଦିନୁ ମୋର ସବୁ ସରିଯାଇଛି । ହେଲେ ମଧ୍ୟ ଏ ସଂସାର ବନ୍ଧନକୁ ମୁଁ ଫାଶ ପରି ମୋ ବେକରେ ଗଳାଇ ବଞ୍ଚି ରହିଛି ଏ ପର୍ଯ୍ୟନ୍ତ । ଦିନେ ହେଲେ ଭାବି ନାହିଁ ଭୁଲ୍ କରିଛି, ...ଲାଭ କ୍ଷତିର ହିସାବ କରି ବସିଲେ ମଣିଷ ଏ ଜଟିଳ ଜୀବନ-ଅଙ୍କକୁ କେବେ ହେଲେ କଷି ପାରିବନାହିଁ ସ୍ୱରୂପା, ତା ହେଲେ ଖାଲି ଅଧିକ ଦୁଃଖଭୋଗ କରିବ । ଚକ୍ର ହାର ବୃଦ୍ଧିରେ ଦେୟ କ୍ରମଶଃ ବଢ଼ି ଚାଲିବା ହିଁ ଏ ଜୀବନ ଅଙ୍କର ନିୟମ, ଆଉ.....ନୀଳମଣି ଯେମିତି ଟିକିଏ ବିଶ୍ରାମ ନେଲେ । ତା'ପରେ କହିଲେ—ଆଉ ତ୍ୟାଗର ପ୍ରକୃତ ଅର୍ଥ କ'ଣ କହିଲୁ ? ଦୁଃଖ ଓ ଜଞ୍ଜାଳ ଭୟରେ ତୁ ବିବାହିତ ଜୀବନକୁ ତ୍ୟାଗ କରିବୁ, ତାହା ହେଲା ତ୍ୟାଗ । ଆଉ ସୌମ୍ୟ ? ସେ ତା ମନର ସମସ୍ତ ଅଭିଳାଷକୁ ବିରୁଦ୍ଧ କରି ତୋର ଯାତ୍ରା ପଥକୁ ସୁଗମ କରିଦେବା ପାଇଁ ସ୍ମିତା ଲାଗି ବରପାତ୍ର ଖୋଜିବାର ଦାୟିତ୍ୱ ନେବ । ତା କ'ଣ ତା'ର ତ୍ୟାଗ ନୁହେଁ ?... ତୋ'ର ଅନିଚ୍ଛା ତାକୁ ଜଣାଇବାରେ ସେ ଆଜି କେତେ କଷ୍ଟ ପାଇଥିବ, ମୁଁ ଠିକ୍ ଅନୁମାନ କରି ପାରୁଛି । ନହେଲେ ସୌମ୍ୟ ମତେ ଦେଖା ନକରି, ମୋ ଠାରୁ ବିଦାୟ ନ ନେଇ ଏ ଘର ଦୁଆର ମୁହଁରୁ ଚାଲି ଯାଇଥାନ୍ତା ?

ଯେପରି ଗଭୀର ଅନ୍ତର୍ବେଦନା ଅନୁଭବ କରି ଛଟପଟ ହୋଇ ଯାଉଛନ୍ତି ନୀଳମଣି । ଉପେକ୍ଷିତ ସୌମ୍ୟର ହୃଦୟର ଯନ୍ତ୍ରଣା, ମନର ଯନ୍ତ୍ରଣା ନିଜେ ସେ ଅନୁଭବ କରି ପାରୁଛନ୍ତି ନିଜର ହୃଦୟରେ । ସୌମ୍ୟ ଅଭିମାନରେ, ଦୁଃଖରେ, ପରାହତର ଅପମାନରେ ବ୍ୟଥିତ ହୋଇ ଆଜି ତାଙ୍କୁ ନ ଜଣାଇ, କିଛି ନ କହି ଏ ଘରର ଦୁଆର ମୁହଁରୁ ଚାଲିଯାଇଛି ! ଯାହାକି ଏତେ ବର୍ଷ ଭିତରେ କେବେ ଦେଖି ନଥିଲେ ନୀଳମଣି ।

ତେଣୁ ଆଜି ପ୍ରଥମ କରି ଶାସକର କଣ୍ଠରେ ନୀଳମଣି କହୁଛନ୍ତି, ସୌମ୍ୟର ଭବିଷ୍ୟତ୍ କ'ଣ ହେବ ସେ କଥା ଭାବିବା କ'ଣ ତୋର ଉଚିତ ନଥିଲା ସ୍ୱରୂପା ? ଭାବି ଦେଖିବୁ, ହଠାତ୍ ଯଦି ଆଜି ମୁଁ ମରିଯିବି ମଣ୍ଟୁ କଥା କ'ଣ ହେବ ? କ'ଣ ମଲାବେଳକୁ ସୁଦ୍ଧା ମୁଁ ମଣ୍ଟୁର ଚିନ୍ତାରେ ଆଉ ତୋ'ର ଚିନ୍ତାରେ ଘାରି ହେଉଥିବି ? ...ହେଇଟି ତୋର ଶାସ୍ତ୍ର ହିଁ ତ କହିଛି ନିଃସ୍ୱାର୍ଥପର ଭାବରେ, ପବିତ୍ର ଭାବରେ ଯେଉଁ ମଣିଷ ସଂସାରରେ ତା'ର କର୍ତ୍ତବ୍ୟକୁ ତୁଲାଇବ, ନିଜକୁ ଜଞ୍ଜାଳରେ ଜଡ଼ିତ ନକରି ଗୃହୀର ଜୀବନ ଯାପନ କରିବ, ସେ ହେଉଛି ପ୍ରକୃତ ଯୋଗୀ ।

ହଠାତ୍ ନୀଳମଣିଙ୍କର ଏ ରୂପ ଦେଖି ନିରୁତ୍ତର ସ୍ୱରୂପା ବୁଡ଼ିଗଲା ଗଭୀର ଚିନ୍ତାରେ । ନୀଳମଣିଙ୍କର କଥାଗୁଡ଼ିକ ତା'ର ଅନ୍ତରର ଅନ୍ତରତମ ପ୍ରଦେଶରେ ଯେପରି ଘୂର୍ଣ୍ଣିବାତ୍ୟା ସୃଷ୍ଟି କରିଦେଲା ।

ଯେତେବେଳେ ଅତ୍ୟାଚାର, ଦୁଃଖ ଓ ଶୋକରେ ମଣିଷ-ସମାଜ ଆର୍ତ୍ତନାଦ କରି ଉଠନ୍ତି, ପୃଥିବୀ ଥରହର ହୁଏ । ସେତେବେଳେ ଅନ୍ତରରୁ ଆର୍ତ୍ତ ଚିତ୍କାର ଉଠେ, ହେ ଭଗବାନ, କେଉଁଠି ଅଛ ତୁମେ, ରକ୍ଷାକର ।

କିନ୍ତୁ ସତରେ କ'ଣ ଭଗବାନ ଅବତାର ଗ୍ରହଣ କରନ୍ତି ? ନା ଅତ୍ୟାଚାରିତ ମନୁଷ୍ୟ-ସମାଜ ନିଜେ ଭୂମିକା କରେ ଭଗବାନଙ୍କର ? ଅନ୍ୟାୟ, ଅତ୍ୟାଚାରରେ ବିକ୍ଷୁବ୍ଧ ଶତ ଶତ ଆତ୍ମାରୁ ସମ୍ଭୂତ ହୁଏ ଏକ ମହାଶକ୍ତି । କୋଟି କୋଟି କଣ୍ଠ ପରିଣତ ହୁଏ ଏକ କଣ୍ଠରେ, କୋଟି କୋଟି ବାହୁର ଶକ୍ତି ଏକତ୍ର ମିଳିତ ହୋଇ ମହାକାଳର ଖଡ୍‌ଗକୁ ଉତ୍ତୋଳନ କରେ ଅମଙ୍ଗଳକୁ ଉଚ୍ଛେଦନ କରିବା ପାଇଁ । ମହାଯଜ୍ଞର ଅଗ୍ନିଶିଖାକୁ ଦଧୀଚି ପରି ନିଜ ନିଜର ଅସ୍ଥିରେ ଜାଳିଦେଇ ମହାବିପ୍ଳବ ସୃଷ୍ଟି କରନ୍ତି ଅତ୍ୟାଚାରିତ ମନୁଷ୍ୟ ମାନେ, ନିଜ ନିଜର ଶୋଣିତ ତର୍ପଣ କରି ହସି ହସି ଆହୁତି ଢାଳନ୍ତି ସେ ଯଜ୍ଞକୁଣ୍ଡରେ ।

ମନେ ହେଉଛି ପୃଥିବୀ ପୃଷ୍ଠରେ ମହାଭାରତ ଯୁଦ୍ଧର ପରିସମାପ୍ତି କସ୍ମିନ୍‌କାଳେ ଘଟିନାହିଁ ! କ'ଣ ଏବେ ମଧ୍ୟ ସଂଗ୍ରାମ ଚାଲି ନାହିଁ ?

ହୁଏତ ସତରେ ଏକ ଯୁଗର ସାମୟିକ ଅବସାନର ସନ୍ଧିକ୍ଷଣରେ ଆମେ ଆସି ପହଞ୍ଚିଛେ । ଏ ସନ୍ଧିକ୍ଷଣଟି ପୁ'ଣି ବହୁତ ଭୟଙ୍କର ହେବ ।

ନିଜ କୋଠରିଟା ଭିତରେ ବସି ପ୍ରବନ୍ଧ ଲେଖୁଥିଲା ସ୍ମିତା । ମାସିକ ପତ୍ରିକା 'ପରାଗ'ର ସମ୍ପାଦିକା ତାକୁ ଲେଖାଟିଏ ପଠାଇବାକୁ ଅନୁରୋଧ କରିଥିଲେ ।

ଅବଶ୍ୟ ପ୍ରବନ୍ଧ ଲେଖିବାଭଳି ମନର ଅବସ୍ଥା ନ ଥିଲା । ମଧୁଛନ୍ଦାର ଆତ୍ମହତ୍ୟା ଘଟଣା ଏକ ପର୍ବତ ପରି ଲଦି ହୋଇ ରହିଥିଲା ମନଟା ଉପରେ । ତା'ପରେ ପୁଣି କନ୍ୟା ଶୋକରେ ଆତୁରା ସୁନନ୍ଦାଙ୍କ ଏହିପରି ବିଚିତ୍ର କ୍ରୋଧ ଆଗ୍ନେୟଗିରିର ଲାଭା ପରି ଯେପରି ସବୁବେଳେ ପଛେ ପଛେ ବୋହି ଆସି ଜାଳି ପୋଡ଼ି ଭସ୍ମ କରିଦେବାକୁ ଚାହୁଁଛି । ମନ ଭିତରେ ପ୍ରବଳ ଅଶାନ୍ତି ।

ହଠାତ୍ ସୁପ୍ରକାଶର ଡାକରେ ଧଡ଼ପଡ ହୋଇ ଠିଆହେଲା ସ୍ମିତା ।

ପ୍ରବନ୍ଧ ଲେଖୁ ଲେଖୁ ତା'ର ଅଜ୍ଞାତରେ ଲୁହଧାର କେତେବେଳେ ବୋହି ଆସିଛି, ମୁହଁଟା ଏକାବେଳେ ଅଶ୍ରୁସିକ୍ତ ।

ସେ ଅଶ୍ରୁସିକ୍ତ ମୁହଁଟାକୁ ଦେଖି ବ୍ୟଥାରେ ସ୍ତବ୍ଧ ହୋଇଗଲା ସୁପ୍ରକାଶ । ମୁହଁ ଉପରେ ତା'ର ବେଦନାର ଛାୟା ପଡ଼ିଲା । କହିଲା—ଆହା ! ସ୍ମିତା, ଏକୁଟିଆ ଘର ଭିତରଟାରେ ବସି ବସି କାନ୍ଦୁଛୁ ? ଲୁହ ପୋଛି ପକା, ସୁନାଟା ପରା ।

ଅପ୍ରସ୍ତୁତ ହୋଇଯାଇ ଲୁଗା କାନିରେ ନିଜର ମୁହଁ ପୋଛି ଦେଲା ସ୍ମିତା । ଲୁଚାଇବାର ଆଉ କୌଣସି ଉପାୟ ନ ଥିଲା ସେତେବେଳେ ।

ଭାବାବେଗରେ ହାତ ଯୋଡ଼ି ପକାଇ ସୁପ୍ରକାଶ କହିଲା—ମୋ ବୋଉଙ୍କର କଟୁ ବ୍ୟବହାର ପାଇଁ ମୁଁ କ୍ଷମା ମାଗୁଛି ସ୍ମିତା । ମୁଁ ଭାବୁଛି କିଛିଦିନ ପରେ ମନକୁ ମନ ସେ ଟିକିଏ ଶାନ୍ତ ହୋଇଯିବେ । ଲକ୍ଷ୍ମୀଟା, ତୁ ଏମିତି ମନଦୁଃଖ ଆଉ କରିବୁ ନାହିଁ ।

ଆଦରରେ ସ୍ମିତାର ମଥାଟିକୁ ଆଉଁଶି ଦେଲା ସୁପ୍ରକାଶ ।

ଏ ସ୍ନେହବୋଳା ସାନ୍ତ୍ୱନା ଆହୁରି କେତେ ଧାର ଲୁହ ଝରାଇ ଦେଲା ସ୍ମିତା ଆଖିରୁ । ସୁପ୍ରକାଶ ଅପେକ୍ଷା କଲା । ତା'ପରେ କହିଲା—ସ୍ମିତା, ଚାଲ୍ ବଡ଼ମା ଡାକୁଛନ୍ତି ।

ଅଧା ଲେଖା କାଗଜ ଉପରେ କାଗଜ-ଚାପା ଲଦି ଦେଉ ଦେଉ ସ୍ମିତା ପଚାରିଲା, ବଡ଼ ମା ଡାକୁଛନ୍ତି ମତେ ?

—ହଁ, ସେ ଆସି ବସିଛନ୍ତି ମୋ ବୋଉଙ୍କ ପାଖରେ ।

ସୁନନ୍ଦା ଖୁଡ଼ୀମା'ଙ୍କ ଘରେ ! ଧପ୍ କିନା ସ୍ମିତା ବସି ପଡ଼ିଲା ନିଜ ଚଉକିଟା ଉପରେ । କାତର କଣ୍ଠରେ କହିଲା—ମୁଁ ତ ଯାଇ ପାରିବିନି ପ୍ରକାଶ ଭାଇନା ! ତମେ ତ ଜାଣିଛ ମତେ ଦେଖିଲେ ସେ କେମିତି ବ୍ୟସ୍ତ ହେଉଛନ୍ତି, ଛନ୍ଦା ନାନୀ କଥା ମନେ ପଡ଼ିଯାଉଛି ତାଙ୍କର । ମତେ ଦେଖିଲେ ଦେହ ତାଙ୍କର ବେଶୀ ଖରାପ ହୋଇ ଯାଉଛି ।

ସ୍ମିତାର ଆଖିରେ ପୁଣି ଭର୍ତ୍ତି ହୋଇ ଯାଇଛି ଲୁହ ।

ତା'ର ସେ ବେଦନା ବିଧୂରା ମୂର୍ତ୍ତିଟି ଆଡ଼କୁ ସ୍ତବ୍ଧ ନେତ୍ରରେ ଚାହିଁ ରହିଥିଲା ସୁପ୍ରକାଶ । ମଧୁଛନ୍ଦାର ମୃତ୍ୟୁ ପାଇଁ ଏ ଘରର ସବୁଠାରୁ ସରଳ ଓ ନିର୍ଦ୍ଦୋଷ ଝିଅଟିକୁ କଠୋର ଦଣ୍ଡ ଦେଉଛନ୍ତି ସୁନନ୍ଦା, ଭାବିଲା ସେ । ଆସିଲା ପରଠାରୁ ଅବାକ୍ ହୋଇ ଏ କଥା ସେ ଲକ୍ଷ୍ୟ କରିଛି । ଆଉ ମଧ ଲକ୍ଷ୍ୟ କରିଛି ଶଯ୍ୟାଶାୟିନୀ ସୁନନ୍ଦାଙ୍କୁ ମନପ୍ରାଣ ଦେଇ କିପରି ସ୍ମିତା ସେବା କରିଛି ।

ନିଜର କ୍ଷତବିକ୍ଷତ ହୃଦୟର ଅସହାୟ ଯନ୍ତ୍ରଣା ସହି ନ ପାରି ଏକ ଅଦ୍ଭୁତ ପ୍ରକାର ହିଂସାରେ ଏ ଝିଅଟିକୁ ଶୁଣାଇ ଶୁଣାଇ ଯେଉଁ କଥାଗୁଡ଼ିକ କହୁଛନ୍ତି ସୁନନ୍ଦା, ତା'ର ଜ୍ୱାଳାରେ ଦାହ୍ୟ ବସ୍ତୁ ହୋଇଥିଲେ ଏତେବେଳକୁ ଜଳି ଭସ୍ମ ହୋଇ ଯାଆନ୍ତାଣି ଝିଅଟା ।

ଏ ଅବସ୍ଥା ଦେଖି ନିଜର ନିଃଶ୍ୱାସ ଯେପରି ରୁଦ୍ଧ ହୋଇ ଯାଇଛି ସୁପ୍ରକାଶର । ଅଭାଗିନୀ ସ୍ମିତା କଥା ଅନେକ ଥର ଭାବିଲାଣି ସେ । ପିଲା ଦିନରୁ ଅହେତୁକ ଭାବରେ ଭୀତତ୍ରସ୍ତା ସ୍ମିତାକୁ

ସେ ଦେଖିଛି । ସ୍ୱରୂପା ଆଉ ମଧୁଛନ୍ଦା ଯଦି କଦାଚିତ ଅନୁପସ୍ଥିତ ରହିଛନ୍ତି ବଡ଼ମା'ଙ୍କ ପାଖକୁ ଚାଲିଯାଏ ଶୋଇବାକୁ । କେବେ ହେଲେ ଏକାକିନୀ ରହି ପାରେନି । ଏମିତି ପରିସ୍ଥିତିରେ ସ୍ମିତାର ଦିନ ଗୁଡ଼ାକ କିପରି କଟିବ ଏ ଘରେ ?

x x x

ଆଶ୍ଚର୍ଯ୍ୟ ହେବା କଥା ସତରେ । ଯେମିତି ହଠାତ୍ କେଉଁ ମନ୍ତ୍ର ବଳରେ ନୀଳମଣି ଅତିରିକ୍ତ ଭାବରେ ସକ୍ରିୟ ହୋଇ ଯାଇଛନ୍ତି । ପ୍ରତ୍ୟେକ କକ୍ଷକୁ ବୁଲି ବୁଲି ଦେଖିଛନ୍ତି ଅନେକ ଦିନ ପରେ । ବିଚ୍ୟୁତିଗୁଡ଼ିକ ଲକ୍ଷ୍ୟ କରି ସାଙ୍ଗେ ସାଙ୍ଗେ ସୁଧାରିବାରେ ଲାଗିଛନ୍ତି । ଆଶ୍ଚର୍ଯ୍ୟ ! ଯାଇ ଦେଖି ଆସିଛନ୍ତି ପ୍ରଭାବତୀଙ୍କୁ ।

ଚାକର ମହଲରେ କିଏ କିଏ ପଛରେ କହୁଛନ୍ତି—ଝିଅମା'ଙ୍କ ଆଇଷ ତକ ବୁଢ଼ୀ ମା'ଙ୍କୁ ମିଳିଗଲା ।

ସେମାନେ ତ ଅମାର୍ଜିତ, କିନ୍ତୁ ସୁନନ୍ଦା ? ସେ ତ ଅଶିକ୍ଷିତା ବା ଅମାର୍ଜିତା ନୁହଁନ୍ତି । ବିଷଦାନ୍ତ କାଢ଼ି ଦିଆଯାଇଥିବା ନାଗୁଣୀ ପରି ଫଁ ଫଁ କରୁଛନ୍ତି, କେତେବେଳେ ଫିସ୍ ଫିସ୍ ହୋଇ, କେତେବେଳେ ପାଟି କରି କହୁଛନ୍ତି—ଦେଖିଲ ନା ? ନିଜ ଆଉ ପର ଭିତର ଫରକଟା ଦେଖ ! ଜନ୍ମିତ ସନ୍ତାନ ହୋଇଥିଲେ କତରା ଲାଗି ହୋଇ ଯାଆନ୍ତେଣି । ଶେଯରୁ ଉଠି ପାରିଥା'ନ୍ତେ ? ପୋଷା ପୁଅ—ଗୁଞ୍ଜା ରୁଅ । ନାଡ଼ୀର ସେ ବନ୍ଧନ କାହିଁ ? ମୋ ଛନ୍ଦା...

କୋହ ଉଠି ଅବରୁଦ୍ଧ କରି ଦେଉଛି ତାଙ୍କ କଣ୍ଠକୁ ।

ମଧୁଛନ୍ଦାର ମୃତ୍ୟୁ ପରଠାରୁ ଆଶ୍ଚର୍ଯ୍ୟଜନକ ଭାବେ ସ୍ତବ୍ଧ ହୋଇ ଯାଇଛନ୍ତି ସତ୍ୟବ୍ରତ । ସୁନନ୍ଦାଙ୍କ କଥା ଗୁଡ଼ିକ ଶୁଣୁଛନ୍ତି ମୂକଙ୍କ ପରି । ପାଗଳାମିକୁ ଦେଖୁଛନ୍ତି ।

ଠିକ୍ ସେହିପରି ପାଗଳାମି ଚାଲିଥିଲା ସୁନନ୍ଦାଙ୍କର, ହଠାତ୍ ତାହା ସ୍ତବ୍ଧ ହୋଇଗଲା, ସୁପ୍ରକାଶକୁ ସାଙ୍ଗରେ ଧରି ଏ ଘରେ ଆସି ପହଞ୍ଚିଲେ ନୀଳମଣି !

ଆଜି ଜଳଖିଆ ଖାଇବା ପରେ ଅନେକ ଚିନ୍ତା କରିଥିଲେ ନୀଳମଣି । ମଣ୍ଟୁ, ଲୀନା, ସୁଭୁ ଓ ସୁନୁକୁ ସାଙ୍ଗରେ ନେଇ ସୁଦାମ ସହିତ ରାଧାଗୋବିନ୍ଦଙ୍କ ମନ୍ଦିରକୁ ଯାଇଛି ସ୍ୱରୂପା । କ'ଣ ଗୋଟିଏ ପୂଜା ଉପଲକ୍ଷ୍ୟରେ ସାଧୁସନ୍ଥଙ୍କ ପ୍ରସାଦ ସେବା ହେବ । ମଣ୍ଟୁ, ସ୍ୱରୂପା, ଲୀନା ସେ ସବୁ ଦେଖାଶୁଣା କରିବେ ।

ସେମାନେ ଗଲାପରେ ଶେଯରେ ଶୋଇବାକୁ ଚେଷ୍ଟା କରି ମଧ ଶୋଇ ରହି ପାରି ନ ଥିଲେ ସେ । ସେ କ'ଣ କ୍ଳାନ୍ତ ହୋଇ ଗଲେଣି ? ଜୀବନର ଅର୍ଥ ତ ହେଉଛି ସଂଗ୍ରାମ ! ଅବିରତ ସଂଗ୍ରାମ କରି କରି ପ୍ରତ୍ୟେକ ମଣିଷକୁ ଅଗ୍ରସର ହେବାକୁ ପଡ଼େ ବଞ୍ଚିବା ପାଇଁ ।

ତେଣୁ କ୍ଳାନ୍ତ ହେଲେ ଚଳିବ କେମିତି ? ତେବେକେ ହୃଦୟ ଅନୁଭବ କରୁଛି ଅପରିସୀମ କ୍ଳାନ୍ତି ।

କିଛି ସମୟ ଶେଯ ଉପରେ ଧ୍ୟାନସ୍ଥ ହୋଇ ବସିଲା ପରେ ସୁପ୍ରକାଶ ସହିତ ଆସିଲେ ଏ ଘରକୁ । ସୁନନ୍ଦାର ଖଟ ପାଖରେ ରହିଥିବା ଚଉକିଟା ଉପରେ ବସି ସୁନନ୍ଦାର ମଥାଟିକୁ ଆଉଁଶି ନୀରବ ସାନ୍ତ୍ୱନା ଜଣାଇଲେ । ଟିକିଏ ବସିଲା ପରେ ସୁପ୍ରକାଶକୁ କହିଲେ, ଦେବବ୍ରତ ଆଉ ସୁଜାତାକୁ ଡାକି ଦେବାକୁ । ତା'ପରେ ଡକାଇଛନ୍ତି ସ୍ମିତାକୁ ।

ସ୍ମିତା ଆସିଲା ପରେ କୌଣସି ପ୍ରକାର ଭୂମିକା ନ କରି ସିଧା ସଳଖ କହିଲେ ସତ୍ୟବ୍ରତଙ୍କୁ—ସତ୍ୟ, ସ୍ମିତାକୁ ସାଙ୍ଗରେ ନେଇ ସ୍ୱରୂପା ଚାଲିଯିବ, ସେଇଠି ରହି ପାଠ ପଢ଼ିବ ସ୍ମିତା । ମୁଁ ଭାବୁଛି ବର୍ତ୍ତମାନ ଅବସ୍ଥାରେ ଆମେ ସମସ୍ତେ ଏ କଥାରେ ରାଜି ହେବାଟା ଭଲ ।

ସେ ନିଷ୍ପତ୍ତି ଶୁଣି ସମସ୍ତେ ଯେପରି ସ୍ତବ୍ଧ ହୋଇଗଲେ । ନୀଳମଣି କହିଲେ—ମଧୁଛନ୍ଦା ମତେ ହରାଇ ଦେଇଛି । ମୁଁ ଯଦି ଶଚୀ ସହିତ ତା'ର ବାହାଘର ଠିକ୍ କରି ନ ଥାନ୍ତି, ସେ ମରିଯାଇ ନଥାନ୍ତା । ତମମାନଙ୍କର ଏ ଦୁଃଖ, ଏ ଶୋକ ପାଇଁ ମୁଁ ଦାୟୀ ।

ତାଙ୍କୁ ସାନ୍ତ୍ୱନା ଦେବାପାଇଁ ଦେବବ୍ରତ କହିଲା—ସେ କଥା ଜମା ନୁହେଁ ବଡ଼ମା ! ଛନ୍ଦା ତା ପ୍ରତିବାଦ ଜଣାଇବାକୁ ପଛେଇ ଯିବା ଝିଅ ନ ଥିଲା । ମୋର ମନେ ହେଉଛି, କୌଣସି ମାନସିକ ରୋଗରେ ଆକ୍ରାନ୍ତ ହୋଇଥିଲା ସେ । ଯାହା ଆମେ କେହି ଜାଣି ପାରିଲେନି । 'ମେଲାନକଲିଆ' ବୋଲି ଗୋଟାଏ ରୋଗ ଯୋଗୁଁ ବିନା କାରଣରେ ମଧ୍ୟ ଆତ୍ମହତ୍ୟା କରିବାକୁ ମଣିଷର ଇଚ୍ଛା ହେବ । ଅନେକ ସମୟରେ ଏ ରୋଗରେ ରୋଗଗ୍ରସ୍ତ ଲୋକ ଆତ୍ମହତ୍ୟା କରି ପକାଏ । ଅବଶ୍ୟ ଛନ୍ଦା ଏମିତି ହଠାତ୍ ଅକାଳରେ ଚାଲିଗଲା, ସେଥିପାଇଁ ଆମେ ସମସ୍ତେ ଦାୟୀ ବଡ଼ମା । ଆମେ କିଛି ଜାଣି ପାରିଲେନି ।

ଦୀର୍ଘ ନିଃଶ୍ୱାସଟିଏ ପକାଇ ନୀଳମଣି କହିଲେ—କେଜାଣି... ! ବିଜୁ ଗଲାବେଳେ ଯେମିତି ଘରଟା ଶୂନ୍ୟ ହୋଇ ଯାଇଥିଲା ଠିକ୍ ସେମିତି ଶୂନ୍ୟ ହୋଇଗଲା । ତମ ସମସ୍ତଙ୍କୁ ଧରି ମୁଁ ଭଙ୍ଗା ଘର ଜୋଡ଼ି ଥିଲି । ସେ ଆଉଥରେ ଭାଙ୍ଗିଲା ।

ସେ କଥା ଗୁଡ଼ିକରେ କେତେ ଯେ ମର୍ମାନ୍ତିକ ବେଦନା ନିହିତ ଥିଲା, ସମସ୍ତେ ତାହା ଉପଲବ୍ଧି କରି ପାରିଲେ ।

ଟିକିଏ ନୀରବ ରହିଲା ପରେ ସତ୍ୟବ୍ରତ କହିଲେ—ବଡ଼ମା, ମୁଁ ଭାବୁଛି କିଛି ଦିନ ପାଇଁ ସୁନନ୍ଦାକୁ ନେଇ ବାହାରେ କୁଆଡ଼େ ବୁଲି ଆସିବି । ଦେବ କହୁଥିଲା ଭଲ ହୁଅନ୍ତା ।

ନୀଳମଣିଙ୍କ ହୃଦୟରେ ଯେପରି ଶୋକ ଉଚ୍ଛୁଳି ପଡ଼ିବାକୁ ଚାହିଁଲା । ହାୟରେ ! ଦୁଃଖ ଶୋକରେ ଅଧୀର ହୋଇ ମଣିଷ ଅନ୍ଧ ପରି ଦଉଡ଼ି ପଳାଇବାକୁ ଚାହୁଁଛି ନିଜର ମନଠାରୁ ମୁକ୍ତି

ପାଇବା ପାଇଁ ! ହେଲେ ଏ ସପ୍ତ ବ୍ରହ୍ମାଣ୍ଡ ବୁଲି ଆସିଲେ ମଧ କ'ଣ କେବେ ନିଜ ମନ ଠାରୁ ମୁକ୍ତି ପାଇବ ସେ ? ନା, ମନ ଠାରୁ ମୁକ୍ତି ନାହିଁ । ନିଜର ଛାଇ ପରି ସେ ତମକୁ ଅନୁସରଣ କରିବ ।

ମନ ଠାରୁ ମୁକ୍ତି ନାହିଁ ।

ଚିନ୍ତା ଠାରୁ ମୁକ୍ତି ନାହିଁ ।

ଭାଗ୍ୟର କବଳରୁ ମଧ ମୁକ୍ତି ନାହିଁ ।

ନୀଳମଣି କହିଲେ—ହଁ, ଯାଇ ବୁଲି ଆସ । ବିଦେଶରେ ସୁବିଧା ଅସୁବିଧା ଅଛି, ଯଦି ଗୋବିନ୍ଦକୁ ନେବ ସାଙ୍ଗରେ ନେଇଯାଅ ।

ଦେବବ୍ରତ କହିଲା—ଆଜିକାଲି ଆଉ ଅସୁବିଧା ନାହିଁ ବଡ଼ମା ! ସବୁ ଜାଗାରେ ଭଲ ହୋଟେଲ ରହିଛି, ସରକାରୀ ପାନ୍ଥଶାଳା ରହିଛି । ରାସ୍ତା ସୁଗମ ହୋଇ ଗଲାଣି । କୁମାରୀକାଠାରୁ ବଦ୍ରୀନାରାୟଣଙ୍କ ପର୍ଯ୍ୟନ୍ତ ଯେଉଁଠାକୁ ଯିବ, ସବୁଠାରେ ରହିବାକୁ ମିଳିବ । ସେଥର ହେଲ୍‌ଥ ଟୁର୍‌ରେ ଗଲାବେଳେ ପରା ମୁଁ ପ୍ରାୟ ସବୁ ଜାଗା ଦେଖି ଆସିଛି !

ଦୁଃଖରେ ଟିକିଏ ହସିଲେ ନୀଳମଣି, କହିଲେ—ମନେ ହେଉଛି ମୋ'ର ମଧ ମୁକ୍ତି ଦରକାର, କୁଆଡ଼େ ହେଲେ ଚାଲିଯିବି ଟିକିଏ ।

ଏ ଘରେ ରହିଥିବାଯାଏ ମୋ'ର କଦାପି ମରଣ ହେବନି । ଏ ଘରର ମାୟା ମତେ ଶହେଟା ଗଣ୍ଠି ପକାଇ ବାନ୍ଧି ଦେଇଛି । ମାୟାକୁ ନ ଛିଣ୍ଡାଇଲେ ମଣିଷ କେବେ ପରପାରକୁ ଯାଇ ପାରିବ ! ହୁଏତ ଏମିତି ଆହୁରି ଶହେ ବର୍ଷ ବଞ୍ଚିଯିବି ମୁଁ, ଆଶ୍ଚର୍ଯ୍ୟ କ'ଣ ?

ସମସ୍ତେ ସ୍ତମ୍ଭିତ ହୋଇଗଲେ । ନୀଳମଣିଙ୍କ କଣ୍ଠରେ ତାଙ୍କର ନିଜ ପ୍ରତି ଏହିପରି ଧିକ୍‌କାର ଫୁଟି ଉଠିବା କେବେ ଶୁଣି ନ ଥିଲେ ସେମାନେ । ସତ୍ୟବ୍ରତ ଆଉ ଦେବବ୍ରତ ସେମାନଙ୍କ ପିଲାଟି ଦିନରୁ ନୀଳମଣିଙ୍କ କୋଳରେ ତ ମଣିଷ ହୋଇଛନ୍ତି । ବଡ଼ମା'ଙ୍କର ଏକ ଅନମନୀୟ, ଅପ୍ରତିହତ ବ୍ୟକ୍ତିତ୍ୱ ସହିତ କେବଳ ପରିଚିତ ସେମାନେ ।

ବଡ଼ମା'ଙ୍କଠାରେ ଆଦର, ସ୍ନେହ, ସେବା, ମମତାର ଅଭାବ ନ ଥିଲା ସତ, ତେବେକେ ସେଥି ଭିତରେ ସତତ ପ୍ରଚ୍ଛନ୍ନ ରହିଥିବା ସୁଦୃଢ଼ ଶାସନକୁ, ଶାସକର ବିଚକ୍ଷଣତାକୁ ଅନୁଭବ ନ କରିବାର ବାଟ ନ ଥିଲା । ତାଙ୍କରି ଶାସନର ସୀମା ଡେଇଁବାକୁ ଶକ୍ତି ନ ଥିଲା କାହାର । ପୁ'ଣି ଏ ଧରଣର ଭାବପ୍ରବଣତା ତ କେବେ ହେଲେ ଦେଖି ନ ଥିଲେ ସେମାନେ ।

ଅନନ୍ୟା ବଡ଼ମା ଆଜି ପରାଜିତ ସୈନିକ ପରି ପଛଘୁଞ୍ଚା ଦେଉଛନ୍ତି ।

ସମସ୍ତେ ଜାଣିଛନ୍ତି ଆତ୍ମୀୟମାନେ ଯଦି ତୀର୍ଥ ଯାତ୍ରାର ପ୍ରସ୍ତାବ ଦେଇଛନ୍ତି, ନୀଳମଣି ସଙ୍ଗେ ସଙ୍ଗେ ଦେଇଛନ୍ତି ଉତ୍ତର—ଏ ଘର ହିଁ ମୋର ତୀର୍ଥ । ବାହାରକୁ ଯାଇ ଅଧିକ ପୁଣ୍ୟ ଅର୍ଜିବା ମୋର ଦରକାର ନାହିଁ । ଯାରି ଭିତରେ ମୋର ଗତି ମୁକ୍ତି ସବୁକିଛି ରହିଛି ।

ନୀଳମଣିଙ୍କ କଥା ଶୁଣି ଘରେ ଉପସ୍ଥିତ ଥିବା ସମସ୍ତଙ୍କ ଆଖି ଲୁହରେ ପୂରି ଗଲା । ସ୍ମିତା ତାଙ୍କ ଗୋଡ଼ତଳେ ବସି କୋଳରେ ମୁହଁ ଲୁଚେଇ କାନ୍ଦିବାକୁ ଲାଗିଲା । ସେ ଚାଲି ଯିବାକୁ ଚାହୁଁଥିଲା ସତ, ତେବେକେ ବଡ଼ମା ତାକୁ ନିର୍ବାସିତାର ଦଣ୍ଡ ଦେବା ସଙ୍ଗେ ସଙ୍ଗେ ନିଜକୁ ମଧ ଦଣ୍ଡିତ କରିବାକୁ ଚାହୁଁଛନ୍ତି ।

ନୀଳମଣିଙ୍କ ଆଖି ଦୁଇଟାରେ ମଧ ଲୁହ ଢଳ ଢଳ ହେଉଛି, ଦୁଇଟି ଲୁହ ଧାର ଝରି ପଡୁଛି ଦୁଇ ଆଖିରୁ । ସ୍ମିତାର ମଥାରେ ହାତ ବୁଲାଇ ସାନ୍ତ୍ୱନା ଦେଉ ଦେଉ ଲୁଗା କାନିରେ ନିଜର ଲୁହ ପୋଛୁଛନ୍ତି ନୀଳମଣି ଆଖିରୁ ।

—ବୃନ୍ଦାବନରେ, ଦ୍ୱାରକାରେ, ପୁରୀରେ ତିନୋଟି ଜାଗାରେ ଆମ ଘର ଅଛି ତୀର୍ଥବାସ କରିବା ପାଇଁ । ଯେଉଁଠି ହେଲେ ମତେ ନେଇ ଛାଡ଼ିଦେଇ ଆସ । ବାକିତକ ଦିନ ମୁଁ ରହିବି ସେଇଠି । ...କହିଲେ ନୀଳମଣି ।

ସତ୍ୟ ଓ ଦେବ ସତେ କି ଯେମିତି ମୂକ ପାଲଟି ଯାଇଥିଲେ । ସେମାନଙ୍କ ବ୍ୟଥିତ ମୁହଁକୁ ଚାହିଁ ଆଖିରେ ଲୁହ ଥାଇ ମୁହଁରେ ହସ ଫୁଟାଇଲେ ନୀଳମଣି । କହିଲେ, ନାଁ'ରେ, ଠାକୁର ଦର୍ଶନ ପାଇଁ ନୁହେଁ । ଠାକୁର, ଦେବତା, ତୀର୍ଥ ଏସବୁ କଥା ମୁଁ କେବେ ଭାବିନି । ତମ ବଡ଼ ବାପା ହିଁ ମୋର ସବୁ । ସେ ମୋ'ର ପୁଣ୍ୟ, ସେ ମୋ'ର ତୀର୍ଥ, ସେ ମୋ'ର ଦେବତା, ମୋ'ର ଇହକାଳ ପରକାଳ ସବୁ ସେ । ଏ ଘରେ ତାଙ୍କର ସ୍ମୃତି ଭର୍ତ୍ତି ହୋଇ ରହିଛି ବୋଲି ଆଜି ପର୍ଯ୍ୟନ୍ତ କେବେ ଏ ଘରକୁ ଛାଡ଼ି ମୁଁ ଯାଇନି ।

—''ଆଜି ଛାଡ଼ିଦେଲେ ତମେ ଆଉ ଦିନଟିଏ ସୁଦ୍ଧା ବଞ୍ଚିରହି ପାରିବନି ବଡ଼ମା ।'' ଆର୍ତ୍ତ କଣ୍ଠରେ ଏକା ସଙ୍ଗେ କହି ପକାଇଲେ ଦୁଇ ଭାଇ ।

ପୁ'ଣି ସେମିତି ଲୁହଭରା ହସ ହସିଲେ ନୀଳମଣି, କହିଲେ—ବଞ୍ଚିବିନି ବୋଲି ତ ମୋର ଏ ନିଷ୍ପତ୍ତି । ମୁଁ ଆଉ ପାରୁନି । ଶୀଘ୍ର ସଂସାର ଛାଡ଼ି ଚାଲିଯିବା ଦରକାର ମୋ'ର । ଆଉ ଦୁଃଖ ଦେଖି ପାରିବିନି ମୁଁ । ବୁଝିଲ ସତ୍ୟ, ସ୍ୱରୂପା ଯାହା କହେ ଅନେକାଂଶରେ ତାହା ସତ । ସେ କହେ—କାମନାର ବନ୍ଧନରେ ବାନ୍ଧି ହେଲେ ଜୀବନରୁ ମୁକ୍ତି ମିଳେନାହିଁ ।

ଏଥର ସତ୍ୟବ୍ରତ କହିଲେ, ସେମିତି ପିଲାଦିନ ପରି, ନିହାତି ପିଲାଟିଏ ପରି, ଲୁହ ଢଳ ଢଳ ଆଖିରେ କହିଲେ—ବଡ଼ମା, ସେ କଥା ହୋଇ ପାରିବନି । ତମେ ଯଦି ଅନ୍ୟ କେଉଁଠାକୁ ଯାଇ ରହିବାକୁ ସ୍ଥିର କରିବ, ତା'ହେଲେ ଆମେ ସମସ୍ତେ ଯାଇ ସେଠାରେ ରହିବୁ ତମ ସଙ୍ଗେ । ତମ ବିନା ଏ ଘର—ଭାବିବା ମଧ ଅସମ୍ଭବ ।

ବିଜୁ ଠିକ୍ ଏଭଳି କଥା କହୁଥିଲା । ଛାଡ଼ି ଦେଇ ନ ଥିଲା କେବେ । ନୀଳମଣି ବେଦନା ଜଡ଼ିତ କଣ୍ଠରେ କହିଲେ—ମୁଁ କ'ଣ ଆଉ ମରିବିନି ସତ୍ୟ ? ସବୁଦିନେ କ'ଣ ବଞ୍ଚିଥିବି ?

ସତ୍ୟବ୍ରତ କହିଲେ—ଓଃ ଆଉ ବଡ଼ମା । ଛନ୍ଦା ଯାହା ଦୁଃଖ ଦେଲା, ତା'ପରେ ତମେ ଆଉ ଅଧିକ ଦୁଃଖ ଦିଅନି । ଏ ଘର ଛାଡ଼ି ତମେ କେଉଁଠାକୁ ଯିବନି କି ସ୍ମିତା ମଧ୍ୟ ଯିବନି । ତା'ର ପଢ଼ା ସରିଲେ ଯାଇ ଯାହା କଥା ।

ସୁନନ୍ଦା ଅକସ୍ମାତ୍ ଚିତ୍କାର କଲେ, ବୋଧହୁଏ ସ୍ମିତାକୁ କିଛି କଟୁ କଥା କହିଥାନ୍ତେ, ସତ୍ୟବ୍ରତ ବାଧା ଦେଲେ, କହିଲେ—ନା ସୁନନ୍ଦା, ଛିଃ, ଗୋଟିଏ ନିରୀହ ଝିଅ ଉପରେ ଏଭଳି ଅବିଚାର କରନାହିଁ । ମଧୁଛନ୍ଦା ଚାଲିଗଲା, ତା'ପରେ ସ୍ମିତା ଚାଲିଗଲେ ଆମେ ଏ ଘରେ ରହିବା କେମିତି ?

ନୀଳମଣି ବାଧା ଦେଲେ—ନା ସତ୍ୟ, ସୁନନ୍ଦା ଯେଉଁଥିରେ ଶାନ୍ତି ପାଇବ ସେଇୟା କରିବାକୁ ପଡ଼ିବ ଆମମାନଙ୍କୁ । ସ୍ମିତା ଯାଉ ।

ନୀଳମଣିଙ୍କର ଏତେ ବର୍ଷର ସୁଦୃଢ଼ ଆତ୍ମବିଶ୍ୱାସର ମୂଳକୁ ଏକାବେଳେ ଦୋହଲାଇ ଦେଇ ଯାଇଛି ମଧୁଛନ୍ଦା । ଶୋକସନ୍ତପ୍ତା ଅବୁଝା ସୁନନ୍ଦାଙ୍କୁ ବୁଝାଇବାକୁ ଆଉ ଯେ ଭାଷା ନାହିଁ ନୀଳମଣିଙ୍କ ପାଖରେ !

ସ୍ମିତା ତାଙ୍କରି ପ୍ରାଣ-ତନ୍ତ୍ରୀର ଅଂଶଟିଏ । ବିଶ୍ୱନାଥଙ୍କ ଭାବଭଙ୍ଗୀ, ରୁଚି, କଥାବାର୍ତ୍ତା ସବୁ ତା'ଠାରେ ଦେଖନ୍ତି ସେ । ଭାବନ୍ତି ନିଜର ଝିଅଟିଏ ଯଦି ଥାଆନ୍ତା, ଠିକ୍ ସ୍ମିତା ପରି ହୋଇଥାନ୍ତା । ଆଜି ନିଜଠାରୁ ଦୂରକୁ ସ୍ମିତାକୁ ପଠାଇ ଦେବାକୁ ରାଜି ହୋଇଗଲେ ସେ । କି ଗଭୀର ଅନ୍ତର୍ବେଦନା ସତେ ! ତେବେକେ ବିଚାରକର ଆସନ ଯେ ବଡ଼ ଯନ୍ତ୍ରଣାପୂର୍ଣ୍ଣ ! ନୀଳମଣି ବସିଛନ୍ତି ସେ ଆସନରେ । ଜଣେ ବିଚାରକଙ୍କ ଦୃଷ୍ଟିରେ ସମସ୍ତେ ସମାନ ଦିଶିଲା ପରି ନୀଳମଣିଙ୍କ ଆଖିରେ ଏ ଘରର ସମସ୍ତେ ସମାନ । ଖାଲି ସନ୍ତାନମାନେ ନୁହନ୍ତି, ଚାକରବାକରଙ୍କ ଅସୁବିଧା ମଧ୍ୟ ଦେଖି ପାରନ୍ତି ନାହିଁ ସେ ।

କାହିଁ କେତେ କାଳ ପରେ, ବୋଧହୁଏ ଯୁଗଟିଏ ପରେ, ମନେ ପଡ଼ିଲା ନନ୍ଦର ମା କଥା । ଏ ଘରର ଜଣେ ନିମକସଚ୍ଚା ସେବାକାରିଣୀ ଥିଲା ସେ । ଶାଶୂ ହେମଲତାଙ୍କ ଅମଳର ଲୋକ । ଏ ଘରର ଭଲ ମନ୍ଦକୁ ଛାତି ପତାଇ ଜଗି ରହିଥାଏ । କାହାର ଦେହ ପା ହେଲେ ଦିନ ରାତି ଅଖିଆ, ଅପିଆ ରହି ପ୍ରାଣ ଢାଳି ସେବା କରେ । ରୋଗୀର ଝାଡ଼ା ପରିସ୍ରା, କଫ, ବାନ୍ତି, କେଉଁଥିକୁ ହେଲେ ତିଳେ ବୋଲି ଘୃଣା ନ ଥିଲା ତା'ର ।

କ୍ରମେ ନନ୍ଦର ମା' ବୁଢ଼ୀ ହେଲା, ଅସମର୍ଥ ହେଲା । ନିଜ ଗାଁ'ରେ ଯାଇ ମରିବାର ଇଚ୍ଛା କ୍ରମେ ପ୍ରବଳ ହେବାରୁ ପୁଅ ବୋହୂଙ୍କ ପାଖକୁ ଚାଲିଗଲା ସେ । ତେବେ ମାସକୁ ମାସ ନିୟମିତ ଭାବରେ ଟଙ୍କା, ଲୁଗାପଟା, ଚାଉଳ, ଡାଲି, ପରିବା ଓ ମାଛର ଡାଲାଟିଏ ପଠାଇ ଦିଅନ୍ତି

ନୀଳମଣି । ତାଙ୍କର ଉଦ୍ଦେଶ୍ୟ, ଯେତେଦିନ ଦେହରେ ଜୀବନ ଥିବ, ନନ୍ଦମା'ର ଯେମିତି ଅଭାବ ଅସୁବିଧା ନହୁଏ ।

ହେଲେ ନନ୍ଦମା'ର ବୋହୂର ମତ ହେଲା—ବଅସ ଥିଲାବେଳେ ଶାଶୂ ଯାଇ ଜମିଦାର ଘରର ସେବା କଲା, ବାଧିକି ପଡ଼ି ମରିବା ବେଳକୁ ବୋହୂକୁ ଜଳେଇ ପୋଡ଼ି କଲବଲ କରିବାକୁ ବାହୁଡ଼ି ଅଇଲା ଘରକୁ । କାହିଁକି ? ଯୁ'ଠେ ଏତେ କାଳ ରହିଥେଲା ସେଠି ରହିଲାନି କାହିଁକି ? ଖାଲି ବୋହୂ ହାତରେ ଘୁଅ, ମୂତ କଢ଼େଇବାକୁ ସିନା ଏ ଫିକର କଲା ଏ ବଦମାସ୍ ବୁଢ଼ୀଟା ।

ବସୁଣ୍ଟୁ ଉଠୁଣ୍ଟୁ ନନ୍ଦମା'କୁ ଶୁଣେଇବାକୁ ହେଲା ତା' ବୋହୂ ସାଆନ୍ତାଣୀର ମହୁବୋଳା କଥା ! ନନ୍ଦମା ବିଚରା ତା'ର ଏ ଦୁଇଟା ହାତରେ ଶହେ ଲୋକଙ୍କର ସେବା ଶୁଶ୍ରୁଷା କରିଛି । କାହିଁକି, ଏ ବୋହୂ ପାଇଁ ମଧ କ'ଣ କରିନି ?

ସବୁ ଥର ନାତି ନାତୁଣୀ ହେଲାବେଳକୁ କ'ଣ ଆସି ବୋହୂର ଅନ୍ତୁଡ଼ି ସମ୍ଭାଳିନି ? ପାଣି ଲାଗିଲେ ସଜ-ପୋଖତୀର ଦେହ ବେମାର ହୋଇଯିବ ବୋଲି ବୋହୂକୁ ବସେଇ ରଖି ସେବା କରିନି ବୋହୂର ? ଘୃଣା କରିଛି ନା ନାକ ଟେକିଛି ? ମାସେ, ଦି'ମାସ ରହି ମାଆ ପିଲା ଦମ୍ଭ ହୋଇଗଲେ ଯାଇ ଫେରିଛି ନିଜର କର୍ମ ସ୍ଥଳକୁ ।

ନନ୍ଦଟାର ଏ ସବୁ ସୁଖ ସମୃଦ୍ଧି, ଏ ଚାଷବାସ, ଏ ଘର ଦୁଆର, ବାଡ଼ି ବଗିଚା, ଜିନିଷପତ୍ର ସବୁ କାହାପାଇଁ ଯେ ? ନନ୍ଦମା'ର ଖଟଣିରେ ସନ୍ତୁଷ୍ଟ ହେବାରୁ ସିନା ଖାଉନ୍ଦଙ୍କ ବରାତରେ ନନ୍ଦକୁ ସବୁ ମିଳିଚି ।

ହେଲେ ଏବେ ଆଉ ଯୁକ୍ତି କରିବାର ଦମ୍ଭ ନାହିଁ ବୁଢ଼ୀର । ତେଣୁ ତୁନି ହୋଇ ସବୁ ଶୁଣିଯାଏ । ବୋହୂ ଆଗରୁ ଚାଲିଗଲେ ଫଁ କିନା ନିଃଶ୍ୱାସଟାଏ ପକାଇ ଆଖି ପୋଛିଦିଏ ନିଜର । ସେ ବୁଢ଼ୀ ହୋଇ ଅପାରଗ ହୋଇଗଲା ବୋଲି ତ ସାଆନ୍ତାଣୀ ତାକୁ ତଡ଼ି ଦେଇ ନ ଥିଲେ । ସେ ନିଜେ କହି ବୋଲି ଗାଁ'କୁ ଚାଲି ଆସିଥିଲା ମଲା ବେଳକୁ ତା' ନନ୍ଦ ହାତରୁ, ବୋହୂ ଆଉ ନାତୁଣୀଙ୍କ ହାତରୁ ପାଣି ଟିକିଏ ପାଇବ ବୋଲି ? ମଲାବେଳେ ସେହି ଟୋପାଏ ପାଣି ତାକୁ ସରଗକୁ ନେବ, ସେ ଆଶାରେ ।

ହେଲେ ସେଥିକୁ ମଧ ବାଦ କଲା ବୋହୂ ।

ନନ୍ଦମା ବାଧିକିରେ ପଡ଼ିଲା । ନୀଳମଣିଙ୍କ କାନକୁ ଗଲା ତା' ବୋହୂର ଦୁର୍ବ୍ୟବହାର କଥା, ରୋଗ ଶଯ୍ୟାରେ ପଡ଼ିଥିବା ନନ୍ଦମା'ର ଅକଥନୀୟ ଦୁର୍ଦ୍ଦଶା କଥା । ଘର ଚଟାଣ ଉପରେ ଛିଣ୍ଡା ମସିଣାରେ ଶୋଇବା କଥା ।

ଶଗଡ଼ ପଠାଇ, ଲୋକ ପଠାଇ ନନ୍ଦମା'କୁ ନିଜ ପାଖକୁ ନେଇ ଆସିଲେ ନୀଳମଣି । ଉପଯୁକ୍ତ ଖାଦ୍ୟ, ଚିକିତ୍ସା, ସେବା ଫଳରେ ନନ୍ଦମା ସୁସ୍ଥ ହେଲା । ବଞ୍ଚିଲା ଆହୁରି ଦୀର୍ଘ ପାଞ୍ଚଟି

ବର୍ଷ । ନୀଳମଣି ତା' ମନର ଗୁପ୍ତ ବାସନା ଜାଣିପାରି ତାକୁ ଅଭୟ ଦେଇଥିଲେ ତା'ର ପ୍ରାଣ ଛାଡ଼ିଲା ବେଳକୁ ନନ୍ଦ ଓ ତା' ପରିବାର ଆସି ଯେମିତି ତା' ପାଟିରେ ପାଣିଦେବେ ସେ ବ୍ୟବସ୍ଥା ନିଶ୍ଚେ କରିବେ । କଲେ ମଧ ।

ଆଉ ଦିନେ ହେଲେ ପୁଅ ପାଖକୁ ଫେରିଯିବା କଥା ତୁଣ୍ଡରେ ଧରି ନ ଥିଲା ନନ୍ଦମା । ପୁଅ ଘରେ ଛିଣ୍ଡା ମସିଣାରେ ଗଡୁଥିବା ବୁଢ଼ୀଟା ନୀଳମଣିଙ୍କ ପାଖକୁ ଆସିଲା ପରେ ଖଟ ଓ ବିଛଣାରେ ଶୋଇଥିଲା, ଭଲ ଲୁଗାପଟା ପିନ୍ଧିଥିଲା, ଭଲ ଖାଦ୍ୟ ଖାଇଥିଲା । ଖାଲି ସେତିକି ନୁହେଁ ନନ୍ଦମା'ର ସେବା କରିବା ପାଇଁ ନୀଳମଣି ଜଣେ ସ୍ତ୍ରୀ ଲୋକକୁ ରଖାଇ ଦେଇଥିଲେ ।

ରାଧାଗୋବିନ୍ଦଙ୍କ ପାଇଁ ଫୁଲମାଳ ଗୁନ୍ଥିବାରେ, ବଳିତା ବଳିବାରେ ଅତି ଆନନ୍ଦରେ ନନ୍ଦମା କଟାଇଥିଲା ପାଞ୍ଚଟା ବର୍ଷ ।

ନୀଳମଣି ସ୍ନେହରେ ଉଚ୍ଛ୍ୱସିତ ଶତଧାରା ସ୍ରୋତସ୍ୱିନୀ ଥିଲେ ସତ, କିନ୍ତୁ ଦରକାର ପଡ଼ିଲେ ରୌଦ୍ରଦଗ୍ଧ ମରୁପ୍ରାନ୍ତର ପରି ଶୁଷ୍କ, ସ୍ନେହହୀନ, ନୀରସ ଓ କଠୋର ହେଉଥିଲେ । ନିଜ ଶ୍ୱଶୁରଙ୍କର ଏ ଗୁଣ ସେ କିପରି ପାଇଥିଲେ କେଜାଣି, କିନ୍ତୁ ପାଇଥିଲେ ଠିକ୍ ।

ସ୍ମିତା ଅନୁଭବ କଲା—ସ୍ରୋତସ୍ୱିନୀ ଆଜି ପରିଣତ ହୋଇଛନ୍ତି ଶୁଷ୍କ ମରୁଭୂମିରେ । ସୂର୍ଯ୍ୟତାପରେ ଜଳବିନ୍ଦୁ ଶୁଖିଗଲା ପରି ସ୍ମିତାର ଆଖିରୁ ଲୁହଯାକ ହଠାତ୍ ଶୁଖିଗଲା । ଆପେ ଆପେ ମୁହଁ ଉଠାଇ ନିଜ ଲୁଗା କାନିରେ ମୁହଁ ପୋଛିଦେଲା ସେ । ଉଠି ଠିଆ ହେଲା ।

ନୀଳମଣି କହିଲେ—ସ୍ମିତା, ତୁ ଏଥର ଯା ମା । ସ୍ୱରୂପା ମନ୍ଦିରରୁ ଫେରିଲେ ମୋ ପାଖକୁ ତାକୁ ପଠାଇ ଦେବୁ ।

ତା'ର ଯିବା ବାଟକୁ ଚାହିଁ ହଠାତ୍ ନିଃଶ୍ୱାସଟିଏ ପକାଇ କହିଲେ ନୀଳମଣି, ଝିଅଟା ମତେ ଭୁଲ୍ ବୁଝି କେତେ ଅଭିମାନ କରି ଚାଲିଗଲା । ଶେଯରେ ଶୋଇ ଶୋଇ ଏତେଦିନ ହେଲା ମୁଁ ସ୍ୱର୍ଗରାଜ୍ୟଟିଏ ଗଢ଼ିଥିଲି, ତାହା କାଚଘର ପରି ଝଣ୍‌ଝାଣ୍ ହୋଇ ଭାଙ୍ଗିପଡ଼ି ଧ୍ୱଂସ ହୋଇଗଲା । ମଧୁଛନ୍ଦା ଆତ୍ମହତ୍ୟା କଲା । ଆଜି ସ୍ୱରୂପା ପରିଷ୍କାର ମନା କରି କହିଲା—ସେ ସୌମ୍ୟକୁ ବାହା ହୋଇ ପାରିବନି ।

ସୁଜାତା ଆଶ୍ଚର୍ଯ୍ୟ ହୋଇ ପଚାରିଲା—ସ୍ୱରୂପା ଏକଥା କହିଲା ବଡ଼ମା ?

ହଁ, ସେ ତା'ର ଉପାଧିତକ ପାଇଲା ପରେ ଆମେରିକାକୁ ଚାଲିଯିବ, ମହାକାଶ-ଗବେଷଣା କେନ୍ଦ୍ରରେ କ'ଣ ଗୋଟାଏ ନିଯୁକ୍ତି ପାଇଛି । ସୁଜାତା, ସ୍ୱରୂପାର ମନ ଭିତରେ ଅତି ଉଚ୍ଚ ଆକାଂକ୍ଷା ରହିଛି ।

—ତା'ପରେ ସେ କ'ଣ କରିବ ବଡ଼ମା ? ତା ଭାଇ ଭଉଣୀଙ୍କ କଥା ସେ ଭାବିଲାନି ? ତମେ ଏତେ ସହଜରେ କାତ ଛାଡ଼ିଦେଲ ? ବାହା ହେବାଟା ଯେ ମଣିଷ ଜୀବନର ନିତାନ୍ତ ପ୍ରୟୋଜନ । ମୁଁ ତାକୁ ବୁଝାଇବି ।

ଅତିଶୟ କ୍ଳାନ୍ତ ହୋଇଗଲା ପରି ନୀଳମଣି କହିଲେ—ଯାହା ଭଲ ସେଇୟା କର । ସମୟ ବଦଳି ଯାଇଛି, ପିଲାଙ୍କ ବିଚାରର ଧାରା ବଦଳି ଯାଇଛି । ଏକଥା ବହୁତ ଆଗରୁ ଜାଣିବା ଉଚିତ ଥିଲା ମୋର ।

ନୀଳମଣି ଯେମିତି ଏକାସାଙ୍ଗରେ ଗୁଡ଼ାଏ କଥା କହି ପାରୁ ନାହାନ୍ତି । ଟିକିଏ ବିଶ୍ରାମ ନେଲେ । ତା'ପରେ ସୁଜାତାକୁ କହିଲେ—ସ୍ମିତା ହଷ୍ଟେଲ୍‌ରେ ଯାଇ ରହିବ, ତା'ର ଯାହା ଯାହା ଦରକାର ସେ ସବୁ ସଜାଡ଼ି ଦେଇଥିବୁ । ସୁପ୍ରକାଶ, ଚାଲ୍ ମତେ ଟିକିଏ ଧରିଲୁ, ମୁଁ ଆଉ ବସି ପାରୁନି, ଯାଏଁ ଶୋଇ ପଡ଼ିବି ।

ବଡ଼ମା'ଙ୍କର ଗତିପଥକୁ ଅବାକ୍ ହୋଇ ଚାହିଁ ରହିଲେ ସତ୍ୟବ୍ରତ ଓ ଦେବବ୍ରତ ।

ନ୍ତି,

ସ୍ୱରୂପା ।

## ( ୧୯ )

ରାଧାଗୋବିନ୍ଦଙ୍କ ମନ୍ଦିର ହତା ଭିତରେ ଥିବା ଛାୟା-ଘନ ଆମ୍ବ ଗଛଟା ପାଖରେ ବସି ସ୍ୱରୂପା ଚାହିଁଥିଲା—ଦୂରରେ ସାଧୁ ସନ୍ଥଙ୍କ ପଂକ୍ତି ଭୋଜନ ଚାଲିଛି, ଗହଳି ଲାଗିଛି ସେଥିପାଇଁ । କିନ୍ତୁ ସେ କୋଳାହଳ ଭିତରେ ବସି ମଧ ଯେପରି ଏକ ନିର୍ଜନତା ଭିତରେ ହଜି ଯାଇଛି ସ୍ୱରୂପା, ଯେପରି ନିଜ ଭିତରେ ହଜି ଯାଇଛି ନିଜେ । ବିଷାଦର ପ୍ରତିମାଟିଏ ପରି ଦିଶୁଛି ସେ ।

ସୌମ୍ୟକୁ ସେ ଆଘାତ ଦେଇଛି, ଆଘାତ ଦେଇଛି ବଡ଼ମାଙ୍କୁ । କିନ୍ତୁ ବଡ଼ମା ବୁଦ୍ଧଦେବଙ୍କୁ ଜଣେ ପଳାତକ ବୋଲି କହିଲେ ! ଅବଶ୍ୟ ଦିନେ ରାଜ ଐଶ୍ୱର୍ଯ୍ୟ, ପରମା ସୁନ୍ଦରୀ ପତ୍ନୀ, ଦେବଶିଶୁ ତୁଲ୍ୟ ନବଜାତକକୁ ତ୍ୟାଗ କରି ରାତ୍ରିର ଅନ୍ଧକାର ଭିତରେ ଗୋପନରେ ପଳାଇଯାଇ ପଳାତକ ସାଜିଥିଲେ ଗୌତମ ବୁଦ୍ଧ । କିନ୍ତୁ ତାହା ତ ନିଜପାଇଁ ନୁହେଁ, ସମଗ୍ର ମାନବ ସମାଜର ଶୋଚନୀୟ ପରିଣତିର ନିରାକରଣ ପାଇଁ ଈଶ୍ୱରଙ୍କୁ ଖୋଜିବା ଉଦ୍ଦେଶ୍ୟରେ ଯାଇଥିଲେ । ବନବାସର ଅଶେଷ କଷ୍ଟ ଭିତରେ କଠୋରତମ ତପସ୍ୟାର ପ୍ରଜ୍ୱଳିତ ଦୁଃଖାଗ୍ନିରେ ନିଜର ସୁକୁମାର ଶରୀରକୁ ତିଳ ତିଳ କରି ଜାଳି ଖୋଜିଥିଲେ ସେହି ଅମୃତ ପାତ୍ରର ଅଧିକାରୀଙ୍କୁ । ଈଶ୍ୱର ଦର୍ଶନ କରି ଅମୃତ ଆଣି ମଣିଷ ଜାତିଟାକୁ ଅମୃତର ପୁତ୍ର କରିବାର ଅଭିଳାଷ ତାଙ୍କର ଥିଲା । ଯେଉଁ ଅମୃତକୁ ପାଇଲେ ଗୃହୀ ଦୁଃଖ ଶୋକରେ ବ୍ୟାକୁଳ ହୋଇ ସନ୍ନ୍ୟାସ ଗ୍ରହଣ କରି ବନକୁ ପଳାଇବ ନାହିଁ, ରୋଗୀ ରୋଗରେ ଆତୁର ହୋଇ ଲଭିବ ନାହିଁ ଜୀବନ୍ମୃତର ଦଗ୍‌ଧକାରୀ ଯନ୍ତ୍ରଣା ଆଉ ପ୍ରିୟ-

ପରିଜନଙ୍କୁ ହାହାକାର ଭିତରେ ଭସାଇ ଦେଇ ବାଧହୋଇ ଚିରଦିନ ପାଇଁ ମଣିଷକୁ ଚାଲି ଯିବାକୁ ପଡ଼ିବ ନାହିଁ ସେହି ରହସ୍ୟମୟ ମୃତ୍ୟୁର କରାଳ କବଳ ଭିତରକୁ ।

ଇତିହାସକାରଙ୍କ ମତରେ ଦୀର୍ଘ ଛଅ ବର୍ଷ କାଳ ତପସ୍ୟାର ସମସ୍ତ ଯନ୍ତ୍ରଣା ନିଜ ଅଙ୍ଗରେ ଭୋଗ କରି ରୋଗଜୀର୍ଣ୍ଣ ଶରୀରରେ ଶେଷକୁ ସେ କହିଥିଲେ—ଈଶ୍ୱର ବୋଲି କେହି ନାହାନ୍ତି । ଅମୃତ ବୋଲି କିଛି ନାହିଁ । ଭାଗ୍ୟର ନିଷ୍ଠୁର ବିଧାନ ଭିତରୁ ନିଷ୍କୃତିର ଉପାୟ ନାହିଁ । ଅଶେଷ ଯନ୍ତ୍ରଣାର ସମୁଦ୍ର ଭିତରେ ପହଁରିବାକୁ ମନୁଷ୍ୟ ବାଧ ହେବ ଯଦି ତା'ର ଆସକ୍ତିକୁ ସେ ଛାଡ଼ିବ ନାହିଁ । ଖାଲି ଗୋଟିଏ ଜନ୍ମ ନୁହେଁ, ଜନ୍ମରୁ ଜନ୍ମାନ୍ତରକୁ ଚାଲିଥିବ ତା'ର ଯନ୍ତ୍ରଣାପୂର୍ଣ୍ଣ ଯାତ୍ରା ।

ଖାଲି ଗୌତମ ବୁଦ୍ଧ ନୁହଁନ୍ତି, ପୃଥିବୀର ଅନେକ ମହାତ୍ମା ମଣିଷ ମାନଙ୍କର ଦୂରବସ୍ଥା ଦେଖି ଅସ୍ଥିର ହୋଇଛନ୍ତି ପ୍ରତି ଯୁଗରେ ।

ସେମାନେ ସମସ୍ତେ ପଳାତକ ! 'ନା, ବଡ଼ମା'ଙ୍କର ଏକଥା ଅତି ଅନ୍ୟାୟ ।'

ନି'ଡ

ପ୍ରକୃତିର ହାତରେ ମଣିଷ ଗୋଟାଏ ପିମ୍ପୁଡ଼ି ପରି ଅସହାୟ ଜୀବ, ସେ କଥା ସତ, 'ତି ତୁଚ୍ଛତମ ହେଲେ ମଧ ପରାଜିତ ନ ହେବାର ଏକ ଅପରାଜେୟ ମନୋବୃତ୍ତି ନେଇ

ସୂର୍ଯ୍ୟତାପେ ହୋଇଛି ସେହି ଆଦିମ କାଳରୁ ।

ସେଥିପାଇଁ ବିଂଶଶତକର ଏ ଦୁଃଖ ଅତ୍ୟାଚାରରେ ଜର୍ଜ୍ଜରିତ ପୃଥିବୀରେ ଏବେ ସୁଦ୍ଧା ଗବେଷଣାଗାର ମାନଙ୍କରେ ଅତୀତର ମହାତ୍ମାମାନଙ୍କ ପରି ତପସ୍ୟାମାନ ଚାଲିଛି । ରାସାୟନିକ ପଦାର୍ଥମାନଙ୍କ ମହା ବିପଦପୂର୍ଣ୍ଣ ପରିବେଶ ଭିତରେ ନିଜକୁ ରଖି ଏ ଯୁଗର ଯୋଗୀ, ସାଧକ, ଜୀବ-ବିଜ୍ଞାନୀମାନେ ମଣିଷ ସମାଜର କଲ୍ୟାଣ ପାଇଁ ଅବିଚ୍ଛିନ୍ନ ଭାବରେ ଗବେଷଣା ଚଳାଇ ଯାଉଛନ୍ତି । ପଦାର୍ଥ ବିଜ୍ଞାନବିଦ୍‌ମାନେ ଏ ପୃଥିବୀର ଆୟୁଷ ବଢ଼ାଇବାର ଚେଷ୍ଟା କରୁଛନ୍ତି । ଉଦ୍ଭିଦବିଜ୍ଞାନୀମାନେ ଏ ଉଦ୍ଭିଦମାନଙ୍କ ଉନ୍ନତି ପାଇଁ, ପ୍ରାଣୀବିଜ୍ଞାନୀମାନେ ପ୍ରାଣୀମାନଙ୍କ ଉନ୍ନତି ପାଇଁ ଦିନ ରାତି କରିଚାଲିଛନ୍ତି ତାଙ୍କର ଗବେଷଣା । ସ୍ୱାସ୍ଥ୍ୟବୈଜ୍ଞାନିକମାନେ ବିଭୀଷିକାଭରା ଭୟଙ୍କର ରୋଗ-ବୀଜାଣୁମାନଙ୍କୁ ଧରି ଗବେଷଣା ଚଳାଇଛନ୍ତି । ପୃଥିବୀରୁ ରୋଗବୀଜାଣୁମାନଙ୍କୁ ଧ୍ୱଂସ କରି ମଣିଷମାନଙ୍କୁ ସୁସ୍ଥ ସବଳ କରି ଦୀର୍ଘାୟୁ କରିବାର ଚେଷ୍ଟାରେ ଲାଗିଛନ୍ତି ।

ଏମାନେ ହେଉଛନ୍ତି ଏ ଯୁଗର ସାଧକ, ମହାସାଧକ । ତପସ୍ୟାର ଅବସାନ ହୋଇ ନାହିଁ, ଅନବରତ ଚାଲିଛି ଅକ୍ଳାନ୍ତ ମହାତପସ୍ୟା ।

ମନେ ମନେ ଅସ୍ଫୁଟ ଭାବରେ କହିଲା ସ୍ୱରୂପା—ମୁଁ ଅମୃତ ଖୋଜିବାର ଯେଉଁ ଦୁରୂହ ଆଶା ରଖିଥିଲି ତା କ'ଣ ଆଉ ଏ ଜନ୍ମରେ ସଫଳ ହୋଇ ପାରିବନି ? ନା, ନା, ମୁଁ ମଧ ନିଜକୁ ଉତ୍ସର୍ଗ କରିଦେବି । ବଡ଼ମା, ମୁଁ ତମ ମନରେ କଷ୍ଟ ଦେଲି ସତ, ହେଲେ ମୋର ଲକ୍ଷ୍ୟ ଭୁଲ ନୁହେଁ । ସଂସାର ସୁଖ ତ୍ୟାଗ କଲେ ଯାଇ ମୋ ଜନ୍ମଟା ସାର୍ଥକ ହେବ ।

ମନ୍ଦିରରୁ ଫେରିଲା ପରେ ତଳ ମହଲାରେ ଥିବା ଭଣ୍ଡାର ଘରକୁ ସିଧା ଯାଇଥିଲା ସେ ସୁଜାତାଙ୍କ ପାଖକୁ ଆୟୋଜନର ବିବରଣୀ ଦେବା ପାଇଁ । ସେ ସବୁ ଶୁଣିଲା ପରେ ସ୍ୱରୂପାର ହାତଧରି ଗୋଟିଏ ନିର୍ଜନ କୋଠରିରେ ବସାଇ ଆବେଗଜଡ଼ିତ କଣ୍ଠରେ ସୁଜାତା କହିଲେ— ଅନେକ କଥା କହିବାର ଅଛି ସ୍ୱରୂପା !

—ମତେ ! କି କଥା ?

ସକାଳର ସମସ୍ତ ଘଟଣା ବର୍ଣ୍ଣନା କରି ସୁଜାତା କହିଲେ—ସ୍ୱରୂପା, ଆଜିର ପୃଥିବୀଟା ଆଡ଼କୁ ଚାହାଁ । ମହାସାଧକମାନଙ୍କ ଆତ୍ମୋତ୍ସର୍ଗକୁ ବିଫଳ କରିଦେଇ ସମାନ୍ତରାଳରେ ହଳାହଳର ଆବିଷ୍କାର ମଧ ଯେ ଚାଲିଛି । ସମୁଦ୍ର-ମନ୍ଥନ କଥା ତୁ ଶୁଣିଛୁ ସ୍ୱରୂପା ? କାଳ-ସମୁଦ୍ରର ମନ୍ଥନରେ ଅମୃତ ସହିତ ଗରଳ ମଧ ବାହାରି ଆସିଛି । ଜଣେ ଅମୃତ ପାଇଲେ ଜଣେ ପାଇଛି ବିଷ । ମଣିଷ ମଣିଷକୁ ହତ୍ୟା କରି ଚାଲିଛି । ତୋର ଏହି ସାଧକ ତପସ୍ୟାରତ ବୈଜ୍ଞାନିକମାନେ ହିଁ ତ ଆଜିର ଏ ପୃଥିବୀର ଯେତେକ ମାରାତ୍ମକ ଅତି ଭୟଙ୍କର ଅସ୍ତ୍ରଶସ୍ତ୍ର ସବୁର ଉଦ୍ଭାବକ ମଧ ।

ସ୍ୱରୂପା ହଠାତ୍ ସ୍ତବ୍ଧ ହୋଇଗଲା, ତା'ର ମନେ ହେଲା ସୁଜାତା କହୁନାହାନ୍ତି, ନୀଳମଣିଙ୍କ କଣ୍ଠସ୍ୱର ଶୁଣୁଛି ସେ । ସୁଜାତା କହି ଚାଲିଛନ୍ତି—ପୃଥିବୀର ଶାନ୍ତି ଚାଲିଯାଇଛି ସ୍ୱରୂପା । ମଣିଷ ଗ୍ରହରୁ ଗ୍ରହାନ୍ତରକୁ ଯାତ୍ରା କରିବାର ଉଦ୍ୟମ କରୁଛି । ଉଦ୍ୟମ କରୁଛି ଆଉ ଗୋଟାଏ ପୃଥିବୀ ଆବିଷ୍କାର କରିବାକୁ । ଯାହାର ପାଣି ପବନରେ ଅମୃତ ପରି ସ୍ୱାଦ ଓ ସୌରଭ ଭରି ରହିଥିବ । ଭରି ରହିଥିବ ପ୍ରଚୁର ଜୀବନିକା ଅର୍ଥାତ୍ ଜୀବନ ଆହରଣର ଶକ୍ତି ।

ଏ ପୃଥିବୀଟା ଧ୍ୱଂସ କଲାପରେ ସେଇ ନୂଆ ପୃଥିବୀରେ ଯାଇ ରାଜତ୍ୱ କରିବାର ସ୍ୱପ୍ନ ଦେଖୁଛି ଆଜିର ମଣିଷ । କିନ୍ତୁ ଲାଭ କ'ଣ ହେବ ? ପୁଣି ଦିନେ ଦେଖିବୁ ଲେଜାର-ରଶ୍ମି ପରି ମହାକାଳାନଳର ରଶ୍ମିରେ ସେ ସୁନ୍ଦର ନୂଆ ପୃଥିବୀଟାକୁ ମଧ ଦିନେ ଜାଳି ପୋଡ଼ି ଭସ୍ମ କରିଦେବେ ଏମାନେ ।

ତୁ ଯଦି ଅମୃତ ଖୋଜି ଆଣିବୁ, ସେ ଅମୃତ ପିଇ ସମସ୍ତେ ଅମର ହୋଇଯିବେ ସତ କିନ୍ତୁ ବଞ୍ଚି ରହିବେ ଅଗ୍ନିଦଗ୍ଧ ଜୀବନ୍ମୃତ ବିକଳାଙ୍ଗ ବ୍ୟକ୍ତିଙ୍କ ପରି, କାରଣ ମଣିଷ ହିଂସାକୁ ଛାଡ଼ି ପାରିବ ନାହିଁ । ବ୍ୟକ୍ତି ବ୍ୟକ୍ତିର, ଜାତି ଜାତିର, ଦେଶ ଦେଶର କ୍ଷତି ଘଟାଇବାର ନିଶାରେ ଉନ୍ମତ୍ତ, ପାଗଳ ହୋଇଯିବ ।

ଏମାନେ ଅମର ହୋଇ ବଞ୍ଚି ରହି କ'ଣ କରିବେ ସ୍ୱରୂପା ?

ହୁଏତ ଦିନେ ଅମୃତର ଆବାହକ ତଥା ଆବିଷ୍କାରକ ନିଜେ ପୁଣି ପାଗଳ ପରି ଧାଇଁବ ଖୋଜିବାକୁ ସେହି ମୃତ୍ୟୁକୁ ! ଗବେଷଣାଗାରରେ ରତ ହେବେ ବୈଜ୍ଞାନିକମାନେ ଅମୃତର ପ୍ରଭାବ ନାଶ କରିଦେବା ପରି ଏକ ମହାଗରଳ ଆବିଷ୍କାର କରିବାକୁ ।

ସଭ୍ୟତାର ଉନ୍ନତି ସଙ୍ଗେ ଆମ ଗ୍ରହଟାର କ୍ରମ-ପରିଣତି ଦେଖୁଛୁ ତ ? ମୂଲ୍ୟବୋଧର ସଂଜ୍ଞା ବଦଳି ଯାଇଛି । ଜଣକର ଅନ୍ତର କାନ୍ଦୁ ନାହିଁ ଅନ୍ୟ ଜଣକର ଦୁଃଖରେ । ଆଜିର ମଣିଷ ଗୋଟିପୋକ ପରି ନିଜର ଚାରିଆଡ଼େ ନିଜେ ତନ୍ତୁ ସୃଷ୍ଟି କରି ତିଆରି କରୁଛି ନିଜ ସ୍ୱାର୍ଥର ବସାଟିଏ ! ସେଥିରେ ହିଁ ସେ ପରମ ସନ୍ତୁଷ୍ଟ । ତେଣୁ ମୋ କଥା ମାନ ସ୍ୱରୂପା, ସେ ଅମୃତ ଆଣିବାର ସ୍ୱପ୍ନକୁ ଭୁଲି ଯା । ଆଉ ଦଶ ଜଣ ଝିଅଙ୍କ ପରି ଘରକରଣା କରି ସ୍ୱାଭାବିକ ଭାବରେ ଜୀବନ କଟାଇ ଦେ । ବଡ଼ମା ଆଜି ବହୁତ କଷ୍ଟ ପାଇଛନ୍ତି । କକେଇ ଡାକ୍ତରଖାନାରୁ ଆସିଲେ ତୋ ସହିତ କଥାବାର୍ତ୍ତା ହେବେ ବୋଲି କହିଛନ୍ତି । ମତେ ମଧ କହି ଯାଇଛନ୍ତି ତତେ ବୁଝାଇବାକୁ, ଜୀବନର ଚଲାବାଟରେ ସବୁବେଳେ ସାଥୀଟିଏ ଦରକାର । ସ୍ୱାମୀ ହୁଅନ୍ତୁ, ସନ୍ତାନ ହେଉ, ବା ଭାଇ ଭଉଣୀ ହୁଅନ୍ତୁ, କେହି ସାଥୀ ନିଶ୍ଚେ ରହିବା ଦରକାର ।

ଯୌବନକାଳରେ ଯାହା ତୁଚ୍ଛ ମନେ ହୁଏ, ବୃଦ୍ଧାବସ୍ଥାରେ ତାହା ଅତି ଜରୁରୀ ହୋଇଯାଏ । ସ୍ୱରୂପା, ତୁ ଏକାକୀ ଜୀବନ କିପରି କଟାଇବୁ ?

ବିଷଣ୍ଣ ହସ ହସି ସ୍ୱରୂପା କହିଲା—ଖୁଡ଼ୀ, ଜୀବନର ସୀମା ଯଦି ସୀମିତ ହୋଇଯାଏ, ଏ ସଂସାରକୁ ଯେ ମତେ ପଠାଇଛନ୍ତି ସେ ହିଁ ମୋର ଦାୟିତ୍ୱ ନେବେ ।

—ଜୀବନର ସୀମା ବଡ଼ମାଙ୍କ ପରି ଦୀର୍ଘ ହୋଇପାରେ ମଧ । ତାଙ୍କରି କଥା ତୁ ବିଚାର କର । ମଧୁଛନ୍ଦା ଏଭଳି ଆକସ୍ମିକ ଆଘାତ ଦେଇ ଚାଲିଗଲା, ତୋ ପାଇଁ ଯେଉଁ ଆଶାର ଘର ସେ ବାନ୍ଧିଥିଲେ ତାକୁ ତୁ ଚୂନା କରି ଭାଙ୍ଗି ଦେବୁ ? ମତେ ଲାଗୁଛି ଏକାସଙ୍ଗେ ଏତେଗୁଡ଼ିଏ ଦୁଃଖ ହୁଏତ ଆଉ ସେ ସମ୍ଭାଳି ପାରିବେ ନାହିଁ । ମୋର ମନେ ହେଉଛି ଏ ପୃଥିବୀରୁ ତାଙ୍କର ବିଦାୟର ସମୟ ପାଖେଇ ଆସିଲାଣି, ନଚେତ୍ ତାଙ୍କର ପ୍ରାଣଠାରୁ ବଳି ପ୍ରିୟ ଏ ଘରକୁ ଛାଡ଼ି ଚାଲିଯିବା କଥା ସେ କହି ନଥାନ୍ତେ ।

ଆକୁଳ କଣ୍ଠରେ ସ୍ୱରୂପା କହିଲା—ଖୁଡ଼ୀ, ମୁଁ ବଡ଼ମାଙ୍କ ପାଦ ଧରି ଏ ତୀର୍ଥଯାତ୍ରାରୁ ତାଙ୍କୁ ଅଟକାଇବି । ଆଉ ତମେ ମତେ ଅଳ୍ପ ସମୟ ଦିଅ, ପ୍ରଥମେ ମୁଁ ସ୍ମିତାକୁ ନେଇ ଚାଲିଯାଏ— ବଡ଼ ଖୁଡ଼ୀ ଟିକିଏ ଶାନ୍ତି ପାଇବେ—

—ନିଜ କଥାଟାକୁ ଆଡ଼େଇ ଦେବାକୁ ଚାହାଁନା ସ୍ୱରୂପା ! ସୌମ୍ୟ ପରି ଜୀବନ-ସାଥୀ ପାଇଲେ ତୁ କେବେ ଅସୁଖୀ ହେବୁ ନାହିଁ । ମଣିଷ ସମୟ ସମୟରେ ଅତି ଭୁଲ୍ କରେ । ସମୟ ସମୟରେ ଉନ୍ନତି କରିବାର କାମନା ସୁନାର ହରିଣ ପରି ତାକୁ ଦଉଡ଼ାଇ ଦଉଡ଼ାଇ ତା'ର ମହାର୍ଘ ଜୀବନକୁ ନଷ୍ଟ କରିଦିଏ । ମୋର ତ ଧାରଣା ଏଭଳି ଏକ ମାୟାମୃଗ ପଛରେ ଧାଇଁ ମଧୁଛନ୍ଦା ତା'ର ଏଡ଼େ ସୁନ୍ଦର ଜୀବନଟାକୁ ଅକାଳରେ ଜାଳି ଦେଲା ।

ସ୍ୱରୂପା ଜାଣିଛି, ଆଭାସ ପାଇଛି—ସତରେ ଏକ ମାୟାମୃଗ ପଛରେ ଧାଇଁ ଧାଇଁ ଶେଷକୁ ଆତ୍ମହତ୍ୟା ପରି ମହାପାପ କରିଛି ମଧୁଛନ୍ଦା । କଲେଜର ସଙ୍ଗିନୀମାନଙ୍କ ଚୁପ୍ ଚୁପ୍

କଥାବାର୍ତ୍ତା ସ୍ମିତାର କାନକୁ ଆସିଲା ପରି ଅନେକଙ୍କ କାନକୁ ଯାଇଥିବ, ହୁଏତ ସୁଜାତା ମଧ୍ୟ କେଉଁଠାରୁ ଆଭାସ ପାଇଛନ୍ତି ।

ସ୍ୱରୂପା ଭଗବାନଙ୍କ ପାଖରେ ପ୍ରାର୍ଥନା କରିଛି ଏକଥା ଯେପରି ନୀଳମଣିଙ୍କ କାନରେ ନ ବାଜୁ । ସର୍ବତ୍ୟାଗିନୀ ନୀଳମଣି ପ୍ରାୟ ଆଜୀବନ ବ୍ରହ୍ମଚାରିଣୀ କହିଲେ ଚଳେ । ନିଜର ଚରିତ୍ର-ନିଷ୍ଠା ଓ ଆତ୍ମବିଶ୍ୱାସକୁ ସେ ଯେପରି ଦେଖନ୍ତି ଏ ଘରର ପ୍ରତ୍ୟେକ ବ୍ୟକ୍ତିଠାରେ । ତାଙ୍କ ନିଜ ହାତରେ ଗଢ଼ା ଏ ମଣିଷ ଗୁଡ଼ିକର ପବିତ୍ରତା ଦେଖି ମହା ଆନନ୍ଦରେ ବିଭୋରା ହୋଇ ରହିଥିଲେ ସେ ଆଜି ପର୍ଯ୍ୟନ୍ତ ।

ସ୍ୱରୂପାର ଚିନ୍ତାରେ ବାଧା ପଡ଼ିଲା । ସୁଜାତା ତା'ର ହାତ ଦୁଇଟାକୁ ମୁଠାଇ ଧରି କହିଲେ—ସ୍ୱରୂପା, ତୋ'ର ମନ ବଦଳାଇ ଦେ ।.ଅନ୍ତତଃ ଆଉ କେତେଟା ବର୍ଷ ବଡ଼ମା ସୁରୁଖୁରୁରେ ବଞ୍ଚିଯିବେ । ତୋ'ର ବାହାଘର, ସ୍ମିତାର ବାହାଘର ତାଙ୍କ ମନରେ ଆଉଥରେ ବଞ୍ଚିବା ପାଇଁ ଆଗ୍ରହ ସୃଷ୍ଟି କରିବ । କସ୍ତୁରୀ-ମୃଗ ନିଜର ନାଭିଠାରେ ଥିବା କସ୍ତୁରୀ କଥା ଜାଣି ନପାରି ତା'ର ସୌରଭରେ ଆମୋଦିତ ହୋଇ ଧାଇଁ ବୁଲେ, ଖୋଜି ଖୋଜି ବୁଲେ ସେ କସ୍ତୁରୀକୁ ନିଜେ ମରିବା ପର୍ଯ୍ୟନ୍ତ । ମଧୁଛନ୍ଦା ଭୁଲ୍ କଲା ପରି ଭୁଲ୍ କର ନା । ଧାନବାଦକୁ ଯିବା ପୂର୍ବରୁ ସୌମ୍ୟକୁ ଗ୍ରହଣ କରିବା ପ୍ରସ୍ତାବ ଜଣେଇ ଦେ ବଡ଼ମାଙ୍କୁ । ସେ ନିଶ୍ଚୟ ଅତି ଆନନ୍ଦିତ ହେବେ । ମନେ ରଖ ତାଙ୍କ ଧମନୀରେ ଆଉ ସୌମ୍ୟର ଧମନୀରେ ବୋହୁଥିବା ରକ୍ତ ଧାରା ହେଉଛି ଏକ ! ସୌମ୍ୟର ଦୁଃଖ ତାଙ୍କୁ ବହୁତ ବାଧିବ ।

ସୁଜାତାଙ୍କଠାରୁ ବିଦାୟ ନେଇ ଉପର ମହଲାକୁ ଚଢ଼ିଲା ସ୍ୱରୂପା । ତା'ର ଇଚ୍ଛାଥିଲା ବଡ଼ମାଙ୍କ ପାଖକୁ ଯିବ । ଯେଉଁ 'ଭଲପାଇବା'କୁ ନୀଳମଣି ନିଜର ସାରା ଜୀବନ ଧରି ସବୁଠାରୁ ବଡ଼ ଆସନ ଦେଇ ଆସିଛନ୍ତି, ଆଜି ସୌମ୍ୟର ସେହି ଭଲପାଇବାକୁ ପ୍ରତ୍ୟାଖ୍ୟାନ କରି ନିଜର ଅଜାଣତରେ ଅତି ଗଭୀର ଦୁଃଖ ତାଙ୍କୁ ଦେଇଯାଇଛି ସେ । ସେଇପାଇଁ କ୍ଷମା ମାଗିବ ।

କିନ୍ତୁ ନୀଳମଣିଙ୍କ ଘରେ ପାଦ ରଖି ସ୍ୱରୂପା ଦେଖିଲା—ବଡ଼ମା ଗାଢ଼ ନିଦରେ ଶୋଇଛନ୍ତି ! ଆଖି ଦୁଇଟା ଉପରେ ନିଜର ଡାହାଣ ହାତଟି ରଖିଛନ୍ତି ସେ । ଶୋଇବାର ସେ ଭଙ୍ଗୀଟା ହିଁ ପରିଷ୍କାର ସୂଚାଇ ଦେଉଛି ସେ କେତେ଼ ନିରାଶ, କେତେ଼ କ୍ଳାନ୍ତ ।

ସେ ନିଦକୁ ଭାଙ୍ଗି ଦେବାକୁ ଇଚ୍ଛା ହେଲାନି ସ୍ୱରୂପାର । ଧୀର ପାଦରେ ନିଜ କକ୍ଷ ଆଡ଼କୁ ଆଗେଇଗଲା ସେ ।

ନିଜ ଘରକୁ ଚାଲିଆସି ବିଛଣାରେ ଶୋଇ ପଡ଼ିଥିଲେ ନୀଳମଣି । ସୁପ୍ରକାଶ ଚାଲିଗଲା ପରେ ଆଖି ଦୁଇଟା ବନ୍ଦ କଲେ, ହେଲେ ଆଖି ଆଗରେ ପୁଣି ଭାସି ଉଠିଲା ଆଜି ସକାଳର ଘଟଣା ଗୁଡ଼ିକ ।

ଭାବିଲେ—ଭଲପାଇବା କଥା ସ୍ୱରୂପା କିପରି ଜାଣିବ ? ଯାହା ହୃଦୟରେ ପ୍ରେମର ପଦ୍ମ ଫୁଲ କେବେ ଫୁଟି ନାହିଁ, ସେ ବା କିପରି ଜାଣି ପାରିବ, ଚିହ୍ନି ପାରିବ ପ୍ରେମର ସେ ଅମୃତମୟ ସୌରଭକୁ ? ଜାଣି ପାରିବ ତା'ର ଅଭାବରେ ମଣିଷ ଯେ କେତେ ଅପୂର୍ଣ୍ଣ—ଠିକ୍ ସୁବାସହୀନ ଫୁଲ ପରି, ସ୍ୱାଦହୀନ ଖାଦ୍ୟ ପରି ।

ନା ତାଙ୍କର ଧାରଣାଟା ହିଁ ଭୁଲ୍ ? ସେ କ'ଣ ଜୀବନରେ ଆଉ ଗୋଟିଏ ଦିଗ ଜାଣି ନାହାନ୍ତି ? ସ୍ୱରୂପା ଯଦି ସିଦ୍ଧ—ଯୋଗିନୀ ହୋଇ ପାରିବ ତା ହେଲେ ସେ ତା'ର ବ୍ରହ୍ମଜ୍ଞାନ ଦ୍ୱାରା ସ୍ୱାଦହୀନ ବସ୍ତୁର ସ୍ୱାଦ ଆହରଣ କରି ପାରିବ, ସୁବାସହୀନ ଫୁଲରୁ ଆଘ୍ରାଣ କରି ପାରିବ ଆକଣ୍ଠ ସୌରଭ ? ଆଉ ସେ ଅପୂର୍ଣ୍ଣତାରୁ ହିଁ ନିଜର ଜ୍ଞାନ ଦ୍ୱାରା ପାଇବ ପୂର୍ଣ୍ଣତା ?

ନୀଳମଣି ନିଦରେ ଶୋଇ ନ ଥିଲେ । ଆଖି ବନ୍ଦ କରି ଭାବୁଥିଲେ ଏ ସବୁ । ନିଜ ସ୍ୱାମୀଙ୍କର ଅନାବିଳ ପ୍ରେମ ହିଁ ଆଜି ପର୍ଯ୍ୟନ୍ତ ତାଙ୍କୁ ବଞ୍ଚାଇ ରଖି ଆସିଛି । ପ୍ରେମର ସେ ସ୍ମୃତି ନ ଥିଲେ ନୀଳମଣି ଅନେକ ଦିନ ଆଗରୁ ପାଗଳୀ ହୋଇ ସାରନ୍ତେଣି କିମ୍ବା ଆତ୍ମହତ୍ୟା କରି ସାରନ୍ତେଣି ।

ସମୟ ସମୟରେ ଶୂନ୍ୟତା ଯେତେବେଳେ ହୃଦୟ ଭିତରେ ହାହାକାର ସୃଷ୍ଟି କରେ, ଦୁଃଖର ତମସା ଅନ୍ଧାର କରିଦିଏ ଚତୁର୍ଦ୍ଦିଗକୁ, ହଠାତ୍ ପୂର୍ଣ୍ଣମୀର ବିମଳ ଜ୍ୟୋତ୍ସ୍ନାଭରା ହସ ହସି ଦେଖାଦିଏ ଯେପରି ସ୍ମୃତିର ଚନ୍ଦ୍ରମା, କହେ—ମଣି, ମୁଁ ଅଛି, ମୁଁ ଅଛି, ତମ ପାଖେ ପାଖେ ଅଛି, ତମ ହୃଦୟ ଭିତରେ ଅଛି, ମନ ଭିତରେ ରହିଛି ମୁଁ !

ସ୍ୱରୂପାର ହୃଦୟ ଭିତରେ ଥିବା ନିଖିଳ ବ୍ରହ୍ମାଣ୍ଡର ସେ ପୂର୍ଣ୍ଣତାକୁ ଉପଲବ୍ଧି କରିବାର ଶକ୍ତି ନୀଳମଣିଙ୍କର ନାହିଁ, ତେଣୁ ସେ ଭାବିଲେ—ସ୍ୱରୂପା ଏକ ଚରମ ଭୁଲ୍ କରିଦେଲା । ହାତମୁଠା ଭିତରେ ରତ୍ନଟିଏ ପାଇ ମୂଲ୍ୟ ବୁଝି ନ ପାରି ଫୋପାଡ଼ି ଦେଲା । ପୂର୍ଣ୍ଣତାର ପରମ ଆନନ୍ଦରୁ ବଞ୍ଚିତ କରିଦେଲା ନିଜକୁ ।

ନୀଳମଣି ଭାବିଲେ—ସ୍ୱରୂପା ହତଭାଗିନୀଟିଏ ଠିକ୍ ମଧୁଛନ୍ଦା ପରି । ଏ ଦୁଇଜଣଯାକ ମିଶି ଯେପରି ଆଗରୁ ପ୍ରତିଜ୍ଞା କରିଥିଲେ ନୀଳମଣିଙ୍କ ସୁଖର କଳ୍ପନାକୁ ଧ୍ୱଂସ କରିଦେବାକୁ । ଅବଶ୍ୟ ଦୁହେଁ ଗଲେ ଦୁଇଟି ସମ୍ପୂର୍ଣ୍ଣ ଭିନ୍ନ ବାଟରେ କିନ୍ତୁ ଏକା ଭଳି ଛାରଖାର କରିଦେଲେ ନୀଳମଣିଙ୍କ ସ୍ୱପ୍ନକୁ ।

ଆଉ ତୃତୀୟ ଜଣକ ? ଯାହାର କଣ୍ଠସ୍ୱର ପ୍ରତିଧ୍ୱନିରେ ସେ ଶୁଣିପାରନ୍ତି ବିଶ୍ୱନାଥଙ୍କ କବିତା ! ଦେଖନ୍ତି ତାଙ୍କରି ଆବୃତ୍ତିର ଭଙ୍ଗୀ, କହିବାର ଭଙ୍ଗୀ, ହସିବାର ଭଙ୍ଗୀ, ଏପରିକି ହାତ ହଲାଇବାର ଭଙ୍ଗୀରେ ମଧ୍ୟ ନିଜ ସ୍ୱାମୀଙ୍କର ସେହି ଅତି ପ୍ରିୟ ଅତି ପରିଚିତ ଭାବଭଙ୍ଗୀଗୁଡ଼ିକୁ ଲକ୍ଷ୍ୟ କରି ଆନନ୍ଦରେ ବିଭୋର ହୋଇ ଯାଉଥାନ୍ତି । ମନେ ପକାନ୍ତି କଥା କହିଲା ସମୟରେ

ବିଶ୍ୱନାଥଙ୍କ ଅତି ସୁନ୍ଦର କପାଳରେ କିପରି ଗୋଟିଏ କୁଞ୍ଚନ ରେଖା ପଡୁଥିଲା—ଏ ଝିଅଟା ସେ ମୁଦ୍ରାର ମଧ୍ୟ ଅଧିକାରିଣୀ ହୋଇ ଯାଇଛି ।

ସେଥିପାଇଁ ସ୍ମିତା ତାଙ୍କର ପ୍ରାଣଠାରୁ ବଳି ପ୍ରିୟତମା ହୋଇଥିଲା । ଯାହାକୁ ସେ ଭାବୁଥିଲେ ଏ ଘରେ ରୂପରେ ଲକ୍ଷ୍ମୀ ଓ ଗୁଣରେ ସରସ୍ୱତୀଙ୍କ ପରି ବିରାଜୁଛି, ତାଙ୍କରି ଉପରେ ଏକାନ୍ତ ନିର୍ଭରଶୀଳ ସେଇ ସୁକୁମାରୀ ଝିଅଟାକୁ ଆଜି ନିର୍ବାସନର ଦଣ୍ଡ ଦେଇ ଆସିଲେ ନିଜ ହାତରେ ।

ସ୍ମିତା ମଧ୍ୟ ଏ ଘର ଛାଡ଼ି ଚାଲିଯିବ । ଏ ଘରର ଅବସ୍ଥା କ'ଣ ହେବ ? ମଧୁଛନ୍ଦାର ମୃତ୍ୟୁ ପରଠାରୁ ଟେଲିଭିଜନ, ରେଡ଼ିଓ, ଟେପ୍‌ରେକର୍ଡ଼ର ପ୍ରଭୃତି ସବୁ ଜିନିଷ ବାଜିବା ବନ୍ଦ ହୋଇ ଯାଇଛି । ଧ୍ୱନି ଚାଲି ଯାଇଛି । ସ୍ମିତା ଦୂରକୁ ଚାଲିଗଲେ ଯେପରି ଆଲୋକ ଚାଲିଯିବ ! ଏକ ନିସ୍ତରଙ୍ଗ, ନିସ୍ତବ୍‌ଧ ଅନ୍ଧକାର ଭିତରେ ନୀଳମଣିଙ୍କୁ କଟାଇବାକୁ ପଡ଼ିବ ତାଙ୍କର ବାକି ଜୀବନଟା ।

ହଁ, ଜୀବନଟା ତାଙ୍କର କେବେ ସରିବ କେଜାଣି ? କେତେ ଦିନ ଆହୁରି ବାକି ଅଛି ? କେତେ ବର୍ଷ, କେତେ ମାସ, କେତେ ଦିନ ? କେଉଁ ତିଥିରେ ଯିବ ସେ ଜୀବନଟା ? କେଉଁ ଋତୁରେ ଯିବ ? ଆଉ କେଉଁ ବାରରେ ବି ଯିବ ? ତା'ର ଯିବାର ଲଗ୍ନ କେତେବେଳେ ? ପ୍ରତ୍ୟୁଷ ନା ପ୍ରଦୋଷ ? ସାୟାହ୍ନ ବା ଅପରାହ୍ନ ? ଦିବସ ନା ରାତ୍ରି ?

ଯଦି ରାତ୍ରି ହୁଏ ତା'ହେଲେ ସେ ରାତ୍ରି ଚନ୍ଦ୍ରଙ୍କ ଜ୍ୟୋତ୍ସ୍ନାରେ ବିଧୌତ ହୋଇଥିବ ନା କୃଷ୍ଣପକ୍ଷର ତମସାରେ ଆଚ୍ଛନ୍ନ ହୋଇଥିବ ?

ନୀଳମଣି ସୂର୍ଯ୍ୟଙ୍କ ଉତ୍ତରାୟଣ ସମୟରେ ଯିବେ ନା ଦକ୍ଷିଣାୟନ ସମୟରେ ଯିବେ ? ତାଙ୍କର ସେ ଅଜଣା ଯାତ୍ରାପଥ ଆଲୋକିତ ହୋଇଥିବ ନା ଅନ୍ଧକାରାଚ୍ଛନ୍ନ ହୋଇଥିବ ?

ଆଚ୍ଛା, ସେ ପାରିରେ ସତେ କ'ଣ ସ୍ୱାମୀ ତାଙ୍କର ଅପେକ୍ଷା କରି ବସିଥିବେ ? ନିଜର ନନା, ବୋଉ, ବିଜୁ ହେରିକା ସମସ୍ତଙ୍କୁ ଆଉଥରେ କ'ଣ ସତେ ଦେଖି ପାରିବେ ସେ ? ସତେ କ'ଣ ପିଲାଦିନର ସେ ଅବସ୍ଥା ଫେରି ଆସିବ ?

ମୃତ୍ୟୁ ପରେ ଜୀବନର ରୂପରେଖ କ'ଣ ? ସେ ପାରିରେ କ'ଣ ଅଛି ? ଏପର୍ଯ୍ୟନ୍ତ ତ କେହି ସେ ରହସ୍ୟକୁ ଅନାବୃତ କରିପାରି ନାହାନ୍ତି ।

ହୁଏତ ମୃତ୍ୟୁ ହିଁ ଏ ଜନ୍ମର ପରିଚ୍ଛେଦ, ପରିଚ୍ଛେଦ ଏକ ଜୀବନର । ଆଉ କିଛି ନାହିଁ । କାହାକୁ ଦେଖି ହେବ ନାହିଁ ।

ଓହୋ ! ସେ ଭାବନାଟା ମଧ୍ୟ ଯେ ଅସହ୍ୟ ।

''ଓଃ'', ସେହି ଶୂନ୍ୟ ଘର ଭିତରେ ତାଙ୍କର ବିସ୍ତୃତ ଶଯ୍ୟା ଉପରେ ଶୋଇ ନୀଳମଣି ଅସ୍ପଷ୍ଟ କଣ୍ଠରେ କହି ଉଠିଲେ—ଓଃ ।

କିନ୍ତୁ କଷ୍ଟଟା କେଉଁଠାରେ ହେଉଛି ? ଦେହ ଭିତରେ ନା ମନ ଭିତରେ ?

ସ୍ୱରୂପା ପୁନର୍ଜନ୍ମରେ ବିଶ୍ୱାସ କରେ । ସେ କହେ ମୃତ୍ୟୁର ଆର ପାରିରେ ପିତୃଲୋକ, ଯମଲୋକ, ଦେବଲୋକ ବା ବୈକୁଣ୍ଠ ଅଛି । ସତେ କ'ଣ ତା'ହେଲେ ନଚିକେତା ସ୍ୱଦେହରେ ଯାଇଥିଲେ ସେପାରିକୁ ସେହି ଅଶେଷ ରହସ୍ୟର ସମାଧାନ କରିବା ପାଇଁ ? ନା ଏହା କେବଳ ଜଣେ ଦାର୍ଶନିକ କବିଙ୍କର ନିଛକ ପରିକଳ୍ପନା ମାତ୍ର ?

ସୂର୍ଯ୍ୟଙ୍କ ଦେହରୁ ବିଚ୍ଛିନ୍ନ ହୋଇ ଆସିଥିବା ଏ ପୃଥିବୀ କ୍ରମଶଃ ଥଣ୍ଡା ଓ କଠିନ ହେଉ ହେଉ ଏକ ସମୟରେ ମୃତ ଅସୁରର ମେଦ ପରି ଦିଶୁଥିଲା । କାଦୁଅ ମେଞ୍ଚା ଭଳି ଦିଶୁଥିଲା । ପୁରାଣ ବର୍ଣ୍ଣନା କରିଛି ଏହି ମେଦରୁ ପୃଥିବୀରୁ ନାମକରଣ ହୋଇଛି ମେଦିନୀ । ବସ୍ତୁ ଥଣ୍ଡା ହେଲାବେଳେ ଏକ ଶବ୍ଦ ସୃଷ୍ଟି କରେ । କାଦୁଅ ମେଞ୍ଚା କ୍ରମଶଃ କଠିନ ହେଲା, କଠିନ ହୋଇ ଆସୁଥିବା ପୃଥିବୀରୁ ହୁଏତ ଉତ୍ଥିତ ହେଲା ଏପରି କିଛି ଶବ୍ଦ । ସେହି ଶବ୍ଦକୁ ପରବର୍ତ୍ତୀ କାଳରେ ଉପନିଷଦର ରଚୟିତାମାନେ ନାମକରଣ କଲେ—ଶବ୍ଦବ୍ରହ୍ମ ବା ନାଦବ୍ରହ୍ମ, କହିଲେ—ସେ ଶବ୍ଦ ଧ୍ୱନି ହେଉଛି ଓମ୍ । ପୃଥିବୀର ସର୍ବ ପ୍ରଥମ ଶବ୍ଦ ସେ, ସର୍ବ ପ୍ରଥମ ଧ୍ୱନି ।

ଜ୍ଞାନୀ ପଣ୍ଡିତମାନେ ଚିନ୍ତା କରି କରି ଜନ୍ମାନ୍ତରର ଯେଉଁ ତଥ୍ୟ ଏ ପର୍ଯ୍ୟନ୍ତ ପ୍ରକାଶ କରିଛନ୍ତି, ତାହା ମଧ୍ୟ କେତେଦୂର ସତ୍ୟ ?

ସ୍ୱରୂପା କହେ—ତଥାଗତ ବୁଦ୍ଧ ନିଜେ ଈଶ୍ୱରଙ୍କୁ ସ୍ୱୀକାର ନ କଲେ ମଧ୍ୟ ମଣିଷର ଜନ୍ମାନ୍ତରକୁ ସ୍ୱୀକାର କରି ଯାଇଛନ୍ତି ।

ନୀଳମଣି ଭାବିଲେ—ଏ କଥା ସତ୍ୟ ହେଉ ବା ନିର୍ଜଳ ମିଥ୍ୟା ହେଉ, ଶେଷ ଯାତ୍ରାରେ ମୃତ୍ୟୁପଥଯାତ୍ରୀ ମନୁଷ୍ୟର ସେହି ଟିକକ ହିଁ ଯେ ଏକମାତ୍ର ସମ୍ବଳ, ଏକମାତ୍ର ସାନ୍ତ୍ୱନା !

ସେହି କଳ୍ପିତ କୁଟାଖିଅକ ହାତମୁଠାରେ ଧରି ମୃତ୍ୟୁର ଘୋର ତମସାଛନ୍ନ ମହାର୍ଣ୍ଣବକୁ ପାର ହେବାର ସାହସ ସେ ପାଏ ତା'ର ଶେଷ ମୁହୂର୍ତ୍ତର ଏକାନ୍ତ ଅସହାୟତା ଭିତରେ ।

ସ୍ୱରୂପା ପରି ନୀଳମଣି ଯଦି ଜନ୍ମାନ୍ତରକୁ ଏବଂ ଈଶ୍ୱରଙ୍କୁ ବିଶ୍ୱାସ କରି ପାରିଥାନ୍ତେ ହୁଏତ ମରୁଭୂମି ପରି ତାଙ୍କର ଏ ଶୁଖିଲା ଉତ୍ତପ୍ତ ପ୍ରାଣରେ ଶାନ୍ତିର ସୁଶୀତଳ ବାରିଧାରା ଟିକିଏ ଝରିଥାନ୍ତା ।

''କିନ୍ତୁ ମୁଁ ମୋ ସ୍ୱାମୀଙ୍କ ଛଡ଼ା ଭଗବାନଙ୍କୁ ଦେଖିବା କି ପାଇବାର କାମନା କେବେ ଦିନେହେଲେ କରିନାହିଁ ।'' ଥରେ ଏକଥା ଅତି ସ୍ପଷ୍ଟ ଭାବରେ ସ୍ୱରୂପାକୁ କହିଥିଲେ ମଧ୍ୟ ।

ସ୍ୱରୂପା ସେଦିନ ଆଶ୍ଚର୍ଯ୍ୟ ହୋଇ ଯାଇଥିଲା ପତି ପ୍ରେମର ସେ ନିଷ୍ଠାପରତାକୁ ଲକ୍ଷ୍ୟ କରି । ଭାବିଲା—ପ୍ରିୟଜନଙ୍କ ବିଚ୍ଛେଦରେ, ବଞ୍ଚିତ ମଣିଷ ସବୁବେଳେ ବ୍ୟାକୁଳ ଅସହାୟତାରେ

ଭଗବାନଙ୍କୁ ହିଁ କୁଣ୍ଢାଇ ଧରେ । ଏକାକୀ ଏ ବିରାଟ ଓ ଅଜ୍ଞାତ ଭବସମୁଦ୍ର ପାରି ହେବାପାଇଁ ଭଗବାନଙ୍କ ସହାୟତା କାମନା କରେ । ଅହର୍ନିଶ ହୃଦୟରେ ଭଗବାନଙ୍କ ନାମ ଜପ କରି ଆଗାମୀ ମହାଯାତ୍ରା ପାଇଁ ପାଥେୟ ରୂପୀ ସାହସ ସଞ୍ଚୟ କରେ, କିନ୍ତୁ ବଡ଼ମା ? କି ଆଶ୍ଚର୍ଯ୍ୟ, ସେ କେବଳ ତାଙ୍କର ସ୍ୱାମୀଙ୍କ ସ୍ମୃତିକୁ ହିଁ ସମ୍ବଳ କରି ରହିଛନ୍ତି ! ସ୍ୱାମୀ ତାଙ୍କର ଜପ, ତପ, ଧ୍ୟାନ, ମନ୍ତ୍ର ଯାହାକିଛି ସବୁ । ତାଙ୍କର ପ୍ରଗାଢ଼ ପତିପ୍ରେମ ହିଁ ତାଙ୍କର ସାହସ, ପାଥେୟ, ଭଗବତ୍‌ପ୍ରେମ ନୁହେଁ !!

ଏମିତି ମଣିଷ ମଧ୍ୟ ଏ ଦୁନିଆରେ ଥାଇପାରନ୍ତି ! ବଡ଼ମା ତ କାହିଁ ଦିନେହେଲେ ତୀର୍ଥ ଦର୍ଶନ ବା ଭଗବାନ-ଦର୍ଶନ କାମନା କରି ନାହାନ୍ତି ତାଙ୍କର ଏ ସୁଦୀର୍ଘ ଅବସର ଭିତରେ ! ଦିନେ ହେଲେ ଧ୍ୟାନରେ ବସି ଜପ କି ମନ୍ତ୍ର କିଛିହେଲେ କରିନାହାନ୍ତି !

ମାନବିକ ପ୍ରେମ କ'ଣ ଭଗବତ୍ ପ୍ରାପ୍ତିଠାରୁ ମଧ୍ୟ ବଡ଼ ? ମାୟା, ମୋହ, ଶୋକଦୁଃଖରେ ପରିପୂର୍ଣ୍ଣ ମାନବିକ ପ୍ରେମ ! ସେ ବଡ଼ ! ଆତ୍ମାର ମୁକ୍ତି ଚାହୁଁନାହାନ୍ତି ନୀଳମଣି, ଯେପରି ଆତ୍ମାର ବନ୍ଧନ ହିଁ କାମନା କରୁଛନ୍ତି ।

କିନ୍ତୁ ସତରେ କ'ଣ ନୀଳମଣି ଆତ୍ମାର ବନ୍ଧନ କାମନା କରୁଥିଲେ !

ଆଜି ସୁପ୍ରକାଶ ଚାଲିଯିବା ପରେ ବିଛଣାରୁ ଉଠି ଅନେକ ବେଳ, ଅନେକ ବେଳ ଗୋଟିଏ ଚଉକିକୁ ଭରା ଦେଇ ଠିଆ ହୋଇଥିଲେ ସେ କାନ୍ଥରେ ଟଙ୍ଗା ହୋଇଥିବା ନିଜର ପ୍ରାଣଠାରୁ ବଳି ଅଧିକ ପ୍ରିୟ ସ୍ୱାମୀଙ୍କର ସେହି ଫଟୋଟି ପାଖରେ ।

ନା, ଏ କାଳର ଲୋକଙ୍କ ପରି ନୀଳମଣିଙ୍କୁ ଚାଳିଶି ବର୍ଷ ବୟସରେ ଚଷମା ପିନ୍ଧିବାକୁ ଦରକାର ପଡ଼ିନି କେବେ । ଏବେ ମଧ୍ୟ ସୁସ୍ପଷ୍ଟ ରୂପେ ଦେଖି ପାରୁଛନ୍ତି ଫଟୋଟାକୁ । ଠିଆହୋଇ ସେ ଯେପରି ସ୍ୱାମୀଙ୍କୁ ଧ୍ୟାନ କରୁଥିଲେ ।

ଆଜି ଯଦି ବିଶ୍ୱନାଥ ବଞ୍ଚି ଥାଆନ୍ତେ ତା'ହେଲେ ଘରର ଏ ନିଭୃତ ପରିସର ଭିତରେ ନୀଳମଣି ତାଙ୍କୁ ଚୁପ୍ ଚୁପ୍ କରି କହି ପାରିଥାନ୍ତେ—ଦେଖିଲ ଏ ପିଲାଗୁଡ଼ାଙ୍କ କଥା ? ଏମାନେ ମୋ ମନରେ କେତେ କଷ୍ଟ ଦେଲେ ! ଏ ସମସ୍ତଙ୍କୁ ପରା ମୁଁ ନିଜର ପ୍ରାଣ ଢାଳିଦେଇ ମଣିଷ କରିଥିଲି !

ସବୁବେଳେ ହାତ ପାଇବା ଭଳି ଜାଗାରେ ବିଶ୍ୱନାଥଙ୍କ ଫଟୋଟା ଟଙ୍ଗା ହୋଇ ରହିଥିଲା । ଆଜି ନୀଳମଣି ସାବଧାନରେ ତାକୁ ବାହାର କରି ଆଣି ନିଜ ଲୁଗା କାନିରେ ଭଲରୂପେ ପୋଛି ଦେଇ ଯେପରି ମନପ୍ରାଣ ପୂରାଇ ଦେଖିବାକୁ ଲାଗିଲେ ସ୍ୱାମୀଙ୍କୁ । ଅସ୍ପଷ୍ଟ ଭାବରେ କଥା କହିଲେ—ତମେ ଯଦି ଆଜି ଥାଆନ୍ତ, ତାହେଲେ ଘଟଣାଗୁଡ଼ାକ ଏଭଳି ହୋଇ ନ ଥାନ୍ତା ।

—ତମେ ଥାଆନ୍ତ, ମୋ ମନରେ ଯାହା କଷ୍ଟ ହେଲେ ମୁଁ ତ ତମ ଆଗରେ କହି ମୋ ହୃଦୟ ଭାରକୁ କମାଇ ଦେଇ ପାରିଥାନ୍ତି । ସବୁ ଅଛି ସତ ତେବେ ତମେ ଗଲାଦିନୁ ମୋ ମନର

କଷ୍ଟକୁ ସମ୍ପୂର୍ଣ୍ଣ ଭାବରେ ଖୋଲି କହିବାକୁ କେହି ଜଣେ ହେଲେ ନାହିଁ ମୋ ପାଖରେ !...ଏତେ କାଳ ହେଲା ସବୁ ଦୁଃଖ ଯାତନାକୁ, ସବୁ ନିଜ ଅନ୍ତର ଭିତରେ ପଥର ଲଦିଦେଇ ରଖିବାକୁ ପଡ଼ିଛି ମତେ । କାହାକୁ ବି କହିଥାନ୍ତି କହିଲ ? ତମ ଛଡ଼ା ଅନ୍ୟ କାହାକୁ କ'ଣ ଏ ସବୁ କହି ହୁଅନ୍ତା ?

ବେଦନାପୂର୍ଣ୍ଣ ଗଭୀର ଦୀର୍ଘ ନିଃଶ୍ୱାସଟିଏ ପକାଇ ଫଟୋ ଭିତରେ ଥିବା ବିଶ୍ୱନାଥଙ୍କ ଚେହେରାକୁ ନିରେଖି ଦେଖିଲେ ସେ–ଚିତ୍ର ପ୍ରତିମା ଜୀବନ୍ତ ପରି ଦିଶୁଛନ୍ତି, ଓଠରେ ହସ ଲାଗି ରହିଛି, ଆଖି ଦୁଇଟିରେ ସୁଦ୍ଧା ହସ ଫୁଟି ଉଠିଛି, ସତେ ଯେପରି ସଜାଡ଼ି ହେଉଛନ୍ତି, ସାନ୍ତ୍ୱନାର ଦି'ପଦ କଥା କହି ତାଙ୍କ ମନଟାକୁ ହାଲୁକା କରିଦେବାକୁ ।

ସେ ଯାହା କହିଥାନ୍ତେ, ନୀଳମଣି ଜାଣିଛନ୍ତି । କହିଥାନ୍ତେ –ଏ କଥାଗୁଡ଼ାକ ଭାବି ତମେ ଏତେ ସମୟ ନଷ୍ଟ କରୁଛ ମଣି ? ମଣିଷର ଜୀବନର ସୀମା ବହୁତ କମ୍, ତା'ଭିତରେ ଜଗତର ସମସ୍ତ ସୌନ୍ଦର୍ଯ୍ୟକୁ ଉପଭୋଗ କର । ଏଡ଼େ ସୁନ୍ଦର ଏହି ଯେଉଁ ପୃଥିବୀ, ଏ ପୃଥିବୀଟାକୁ ହିଁ ସ୍ୱର୍ଗ ବୋଲି ଭାବ । ସ୍ୱର୍ଗ ବୋଲି ଆଉ କିଛି କେଉଁଠି ନାହିଁ । ଆସ ସୃଷ୍ଟିର ଚମତ୍କାର ବୈଚିତ୍ର୍ୟ ସବୁକୁ ପ୍ରାଣ ପୂରାଇ ଦେଖିବା । ଛୋଟ ଅଜଣା ଘାସଫୁଲଟିକୁ ଦେଖ, କି ସୁନ୍ଦର ସତରେ !

ବୋଧହୁଏ ମୃତ୍ୟୁ ତା କୋଳକୁ ଏତେ ଶୀଘ୍ର ଟାଣି ନେଇଯିବ ବୋଲି ମୁହଁରୁ ତାଙ୍କର ଏ ଧରଣର କଥାଗୁଡ଼ାକ ବାହାରୁଥିଲା ।

ଏତେ ବର୍ଷ ପରେ ମଧ୍ୟ ଏ ଫଟୋଟି ଯେମିତି ସେମିତି ରହିଛି ! ବୁକୁଫଟା ଦୀର୍ଘଶ୍ୱାସଟିଏ ପକାଇ ନୀଳମଣି ଫଟୋଟିକୁ ଆଉଥରେ ଯଥାସ୍ଥାନରେ ଟାଙ୍ଗି ଦେଇଥିଲେ । ଇଚ୍ଛା ହେଉଥିଲା ଆହୁରି ଟିକିଏ ଦେଖିଥାନ୍ତେ, ହେଲେ ହଠାତ୍ ଦେହ ଭିତରେ କିପରି ଏକ ଅସ୍ୱସ୍ତି ଅନୁଭବ କଲେ ସେ । ତେଣୁ ଯାଇ ଶୋଇ ପଡ଼ିଲେ ଶେଯରେ ।

ଶେଯରେ ଶୋଇଲାକ୍ଷଣି ଭାବିଲେ–ଜୀବନ ଆଖ୍ୟାଧାରୀ ମହାଶକ୍ତିର ରୂପ କଣ ? ଆକାର କଣ ? ହେଇଟି ସେ ରହିଥାଏ, ହେଇଟି ମୁହୂର୍ତ୍ତଟିଏ ମଧ୍ୟ ଲାଗେନି ବୋଧହୁଏ ଅନ୍ତର୍ହିତ ହୋଇଯାଏ ସେ । ଏତେ ଯତ୍ନର ମହାର୍ଘ ଶରୀରଟା ସେହି ଜୀବନ ବିନା ପାଲଟେ ଏକ ଅଦରକାରୀ ମାଂସ ପିଣ୍ଡୁଳା ମାତ୍ର । ଶରୀରର ଆଉ କୌଣସି ପ୍ରୟୋଜନ ରହେ ନାହିଁ ।

ଆଃ, ସେ ଯଦି ସ୍ୱରୂପା ପରି ପୁନର୍ଜନ୍ମରେ ବିଶ୍ୱାସ ରଖିଥାଆନ୍ତେ, ତା'ହେଲେ ତ ଭଗବାନଙ୍କୁ ବିଶ୍ୱାସ କରି ତାଙ୍କୁ କୁଣ୍ଢାଇ ଧରିଥାଆନ୍ତେ, ହୁଏତ ଆଜି ଏ ମୁହୂର୍ତ୍ତରେ ଏଭଳି ଏକ ଏକାକୀତ୍ୱର ହାହାକାର ମନ ଭିତରେ ଗୁମରି ଉଠୁ ନ ଥାନ୍ତା । ଏକ ଅସହାୟତା ଦେଖାଦେଇ ନ ଥାନ୍ତା ମନରେ ।

ଯଦି ନିଦ ଲାଗିଯାଆନ୍ତା ସେ ଶୋଇପଡ଼ନ୍ତେ ଟିକିଏ ଆରାମରେ । ମନ ଚାଲିଯାଆନ୍ତା ଅତୀତକୁ । ଶୋଇ ଶୋଇ ସ୍ୱପ୍ନ ଦେଖନ୍ତେ ସ୍ୱାମୀଙ୍କୁ । ବର୍ତ୍ତମାନ ସେହି ସ୍ମୃତିର ପାଖୁଡ଼ା ଭିତରେ ହଜିଯିବାକୁ ଚାହାନ୍ତି ନୀଳମଣି, ସତରେ ହଜି ଯିବାକୁ ଚାହାନ୍ତି ।

ନା, ନିଦରେ ଶୋଇ ହେଉନାହିଁ । ଅସ୍ଥିର ଲାଗୁଛି । ଛାତି ଭିତରଟାର ଶିରା-ପ୍ରଶିରା ସବୁ ଯେପରି ଧପ୍ ଧପ୍ ହୋଇ ନାଚୁଛନ୍ତି । ଅକାରଣରେ ବଢ଼ିଯାଇଛି ହୃଦ୍‌ଯନ୍ତ୍ରର ଗତି । ଆଉ ଗୋଟାଏ ଅତି କଷ୍ଟଦାୟକ ଉପଲବ୍‌ଧି ।

ଜୋର୍ କରି ଆଖି ଦୁଇଟାକୁ ବନ୍ଦ କଲେ ନୀଳମଣି ।

ହଠାତ୍ କଥା କହିବା ଆରମ୍ଭ କରିଦେଲେ, ଯେପିର ସ୍ୱାମୀଙ୍କୁ ଉଦ୍ଦେଶ୍ୟ କରି କହିଲେ– ଛନ୍ଦା କଥା ଦେଖିଲ ? ସେ ମତେ କିଛି ଜଣାଇଲାନି କାହିଁକି ଯେ ? ନିଜକୁ ନିଜେ ମାରିଲାନି, ମତେ ମଧ୍ୟ ମାରି ଦେଇଗଲା । ମରଣାନ୍ତକ କଷ୍ଟ ଦେଇଗଲା ମତେ । ମତେ କହିଥିଲେ ମୁଁ କ'ଣ ତା'ର ଅନିଚ୍ଛା ସତ୍ତ୍ୱେ ଶଚୀ ସହିତ ବାହା କରାଇ ଦେଇଥାନ୍ତି ?

...ହଁ, ସେ ସ୍ୱରୂପା, ମୋ କଥା ନମାନି ସୌମ୍ୟଟା ପ୍ରାଣରେ କେତେ କଷ୍ଟ ଦେଲା ଦେଖ ! ଆମ ସମୟରେ କ'ଣ ଏମିତି ହେଉଥିଲା ? ସେ କ'ଣ ପିଲାଟିଏ ହୋଇଛି ? ଏତେ ପାଠ ପଢ଼ିଲା ଅଥଚ ସଂସାର କେଡ଼େ ଜଟିଳ ବୁଝି ପାରୁନି । ଆଉ ବୋହୂ ସୁନନ୍ଦା ? ସେ ତ ମତେ ସବୁଠାରୁ ଅଧିକ କଷ୍ଟ ଦେଲା । ଛନ୍ଦାର ଦୋଷ ପାଇଁ ଦଣ୍ଡ ଦେଲା ସ୍ମିତାକୁ ! ସୁନନ୍ଦାର କ'ଣ ଦୋଷ ନଥିଲା ? ମା ହୋଇ ଝିଅର ମନକଥା ବୁଝିପାରିଲା ନାହିଁ ? କହିଲ, ସ୍ମିତା ଏ ଘର ଛାଡ଼ି କେବେହେଲେ ରହିପାରିବ ? ଆସିଲା ବେଳକୁ ତ ଅତି ଛୋଟଟିଏ ହୋଇଥିଲା । ମୋରି ପାଖରେ ସେ ମଣିଷ ହୋଇଛି, ପିଲାଦିନଯାକ ମୋ'ରି କାନି ଧରି ସେ ବୁଲିଛି । ଦୂରରେ ଯାଇ ରହିଲେ ଦିନ ରାତି ଲୁଚାଇ ଲୁଚାଇ କାନ୍ଦିବ ଖାଲି । ମୁଁ କ'ଣ କରିବି କହ ! କ'ଣ ବା ଆଉ କହିଥାନ୍ତି ଯେ ? ମୋ'ରି ଆଗରେ ସୁନନ୍ଦା ତାକୁ ଥରକୁ ଥର ଅପମାନ କରୁଛି । ମୁଁ ବଞ୍ଚି ଥାଉ ଥାଉ ସୁନନ୍ଦା ତାକୁ ମୋ ଘରୁ ତଡ଼ି ଦେବାକୁ ସାହସ କରୁଛି । ସ୍ମିତା କ'ଣ ଏ ଘରର ଗୋଟାଏ ଚାକର ବାକର ହୋଇଛି ? କୋଉ ଚାକର ବାକରଙ୍କୁ ମଧ୍ୟ ଏଭଳି କେହି କହିଥିଲେ ମୁଁ ସହି ନଥାନ୍ତି । ହେଲେ ମୁଁ ଏବେ କିଛି କହି ପାରୁନି । ଛନ୍ଦା ମୋ ପାଟିକୁ ବାନ୍ଧିଦେଇ ଚାଲି ଯାଇଛି...

ହଠାତ୍ ନୀଳମଣି ଅନୁଭବ କଲେ–ତାଙ୍କର ପଲଙ୍କ ପାଖରେ ଆସି ଠିଆ ହୋଇଛନ୍ତି ବିଶ୍ୱନାଥ ! ନୀଳମଣି କ'ଣ ଆଖି ବୁଜି ଶୋଇ ସ୍ୱପ୍ନ ଦେଖୁଛନ୍ତି ନାଁ ଆଖି ଖୋଲି ସ୍ୱପ୍ନ ଦେଖୁଛନ୍ତି, ନା ପ୍ରକୃତରେ ଦେଖୁଛନ୍ତି ? କିଛି ଜାଣିପାରୁନାହାନ୍ତି ସେ ।

ନା, ଖାଲି ଏକ ଆଲୋକମୟ ଆକାରର ଉପସ୍ଥିତି ଅନୁଭବ କରୁଛନ୍ତି ସେ । ସୂର୍ଯ୍ୟାଲୋକ ପରି ତୀବ୍ର ନୁହେଁ ସେ ଆଲୋକ ପୁଞ୍ଜ, ତାହା ଦୀପଶିଖାର ଦୀପ୍ତି ପରି କୋମଳ ରମଣୀୟ ସ୍ନିଗ୍‌ଧତାରେ ଭରି ରହିଛି, ଚନ୍ଦ୍ରାଲୋକର ଶୀତଳ ସ୍ପର୍ଶ ଦେଉଛି ।

ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଛନ୍ତି ନୀଳମଣି । ନା, ଏଥର ତ ସେ ପରିଷ୍କାର ବିଶ୍ୱନାଥଙ୍କୁ ଦେଖୁଛନ୍ତି ! ହସି ହସି କହୁଛନ୍ତି ବିଶ୍ୱନାଥ–ମୋ କଥା କ'ଣ ତମେ ପୂରା ଭୁଲିଗଲଣି ମଣି ?

ତାଙ୍କରି ସ୍ୱର, ହଁ ତାଙ୍କରି ସ୍ୱର ତ ଶୁଣିଛନ୍ତି ନୀଳମଣି । ପରିଷ୍କାର ବିଶ୍ୱନାଥଙ୍କ କଣ୍ଠସ୍ୱର !

ସ୍ୱାମୀଙ୍କ ଆଡ଼କୁ ଚାହିଁ ଆନନ୍ଦଭରା କଣ୍ଠରେ ନୀଳମଣି କହିଲେ—ତମ କଥା ଭୁଲିଯିବି ? କ'ଣ ଯେ କହୁଛ ? ତମକୁ କ'ଣ ମୁଁ ଭୁଲିଯାଇ ପାରେ ? ହେଲେ ସତରେ ସତରେ କ'ଣ ତମେ ଆସି ଠିଆ ହୋଇଛ ? ଏତେ ବର୍ଷ ପରେ ତମେ ଆସିଲ ସତରେ ?

ବିଶ୍ୱନାଥ ହସିଲେ, କହିଲେ—ତମର କ'ଣ ମନେ ହେଉଛି କହିଲ ? ମିଛ ?

—ନା, ନା, ହେଲେ ମୁଁ ଶୋଇଛି କି ସ୍ୱପ୍ନ ଦେଖୁଛି ଜାଣିପାରୁନି ଯେ ! କ'ଣ ହେଇଛି ମୋର ? ତମେ ସତରେ ଆସିଛ ମୋ ପାଖକୁ ?

''—ସତରେ ଆସିଛି ମଣି...'' ନୀଳମଣିଙ୍କ ଉତ୍ତପ୍ତ ଲଲାଟ ଉପରେ ଅତି ସ୍ନେହରେ ନିଜର ହାତ ରଖିଲେ ବିଶ୍ୱନାଥ ।

ଓଃ, କି ସ୍ନିଗ୍ଧ ଶୀତଳ ମଧୁର ସ୍ପର୍ଶ ! ନୀଳମଣିଙ୍କର ଦୁଃଖରେ ଦଗ୍ଧ ପ୍ରାଣଟା ଯେପରି ଶୀତଳ ହୋଇଗଲା ସେ ସ୍ପର୍ଶରେ । ଅଭିମାନଭରା କଣ୍ଠରେ କହିଲେ—ଏତେଗୁଡ଼ାଏ ଦିନ ତମେ ମତେ ଛାଡ଼ି ରହିଲ କିପରି ? ରହି ପାରିଲ ! ଜାଣିଛ ମନ ତଳେ ଦୁଃଖଗୁଡ଼ାକ ଜମି ଜମି ପଥରଟାଏ ପରି ଲଦି ହୋଇଯାଇଛି ମୋ ଛାତି ଉପରେ । କେତେ ଭାରି ଲାଗୁଛି ଛାତି ଭିତରଟା...ମୁଁ ଆଉ ବିଛଣା ଉପରେ ଉଠି ବସି ପାରୁନି ।

ନିଜ କପାଳ ଉପରେ ନିଜ ହାତଟାକୁ ବୁଲାଇ ଆଣି ନୀଳମଣି ଭାବୁଛନ୍ତି ସ୍ୱାମୀ ତାଙ୍କର ଯେପରି ହାତ ବୁଲାଇ ଆଣିଲେ । ନିଜେ ପ୍ରଶ୍ନ କରି ନିଜେ ଉତ୍ତର ଦେଇ ଭାବୁଛନ୍ତି ବିଶ୍ୱନାଥଙ୍କ ସହିତ କଥାବାର୍ତ୍ତା ହେଉଛନ୍ତି ।

ଆସ୍ତେ ଆସ୍ତେ ବୁଦ୍ଧିକୁ ଗ୍ରାସ କରୁଛି ବିଭ୍ରାନ୍ତି ।

ଅପୂର୍ବ ଆନନ୍ଦରେ ଉଦ୍‌ଭାସିତ ହୋଇ ଯାଇଛି ନୀଳମଣିଙ୍କ ମୁହଁ । ବୟସର ଓ ସମୟର ସୀମା କୁଆଡ଼େ ହଜି ଯାଇଛି । ବର୍ତ୍ତମାନ କାଳ ଧୀରେ ଧୀରେ ଲୀନ ହୋଇ ଯାଉଛି ବିସ୍ମୃତିର ଗର୍ଭରେ । କେଉଁ ସୁଦୂର ଅତୀତ ଆସି ମୂର୍ତ୍ତିମନ୍ତ ହୋଇ ଠିଆ ହୋଇଛି ଆଖି ଆଗରେ । କକ୍ଷଟି ଆଲୋକିତ । ଏକ ସ୍ନିଗ୍ଧ ଜ୍ୟୋତିରାଶିରେ ପରିପୂର୍ଣ୍ଣ ହୋଇ ଯାଇଛି । ଏଭଳି ଅଦ୍ଭୁତ ଧରଣର ଆଲୋକ ପୂର୍ବରୁ ସେ ଦେଖି ନଥିଲେ । ଏ ଉଦ୍ଭାସିତ ଆଲୋକ ଯେପରି ଚନ୍ଦ୍ର ଜ୍ୟୋତ୍ସ୍ନା ପରି ଶୁଭ୍ର ଶୀତଳ, ତା'ଠାରୁ ଅଧିକ ମନୋମୁଗ୍ଧକର, ନାଁ, ନାଁ ଆହୁରି ସୁନ୍ଦର, ଆହୁରି ଉଜ୍ଜ୍ୱଳ, ଆହୁରି ଅଧିକ ମନୋରମ ।

ନୀଳମଣିଙ୍କ ମନଟା ଗଭୀର ପ୍ରଶାନ୍ତିରେ ବୁଡ଼ିଗଲା । ସେ ବିଶ୍ୱନାଥଙ୍କୁ ପଚାରିଲେ—ଆଜି କ'ଣ ପୂର୍ଣ୍ଣିମା ?

ବିଶ୍ୱନାଥ ଅସ୍ପଷ୍ଟ ଭାବରେ ଯେପରି କ'ଣ କହିଲେ ।

ନୀଳମଣି କହିଲେ—ଦେଖ, ଚନ୍ଦ୍ର ଆଲୁଅ କେମିତି ବିଞ୍ଚି ହୋଇଯାଇଛି, ଘରଟା ଭିତରେ, ପଲଙ୍କ ଉପରେ, ଶେଯ ଉପରେ, ତମ ଉପରେ, ଆଜି ପୂର୍ଣ୍ଣିମା ତିଥିଟି ? ଆଚ୍ଛା ! କହିଲ, ସୂର୍ଯ୍ୟଙ୍କ ଉତ୍ତରାୟଣ ଏବେ ଚାଲିଛି ନା ଦକ୍ଷିଣାୟନ ?

ପୁଣି ମନେ ମନେ ଦୋହରାଇଲେ ନୀଳମଣି—ବଡ଼ ଆଶ୍ଚର୍ଯ୍ୟ ସତରେ, ପୂର୍ଣ୍ଣିମାଟା ଏତେ ଶୀଘ୍ର ହୋଇଗଲା ? ପୁଣି ଦେଖ ସକାଳଟା କେତେ ଶୀଘ୍ର ରାତି ହୋଇଗଲା ! ଓଃ କି ସୁନ୍ଦର ଫୁଲର ବାସ୍ନା ! ବାସ୍ନାରେ ମହକି ଯାଉଛି ଘରଟା । ରାତିର ଫୁଲଗୁଡ଼ାକ ଆଜି ସବୁ ଫୁଟି ଯାଇଛନ୍ତି । ଗଙ୍ଗଶିଉଳି, ମାଳତୀ, ରଜନୀଗନ୍ଧା । ତା ସଙ୍ଗେ ଗୋଲାପ ଆଉ ସୁଗନ୍ଧରାଜର ବାସ୍ନା ମିଶି ଯାଇଛି ।

ନୀଳମଣିଙ୍କ ସ୍ମୃତି ଟିକିଏ ଫେରି ଆସିଲେ ଟିକିଏ ହଜି ଯାଉଛି । ସେ ଭୁଲି ଯାଇଛନ୍ତି ବିଶ୍ୱନାଥ ଚାଲିଗଲା ପରଠାରୁ ଝରକା ପାଖରୁ ପଲଙ୍କଟାକୁ ବହୁତ ଦୂରକୁ ଘୁଞ୍ଚାଇ ଆଣିଥିଲେ ସେ । ସେ ପଟର ଝରକା ଦୁଇଟା ବରାବର ବନ୍ଦ ହୋଇ ରହୁଥିଲା । ଆଜି ମଧ୍ୟ ବନ୍ଦ ହୋଇ ରହିଛି !

—ମଣି, ଛାତ ଉପରକୁ ଯିବ ? ମୁଁ ତମ ହାତ ଧରି ନେଇଯିବି ।

—ଯିବା ଛାତ ଉପରକୁ ? ଚଞ୍ଚଳ ଚାଲ । ଏ ଘରଟା ଭିତରେ ଏତେ ଦିନ ହେଲା ବନ୍ଦ ହୋଇ ରହି ରହି ମୋ ନିଃଶ୍ୱାସ ବନ୍ଦ ହୋଇ ଯାଉଥିଲା । ଛାତ ଉପରେ ବସି ତମର କବିତା ଶୁଣିବି, ଚନ୍ଦ୍ର ଆଲୁଅରେ ଦେଖିବି ପୃଥିବୀର ସୁନ୍ଦର ରୂପକୁ । ଜାଣିଛ, ସ୍ମିତା ମଧ୍ୟ ଅତି ସୁନ୍ଦର ଭାବରେ କବିତା ଆବୃତ୍ତି କରୁଛି, ଠିକ୍ ତମରି ପରି । କାଲି ସକାଳେ ତମେ ତା'ର ଆବୃତ୍ତି ଶୁଣିବ...

—ନିଶ୍ଚୟ ଶୁଣିବି । ଏବେ ତମ ଦେହ କିପରି ଲାଗୁଛି ? ଆହା ! କେତେ ବେଶୀ କଷ୍ଟ ପାଇଲ ତମେ ମଣି, କେତେ କଷ୍ଟ !

ତାଙ୍କର ଦୁଇ ହାତକୁ ଧରିଛନ୍ତି ବିଶ୍ୱନାଥ ।

ହସି ହସି ନୀଳମଣି କହିଲେ—ଆଉ କଷ୍ଟ ଲାଗୁନି, ସବୁଯାକ ଦୁଃଖ କଷ୍ଟ ତମକୁ ଦେଖିଲା କ୍ଷଣି ଭୁଲିଗଲି ମୁଁ । ...ହେଲେ ରାତି କିପରି ହେଲା ? ଏବେ ତ ସକାଳ ହୋଇଥିଲା । ସ୍ୱରୂପାକୁ ପରା ରାଧାଗୋବିନ୍ଦଙ୍କ ମନ୍ଦିରକୁ ପଠାଇଥିଲି ପିଲାମାନଙ୍କ ସହିତ, ଆଜି ସେଠାରେ ସାଧୁ ସନ୍ଥଙ୍କ ଅନ୍ନଭୋଜନ ବ୍ୟବସ୍ଥା ଥିଲା । କାହିଁ, ସେମାନେ ତ ଆହୁରି ଫେରି ଆସି ନାହାନ୍ତି ! ସ୍ୱରୂପା ମଧ୍ୟ ଫେରିନି, ଆହୁରି ଫେରିନି ! କି ଆଶ୍ଚର୍ଯ୍ୟ, କାହିଁକି ସେମାନେ ଫେରି ନାହାନ୍ତି ଏ ପର୍ଯ୍ୟନ୍ତ ? ...ସ୍ୱରୂପା ମତେ ଦେଖା କଲାନି । କେତେବେଳେ ପୁଣି ଏତେ ରାତି ହୋଇଗଲା ଯେ ? ଲାଗୁଛି ସମସ୍ତେ ଶୋଇ ପଡ଼ିଲେଣି ।

—ମଣି, ଚାଲ, ଛାତ ଉପରକୁ ଯିବା...ପୂର୍ଣ୍ଣିମାର ଚନ୍ଦ୍ର କିରଣ ଦେଖିବନି ?

ଏଥର ଆବେଗରେ ନିଜ କପାଳ ଉପରେ ରହିଥିବା ସ୍ୱାମୀଙ୍କ ହାତ ଉପରେ ହାତ ରଖିଲେ ନୀଳମଣି, ମଧୁର ଭାବରେ ହସିଲେ । ଭାବିଲେ ବିଶ୍ୱନାଥଙ୍କ କଥାର ଧରଣ ସବୁବେଳେ ଏମିତି, କହିଲେ—ପିଲାଙ୍କ କଥା ଟିକେ ବୁଝିଥିଲେ ହୋଇଥାନ୍ତା, ସେମାନଙ୍କୁ ଦେଖିବାକୁ ତମର ଇଚ୍ଛା ହେଉନି ! ସେମାନେ ମନ୍ଦିରକୁ ଯାଇଥିଲେ ।

ବିଭ୍ରାନ୍ତି ଭିତରେ ଜ୍ଞାନର ଆଲୋକ ମୁହୂର୍ତ୍ତକ ପାଇଁ ଝଲସି ଯାଉଛି, ଅତୀତ ଓ ବର୍ତ୍ତମାନ ଏକାକାର ହୋଇଯାଉଛି । ନୀଳମଣି ଭାରସାମ୍ୟ ରଖି ପାରୁନାହାନ୍ତି - ଭାରସାମ୍ୟ ରଖି ପାରୁ ନାହାନ୍ତି ନିଜ କଥାର !

ମୃତ୍ୟୁର ଅଗାଧ ସମୁଦ୍ର ଭିତରେ ବୁଡ଼ି ଯାଉ ଯାଉ ମଣିଷର ଅବସ୍ଥା କ'ଣ ଏଭଳି ହୁଏ ? ଅତୀତ ଓ ବର୍ତ୍ତମାନକୁ ଏକା ସଙ୍ଗେ ଉପଲବ୍ଧି କରି ଦିଗହରା ହୋଇଯାଏ ମଣିଷ ?

—ମଣି, କାଲି ମୁଁ ଦେଖିବି ସମସ୍ତଙ୍କୁ । ସେମାନେ ସମସ୍ତେ ବଡ଼ ହୋଇଗଲେଣି, ଆମର ଆଉ ଭାବିବାର କ'ଣ ଅଛି ? ଉଠ, ମୋ ହାତ ଧର—

—କେଉଁଠାକୁ ମୁଁ ଯିବି ?

—ଏ ପୃଥିବୀର ସୁନ୍ଦର ରୂପକୁ ଦେଖିବାକୁ ।

ନୀଳମଣି ଆନନ୍ଦରେ ହସିଲେ । କହିଲେ—ଦେଖୁଛି, ତମେ ଠିକ୍ ସେମିତି ରହିଛ । ଚାଲ, ଆଉ ଡେରି କରିବାନି । ସମସ୍ତେ ନିଦରୁ ଉଠି ପଡ଼ିବେ ଯେ !

x x x

ବଡ଼ମା'ଙ୍କ ଖାଇବା ଠାଆର ବନ୍ଦୋବସ୍ତ କରିବା ପାଇଁ ସୁଦାମ ଆସିଲା । ଦେଖିଲା ନିଜର କପାଳ ଉପରେ ହାତଟି ରଖି ପରମ ଶାନ୍ତିରେ ଶୋଇଛନ୍ତି ନୀଳମଣି ।

ଟେବୁଲ, ଟୁଲ୍ ପ୍ରଭୃତି ଯଥାସ୍ଥାନରେ ରଖି ଓଦା କନାରେ ପୋଛି ସେ ଚାଲିଗଲା ପରେ ସୁଜାତା ଆସିଲେ । ତା ପଛେ ପଛେ ଖାଇବା ଜିନିଷ ଥାଳିରେ ସଜାଡ଼ି, ଥାଳିରେ ଘୋଡ଼ାଇ ଆସିଛି ପଦବୋଉ । ସୁଜାତା ନିଜେ ଧରିଥିବା ପାଣି ଗିଲାସ, ମିଠା ଆଉ ଫଳ ରଖିଲେ ଟୁଲ ଉପରେ । ପଦବୋଉ ସଜାଡ଼ି ଦେବାକୁ ଲାଗିଲା ।

ଘରର ସମସ୍ତେ ପ୍ରାୟ ଖାଇ ସାରିଲେଣି ସୁଜାତା ଛଡ଼ା । ଦେବବ୍ରତ ଡାକ୍ତରଖାନାରୁ ଆସିଲେ ସେ ଦୁହେଁ ମିଶି ଖାଇବେ । ପିଲାମାନେ, ସତ୍ୟବ୍ରତ, ସୁନନ୍ଦା, ପ୍ରଭାବତୀଙ୍କୁ ଖୁଆଇଲା ପରେ ନୀଳମଣିଙ୍କ ପାଖରେ ବସି ତାଙ୍କୁ ଖୁଆଇବାକୁ ଆସିଥିଲେ ସୁଜାତା ।

ଜିନିଷ ଗୁଡ଼ାକ ଯଥା ସ୍ଥାନରେ ରଖାଗଲା ପରେ ଅତି ଧୀରେ ସେ ଡାକିଲେ—ବଡ଼ମା, ଖାଇବ ଉଠ, ଭାତ ବଢ଼ା ହେଲାଣି ।

ତଥାପି ନୀଳମଣିଙ୍କ ନିଦ ଭାଙ୍ଗିଲା ନାହିଁ ଦେଖି କପାଳ ଉପରେ ରହିଥିବା ତାଙ୍କର ସେ ହାତଟା ଉପରେ ହାତ ରଖି ଆଉଥରେ ଡାକିବାକୁ ଗଲେ ସୁଜାତା—ବଡ଼—ମା !

ପର ମୁହୂର୍ତ୍ତରେ ଏକ ଆର୍ତ୍ତଚିତ୍କାର ବାହାରିଗଲା ତାଙ୍କ କଣ୍ଠରୁ । ସେ କହିଲେ, ପଦବୋଉ, ଶୀଘ୍ର ଯାଅ ବଡ଼ବାବୁଙ୍କ ଡାକି ଆଣିବ । ସୁପ୍ରକାଶକୁ କହିଦେବ ସେ ଡାକ୍ତରଖାନାକୁ ଯାଇ ସାନବାବୁଙ୍କୁ ନେଇ ଆସିବ ଗାଡ଼ିରେ । ସ୍ୱରୂପା, ସ୍ମିତା, ଲୀନା, ଆଉ ହଁ, ନାନୀଙ୍କୁ—ଯାଅ ଶୀଘ୍ର, ହଁ ।

ଅସଂଲଗ୍ନ ଭାବରେ କଥାଗୁଡ଼ାକ କହି ଯାଉଥିଲେ ସୁଜାତା ନୀଳମଣିଙ୍କ ନାଡ଼ୀ ଉପରେ ହାତ ରଖି ।

ଶେତା ପଡ଼ିଯାଇଥିବା ତାଙ୍କ ମୁହଁର ଅବସ୍ଥା ଦେଖି କ'ଣ ହୋଇଛି ପଚାରିବାର ସାହସ ହେଲାନି ପଦବୋଉର । ଛାନିଆ ହୋଇ ଦଉଡ଼ି ଚାଲିଗଲା ସେ ।

ବିରାଟ ପଲଙ୍କଟା ଉପରେ ବଡ଼ମା'ଙ୍କ ପାଖରେ ବସିପଡ଼ି ସ୍ତମ୍ଭିତା ସୁଜାତା ଚାହିଁଥିଲେ ସେହି ସୁପ୍ତ ମୁହଁଟିକୁ । ଆନନ୍ଦରେ, ହସରେ ଉଛୁଳି ପଡୁଛି ଯେପରି ନୀଳମଣିଙ୍କ ମୁହଁ । ଏକ ବିଜୟିନୀ ସାମ୍ରାଜ୍ଞୀ ପରି ଦିଶୁଛନ୍ତି ସେ ।

ଜୀବନ ଓ ମୃତ୍ୟୁ ଭିତରେ ଦୂରତା କେତେ ?

ସମସ୍ତେ ଆସିଲେ । ସୁପ୍ରକାଶ ଦଉଡ଼ିଯାଇ ଦେବବ୍ରତକୁ ଡାକ୍ତରଖାନାରୁ ଡାକି ଆଣିଲା, ତା ସଙ୍ଗେ ଅନ୍ୟ ଦୁଇଜଣ ଡାକ୍ତର ମଧ୍ୟ ଆସିଥିଲେ । ଯେ ଯେଉଁଠି ଯେମିତି ଥିଲେ ଶୁଣିଲାମାତ୍ରେ ଦଉଡ଼ି ଆସିଲେ ।

ସେହି ବିରାଟ କାରୁକାର୍ଯ୍ୟମଣ୍ଡିତ ସୁଦୃଶ୍ୟ ପଲଙ୍କଟି, ଯାହା ଉପରେ ଦିନେ ରଚନା କରାଯାଇଥିଲା ତାଙ୍କର ଫୁଲ ଶଯ୍ୟା, ସେହି ପଲଙ୍କର ବିସ୍ତୃତ ହଂସ ପରି ଧଳା ଓ କଅଁଳ ଶେଯ ଉପରେ ଶୋଇ ରହିଛନ୍ତି ନୀଳମଣି ଜଣେ ରାଜରାଜେଶ୍ୱରୀ ପରି ! ଦେହର ଅତି ଶୁଭ୍ର ବର୍ଣ୍ଣ ପରି ଶୁଭ୍ର ଏକ ବସ୍ତ୍ରରେ ଆବୃତ ସେଇ ନିରାଭରଣ ଦେହ ଯେପରି ଏକ ଅଲୌକିକ ଶୁଭ୍ରବର୍ଣ୍ଣର ଆଲୋକରେ ହିଁ ଉଦ୍‌ଭାସିତ ହେଉଛି । ସୂର୍ଯ୍ୟର କିରଣ ପରି ଉଦ୍ଭାସିତ ହେଉଛି ଏକ ଶୁଚିମନ୍ତ ଶୁଭ୍ରତା ।

ପିଲାଗୁଡ଼ିକ ବିକଳରେ ଯେ ଯେଉଁଠି ପାରିଲେ ଲୋଟି ପଡ଼ିଛନ୍ତି ପଲଙ୍କଶାୟିନୀ ନୀଳମଣିଙ୍କ ଉପରେ ! କିଏ ନୀଳମଣିଙ୍କ ପାଦ ଉପରେ ତ କିଏ ଗୋଡ଼ ଉପରେ, କିଏ ତାଙ୍କ କୋଳରେ ତ କିଏ ତାଙ୍କ ଛାତିରେ ମୁହଁ ଲୁଚାଇ ଦେଇ ଛାତିଫଟା କାନ୍ଦରେ ଗୁମୁରି ଉଠୁଛନ୍ତି ! ସେ ଯେ ସମସ୍ତଙ୍କର !

ପାଦ ଉପରେ ମୁଣ୍ଡ ରଖି ମୂର୍ଚ୍ଛା ହୋଇଗଲା ପରି ପଡ଼ି ରହିଛନ୍ତି ସତ୍ୟବ୍ରତ, ଭୂମିତଳଟାରେ ଲୋଟିପଡ଼ି କାନ୍ଦୁଛନ୍ତି ସୁନନ୍ଦା—ଅପରାଧବୋଧ ଯେପରି ତାଙ୍କ ଛାତି ଉପରେ ଲୁହାର ମୁଗୁର ପିଟୁଛି, ମନେ ପଡୁଛି କେତେଶହ ଥର ସେ ମନେ ମନେ ନୀଳମଣିଙ୍କ ମୃତ୍ୟୁକୁ କାମନା କରି ନଥିଲେ ? ହେଇଟି ପରା ଆଜି କିଛି ସମୟ ଆଗରୁ ସେ ଅଭିଶାପ ଦେଉଥିଲେ ତାଙ୍କୁ !

ସୁନନ୍ଦା ଭାବୁଥିଲେ—ହେ ଭଗବାନ୍ ! ମୋ'ର ପାପରୁ ମତେ ଆଉ କ'ଣ କେବେ ମୁକ୍ତି ମିଳିବ ? ଦିନଟିଏ କେବେ ସେ ଭଗବାନଙ୍କ ପାଖରେ ପ୍ରାର୍ଥନା କରିଛନ୍ତି ନୀଳମଣିଙ୍କ ମଙ୍ଗଳ ପାଇଁ ? ନାଁ, କେବେ ନୁହେଁ, ତେବେକେ ନୀଳମଣିଙ୍କ ମୃତ୍ୟୁ କାମନା କରିବାକୁ ତ ପଛେଇ ନ ଥିଲେ ! ପୁ'ଣି ସେ କଥା ନିର୍ଲଜ୍ଜୀପରି ଖୋଲାଖୋଲି ସମସ୍ତଙ୍କ ଆଗରେ ବ୍ୟକ୍ତ କରିଛନ୍ତି !

ସୁନନ୍ଦାଙ୍କର ବ୍ୟସ୍ତ ହେବାର କିଛି ନଥିଲା । ଏ ସଂସାରରେ ମନୁଷ୍ୟ ଜରା ହେଉ ବା ରୋଗ ହେଉ ଦୁଇଟା ଦ୍ୱାରା ଆକ୍ରାନ୍ତ ହୋଇଯାଇ ଅଦରକାରୀ ହୋଇଗଲେ କେତେଜଣ

ପ୍ରିୟଜନ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିଥାନ୍ତି ସେମାନଙ୍କ ଆରୋଗ୍ୟ ପାଇଁ, ସେମାନଙ୍କ ଦୀର୍ଘ ଜୀବନ ପାଇଁ ? ବରଂ ସେବାର ଭାର ଗ୍ରହଣ କରିଥିବା ପାଇଁ ମନୁଷ୍ୟ ଯେପରି କ୍ଲାନ୍ତ ହୋଇଯାଏ । ସମୟ ସମୟରେ ଅଦରକାରୀ ମଣିଷଗୁଡ଼ାକଙ୍କ ମୃତ୍ୟୁ କାମନା କରି ନିଜର ମୁକ୍ତି ଖୋଜେ ।

ସଂସାରର ନିୟମ ଏହିପରି ।

ସ୍ୱରୂପାର ମନ ଭିତରେ ମଧ୍ୟ ସେହି ଅପରାଧବୋଧ ଆଉଟି ହେଉଛି । ଏହି ଟିକକ ଆଗରୁ ସାନ ଖୁଡ଼ୀମା ଯାହା କହିଥିଲେ, ତାହା ଏତେ ଶୀଘ୍ର ସତ ହୋଇଯିବ ବୋଲି କିଏ ଜାଣିଥିଲା ? ସେ ଭାବୁଥିଲା—ହେ ଭଗବାନ୍ ! ମୁଁ କ'ଣ କଲି ! ମୋ ବଡ଼ମା'ଙ୍କର ମୃତ୍ୟୁର କାରଣ ହୋଇଗଲି ମୁଁ ? ମଧୁଛନ୍ଦା ତାଙ୍କୁ ଏହିପରି କଷ୍ଟ ଦେଇ ଚାଲିଗଲା ପରେ ମୁଁ କାହିଁକି ତାଙ୍କ କଥାର ଅବାଧ ହୋଇ ତାଙ୍କ ପ୍ରାଣରେ ଆହୁରି ଅଧିକ ଅଧିକ କଷ୍ଟ ଦେଲି ? ଆଘାତ ପରେ ଆଘାତ ପାଇ ବଡ଼ମା' ଆଉ ସହି ପାରିଲେନି, ହୃଦ୍‌ଯନ୍ତ୍ରର କ୍ରିୟା ତାଙ୍କର ବନ୍ଦ ହୋଇଗଲା ହଠାତ୍ । ସେ ଚାଲିଗଲେ । ଏ ପାପରୁ ମୋର ମୁକ୍ତି କାହିଁ ?

ସ୍ମିତାର ମନେ ପଡୁଛି—ସକାଳେ ବଡ଼ମା କହିଥିଲେ ତାକୁ 'ସ୍ମିତା ! ସ୍ୱରୂପା ମନ୍ଦିରରୁ ଫେରିଲା ପରେ ତା ସହିତ ମିଶି ମୋ ପାଖକୁ ଟିକିଏ ଆସିବୁ ।' ବଡ଼ମା'ଙ୍କ ଉପରେ ଅଭିମାନ କରି ସେ ଆସି ନ ଥିଲା ।

ସୌମ୍ୟା ଝରକା ପାଖରେ ଠିଆହୋଇ ଚାହିଁ ରହିଛି ସ୍ନେହମୟୀ ବଡ଼ମା'ଙ୍କ ମୁହଁକୁ । ଆଜି ସକାଳେ ବଡ଼ମା'ଙ୍କଠାରୁ ବିଦାୟ ନ ନେଇ ସେ ଚାଲିଯାଇଥିଲା, ଯାହାକି ଜୀବନରେ କେବେ ହେଲେ ସେ କରି ନଥିଲା !

ଦେବବ୍ରତ ଦୁଃଖ କରୁଛନ୍ତି, ମଧୁଛନ୍ଦା ମରିବା ପରେ ଏ କେତେ ଦିନ ହେଲା ସୁନନ୍ଦା ଓ ସତ୍ୟବ୍ରତଙ୍କ ପାଇଁ ବ୍ୟସ୍ତ ରହି ନୀଳମଣିଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ନାହାନ୍ତି ସେ ।

ଯେତେଦିନ ପର୍ଯ୍ୟନ୍ତ ପୁରାତନ ବିରାଟ ବଟ ବୃକ୍ଷଟି ବଞ୍ଚି ରହିଥାଏ, ତା'ର ଆଶ୍ରୟରେ ଶହ ଶହ ପକ୍ଷୀ ବେଶ୍ ନିଶ୍ଚିନ୍ତରେ ବାସ କରିଥାନ୍ତି । ବାଟୋଇମାନେ ବିଶ୍ରାମ ନେଇଥାନ୍ତି, ବିପଣୀକାରମାନେ ସଜାଇଥାନ୍ତି ସେମାନଙ୍କ ବିପଣୀ । କୌଣସି ଦିନ ବଟ ବୃକ୍ଷ ବିଷୟରେ ସେମାନେ କେହି ଭାବି ନଥାନ୍ତି, ଭାବିବାକୁ ପଡ଼ି ନଥାଏ ସେମାନଙ୍କୁ । କିନ୍ତୁ ଯେଉଁଦିନ ଏକ ଆକସ୍ମିକ ଝଡ଼ରେ ବଟ ବୃକ୍ଷଟି ମୂଳ ସହିତରେ ଉପୁଡ଼ି ଯାଇ ଭୂତଳଶାୟୀ ହୋଇଯାଏ, ବଟ ବୃକ୍ଷ ପାଇଁ ସମସ୍ତଙ୍କ ହୃଦୟରେ ଜାଗ୍ରତ ହୁଏ ହାହାକାର । ସମସ୍ତେ ହଜାଇ ଦିଅନ୍ତି ନିଜର ଆଶ୍ରୟସ୍ଥଳୀ ।

ଶତାୟୁ ହେଲେ ମଧ୍ୟ ଏ ଘରେ ନୀଳମଣିଙ୍କର କେତେ ଯେ ଆବଶ୍ୟକତା ରହିଥିଲା, ସେ ଚାଲିଗଲା ପରେ ସେ କଥା ଜଣାପଡୁଛି ସମସ୍ତଙ୍କୁ । ପ୍ରତିଟି ବିଷୟରେ ଯେ ତାଙ୍କର ପରାମର୍ଶ

ଦରକାର ପଡୁଛି । ଅନେକ ସମୟରେ ସେମାନେ ଭୁଲରେ ଦଉଡ଼ି ଯାଉଛନ୍ତି ତାଙ୍କରି ଉଦ୍ଦେଶ୍ୟରେ, ସେହି ଶୟନକକ୍ଷଟି ଆଡ଼କୁ, ପୁଣି ମନେ ପଡ଼ିବାରୁ ଅଧାବାଟରେ ଫେରି ଆସୁଛନ୍ତି ଦୁଃଖରେ ଅଧୀର ହୋଇଯାଇ, ନିହାତି ଅସହାୟ ମନେ କରୁଛନ୍ତି ନିଜକୁ !

ପାଞ୍ଚ ବର୍ଷ କି ଦଶ ବର୍ଷ ନୁହେଁ, ଦୀର୍ଘ ପ୍ରାୟ ଶହେଟି ବର୍ଷର ଜୀବନ ! ଖାଲି ଜୀବନ ନୁହେଁ, ପୃଥିବୀର ଅଭିଜ୍ଞତାରେ ପରିପୂର୍ଣ୍ଣ ମହାମୂଲ୍ୟବାନ୍ ଜୀବନ ।

ନବେ ଆଉ ଦୁଇ ସୁଦୀର୍ଘ ବୟାନବେ ବର୍ଷ ତଳେ ନୀଳମଣି ଏ ଘରକୁ ଆସିଥିଲେ ଏକ ମହାଉତ୍ସବମୁଖରିତ ଆନନ୍ଦମୟ ପରିବେଶ ଭିତରେ ସାତ ଆଠ ବର୍ଷର ଏକ ବାଳିକା ବଧୂ ରୂପରେ ।

ଆଜି ଏତେ ବର୍ଷ ପରେ ସେ ଚିରକାଳ ପାଇଁ ତାଙ୍କର ଏ ପରମପ୍ରିୟ ଦୁଃଖ-ସୁଖର ସ୍ମୃତି ବିଜଡ଼ିତ ଘରଟାକୁ ଛାଡ଼ି ଦେଇ ମହାର୍ଘ ଅତି ସୁନ୍ଦର ନୂତନ ବସ୍ତ୍ର, ଚନ୍ଦନ ଟିପା ଓ ବିଭିନ୍ନ ରଙ୍ଗର ସୁବାସିତ ବର୍ଣ୍ଣବୈଚିତ୍ର୍ୟରେ ଉଦ୍ଭାସିତ ପୁଷ୍ପମାଲ୍ୟର ଅପୂର୍ବ ସାଜ ସମ୍ଭାରରେ ଠିକ୍ ବୋହୂଟିଏ ପରି ସୁସଜ୍ଜିତା ହୋଇ ମହାସମାରୋହରେ ରାଜରାଣୀ ପରି ତାଙ୍କରି ରୂପଦେଈପୁରର ଅଗଣିତ ଜନସମୁଦ୍ର ଭିତରେ ଚାଲିଗଲେ ମନୁଷ୍ୟର ଚିର ବିଶ୍ରାମର ସ୍ଥଳ ସେହି ଶ୍ମଶାନ ଭୂମିକୁ, ଚାଲିଗଲେ ସ୍ୱାମୀଙ୍କ ସହିତ ମିଳିତ ହେବାକୁ । ସେ ନିଜେ ସ୍ୱାମୀଙ୍କ ସମାଧି ପାଖରେ ଯେଉଁ ସ୍ଥାନଟି ଏତେ ବର୍ଷ ହେଲା ସୁରକ୍ଷିତ କରି ରଖିଥିଲେ, ସେହି ସ୍ଥାନଟିରେ ଚିତା ନିଆଁରେ ତାଙ୍କର ମର ଶରୀରର ସମସ୍ତ ଚିହ୍ନ ବିଲୀନ ହୋଇଗଲା ।

ଶୋକାର୍ତ୍ତ ଜନତା ଲୁହରେ ଭାସୁ ଭାସୁ ବିଦାୟ ଦେଲେ ସେମାନଙ୍କ ରାଣୀମା'ଙ୍କୁ । ସମସ୍ତେ ଅନୁଭବ କଲେ ଯେପରି ପୂରା ରୂପଦେଈପୁରଟା ଅନାଥ ହୋଇଗଲା ।

## (୨୦)

ସମୟ ତ କୌଣସି କଥାକୁ ଅପେକ୍ଷା କରେ ନାହିଁ । ସେ ତା'ର ବହି ଚାଲେ । ନୀଳମଣିଙ୍କ ଆକସ୍ମିକ ମୃତ୍ୟୁ ଯେପରି ସମସ୍ତଙ୍କୁ ଅଦ୍ଭୁତ ଭାବରେ ପରିବର୍ତ୍ତିତ କରି ଦେଇଛି । ପରିବର୍ତ୍ତିତ କରିଛି ସୁନନ୍ଦାଙ୍କୁ ମଧ୍ୟ, ପରିବର୍ତ୍ତିତ କରିଛି ସ୍ୱରୂପାକୁ । ଯେଉଁ ପରିଚାରିକାମାନେ ନୀଳମଣିଙ୍କ ଦୀର୍ଘ ଜୀବନ ପାଇଁ ପରୋକ୍ଷରେ ତାଙ୍କୁ ବ୍ୟଙ୍ଗ କରୁଥିଲେ, ସେମାନେ ବଦଳି ଯାଇଛନ୍ତି ଆଶ୍ଚର୍ଯ୍ୟ ଭାବରେ । ନୀଳମଣିଙ୍କୁ ମନେପକାଇ ଅନବରତ ଆଖିରୁ ଲୁହ ଢାଳୁଛନ୍ତି ।

ସଂସାରଟା କି ଆଶ୍ଚର୍ଯ୍ୟ ସତରେ ।

ବଞ୍ଚିଥିଲାବେଳେ ଯାହାର ମହତ୍ତ୍ୱ ଲୋକମାନେ ବୁଝିପାରି ନାହାନ୍ତି ,ଆଜି ଝୁରି ହେଉଛନ୍ତି ତାଙ୍କରି ପାଇଁ ସେ ଚିରଦିନ ଲାଗି ଚାଲିଗଲା ପରେ । ମଣିଷର ପ୍ରକୃତି ଏହିପରି—ହାତ ମୁଠାରେ ଅମୂଲ୍ୟ ରତ୍ନ ପାଇ ସେ ରତ୍ନର ମୂଲ୍ୟ ବୁଝି ପାରେନି, ଖଣ୍ଡେ ଅଦରକାରୀ ପଥର ବୋଲି ଭାବି ଫୋପାଡ଼ି ଦିଏ ।

ତା'ପରେ ଅନୁତାପ କରେ ସାରା ଜୀବନ ଧରି ହଜାଇ ଦେଇଥିବା ପାଇଁ ।

ସତ୍ୟବ୍ରତଙ୍କୁ ଅତିମାତ୍ରାରେ ଆଘାତ ଲାଗିଛି । ମଧୁଛନ୍ଦାର ସାଙ୍ଘାତିକ ମୃତ୍ୟୁ ସାଙ୍ଗକୁ ବଡ଼ମା'ଙ୍କ ମୃତ୍ୟୁ ତାଙ୍କୁ ଯେପରି ଚେତନ ବିହୀନ ବ୍ୟକ୍ତି ପରି ଆଚ୍ଛନ୍ନକରି ରଖିଛି । ଏ କେତେଦିନ କିପରି କେଜାଣି ଯନ୍ତ୍ରଚାଳିତ ପରି କ୍ରିୟାକର୍ମତକ ସାରିଦେବା ପରେ ଅଧିକାଂଶ ସମୟ ସେ ପଡ଼ି ରହୁଛନ୍ତି ବଡ଼ମା'ଙ୍କର ସେ ପଲଙ୍କଟା ଉପରେ । ସେ କକ୍ଷଟାକୁ ଛାଡ଼ି କେଉଁଆଡ଼କୁ ଯିବାକୁ ତାଙ୍କ ମନ ଚାହୁଁ ନାହିଁ । ଦିନ ରାତି ସେ କଟାଉଛନ୍ତି ସେ ଘରେ ।

ଭାଇଙ୍କର ଏ ଅବସ୍ଥା ଦେଖି ଦେବବ୍ରତ ପରାମର୍ଶ ଦେଇଥିଲେ ଚାକିରିରେ ଯୋଗଦେବାକୁ—ମନଟାକୁ କୌଣସିମତେ କର୍ମରେ ନିଯୁକ୍ତ କରିଦେଇ ପାରିଲେ ହୁଏତ ଏ ଅବସନ୍ନ ଭାବ କଟିବ ବୋଲି ସେ ଭାବିଥିଲେ । ଦେବବ୍ରତ ଚିକିତ୍ସକ, ଜଣେ ଚିକିତ୍ସକଙ୍କ ମତ ସେ ଦେଇଛନ୍ତି ।

କିନ୍ତୁ ସତ୍ୟବ୍ରତଙ୍କ ମନରେ ସେପରି ଆଉ ଚାକିରିରେ ଯୋଗଦେବାର ସ୍ପୃହା ନାହିଁ ।

ସୁପ୍ରକାଶ ଓ ମଣ୍ଟୁ ଚାଲିଯାଇଛନ୍ତି ।

ଆଉ ସ୍ୱରୂପା ? ତା'ର ଅବସ୍ଥା ମଧ ସତ୍ୟବ୍ରତଙ୍କ ପରି । ଏକ ନିଶ୍ଚେଷ୍ଟତା ଘେରି ଦେଇଛି ତାକୁ । ଏତେଦିନକେ ସେ ଯେପରି ବୁଝିପାରିଛି ତା'ର ସମସ୍ତ ମାନସିକ ଶକ୍ତିର ମୂଳ ଉତ୍ସ କେଉଁଠି ରହିଥିଲା, ବଡ଼ମା'ଙ୍କ ଛତ୍ରଛାୟା ତଳେ ଥାଇ ସେ ଯେପରି ଶକ୍ତି ଆହରଣ କରିଥିଲା ସେହି ବଡ଼ମା'ଙ୍କଠାରୁ । ଏକ ଚିରସ୍ଥାୟୀ ନିରାପଦ ଆଶ୍ରୟ ଭିତରେ ରହିପାରି ଥିବାରୁ ମନକୁ ଛୁଟାଇ ଦେଇ ପାରିଥିଲା କେଉଁ କଳ୍ପଲୋକ ଆଡ଼କୁ ।

ବର୍ତ୍ତମାନ ମୁଣ୍ଡ ଉପରର ସେହି ଏକାନ୍ତ ନିରାପଦ ଆଶ୍ରୟ ଟିକକ ହରାଇ ଦେଇଛି ସେ । ଆଉ ଆଶ୍ରୟ ହରାଇ ଦେବା ପରେ ସେ ବୁଝିପାରୁଛି ଆଶ୍ରୟର ପ୍ରୟୋଜନୀୟତା । ମନେପଡୁଛି ବଡ଼ମା'ଙ୍କ ଉପଦେଶ ଗୁଡ଼ିକ—ଜୀବନ କେବେ ବିନା ଆଶ୍ରୟରେ ସହଜରୂପେ ଚଳି ପାରିବ ନାହିଁ ସ୍ୱରୂପା ! ଭାଇ ଭଉଣୀ, ବାପ ମାଆ, ବନ୍ଧୁ କିମ୍ବା ସ୍ୱାମୀ ସନ୍ତାନ ଯାହାକୁ ହେଲେ ଆଶ୍ରୟ କରିବାକୁ ହିଁ ପଡ଼ିବ ତତେ । କିଛି ନ ହେଲେ ବିଶ୍ୱସ୍ତ ପରିଚାରିକାଟିଏ ଦରକାର । ମଣିଷର ଦରକାର ସାଥୀଟିଏ...ଏକ ସନ୍ନ୍ୟାସୀଙ୍କ ପାଇଁ ମଧ ଦରକାର ହୁଅନ୍ତି ଶିଷ୍ୟବୃନ୍ଦ, ଜଣେ ଭିକ୍ଷୁ ପାଇଁ ଦରକାର ସଂଘ । ଏକାକୀତ୍ୱର ବୋଝ ବୋହିବାକୁ ବହୁତ କମ ଲୋକ ସକ୍ଷମ ଏ ପୃଥିବୀରେ ।

ସ୍ୱରୂପାର ଭବିଷ୍ୟତ୍‌ର ପରିକଳ୍ପନା ଛିନ୍ନଭିନ୍ନ ହୋଇଯାଇଛି । ଏକ ନୀଡ଼ହରା ପକ୍ଷୀର ଅସହାୟତା ଅନୁଭବ କରି ବିବଶ ହୋଇ ପଡ଼ିଛି ସେ ।

ଆଉ ସୁନନ୍ଦା ? ସେ ସ୍ତବ୍‌ଧ ହୋଇ ଯାଇଛନ୍ତି । ତାଙ୍କର ସମସ୍ତ ପାଗଳାମି ଯେପରି ଏକା ଦିନକେ ଛାଡ଼ିଯାଇଛି । ଅନୁତାପରେ, ଲଜ୍ଜାରେ ଦଗ୍‌ଧ ହୋଇ ଯାଉଛନ୍ତି ସେ । ସ୍ୱରୂପା କିମ୍ବା ସ୍ମିତାକୁ ମୁହଁ ଦେଖାଇବାକୁ ତାଙ୍କର କୁଣ୍ଠାବୋଧ ହେଉଛି । ତେଣୁ ଅଧିକାଂଶ ସମୟ ସେ କଟାଉଛନ୍ତି ନିଜ କକ୍ଷଟି ଭିତରେ ନଚେତ ଅସୁସ୍ଥ ପ୍ରଭାବତୀଙ୍କ କକ୍ଷରେ । ସମୟ ସମୟରେ ଉଦ୍‌ଭ୍ରାନ୍ତ ପରି ଦଉଡ଼ି ଯାଉଛନ୍ତି ନୀଳମଣିଙ୍କର ସେ ବଡ଼ ତୈଳଚିତ୍ରଟା ପାଖକୁ । ସ୍ତବ୍‌ଧ ଭାବରେ ଚାହିଁରହି ହୁଏତ କ୍ଷମା ପ୍ରାର୍ଥନା କରୁଛନ୍ତି ନିଜ ଆଖିରୁ ଧାର ଧାର ଲୁହ ଝରାଇ ଦେଇ ।

ସାରା ପ୍ରାସାଦ ଭିତରେ କେବଳ ପ୍ରଭାବତୀ କିଛି ବଦଳି ନାହାନ୍ତି । କଥା କହିବାର ଚେଷ୍ଟା କରୁ କରୁ ସେହିପରି ଅବୋଧ ଚିତ୍କାରମାନ କରୁଛନ୍ତି, ନଚେତ୍ ଏକାବେଳକେ ଜଡ଼ିତ କଣ୍ଠରେ ଧ୍ୱନିମାନ ସୃଷ୍ଟି କରି ବୋଧହୁଏ ଅଭିଶାପ ଗୁଡ଼ିକ ଦେଇ ଚାଲିଛନ୍ତି । ସୌଭାଗ୍ୟବଶତଃ କଥାଗୁଡ଼ିକର ଅର୍ଥ ଅଧିକାଂଶ ସମୟରେ ସ୍ପଷ୍ଟ ହେଉନାହିଁ ।

ପ୍ରଭାବତୀଙ୍କର କିଛି ବଦଳି ନାହିଁ, କାରଣ ବହୁତ ଚେଷ୍ଟା କରି ତାଙ୍କଠାରୁ ଗୋପନ ରଖାଯାଇଛି ନୀଳମଣିଙ୍କ ମୃତ୍ୟୁ କଥା । ଡାକ୍ତର ଭାବରେ ଦେବବ୍ରତ ଏ ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

ପ୍ରଥମେ କେତେ ଦିନ କନ୍ଦାକଟା କରି ଅଥୟ ହୋଇଥିଲେ ସୁଦ୍ଧା ସ୍ମିତା ଏବେ ସୁଜାତାଙ୍କ ପଛରେ ବୁଲି ସବୁ କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରି ଚାଲିଛି । ଅଧିକାଂଶ ବିଷୟ ବୁଝାବୁଝିର ଦାୟିତ୍ୱ ଯେପରି ଆପେ ଆପେ ନୀଳମଣିଙ୍କ କାନ୍ଧରୁ ଓହ୍ଲାଇ ଆସିଛି ସ୍ମିତାର କାନ୍ଧ ଉପରକୁ । ପୂର୍ବର ସବୁ ଦୁର୍ବ୍ୟବହାର କଥା ଭୁଲିଯାଇ ପୁଣି ଯତ୍ନ ନେବାକୁ ଆରମ୍ଭ କରିଦେଇଛି ସୁନନ୍ଦାଙ୍କର । ପିଲାଙ୍କ ଯତ୍ନ, ପ୍ରଭାବତୀଙ୍କ ସେବା, ସତ୍ୟବ୍ରତଙ୍କୁ ସାନ୍ତ୍ୱନା ଦେବା ପ୍ରଭୃତି କାର୍ଯ୍ୟରେ ଲିପ୍ତ ରହି ନିଜର କର୍ତ୍ତବ୍ୟ କରିଯାଉଛି ସେ ।

ସେଦିନ ହାତରେ ଚିଠିଟିଏ ଧରି ସ୍ୱରୂପା ଆସି କହିଲା—ଖୁଡ଼ୀମା, ଧାନବାଦରୁ ଚିଠି ଆସିଛି । ଏଥର ଯେମିତି ହେଲେ ଯିବାକୁ ପଡ଼ିବ ମତେ । ହେଲେ ମୁଁ କ'ଣ ମୋ'ର ପାଠରେ ଆଉ ମନ ଲଗାଇ ପାରିବି ? ବଡ଼ମା'ଙ୍କ ସଙ୍ଗେ ମୋ'ର ସବୁତକ ମନୋବଳ ଚାଲିଗଲା । ମୋ ଗବେଷଣା ...କହି-କହିପାରିଲା ନାହିଁ ସେ । ଅଶ୍ରୁରେ ରୁଦ୍ଧ ହୋଇଗଲା ତା'ର କଣ୍ଠସ୍ୱର ।

ସୁଜାତା ସାନ୍ତ୍ୱନା ଦେଲେ—ଧୈର୍ଯ୍ୟ ଧର ସ୍ୱରୂପା, କେତେ ଦିନ ପରେ ଆପେ ଆପେ ସବୁ ଠିକ୍ ହୋଇଯିବ ।

—ତାହାହେଲେ ସ୍ମିତାକୁ ସାଙ୍ଗରେ ନେଇ ପଅର ଦିନ ମୁଁ ବାହାରିଯିବି ।

କିଛି ଦୂରରେ ବସି ସୁନନ୍ଦା ପ୍ରଭାବତୀଙ୍କ ପାଇଁ ଫଳରସ ତିଆରି କରୁଥିଲେ । ଏକଥା ଶୁଣି ହଠାତ୍ କହିଲେ—ନା, ନା ସ୍ୱରୂପା, ସ୍ମିତା ଯିବନି !

ତାଙ୍କ କଥା ଶୁଣି ସୁଜାତା ଓ ସ୍ୱରୂପା ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ତାଙ୍କ ମୁହଁକୁ । ସୁନନ୍ଦା ଉଠିଆସି ସ୍ୱରୂପାର ହାତ ଦୁଇଟାକୁ ନିଜର ଦୁଇ ହାତରେ ଧରିପକାଇ କହିଲେ—ମତେ କ୍ଷମା କରିବୁନି ସ୍ୱରୂପା, ମତେ କ୍ଷମା କରିବୁନି ? ...ସ୍ମିତାକୁ ମୁଁ ଯେଉଁ ଦୁର୍ବ୍ୟବହାର କଲି, ତା'ରି ଫଳରେ ବଡ଼ମା'ଙ୍କ ପ୍ରାଣରେ ବେଶୀ କଷ୍ଟ ହୋଇଗଲା । ନହେଲେ ସେ ହଠାତ୍ ଏମିତି ଏତେ ଶୀଘ୍ର ଚାଲିଯାଇ ନଥାନ୍ତେ ।

ପିଲାଙ୍କ ପରି କାନ୍ଦିଲେ ସୁନନ୍ଦା । କାନ୍ଦି କାନ୍ଦି କହିଲେ—ବଡ଼ମା'ଙ୍କର ଆକସ୍ମିକ ମୃତ୍ୟୁ ପାଇଁ ମୁଁ ଦାୟୀ, ମତେ ମୋ ପାପର ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ସେ ସୁଯୋଗ ତୁ ମତେ ଦେବୁ ।

ଝରଝର ହୋଇ କାନ୍ଦି ପକାଇଲେ ସୁନନ୍ଦା ।

ବିକଳ ହୋଇ ତାଙ୍କର ଲୁହ ପୋଛି ଦେଉ ଦେଉ ସ୍ୱରୂପା କହିଲା—ଥାଉ ବଡ଼ ଖୁଡ଼ୀମା, ତମେ ମନାକଲେ କ'ଣ ମୁଁ ସ୍ମିତାକୁ ନେଇଯାଇ ପାରିବି ? ବର୍ତ୍ତମାନ ତ ତମେ ଆଉ ସାନ ଖୁଡ଼ୀମା ଆମମାନଙ୍କର...

କଥା ସାରି ନ ପାରି ସୁନନ୍ଦାଙ୍କ କାନ୍ଧରେ ମୁହଁ ଲୁଚାଇ କାନ୍ଦି ପକାଇଲା ସେ ।

ଅଶ୍ରୁର ବନ୍ୟାରେ ସୁନନ୍ଦା ମଧ ଭାସୁଥିଲେ । ଏତେ ଦିନକେ ଯେପରି ଏ ପିଲାଗୁଡ଼ିକଙ୍କ ପ୍ରତି ହୃଦୟ ଭିତରେ ଜମି ରହିଥିବା ମଳିନତା ତାଙ୍କର ଧୋଇ ହୋଇଗଲା ।

ମଣିଷ ଦିନେ ନା ଦିନେ ନିଜର ଭୁଲ୍ ବୁଝିପାରେ କିନ୍ତୁ ବହୁତ ବିଳମ୍ବରେ ବୁଝେ ।

କୋହଭରା କଣ୍ଠରେ କହିଲା ସ୍ୱରୂପା—ବଡ଼ମା ଚାଲିଗଲାପରେ ମୁଁ ଆଉ କ'ଣ ବେଶୀ ଦିନ ବଞ୍ଚି ରହିପାରିବି ଖୁଡ଼ୀମା ? ସେ ବିଶ୍ୱାସ ମୋର ଆଉ ନାହିଁ । ଏ ଦୁଃଖ ମୁଁ ଜମା ସହି ପାରିବିନି । ସ୍ମିତା ଆଉ ମଣ୍ଟୁର ଭାର ଆଜିଠୁ ତମେ ନେଲ ଖୁଡ଼ୀମା ।

—ଆଉ ତୋର ଭାରନେବାକୁ ଜଣକୁ ଧରି ନେଇ ଆସିଛି, ଦେଖ୍ ସ୍ୱରୂପା ।

ଶୋକର ସମୁଦ୍ର ଭିତରେ ସୁଜାତାଙ୍କର ଆନନ୍ଦ-ଉଚ୍ଛ୍ୱସିତ କଣ୍ଠସ୍ୱର ଶୁଣି ଦୁଇଜଣଯାକ ଚମକି ପଡ଼ି ଚାହିଁଲେ । ଅଶ୍ରୁଭରା ଆଖିରେ ସ୍ୱରୂପା ଦେଖିଲା କାନିରେ ନିଜ ଆଖିର ଲୁହକୁ ପୋଛୁ ପୋଛୁ ସୌମ୍ୟର ହାତ ଧରି ଘର ଭିତରକୁ ନେଇ ଆସୁଛନ୍ତି ସୁଜାତା । ସୁଜାତାଙ୍କ ଆଖିରେ ଲୁହ ଆଉ ମୁହଁରେ ହସ ।

ସୌମ୍ୟ ଆସିଥିଲା ସୁଜାତାଙ୍କ ପାଖକୁ ନୀଳମଣିଙ୍କ ସମାଧିବେଦୀର ମାର୍ବଲ ବନ୍ଧେଇ କଥା ବୁଝିବାକୁ । ଦ୍ୱାର ମୁହଁରେ ତାକୁ ଦେଖି ଆଗେଇଯାଇ ଆବେଗରେ ତାକୁ ଟାଣି ଆଣିଲେ ସୁଜାତା । ହସି ହସି ସୁନନ୍ଦାଙ୍କୁ ଲକ୍ଷ୍ୟ କରି କହିଲେ—ନାନୀ, ଏ ଝିଅଟାକୁ ମଧ ଛାଡ଼ି ଦିଅନି । ନିଜର ବାପ ଘର ବଂଶ ସହିତ ଶ୍ୱଶୁର ଘର ବଂଶର ବନ୍ଧନ ଆଉଥରେ ବାନ୍ଧିବାକୁ ତମକୁ ଆଉ

ମତେ କେତେଥର ଯେ ନ କହିଥିଲେ ବଡ଼ମା ଅଥଚ ଏ ପାଗଳୀ ଝିଅଟା କିମ୍ଭୂତକିମାକାର ଭାବନା ସବୁ ମୁଣ୍ଡରେ ପୂରାଇ ତାଙ୍କର ସେ ଶେଷ ଏକାନ୍ତ ଇଚ୍ଛାଟିକକ ମଧ ଗ୍ରହଣକଲା ନାହିଁ । ନାନୀ, ତମର ମନେ ପଡୁନି ? ସେଇ ଶେଷ ଦିନ କେତେ ବିକଳ ହୋଇ ସେ କହିଥିଲେ—ମୁଁ ମନେ ମନେ ଗୋଟିଏ ସ୍ୱର୍ଗ ଗଢ଼ିଥିଲି । ଏତେଦିନ ହେଲା ଶେଯରେ ଶୋଇ ଶୋଇ ଇନ୍ଦ୍ରଭବନର ସ୍ୱପ୍ନ ଦେଖିଥିଲି, ହେଲେ ସେଇଟା କାଚ ଘର ଭଳି ଝଣ ଝାଣ ହୋଇ ଭାଙ୍ଗି ଧ୍ୱଂସ ହୋଇଗଲା । ମୋ'ରି ପାଇଁ ମଧୁଛନ୍ଦା ଆତ୍ମହତ୍ୟା କଲା, ସ୍ୱରୂପା ଆଜି ପରିଷ୍କାର କରି କହିଲା, ସେ ସୌମ୍ୟକୁ ବାହାହୋଇ ପାରିବନି । ଦୁଇଟା ସ୍ୱପ୍ନ ମୁଁ ଦେଖିଥିଲି, ଦୁଇଟାଯାକ ଭାଙ୍ଗିଗଲା ।

କହି ନ ଥିଲେ ନାନୀ ? ସେ'ଦିନ ତମ ଦିଅର ବଡ଼ମାଙ୍କୁ କଥା ଦେଇଥିଲେ, ମୁଁ ମଧ କହିଥିଲି—ସ୍ୱରୂପାକୁ କୌଣସିମତେ ବୁଝାଇ ଏ ବାହା ପ୍ରସ୍ତାବରେ ରାଜି କରାଇବୁ ।

ସୌମ୍ୟ ହାତ ଛଡ଼ାଇବା ଚେଷ୍ଟା କରି ଆପତ୍ତିରେ ଜଣାଇଲା—ନା, ନା ଖୁଡ଼ୀମା, ବାହାଘରଟା କ'ଣ ଗୋଟାଏ ପିଲାଖେଳ ହୋଇଛି ? ଛିଃ, ଜଣକର ଅମତରେ...

ସୌମ୍ୟକୁ କଥା ସାରିବାକୁ ନ ଦେଇ ସୁଜାତା କହିଲେ— ସୌମ୍ୟ, ତମ ବଡ଼ ମା ବାହା ହେଲାବେଳକୁ ତାଙ୍କର ମତାମତ କେତେ ନିଆଯାଇଥିଲା ଯେ ? ଦେଖ, ସେହି ପିଲାଖେଳ ବାହାଘରର ପରାକାଷ୍ଠା ଦେଖ । ନିର୍ଦ୍ଦୋଷ ଅନୁରାଗ କ୍ରମେ ଏକ ଅମର ଜ୍ୟୋତି ଶିଖା ପାଲଟେ, ଠିକ୍ ବଡ଼ ମା'ଙ୍କ ହୃଦୟର ପ୍ରେମ ପରି ଚିର ଜ୍ୟୋତିଷ୍ମାନ୍ ହୋଇ ଜଳେ । ଦେଖିବ ସୌମ୍ୟ, ସ୍ୱରୂପା, ତୁ ମଧ ଦେଖିବୁ ବଡ଼ମା'ଙ୍କ ବିଚାର କେବେ ଭୁଲ ହେବନାହିଁ । ବାହା ହେଲେ ତମେ ଦୁହେଁ ଚିରସୁଖୀ ହେବ ।

ପୁଣି ଆପତ୍ତି କରିବାକୁ ଯାଉଥିଲା ସୌମ୍ୟ, ହଠାତ୍ ଦେଖିଲା—ସ୍ୱରୂପାର ଅଶ୍ରୁସିକ୍ତ କରୁଣ ଆଖି ଦୁଇଟିରେ ଯେପରି ସଜଳ ମିନତି ଫୁଟି ଉଠିଛି । ଆଖି ମଧ କଥା କହିପାରେ, କୌଣସି ଧ୍ୱନି ନ ଥିଲେ ମଧ ଅଭିବ୍ୟକ୍ତି ଅର୍ଥକୁ ବ୍ୟକ୍ତ କରିପାରେ, ଆଉ ପ୍ରତିଧ୍ୱନି ତୋଳିପାରେ ଅନୁରାଗୀ ହୃଦୟର ନିଭୃତ କନ୍ଦରରେ । ସ୍ୱରୂପାର ସେହି ଚାହାଁଣି ଯେପରି ସୌମ୍ୟର ହୃଦୟକୁ ଏକ ଅଜଣା ପୁଲକରେ ସ୍ପନ୍ଦିତ କରି ତାକୁ ଆଉ କୌଣସି କଥା କହିବାକୁ ମନାକଲା । ନୀରବରେ ମୁହଁ ତଳକୁ କଲା ସୌମ୍ୟ ।

ଆନନ୍ଦ ଉଚ୍ଛ୍ୱସିତ କଣ୍ଠରେ କହିଲେ ସୁଜାତା—ଚାଲ, ନାନୀ, ଚାଲ, ଭାଇନାଙ୍କ ପାଖକୁ ଯିବା । ତାଙ୍କର ଆଶୀର୍ବାଦ ଦରକାର ।

ସତ୍ୟବ୍ରତ ସବୁ କଥା ଶୁଣିଥିଲେ । ଚାହିଁଲେ କାନ୍ଥରେ ଟଙ୍ଗା ହୋଇଥିବା ନୀଳମଣିଙ୍କ ଅତି ବଡ଼ ତୈଳଚିତ୍ରଟା ଆଡ଼କୁ । ବଡ଼ ଜୀବନ୍ତ ଫଟୋଟିଏ । ସତେ କି ନୀଳମଣି ତାଙ୍କର ସେହି ଅଜସ୍ର ଅଭିଜ୍ଞତାଭରା ହସ ହସି ଚାହିଁ ଦେଖୁଛନ୍ତି ସବୁ । ସବୁ ଜାଣି ପାରୁଛନ୍ତି ।

ତା'ପରେ ଦୁଇ ହାତ ବଢ଼ାଇ ସୌମ୍ୟକୁ ଓ ସ୍ୱରୂପାକୁ ଟାଣି ଆଣି ପଲଙ୍କ ଉପରେ ନିଜର ଦୁଇ ପାଖରେ ଆଦର କରି ବସାଇଲେ । ସତ୍ୟବ୍ରତ କହିଲେ—ବଡ଼ମା'ଙ୍କ ଅତି ପ୍ରିୟ

ଆସ୍ଥାନ ଏଇଟା, ସୌମ୍ୟ, ସ୍ୱରୂପା, ଆସ ଆଜି ବଡ଼ମା'ଙ୍କର ହୋଇ ମୁଁ ତମମାନଙ୍କ କାମଟା ସାରିଦିଏ ।

ସ୍ୱରୂପାର ହାତକୁ ଧରି ସୌମ୍ୟର ହାତ ଉପରେ ରଖିଲେ ସତ୍ୟବ୍ରତ, ତା'ପରେ ଲୁହଭରା ଛଳ ଛଳ ଆଖିରେ ସ୍ୱରୂପାକୁ କହିଲେ—ମା ସ୍ୱରୂପା, ତୁ ହେଉଛୁ ମୋର ମଧୁଛନ୍ଦା । ବଡ଼ମା' ଚାଲିଗଲେ ବୋଲି ତୁ କେବେ ଭାବିବୁନି ଯେ ଆମେ ତତେ ପର କରି ଦେବୁ । ବଡ଼ମା ବଞ୍ଚିଥିଲା ବେଳେ ଏ ଘର ଯେମିତି ଚାଲିଥିଲା, ଠିକ୍ ସେହିପରି ହିଁ ଚାଲିବ ।

ତୈଳଚିତ୍ର ଭିତରେ ଥାଇ ନୀଳମଣି ଯେପରି ସାର୍ଥକତାର ହସ ହସିଲେ । କହିଲେ—ମୋ ନିଜ ହାତରେ ଗଢ଼ା ମଣିଷ ଯେ, ସତ୍ୟବ୍ରତ କ'ଣ ଆଉ ମୋ ମୃତ୍ୟୁ ପରେ ବଦଳି ଯାଇଥାନ୍ତା ?

ହଠାତ୍ ଅଶ୍ରୁରୁଦ୍ଧ କଣ୍ଠରେ କହିଲେ ସୁନନ୍ଦା—ଶୁଣ, ବଡ଼ମା'ଙ୍କୁ କହି ଦିଅ, ସ୍ମିତାକୁ ମଧ ଆଉ ମୁଁ ବାହାରକୁ କାହା ଘରକୁ ଯିବାକୁ ଦେବିନି, ତାକୁ ମୁଁ ମଧ ଛାଡ଼ି ପାରିବିନି । ସେ ହେବ ମୋର ଝିଅ, ପୁଣି ସେ ହେବ ଆମର ଏ ଘରର ବଡ଼ ବୋହୂ ! ସୁପ୍ରକାଶର ପାଠପଢ଼ା ସରିଲେ ସ୍ମିତାକୁ ତା ସହିତ ବାହା କରାଇଦେବା । ସୁଜାତା, କହିଲୁ ବଡ଼ମା ମୋର ଦୋଷ କ୍ଷମା କରିବେନି ? ଆତ୍ମା ତାଙ୍କର ସୁଖୀ ହେବନି ?

ସୁଜାତାଙ୍କ କାନ୍ଧରେ ମୁହଁ ଲୁଚାଇ ଦେଲେ ସୁନନ୍ଦା ।

ବିସ୍ମିତା ହୋଇଗଲେ ସୁଜାତା, ଖାଲି ସେ ନୁହେଁ, ତାଙ୍କ ସହିତ ସେଠାରେ ଉପସ୍ଥିତ ଥିବା ସମସ୍ତେ । ସବୁଠାରୁ ବେଶୀ ସ୍ୱରୂପା । ସତ୍ୟବ୍ରତ କିଛି ସମୟ ସ୍ତବ୍ଧ ହୋଇ ରହି ତା'ପରେ ଦୀର୍ଘ ନିଃଶ୍ୱାସଟିଏ ପକାଇ ବିଷଣ୍ଣ ଭାବରେ ଟିକିଏ ହସି କହିଲେ—ଆଉ କେତେଟା ଦିନ ଆଗରୁ ଯଦି ଏସବୁ ଏଭଳି ଠିକ୍ କରି ଦେଇଥାନ୍ତାନା ସୁନନ୍ଦା ତା ହେଲେ ବଡ଼ମା ବୋଧହୁଏ ଆହୁରି କେତେଟା ବର୍ଷ ବଞ୍ଚି ଯାଇଥାନ୍ତେ । ଆଜି ସେ ଏଠି ଥିଲେ, ତାଙ୍କଠାରୁ ବଳି ସୁଖୀ ଏ ସଂସାରରେ କିଏ ଆଉ ହୋଇଥାନ୍ତା ?

ସତରେ ବଡ଼ମା'ଙ୍କଠାରୁ ବଳି ସୁଖୀ ଆଉ କିଏ ହୋଇଥାନ୍ତା ? ଅତି କଷ୍ଟରେ ଦୀର୍ଘ ନିଃଶ୍ୱାସଟାକୁ ଚାପି ଦେଇ ସ୍ୱରୂପା ମଧ ଭାବିଲା ।

କିନ୍ତୁ ସେ ଦୁଃଖର ଅନୁଭୂତି ଭିତରେ ମଧ ତା'ର ମନେ ହେଲା ଗୋଟାଏ ବିରାଟ ବୋଝ ତା ମୁଣ୍ଡରୁ ଓହ୍ଲାଇ ଯାଇଛି, ସ୍ମିତାର ଭବିଷ୍ୟତ୍ ସୁନିର୍ଦ୍ଦିଷ୍ଟ ହୋଇ ଯାଇଛି । ସେ ନିଜେ ଆଶ୍ରୟ ପାଇଛି ।

ହେଲେ ସତରେ କ'ଣ ବଡ଼ମା' ସେ ପାରିରେ ଥାଇ ଏ ସବୁ ଘଟଣା ଦେଖି ପାରୁଛନ୍ତି ? ଯଦି ଆତ୍ମା ଅବିନାଶୀ ହୋଇଥାଏ, ଯଦି ଜନ୍ମାନ୍ତର ସତ୍ୟ ହୋଇଥାଏ ତା' ହେଲେ ତ ଏ କଥା ସମ୍ଭବ । ଭଗବାନ୍ ! ସେଇୟା ହୋଇଥାଉ ।

—ସୌମ୍ୟ, ସ୍ୱରୂପା, ପ୍ରଣାମ କର ।

ସଚେତନ ହୋଇ ସ୍ୱରୂପା ପ୍ରଣାମ କଲା ସତ୍ୟବ୍ରତଙ୍କୁ, ସୁନନ୍ଦାଙ୍କୁ ଆଉ ସୁଜାତାଙ୍କୁ । ସୌମ୍ୟ ମଧ୍ୟ ପ୍ରଣାମ କଲା ।

ସତ୍ୟବ୍ରତଙ୍କ ପାଇଁ ଚାହା ଓ ଜଳଖିଆର ଟ୍ରେ ଟି ଧରି ଆସି ମନ୍ତ୍ରମୁଗ୍ଧ, ପରି ସ୍ତବ୍ଧ ହୋଇ ଏ ସବୁ ଦେଖୁଥିଲା ସ୍ମିତା ।

ସ୍ମିତାର ହାତରୁ ଟ୍ରେ' ଟିକୁ ନେଇ ଟେବୁଲ ଉପରେ ରଖି ସୁନନ୍ଦା ତାକୁ କୁଣ୍ଢାଇ ଧରିଲେ ।

କି ଏକ ଆବେଗରେ ଉଦ୍‌ବୁଦ୍ଧ ହୋଇ ଫୁଲମାଳ ଓ ଚନ୍ଦନରେ ଅପୂର୍ବ ଭାବରେ ସଜା ହୋଇଥିବା ନୀଳମଣିଙ୍କ ଫଟୋଟାକୁ ପ୍ରଣାମ କଲେ ସମସ୍ତେ ।

ସତେ କି ମୃତ ଘରଟାରେ ଆଉଥରେ ନବଜୀବନ ସଞ୍ଚାରିତ ହୋଇ ଉଠିଲା ।

ସତ୍ୟବ୍ରତ ଲୁହଭରା ଆଖିରେ ଚାହିଁ ରହିଲେ । ନୀଳମଣି ବଞ୍ଚିଥିଲା ବେଳେ ଏ ଫଟୋଟାକୁ ଏତେ ବେଶୀ ଧ୍ୟାନ ଦେଇ ସେମାନେ କେଉଁଦିନ ଦେଖି ନାହାନ୍ତି ! ଆଜି ମନେ ହେଉଛି—ଫଟୋଟି ଜୀବନ୍ତ ହୋଇଯାଇଛି । ସତେ ଯେପରି ନୀଳମଣିଙ୍କ ଆଖି ଦୁଇଟା କଥା କହୁଛନ୍ତି । ଅପୂର୍ବ ସୁଖର ଏକ ସତେଜ ଅଭିବ୍ୟକ୍ତି ଫୁଟି ଉଠିଛି ମୁହଁରେ । ନୀଳମଣି ହସୁଛନ୍ତି, ସମସ୍ତଙ୍କୁ ସାନ୍ତ୍ୱନା ଦେଉଛନ୍ତି ।

x x x

କାଲି ସ୍ୱରୂପା ଫେରିଯିବ ।

ସେହି ଶ୍ମଶାନ ଭୂମି । ନୀଳମଣିଙ୍କ ଶରୀର ଜଳିପୋଡ଼ି ଭସ୍ମ ହୋଇଗଲା ପରେ ଏଠାକୁ ସବୁଦିନ ବୁଲି ଆସିବାଟା ପରିବାରର ଏକ ଅଭ୍ୟାସରେ ପରିଣତ ହୋଇଯାଇଛି । ଥରେ ଥରେ ସମସ୍ତେ ମିଳିମିଶି ଚାଲି ଆସନ୍ତି । କେତେବେଳେ ଏକାକୀ ଆସନ୍ତି କେହି କେହି ।

ସଦ୍ୟ କ୍ଷତ ପରି ସଦ୍ୟ ମୃତ୍ୟୁ ଶୋକ ।

କ୍ଷତ ଶୁଖିବାକୁ ସମୟ ଲାଗେ, ଆସ୍ତେ ଆସ୍ତେ ସୂକ୍ଷ୍ମ ଚର୍ମର ଆସ୍ତରଣ ପଡ଼େ ।

ସେହିପରି ଶୋକର କ୍ଷତ ଉପରେ ବିସ୍ମୃତିର ଚର୍ମ ଆବରଣ ପଡ଼ିବାକୁ ମଧ୍ୟ ବହୁତ ସମୟ ଲାଗେ ।

ପ୍ରଥମେ ପ୍ରଥମେ ମନେ ହେଉଥିଲା—ସତେ ଯେପରି ନୀଳମଣି ଏଠି ରହିଛନ୍ତି, ଡାକିଦେଲେ ଉତ୍ତର ଦେବେ । କେତେ ଦିନ ପରେ ସେ ପ୍ରତ୍ୟୟ ଭାଙ୍ଗିଲା । ଆଖି ଛଳ ଛଳ କରି ଦୀର୍ଘ ନିଃଶ୍ୱାସ ପକାଇ ନୀଳମଣିଙ୍କ ସମାଧି ସ୍ଥାନଟିର ଟିକିଏ ଦୂରରେ କିଛି ସମୟ ବସିରହି ତାଙ୍କର ସବୁ କଥାକୁ ମନେ ପକାଇବା ଛଡ଼ା ଆଉ ଅଧିକ କିଛି ନାହିଁ ।

ତେବେବି ସମସ୍ତେ ଆସନ୍ତି ଯେ ଯାହାର ସମୟ କରି ।

କାଲି ସ୍ୱରୂପା ଫେରିଯିବ ।

ସ୍ମିତା, ଲୀନା, ସୌମ୍ୟ ଓ ସ୍ୱରୂପା ଚାରି ଜଣ ଆସିଛନ୍ତି । ରୂପମତୀ ନଦୀର ପଥର ବନ୍ଧା ଘାଟ ଉପରେ ପାଣିର ଅତି ପାଖରେ ଯାଇ ବସିଛି ସ୍ୱରୂପା । ଚାହିଁ ଦେଖୁଛି ନଦୀର ବହି ଯାଉଥିବା ଧୀର ସ୍ରୋତକୁ । ଶଙ୍ଖ ମଲମଲ ପଥରରେ ବନ୍ଧେଇ ହୋଇଥିବା ଅତି ସୁନ୍ଦର ଘାଟ, ପରିଷ୍କାର ପରିଚ୍ଛନ୍ନ, ଦେଖିଲେ ମନେ ହେଉନାହିଁ ଯେ ଏହା କେଉଁ ଏକ ଶ୍ମଶାନ ଧାରର ନଦୀଘାଟ ବୋଲି । ଏହି ସ୍ୱତନ୍ତ୍ର ଶ୍ମଶାନ ଭୂମିକୁ ଏକ ପୁଣ୍ୟ ପୂତ ମନ୍ଦିର ପରି ଗଢ଼ିଦେଇ ଯାଇଛନ୍ତି ନୀଳମଣି ।

ଏଠି ବସିଲେ ସିଧା ଦିଶୁଛି ନୀଳମଣି ଓ ବିଶ୍ୱନାଥଙ୍କ ସମାଧି ସ୍ଥଳ । ଅବଶ୍ୟ ଟିକିଏ ଦୂରରେ । ମିସ୍ତ୍ରୀ ଲାଗିଛନ୍ତି କାମରେ । ନୂଆ ସମାଧି ବେଦୀ ତିଆରି ହେଉଛି । ଲୀନା ଓ ସ୍ମିତା କିଛି ଦୂରରେ ଗୋଟାଉଛନ୍ତି ଝରି ଯାଇଥିବା ବଉଳ ଫୁଲଗୁଡ଼ିକ ।

ଗ୍ରୀଷ୍ମ ଋତୁ, ତେଣୁ ବିଳମ୍ବରେ ସନ୍ଧ୍ୟା ହେବ । ଖରାର ତେଜ ମଉଳି ଲାଣି । କିନ୍ତୁ ଖରା ଯାଇ ନାହିଁ । ରୂପମତୀର ଜଳଧାରା ଉପରେ ପ୍ରତିବିମ୍ବ ସୃଷ୍ଟି କରି ପ୍ରତିଫଳିତ ହେଉଛି ସୂର୍ଯ୍ୟକିରଣ ।

ସ୍ୱରୂପାଠାରୁ ଟିକିଏ ଦୂରରେ ବସି ସୌମ୍ୟ ମଧ ଯେପରି ଅପରାହ୍ନର ସେହି ବିଷଣ୍ଣତା ଭିତରେ ନିଜକୁ ହଜାଇ ଦେଇଥିଲା । ଧ୍ୟାନ ଭାଙ୍ଗିଲା ତା'ର ସ୍ୱରୂପାର କଥାରେ ।

ସ୍ୱରୂପା କହିଲା – ନଦୀର ଧାର ବହିଗଲା ପରି ସମୟ ବହି ଯାଉଛି । ହେଇଟି ମଧୁଚ୍ଛନ୍ଦା ଚାଲିଗଲା । ତା'ପରେ ବଡମା' ଚାଲିଗଲେ, କେତେ ଦିନ ଚାଲିଗଲାଣି ...

– ଖାଲି ସମୟ ନୁହେ ସ୍ୱରୂପା, ଜୀବନ ମଧ – କହିଲା ସୌମ୍ୟ, ଯେଉଁ ମୁହୂର୍ତ୍ତଟି ଚାଲିଯାଉଛି ସେ ମୁହୂର୍ତ୍ତଟି ଆଉ ଆମ ଜୀବନରେ ଫେରି ଆସିବନି । କାଲି ତମେ ଚାଲି ଯାଉଛ ସ୍ୱରୂପା । ପୁଣି ଫେରି ଆସିବ କେବେ ? କେବେ ଆଉ ଥରେ ତମର ଛୁଟି ହେବ ?

ରୂପମତୀର ବହି ଯାଉଥିବା ଜଳଧାରା ଉପରେ ଦୃଷ୍ଟି ରଖି ସ୍ୱରୂପା କହିଲା – ତୁମେ ଯେବେ କହିବ ମୁଁ ଆସିବି । ମୋର ତ କାମ ସରିଲା ପର୍ଯ୍ୟନ୍ତ ଛୁଟି ନାହିଁ ।

ସୌମ୍ୟ ଟିକିଏ ହସିଲା । କହିଲା –ମୋ'ରି କଥାରେ ଯଦି ତମେ ଯିବା ଆସିବା କରିବ ସ୍ୱରୂପା ତା'ହେଲେ ତ ମୁଁ କହିବି ଜମା ଯାଅ ନାହିଁ । ଏଠି ରହ ସବୁବେଳେ । କିନ୍ତୁ ତମର ମୂଲ୍ୟବାନ ଗବେଷଣାକୁ ଏହିପରି ଅଧାରେ ବନ୍ଦ କରି ରଖିଦେବାକୁ ମଧ ମୁ ଚାହୁଁନି । ତମ ପି.ଏଚ୍‌ଡି.ର କାମ ସରିବାକୁ ଆହୁରି ବାକି ଅଛି ନା ?

– ଏ ଛଅ ମାସ ମୋ ପାଖରେ ଛଅ ଯୁଗ ହେବ । ବିଶ୍ୱାସ କର ତମେ । ବଡମା' ବଞ୍ଚିଥିଲାବେଳେ .... ସ୍ୱରୂପା କଥା ଶେଷ କରି ପାରିଲା ନାହିଁ । ତା'ର କଣ୍ଠସ୍ୱର ଶୋକର ଉଚ୍ଛ୍ୱାସରେ ରୁଦ୍ଧ ହୋଇଗଲା ।

ସୌମ୍ୟ ଉଠି ଆସି ପାଖରେ ତା'ର ବସିଲା ।

ଟିକିଏ ନୀରବ ରହିଲା ପରେ ସ୍ୱରୂପା କହିଲା – ବଡମା' ବଞ୍ଚିଥିଲାବେଳେ କି ଅଦମ୍ୟ ଉତ୍ସାହ, କି ଶକ୍ତି ବଳରେ, କି ନିଶ୍ଚିନ୍ତରେ ମୁଁ ଚାଲି ଯାଉଥିଲି । ମନରେ ମୋ'ର କେତେ ଜୋର ରହିଥିଲା । ଏବେ ଲାଗୁଛି ବୋଧହୁଏ ଜୀବନରେ ଆଉ କିଛି କରି ପାରିବିନି ମୁଁ । ମୋର ସମସ୍ତ ଶକ୍ତିର ପ୍ରାଣକେନ୍ଦ୍ର ଥିଲେ ମୋ'ର ବଡମା' । ମୋ'ର ସବୁ ସ୍ୱପ୍ନ ବଡମା'ଙ୍କ ସହିତ ଉଭାଇ ଯାଇଛି ।

ଲୁଗା କାନିରେ ଆଖିର ଲୁହ ପୋଛିଲା ସ୍ୱରୂପା ।

– ନାଁ, ନାଁ ସ୍ୱରୂପା, ତା' ଭାବନି । ତମେ ତମର ଇଚ୍ଛା ଅନୁସାରେ ପି.ଏଚ୍‌ଡି. କଲାପରେ ଡି.ଏସ୍‌ସି କରିବ । ଆମେରିକାକୁ ମଧ୍ୟ ଯିବ । ଯାହା ଯାହା ଭାବିଥିଲ ସେ ସବୁ ପୂର୍ଣ୍ଣ କରିବାକୁ ହିଁ ପଡିବ ତମକୁ –

ଟିକିଏ ଅଟକି ଯାଇ କହିବ କି ନାହିଁ ଭାବି ସୌମ୍ୟ ପୁଣି କହିଲା – ଏ ବିବାହରେ ତମର ମତ ନଥିଲା । ସତରେ, ସ୍ୱରୂପା, ବିବାହଟା ଏକ ପିଲାଖେଳ ନୁହେଁ । ଅନେକ ସମୟ ରହିଛି । ବଡମା'ଙ୍କର ମରିବାର ବର୍ଷେ ନ ପୂରିଲା ଯାଏଁ ଆମର ବାହାଘର ହୋଇପାରିବ ନାହିଁ । ତେଣୁ ଭାବିବାକୁ ଯଥେଷ୍ଟ ସମୟ ପାଇବ ତମେ । ଶୋକର ଜୁଆର ସବୁଦିନ ରହିବନି, ତା ହୋଇଥିଲେ ମଣିଷ ଏ ସଂସାରରେ ଚଳି ପାରି ନ ଥାନ୍ତା । ଜୁଆର ପରେ ଭଟ୍ଟା ଆସିବ ସ୍ୱରୂପା, ଆଘାତଟାକୁ ସମ୍ଭାଳି ଗଲାପରେ ଆଉଥରେ ଆଶା ଆକାଂକ୍ଷା ପୂର୍ବପରି ଦେଖାଦେବ ମନରେ । ତେଣୁ ତମେ ଏତେ ହତୋତ୍ସାହ ହୋଇ ଯାଅନି । ନିଜର ଭବିଷ୍ୟତ କଥା ଭଲ ରୂପେ ଭାବି ଚିନ୍ତି ଠିକ୍ କରିବ ।

ସ୍ୱରୂପା ଆଶ୍ଚର୍ଯ୍ୟ ହୋଇ କହିଲା – ମୋର ଭବିଷ୍ୟତ ଠିକ୍ ହୋଇ ଯାଇଛି, ଆଉ ଠିକ୍ କରିବି କ'ଣ ? ମତେ ନିରାପଦ ଆଶ୍ରୟ ମିଳି ଯାଇଛି । ମୁଁ ଯେଉଁ ନିରାପଦ ନିର୍ଭୟ ଆଶ୍ରୟ ପାଇଛି, ଜୀବନ ମୋର ଚାଲିଯିବା ପର୍ଯ୍ୟନ୍ତ ସେ ଆଶ୍ରୟକୁ ଆଉ ମୁଁ ଛାଡିବିନି । କିନ୍ତୁ ମତେ ତମେ ତମର ଅଯୋଗ୍ୟା ବୋଲି ଭାବୁନାହଁ ତ ?

ଅଶ୍ରୁଭରା ବ୍ୟାକୁଳ ଆଖି ଦୁଇଟି ଉଠାଇ ସ୍ୱରୂପା ଆଉଥରେ ପଚାରିଲା ସୌମ୍ୟକୁ – ମତେ ତମେ ତମର ଅଯୋଗ୍ୟା ବୋଲି ଭାବୁନାହଁ ତ ?

ସୌମ୍ୟ ଆବାକ୍ ହୋଇଯାଇ କହିଲା – ତମକୁ ମୋ'ର ଅଯୋଗ୍ୟା ବୋଲି ଭାବିବି ? କ'ଣ ଯେ କହୁଛ, ସ୍ୱରୂପା ! ତମେ ଯେ ମୋ'ର କେତେ ଆପଣାର । ସେ କଥା ବଡମା ଜାଣିଥିଲେ, ଆଉ ଜାଣିପାରିଥିଲେ ବୋଲି ଆମ ଦୁହିଁଙ୍କ ଜୀବନକୁ ଏକ ସୂତ୍ରରେ ଆବଦ୍ଧ କରିବାକୁ ଚାହିଁଥିଲେ !

ଏଥର ସ୍ଥାନ, କାଳ ଭୁଲିବାକୁ ସୌମ୍ୟର ହାତକୁ ନିଜର ଦୁଇହାତ ଭିତରେ ଧରି ପକାଇ ଅଧୀର ବ୍ୟାକୁଳତାରେ ତାକୁ ଚାହିଁ ପଚାରିଲା ସ୍ୱରୂପା – କହିଲ, ବଡମା କ'ଣ ସତରେ ଆଉ କେବେହେଲେ ଜାଣି ପାରିବେନି ଯେ ତାଙ୍କର ମନର ଇଚ୍ଛାକୁ ମୁଁ ପୂର୍ଣ୍ଣ କରିଛି ? ସେ କ'ଣ

ସତରେ ଆଉ କେବେ ଜାଣି ପାରିବେନି ଯେ ମାୟାମୃଗ ପଛରେ ନଧାଇଁ ମୁଁ ବର୍ତ୍ତମାନକୁ ହିଁ ମୋର ସର୍ବସ୍ୱ କରିଛି ?

ସୌମ୍ୟ ତା'ର ଅଶ୍ରୁଭରା ଆଖି ଦୁଇଟିକୁ ଚାହିଁ ନୀରବ ରହିଲା କିଛି ସମୟ । ତା'ପରେ ଧୀରେ କହିଲା, ଶାସ୍ତ୍ର ତ ଅନେକ କଥା କହିଛି, ଋଷିମାନେ ମଧ୍ୟ ଅନେକ ପ୍ରକାର ମତ ବ୍ୟକ୍ତ କରିଛନ୍ତି । ତମେ ତ ଜାଣିଥିବ, ମହର୍ଷି ଚାର୍ବାକ କହିଛନ୍ତି –

ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ?

ଭସ୍ମ ହୋଇ ଯାଇଥିବା ଶରୀର ପୁ'ଣି କ'ଣ ସଂସାରକୁ ଆସିପାରିବ ? – ସ୍ୱରୁପା, ଏକଥା ଅସମ୍ଭବ ।

ଆଖିର ଲୁହ ପୋଛି ସ୍ୱରୂପା କହିଲା – ଆତ୍ମା ଅବିନଶ୍ୱର । ଆତ୍ମା ଅତୀନ୍ଦ୍ରିୟ ଅନୁଭୂତି ଦ୍ୱାରା ଲଭ୍ୟ, ତର୍କ ଦ୍ୱାରା ନୁହେଁ । ଭକ୍ତିବିହୀନ ଶାସ୍ତ୍ର ଚର୍ଚ୍ଚା ଦ୍ୱାରା ବ୍ରହ୍ମଜ୍ଞାନ ବା ମୁକ୍ତି ଲଭିବା ମଣିଷ ପକ୍ଷରେ ସମ୍ଭବ ନୁହେଁ ।

ଏଥର ସୌମ୍ୟ କିଛି କହିଲା ନାହିଁ । କ'ଣ ବା ଉତ୍ତର ଦେଇ ପାରିଥାନ୍ତା ? ମୃତ୍ୟୁ ପରେ ମଣିଷ କ'ଣ କିଛି ଜାଣେ ? ଜାଣିପାରେ ?

ଆତ୍ମା କ'ଣ ? ଆତ୍ମାର ରୂପ କ'ଣ ? ତା'ର ସ୍ଥିତି କେତେଦୂର ସତ୍ୟ ? ମୃତ୍ୟୁ ପରର କଥା ଯେ ଏବେ ମଧ୍ୟ ରହସ୍ୟାବୃତ । ଏ ପ୍ରଶ୍ନଟି ଯେ କେତେ ଯୁଗରୁ ପ୍ରବହମାନ ହୋଇ ଆସିଛି । ରୂପମତୀ ନଦୀର ଧାରା ପରି ଏ ଶାଶ୍ୱତ ପ୍ରଶ୍ନ କେଉଁ ଅଜଣା ରହସ୍ୟମୟ ପଥରେ ବହି ଚାଲିଛି ଏପର୍ଯ୍ୟନ୍ତ । ଏହାର ଶେଷ କାହିଁ, କେଉଁଠି କେତେବେଳେ କିଏ କହିବ ?

ସ୍ୱରୁପା ଆଉଥରେ ଆଖି ପୋଛି ସ୍ୱପ୍ନାଚ୍ଛନ୍ନ ବ୍ୟକ୍ତି ପରି ଧୀରେ ଧୀରେ କହିଲା – ପୂର୍ବଜ ମାନଙ୍କ ମତରେ ଶରୀର ବିନାଶ ହେଲେ ମଧ୍ୟ ଆତ୍ମାର ବିନାଶ ନାହିଁ । ଆତ୍ମା ଅମର –

ଆଶ୍ଚର୍ଯ୍ୟବତ୍ ପଶ୍ୟତି କଶ୍ଚିଦେନ

ମାଶ୍ଚର୍ଯ୍ୟବଦ୍ ବଦତି ତଥୈବ ଚାନ୍ୟଃ ...

ଆଶ୍ଚର୍ଯ୍ୟ ବଚ୍ଚୈକମନ୍ୟଃ ଶୃଣୋତି

ଶ୍ରୁତ୍ୱା ପ୍ୟେନଂ ବେଦ ନ ଚୈବ କଶ୍ଚିତ୍ ।

କେହି ଏହି ଆତ୍ମାଙ୍କୁ ଆଶ୍ଚର୍ଯ୍ୟବତ୍ ଦେଖନ୍ତି, ଅନ୍ୟ କେହି ବା ଏହି ଆତ୍ମାଙ୍କୁ ଆଶ୍ଚର୍ଯ୍ୟରୂପେ ବର୍ଣ୍ଣନା କରନ୍ତି । କେହି ବା ଏହି ଆତ୍ମତତ୍ତ୍ୱ ଆଶ୍ଚର୍ଯ୍ୟ ଭାବରେ ଶୁଣନ୍ତି ଏବଂ କେହି ବା ଏ ଆ' ତତ୍ତ୍ୱ ଶୁଣି ମଧ୍ୟ ଆତ୍ମାଙ୍କୁ ଜାଣିପାରନ୍ତି ନାହିଁ । ଆତ୍ମତତ୍ତ୍ୱ ବଡ ଦୁର୍ବିଜ୍ଞେୟ ।

ଏଥର ମଧ୍ୟ ନୀରବ ହୋଇ ରହିଲା ସୌମ୍ୟ । ବ୍ୟଥିତା ପ୍ରିୟତମାକୁ ଖାଲି ସାନ୍ତ୍ୱନା ଦେବା ପାଇଁ ବୋଧହୁଏ ସ୍ୱରୂପାର ହାତଟିକୁ ଟାଣିନେଲା ହାତମୁଠା ଭିତରକୁ ।





## ବସନ୍ତକୁମାରୀ ଦେବୀ

ବସନ୍ତକୁମାରୀ ଦେବୀ ମାର୍ଚ୍ଚ ୧୨ ତାରିଖ ୧୯୩୧ ମସିହାରେ ପାର୍ବତୀପୁର (ଅଧୁନା ଆନ୍ଧ୍ରପ୍ରଦେଶ ଅନ୍ତର୍ଭୁକ୍ତ)ରେ ଜନ୍ମଗ୍ରହଣ କରିଥିଲେ । ପିତା ସ୍ୱର୍ଗୀୟ ଶ୍ରୀ ଅଭିମନ୍ୟୁ ମିଶ୍ର (ଭୂତପୂର୍ବ ବିଚାରପତି, ଓଡ଼ିଶା ହାଇକୋର୍ଟ) ଓ ମାତା ଶ୍ରୀମତୀ ଇନ୍ଦୁମତୀ ଦେବୀଙ୍କ ପ୍ରଭାବରେ ସେ ଆବାଲ୍ୟରୁ ସଙ୍ଗୀତ ଓ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ ।

୧୯୪୪ରେ ଅବସରପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀ ଗୋପୀନାଥ ଦାଶଙ୍କ ପୁତ୍ର ଇଂରାଜୀ ପ୍ରଫେସର ଶ୍ରୀ ସର୍ବେଶ୍ୱର ଦାଶଙ୍କ ସହ ତାଙ୍କର ବିବାହ ହୋଇଥିଲା ।

୧୯୪୬ ମସିହାରୁ ଜୀବନର ଅନ୍ତିମ କାଳ ପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ଭାବରେ ସାହିତ୍ୟ ସେବା କରିଥିଲେ । ତାଙ୍କ ରଚିତ ବହୁ ଗଳ୍ପ ମଧ୍ୟରୁ କେତେଗୁଡ଼ିଏ 'ନାସ୍ତିକ ଓ ଅନ୍ୟାନ୍ୟ ଗଳ୍ପ', 'ରାତ୍ରିର ତପସ୍ୟା', 'କାହାଣୀ ପେଡ଼ି' (ଶିଶୁଙ୍କ ପାଇଁ) ଓ 'ଶତାବ୍ଦୀର ପ୍ରତିଧ୍ୱନି' (ପ୍ରଥମ ଭାଗ)ରେ ସଙ୍କଳିତ ହୋଇଅଛି । ସେ 'ଆରତି', 'ସେଇ ସାନ ଝିଅଟି', 'ଝଡ଼ର ଫଳ', 'ନଷ୍ଟନୀଡ଼ର ବିହଙ୍ଗୀ' ଓ 'କ୍ୟାକ୍‌ଟସ୍‌ର ଫୁଲ' ଉପନ୍ୟାସର ସଫଳ ସ୍ରଷ୍ଟା ।

ଶରତ୍ ଚନ୍ଦ୍ର, ତାରାଶଙ୍କର ଓ ଆଶାପୂର୍ଣ୍ଣାଙ୍କର ବହୁ ପ୍ରସିଦ୍ଧ ଉପନ୍ୟାସ ଓ ଗଳ୍ପ, କେତେକ ହିନ୍ଦୀ ଓ ପାଶ୍ଚାତ୍ୟ ଗଳ୍ପ ଏବଂ ନାଟକ ପ୍ରଭୃତି ସେ ଅନୁବାଦ କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଜଷ୍ଟିସ୍ ଶ୍ରୀ ଦୁର୍ଗାଦାସ ବସୁ ସରସ୍ୱତୀଙ୍କର ସୁପ୍ରସିଦ୍ଧ ବଙ୍ଗଳା ପୁସ୍ତକ 'ହିନ୍ଦୁ ଧର୍ମର ସାରତତ୍ତ୍ୱ'ର ଓଡ଼ିଆ ଅନୁବାଦ ମଧ୍ୟ ତାଙ୍କର ଏକ ବିଶିଷ୍ଟ କୃତି ।

ଏତଦ୍‌ବ୍ୟତୀତ ବସନ୍ତକୁମାରୀ ନାନାବିଧ ପ୍ରବନ୍ଧ, ନାଟକ ଇତ୍ୟାଦି ରଚନା କରିଛନ୍ତି । ସମ୍ପ୍ରତି ତାଙ୍କର କେତେକ ଭଜନ ଓ କବିତାର ଏକ ସଙ୍କଳନ 'ବାସନ୍ତିକା' ପ୍ରକାଶ ପାଇଛି । ନବସାକ୍ଷରଙ୍କ ପାଇଁ ମଧ୍ୟ ଗଳ୍ପ ଓ ପ୍ରବନ୍ଧମାନ ସେ ଲେଖିଛନ୍ତି ଓ ସେଥିପାଇଁ 'ଚେତନା' ପତ୍ରିକା ପକ୍ଷରୁ ପୁରସ୍କୃତ ହୋଇଛନ୍ତି ।

ତାରାଶଙ୍କରଙ୍କର 'ଗଣଦେବତା' ଓ 'ପଞ୍ଚଗ୍ରାମ'ର ଓଡ଼ିଆ ଅନୁବାଦ ପାଇଁ ୧୯୮୯-୯୦ରେ ସେ କେନ୍ଦ୍ର ସାହିତ୍ୟ ଏକାଡେମୀର ଅନୁବାଦ ସାହିତ୍ୟ ପୁରସ୍କୃତ ଲାଭ କରିଥିଲେ । ୧୯୯୨ରେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ବରିଷ୍ଠା ସାହିତ୍ୟିକା ରୂପେ ସେ ସମ୍ବର୍ଦ୍ଧିତା ଓ ପୁରସ୍କୃତା ହୋଇଥିଲେ । ୧୯୯୭ରେ ତାଙ୍କୁ 'ସୁଚରିତା' ପତ୍ରିକା ପକ୍ଷରୁ 'ସୁପ୍ରୀତି ଦେବୀ ଗନ୍ତାୟତ ସ୍ମୃତି ପୁରସ୍କାର' ପ୍ରଦତ୍ତ ହୋଇଥିଲା । 'ବର୍ତ୍ତିକା' ପତ୍ରିକା ୧୯୯୮ରେ ତାଙ୍କ ଉଦ୍ଦେଶ୍ୟରେ ମରଣୋତ୍ତର 'ବର୍ତ୍ତିକା-ପୁରସ୍କାର-୧୯୯୭' ପ୍ରଦାନ କରିଥିଲେ ।

୧୯୯୮ ମସିହା ମେ ୧୪ ତାରିଖ (ଜ୍ୟେଷ୍ଠ କୃଷ୍ଣ ଦ୍ୱିତୀୟା) ରେ ସେ ଭୁବନେଶ୍ୱରରେ ସ୍ୱର୍ଗାରୋହଣ କଲେ ।



ଫ୍ରେଣ୍ଡ୍ସ ପବ୍ଲିଶର୍ସ

ISBN 81-7401-368-7